# ଜାତୀୟ କବି ବୀରକିଶୋର ଗ୍ରନ୍ଥାବଳୀ

ସଂକଳନ :

ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ
କଟକ

ସଂପାଦକ :

ଦୋଳଗୋବିନ୍ଦ ପ୍ରଧାନ

ସଂପାଦନା ମଣ୍ଡଳୀ :

ଇଂ. ପ୍ରଭାକର ସ୍ୱାଇଁ
ଅଧ୍ୟାପକ ବିଜୟ କୁମାର ଶତପଥି
ଅଧ୍ୟାପକ ଆଦିତ୍ୟ ପ୍ରତାପ ଧଳ

ରାଷ୍ଟ୍ରଭାଷା ସମବାୟ ପ୍ରକାଶନ
ରାଷ୍ଟ୍ରଭାଷା ରୋଡ଼, କଟକ - ୭୫୩୦୦୯

ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ, କଟକ

ପ୍ରକାଶକ : ରାଷ୍ଟ୍ରଭାଷା ସମବାୟ ପ୍ରକାଶନ
ରାଷ୍ଟ୍ରଭାଷା ରୋଡ୍, କଟକ-୧



ପ୍ରଥମ ସଂସ୍କରଣ :
ଜନ୍ମ ଶତବାର୍ଷିକ ସମ୍ବତ୍ସର—ନଭେମ୍ବର-୨୩
୧୯୯୭

ମୁଦ୍ରଣ—ରାଷ୍ଟ୍ରଭାଷା ସମବାୟ ପ୍ରେସ୍

ମୂଲ୍ୟ—ଦୁଇଶହ ପଇଁଚାଳିଶ

Jatiya Kabi Birakishore Smruti Sansad, Cuttack

*Published by—*
Rashtrabhasha Samabaya Prakashan
Rashtrabhasha Road, Cuttack-753001



First Edition
Birth Centenary—Nov-23
1996

*Printed at—*
Rashtrabhasha Co-op. Press, Cuttack-1

Price Rs. 245/-

ଭିତରେ ତାଙ୍କର ତ୍ୟାଗଦୀପ୍ତ ଜାତୀୟ ବ୍ୟକ୍ତିତ୍ୱ ଭାସ୍ୱର । ସ୍ୱାଧୀନତା ପରେ ଏ ଦେଶର ତରୁଣ ଓ ଶିଶୁ ମାନସକୁ ଦେଶ ପ୍ରୀତିରେ ଉଦ୍‌ବୁଦ୍ଧ ହେବାପାଇଁ ସେ ଯେଉଁ କବିତାମାନ ଲେଖିଦେଇ ଗଲେ ସେଗୁଡ଼ିକ ଏ ଜାତି ପାଇଁ ଅମୂଲ୍ୟ ସଂପଦ ହୋଇ ରହିଛି ।

ମୋର ସୌଭାଗ୍ୟ ଏପରି ଜଣେ ଜାତୀୟ ବୀର ଓ ସାରସ୍ୱତ ଶକ୍ତୀଙ୍କ ସହିତ ମୁଁ ମୋର ଛାତ୍ରାବସ୍ଥାରେ କାର୍ଯ୍ୟ କରିଛି । ତାଙ୍କରି ପ୍ରେରଣା ଲାଭକରି ବିଦ୍ୟାଳୟ ଛାଡ଼ି ବାନର ସେନାରେ ଯୋଗ ଦେଇଛି । ତାଙ୍କର ପ୍ରାଣସ୍ପର୍ଶୀ ଜାତୀୟ କବିତାଗୁଡ଼ିକୁ ବୋଲି ବୋଲି ସହର ବଜାରଠୁ ଗାଁ ଗହଳ ପର୍ଯ୍ୟନ୍ତ ଜନମତ ଜାଗ୍ରତ କରିଛି । ତାଙ୍କର ବ୍ୟକ୍ତିତ୍ୱର ଅମୀୟ ପରଶରେ ଦେଶପାଇଁ ମୁଁ ନିଜକୁ ଉତ୍ସର୍ଗ କରିଛି ଓ ଜଣେ ସତ୍ୟନିଷ୍ଠ କର୍ମୀଭାବରେ ଗାନ୍ଧୀବାଦକୁ ପାଥେୟ କରି କାର୍ଯ୍ୟ କରିଛି । ସ୍ୱାଧୀନତା ପୂର୍ବରୁ ୩ ବର୍ଷ ୨ ମାସ କାରାବରଣ କରିଛି । ସବୁବେଳେ କିନ୍ତୁ ମୋର ସ୍ମୃତି ପଥରେ ରହିଛି ଜାତୀୟ କବିଙ୍କର ଦୀପ୍ତିମାନ ବ୍ୟକ୍ତିତ୍ୱ ।

ଏପରି ଜଣେ କ୍ରାନ୍ତିକାରୀ ସାରସ୍ୱତ ଶିଳ୍ପୀଙ୍କର ସମସ୍ତ କୃତିକୁ ସଂଗ୍ରହ କରି ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବା ମୋର ଯେଉଁ ସ୍ୱପ୍ନ ଥିଲା ତାହା ଏବେ ସାକାର ହେଲା । ଏହି ଅବସରରେ ଇଂଜିନିୟର ପ୍ରଭାକର ସ୍ୱାଇଁ, ଅଧ୍ୟାପକ ବିଜୟ କୁମାର ଶତପଥୀ, ଅଧ୍ୟାପକ ଆଦିତ୍ୟ ପ୍ରତାପ ଧଳ, ସମାଜସେବୀ ବସନ୍ତ କୁମାର ଦାସ ପ୍ରମୁଖ ଯେପରି ଭାବରେ ଜାତୀୟ କବିଙ୍କ ଲେଖାଗୁଡ଼ିକ ସଂଗ୍ରହ କରିବାରେ ସାହାଯ୍ୟ କରି ଏହି ଜାତୀୟ କାର୍ଯ୍ୟକୁ ଫଳବତୀ କରାଇବାରେ ସାହାଯ୍ୟ କରିଛନ୍ତି ସେମାନଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଜଣାଉଅଛି ।

ଜାତୀୟ କବି ବୀରକିଶୋର ଗ୍ରନ୍ଥାବଳୀ ନିଜ ଗୁଣରେ ସୁଧୀଜନଙ୍କର ପ୍ରୟୋଜନ ହେବ, ଏ ବିଶ୍ୱାସ ମୋର ଅଛି । ଏହି ଜାତୀୟ କଳା-କୋଣାର୍କକୁ ମୁଁ ଓଡ଼ିଶାର ସୁଧୀ ପାଠକମାନଙ୍କ ନିକଟରେ ପହଞ୍ଚାଇ ଦେଇ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଅଳମତି ବିସ୍ତରେଣ

**ଦୋଳଗୋବିନ୍ଦ ପ୍ରଧାନ**

ସଂପାଦକ

ଜାତୀୟ କବି ବୀରକିଶୋର ସ୍ମୃତି ସଂସଦ

# ସମ୍ପାଦକୀୟ

ଅନେକ ସ୍ୱପ୍ନ, ଅନେକ ଆଶାକୁ ନେଇ "ଜାତୀୟ କବି ବୀରକିଶୋର ଗ୍ରନ୍ଥାବଳୀ" ଆତ୍ମପ୍ରକାଶ କରୁଛି । ଏହି ଅବକାଶରେ ବ୍ୟକ୍ତିଗତ ଭାବରେ ମୋର ଆନନ୍ଦକୁ ମୁଁ ଭାଷାରେ ପ୍ରକାଶ କରିବାପାଇଁ ସଂପୂର୍ଣ୍ଣ ଅକ୍ଷମ । ଏହି ଗ୍ରନ୍ଥାବଳୀ ଜଣେ ବ୍ୟକ୍ତିଙ୍କର କୃତି ହେଲେ ହେଁ ଏହା ସମଗ୍ର ଭାରତୀୟ ଜାତୀୟ ଜୀବନର ବେଦ । ଭାରତୀୟ ଜନ ଜୀବନର ଉଦାତ୍ତ ଗାୟତ୍ରୀ । ତେଣୁ ଏପରି ଏକ ସାରସ୍ୱତ କୃତିର ସଂଗ୍ରହ ଓ ପ୍ରକାଶନ ବାସ୍ତବିକ ଏକ ଐତିହାସିକ ଆବଶ୍ୟକତା ଓ ଜାତୀୟ କର୍ତ୍ତବ୍ୟ ।

ଜାତୀୟ କବି ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ପ୍ରଥମ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରିଦେଇଥିଲେ ଓ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ସେହି ସଂଗ୍ରାମ ଭିତରେ ରହି ଦେଶ ଓ ଦଶପାଇଁ ନିଜର ଦିବ୍ୟ କର୍ତ୍ତବ୍ୟ ସଂପାଦନ କରିଯାଇଥିଲେ । ସ୍ୱାଧୀନତା ପରେ ମୃତ୍ୟୁ ପର୍ଯ୍ୟନ୍ତ (୧୯୭୩) ସେ ନିଜର ଆଦର୍ଶରୁ ପାଦେ ମଧ୍ୟ ବିଚ୍ୟୁତ ହୋଇ ନଥିଲେ । ଯେଉଁ ତ୍ୟାଗ ଓ ସତ୍ୟନିଷ୍ଠତା ନେଇ ସେ ଜାତୀୟ ସଂଗ୍ରାମରେ ଝାସ ଦେଇଥିଲେ ସେହି ତ୍ୟାଗ ଓ ସତ୍ୟନିଷ୍ଠତା ପ୍ରତି ସେ ଶେଷ ନିଃଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ଏକାନ୍ତ ବିଶ୍ୱସ୍ତ ରହିଥିଲେ । କୌଣସି ପ୍ରକାର ଉପଭୋଗୀ କାମନା ଓ କ୍ଷମତାଭିଳାଷ ତାଙ୍କୁ ଲକ୍ଷ୍ୟଚ୍ୟୁତ କରାଇ ପାରିନଥିଲା । ତାଙ୍କର ଅମଳିନ ଜାତୀୟ ବ୍ୟକ୍ତିତ୍ୱ ଏବେ ମଧ୍ୟ ଏ ଜାତିର ଆଦର୍ଶ । ଯେଉଁମାନେ ସ୍ୱାଧୀନତା ସଂଗ୍ରାମୀ ବୋଲି ନିଜର ଡ଼ିଣ୍ଡିମ ପିଟନ୍ତି ଓ ସ୍ୱାଧୀନତା ସଂଗ୍ରାମ ଭିତରେ ନ ଥାଇ ମଧ୍ୟ ନିଜକୁ ସ୍ୱାଧୀନତା ସଂଗ୍ରାମୀ କହି ବାହାବା ନେବାକୁ ଆଗଭର ହୁଅନ୍ତି ତଥା ସାଂପ୍ରତିକ କ୍ଷମତା-ରାଜନୀତିକୁ ହାତ ମୁଠାରେ ରଖି ନାନାଦି ଅପ କୌଶଳ କରି ଆପଣାର ଉପଭୋଗୀ ବ୍ୟକ୍ତିତ୍ୱକୁ ପ୍ରତିଷ୍ଠା ଦେଇ ପ୍ରଶଂସା ପାଇଁ ଉଦ୍ୟମ କରନ୍ତି ସେପରି ଲୋକଙ୍କ ଠାରୁ ଜାତୀୟ କବି ସଂପୂର୍ଣ୍ଣ ନିଆରା । ଗାନ୍ଧୀ-ଗୋପବନ୍ଧୁଙ୍କ ଆଦର୍ଶର ସେ ମୂର୍ତ୍ତ ପ୍ରତୀକ । ଅଗ୍ନିଗର୍ଭ ଜାତୀୟବାଦୀ କବିତାର ତାଳେ ତାଳେ ସେ ଓଡ଼ିଶାର ଜନମାନସକୁ ସେତେବେଳେ ଦୀର୍ଘ ତିରିଶ ବର୍ଷଧରି ଯେ ଅଭିଭୂତ କରି ରଖିଥିଲେ ତାହା ନୁହେଁ, ଏବେ ମଧ୍ୟ ତାଙ୍କର ସାରସ୍ୱତ ସୃଷ୍ଟି ସଂପଦ ଭାବୀ ପୁରୁଷମାନଙ୍କୁ ବିସ୍ମିତ କରିଦିଏ । ତାଙ୍କର 'ମୋହନ ବଂଶୀ'ର ମୂର୍ଚ୍ଛନା ଏବେ ମଧ୍ୟ ଶିହରଣ ସୃଷ୍ଟି କରେ ଶ୍ରୋତା ଓ ପାଠକ ପ୍ରାଣରେ । ବିଦ୍ରୋହୀ ବୀଣା, ରଣଭେରୀ, ରଣ ଦୁନ୍ଦୁଭି, ସମର ଯୁଗର ଅମର ସଂଗୀତ, ସବୁଜ ସାଥୀ ଏବେ ମଧ୍ୟ ଅଗ୍ନିଗର୍ଭ ଧ୍ୱନି ତୋଳେ । ଏବେ ମଧ୍ୟ ତାଙ୍କର 'ଅଗି ଫେରି ନାହିଁ' ସୂଚେଇ ଦିଏ ଦେଶରୁ ଜାତୀୟ ଶତ୍ରୁ ମାନଙ୍କର ବିଲୋପ ହୋଇନାହିଁ । ଏବେ ମଧ୍ୟ ତାଙ୍କର 'ସବୁଜ ସ୍ୱପ୍ନ' ନୂତନ ଜୀବନବାଦୀ ସ୍ୱପ୍ନର ସଂକେତ ଦିଏ । ରାଶି ରାଶି କବିତା

# କବିଙ୍କ ବଂଶ ପରିଚୟ


ଲକ୍ଷ୍ମଣ ଦାସ
ଗୋପାଳ ଚରଣ ଦାସ
ବୀରକିଶୋର
= ଶାରଦା ଦେବୀ
ଦାନାମ୍ବର
ବଂଶୀଧର
ଇନ୍ଦୁମଣୀ
ସୁନ୍ଦରମଣୀ
ନିରଞ୍ଜନ
(ପୁଅ)
ସମର
(ପୁଅ)
ଶତଦଳ
(ଝିଅ)
ବିଶ୍ୱକଲ୍ୟାଣୀ
(ଝିଅ)
ଜୟଶ୍ରୀ
(ଝିଅ)
କବିତା
(ଝିଅ)

# ଗ୍ରନ୍ଥସୂଚୀ



● ● ●



# FOREWORD

I consider myself honoured on being asked to write a foreword to the compilation of the 'Granthabali' incorporating the complete works of Jatiya Kabi Late Bira Kishore Das.

Bira Kishore belongs to the most crucial phase of modern Indian History to which I was a witness. His contribution to freedom struggle of the Country was immense. Armed with his pen he devoted himself wholeheartedly to the cause of freedom for the mother land. It was at the age of sixteen he started composing poetry. His poetry was as simple and unassuming as its author and yet it had a lyricism which was entirely his own. Poetry for him was a passion and through poems he found a spontaneous and fiery outlet of his revolutionary and patriotic feelings. Whether it was boycott of foreign cloth or salt satyagraha or refusal to pay taxes, it found a forceful yet lyrical expression through his illustrious pen.

"Poetry is an utterance of truth" and Bira kishore's poetry was the well-spring of truth. It was he who transmitted the message of Mahatma, an embodiment of truth and non-violence to lakhs of the people in Orissa during the tumultous days of the freedom struggle. His patriotic sons permeated the hearts of the millions and stirred them to join the freedom struggle. I remember and want to quote in this context the great poet pablo Neruda who said

"As the first bullets ripped in to the guitars of Spain, blood instead of music gushed out of them..............."

Similarly when the revolutionary compositions of Bira Kishore ripped in to the people, a new spirit gushed forth His poetry had an enthusing spark in them like of the poems of revolutionary Tamil Poet Subramaniam Bharati. All that has been said and all that is to be said I feel, would be inadequate to pay adequate tribute to the memory of the poet.

I congratulate all those who have associated themselves with Sri Bira Kishore Memorial Trust for their untiring endeavour of compiling all his writings for the posterity.

This grate soul will live long in our memory and inspire the geuerations to come. Bira Kishore lives in his writings and his poems will illumine all the coming generations with that ineffable light of love for the mother land

***(G. RAMANUJAM)***
**Governor, Orissa**

# ଜାତୀୟ କବି ବୀରକିଶୋର କଲେଜରେ ଜାତୀୟ କବିଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ଉପଲକ୍ଷେ ରାଜ୍ୟପାଳ ମାନ୍ୟବର ବିଶ୍ୱମ୍ଭରନାଥ ପାଣ୍ଡେଙ୍କ ଅଭିଭାଷଣ

**ତା ୨୩।୧୧।୧୯୮୭**

ଜାତୀୟ କବି ବୀରକିଶୋର ଦାସଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ କରି ମୁଁ ଗଭୀର ଆନନ୍ଦ ପ୍ରକାଶ କରୁଅଛି। ସ୍ୱାଧୀନତା ସଂଗ୍ରାମୀ, ଐତିହାସିକ, ସୃଜନଶୀଳ ଚିନ୍ତାନାୟକ ଓ କଳାକାରମାନଙ୍କ ପରି ମହାନ ବ୍ୟକ୍ତିଙ୍କର ସ୍ମୃତି ରକ୍ଷା ଉପଲକ୍ଷେ କୌଣସି ଉଦ୍ୟମ ବା କାର୍ଯ୍ୟକ୍ରମ ନିଶ୍ଚିତ ଭବରେ ଅଭିନନ୍ଦନୀୟ । ଜାତି ଗଠନ ଦିଗରେ ସେହି ମହାନ ବ୍ୟକ୍ତିତ୍ୱମାନଙ୍କର କଷ୍ଟସାଧ୍ୟ ଅବଦାନ ସହଜ ମୂଲ୍ୟାୟିତ ନୁହେଁ । ଜୀବନୀ ରଚନା, ସ୍ମାରକ ଷ୍ଟାମ୍ପ ପ୍ରଚଳନ, ପ୍ରତିମୂର୍ତ୍ତି ଉନ୍ମୋଚନ ଓ ସୋଭେନିୟର ପ୍ରକାଶ ଆଦି କେତେକ କାର୍ଯ୍ୟଦ୍ୱାରା ସେମାନଙ୍କର ଅପୂରଣୀୟ ଋଣ ପରିଶୋଧ କରଯାଇପାରେ, ଅନ୍ୟଥା ନୁହେଁ ।

ଭାରତୀୟ ଇତିହାସର ଏକ ସଙ୍କଟ କାଳରେ ଦେଶ ଯେଉଁ ମହାନ ପୁରୁଷମାନଙ୍କୁ ଜନ୍ମ ଦେଇଥିଲା ସେମାନଙ୍କ ମଧ୍ୟରେ ଜାତୀୟ କବି ବୀରକିଶୋର ଅନ୍ୟତମ । ଶ୍ରୀ ବିନୋଦ କାନୁନଗୋଙ୍କ ଦ୍ୱାରା ରଚିତ ଜାତୀୟ କବିଙ୍କ ସଂକ୍ଷିପ୍ତ ଜୀବନୀ ଗ୍ରନ୍ଥ ବ୍ୟତୀତ ତାଙ୍କର ପ୍ରାରମ୍ଭିକ ଗଠନ ମୂଳକ ଜୀବନ ସଂପର୍କରେ ଅନ୍ୟ କୌଣସି ତଥ୍ୟ ମିଳେ ନାହିଁ । ବାଲ୍ୟାବସ୍ଥାରୁ ତାଙ୍କର କବିତା ପ୍ରତି ଥିଲା ଗଭୀର ଆସକ୍ତି । ଫଳରେ କୌଣସି ବିଷୟଗତ ଅଭିଳାଷ ବା ସମାଜରେ ପ୍ରସିଦ୍ଧ ହେବାର କାମନା ନ ରଖି ସେ କବିତା ସହିତ ପ୍ରଣୟ ସୂତ୍ରରେ ଆବଦ୍ଧ ହୋଇଥିଲେ । ତାଙ୍କ ସଂପର୍କରେ କଥିତ ଅଛି ଯେ ବିଂଶ ଶତାବ୍ଦୀ ପ୍ରାରମ୍ଭିକ ସମୟରେ ସେ ଯେତେବେଳେ କଟକର ଭିକ୍ଟୋରିଆ ସ୍କୁଲରେ ଅଧ୍ୟୟନ କରୁଥିଲେ ସେତେବେଳେ ସେ ଭକ୍ତ କବି ମଧୁସୂଦନ ରାଓ, ଯିଏକି ଏହି ସ୍କୁଲର ପ୍ରତିଷ୍ଠାତା ଓ ସଂପାଦକ, ତାଙ୍କ ପାଖକୁ କବି ହେବାପାଇଁ ପରାମର୍ଶ ନେବାକୁ ଯାଇଥିଲେ । ଭକ୍ତ କବିଙ୍କ ନାନା ପ୍ରଶ୍ନର ଉତ୍ତରରେ ତାଙ୍କର ସବୁଜ ପତ୍ର, ବୃକ୍ଷ, ଲତା, ବଣବୁଦା ଓ ସବୁଜ ଘାସ ପଡ଼ିଆ ପ୍ରତି ଅନୁରାଗ ଥିବା କଥା ସେ କହିଲେ । ଭକ୍ତକବି କହିଲେ ତାଙ୍କର କବି ଦୃଷ୍ଟି 'Fine frenzy rolling' ଅଛି ଓ ସେ ଅଚିରେ ଏକ ମହାନ କବି ହେବେ । ଭକ୍ତ କବିଙ୍କ ଉପଦେଶରେ ଅନୁପ୍ରାଣିତ ହୋଇ ସେ ଏକ ଇଂରାଜୀ କବିତା Little drops of water make the sea ତତ୍କ୍ଷଣାତ୍ ଅନୁବାଦ କରିଦେଲେ ।

ତେରବର୍ଷ ବୟସ ବେଳକୁ ସେ କବିତା ରଚନା ଆରମ୍ଭ କଲେ ଓ ମାତ୍ର ଦଶବର୍ଷ ଭିତରେ ସେ ୩୦୦ କବିତା ଲେଖିଦେଲେ । ତାଙ୍କ ଜୀବନର ମଧ୍ୟାହ୍ନ ସମୟରେ ସେ ଯେଉଁ ସମସ୍ତ କବିତା ରଚନା କରିଥିଲେ ସେଗୁଡ଼ିକ ମୁଖ୍ୟତଃ ପ୍ରକୃତିର ବିଶ୍ୱସ୍ତ ଚିତ୍ର, ଗ୍ରାମ୍ୟ ଜୀବନର ସରଳତା, ଜୀବନର ସୁଖ ଦୁଃଖ, ହସ କାନ୍ଦ ପ୍ରତି ଆନ୍ତରିକ ଅନୁରାଗକୁ ନେଇ । ତାଙ୍କର କବିତାଗୁଡ଼ିକ ସ୍ରଷ୍ଟାଙ୍କ ପରି ସରଳ । ତଥାପି ସେଗୁଡ଼ିକର ଥିଲା ରୀତିମୟତା ଯାହା ଏକାନ୍ତ ମୌଳିକ ଓ ନିଜସ୍ୱ ।

ଦକ୍ଷିଣ ଆଫ୍ରିକାରେ ଅବସ୍ଥାନ କରୁଥିବା ଭାରତୀୟଙ୍କ ପାଇଁ ସେଠିକାର ଗୋରା ସରକାର ଯେଉଁ ଜାତିଗତ ଭେଦ ସୃଷ୍ଟି କରିଥିଲେ ତାହା ବିରୋଧରେ ଅହିଂସା ଆନ୍ଦୋଳନ କରି ବିଜୟୀ ହୋଇଥିବା ମୋହନ ଦାସ କରମଚାନ୍ଦ

ଗାନ୍ଧୀଙ୍କ ବିଷୟରେ ଜନୈକ ଇଂରାଜୀ ଲେଖକ ୧୯୧୮ ମସିହାରେ ଯେଉଁ ପୁସ୍ତକ ଲେଖିଥିଲେ ତାହା ଜାତୀୟ କବିଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା ଓ ସେତେବେଳେ ବିଶେଷଭାବରେ ଜଣାନଥିବା ଏକ କୃଷକ ଆନ୍ଦୋଳନକୁ ଭିତ୍ତିକରି ସେ ରଚନା କଲେ ତାଙ୍କର ପ୍ରଥମ ବୈପ୍ଳବିକ କବିତା । ବିଦେଶୀ ଶାସକଙ୍କର ଅନ୍ୟାୟ, ବାଛ ବିଚାର ନୀତି ଓ ଅତ୍ୟାଚାର ବିରୋଧରେ ସେ ଅନେକ ବୈପ୍ଳବିକ କବିତା ରଚନା କଲେ କିନ୍ତୁ ୧୯୧୯ ମସିହାରେ ଜାଲିଓ୍ବାନାବାଗର ନିର୍ମମ ଗଣ ହତ୍ୟା ହିଁ ତାଙ୍କୁ ସର୍ବୋତ୍ତମ ବୈପ୍ଳବିକ କବିତା 'ମୋହନ ବଂଶୀ' ଲେଖିବାକୁ ପ୍ରେରଣା ଦେଲା । ଏହା ପରେ ପରେ ସେ ରଚନା କଲେ ବିଦ୍ରୋହୀ ବୀଣା' 'ରଣ ଦୁନ୍ଦୁଭି', A Rosary, 'A Mirror' ଓ ଅନ୍ୟାନ୍ୟ ବହୁ ରଚନା । ବିଦେଶୀ ବସ୍ତ୍ର ବର୍ଜନ କିମ୍ବା ଲବଣ ସତ୍ୟାଗ୍ରହ ଅଥବା କର ନ ଦେବା ଇତ୍ୟାଦି ଘଟଣା ତାଙ୍କ କବିତାରେ ସ୍ୱତଃ ଆତ୍ମ ପ୍ରକାଶ କରୁଥିଲା । ଏସବୁ କବିଙ୍କୁ ବହୁ ଯନ୍ତ୍ରଣା ଦେଇଥିଲା । ଏକ ଲୋଭନୀୟ ସରକାରୀ ଚାକିରି ତାଙ୍କୁ ହରାଇବାକୁ ପଡ଼ିଲା । ଦଶ ବର୍ଷ ପାଇଁ ତାଙ୍କୁ କାରାବରଣ କରିବାକୁ ହୋଇଥିଲା, ତାଙ୍କୁ ମଧ୍ୟ ଶାରୀରିକ ଯନ୍ତ୍ରଣା ଦିଆଯାଇଥିଲା । ତଥାପି ତାଙ୍କର ଦୁର୍ବାର ଆତ୍ମା ଓ ନୂତନ କିଛି ସୃଷ୍ଟି କରିବାର ଶକ୍ତିକୁ କିଛି ଚପେଇ ଦେଇ ପାରିଲା ନାହିଁ । ସେ ନିଜେ କବିତା ଲେଖୁଥିଲେ, ଗାଉଥିଲେ ଓ ଅନ୍ୟମାନଙ୍କ ଉପରେ ତାଙ୍କ କବିତାର ମେଜିକ ପ୍ରଭାବକୁ ଲକ୍ଷ୍ୟ କରି ଶିଶୁ ଭଳି ନାଚୁଥିଲେ । ପ୍ରସିଦ୍ଧ ଜର୍ମାନୀ କବି ଗେଟେଙ୍କ ଭାଷାରେ ସେ ତାଙ୍କ ନିଜ ସୃଷ୍ଟି ଦ୍ୱାରା 'he was enraptured, feasted and fed' ବ୍ରହ୍ମପୁର ଜେଲରେ ଶହୀଦ ଲକ୍ଷ୍ମଣ ନାୟକଙ୍କ ଫାଶି ଘଟଣାରେ ତାଙ୍କ ଦ୍ୱାରା ରଚିତ କବିତାଟି ମାନବିକ ଆବେଦନରୁ ଗଭୀରତା ଓ ଅନୁରାଗ ଦୃଷ୍ଟିରୁ ଏକ ସର୍ବୋତ୍ତମ ଶୋକ ଗୀତିକା ।

ପ୍ରତ୍ୟେକ ଜାତିର ଇତିହାସ ତାରିଖ ଓ ଘଟଣାର ପଞ୍ଜିକା । ଏହି ସମସ୍ତ ଘଟଣା ଓ ତାରିଖ ଭିତରେ ଏପରି ଏକ ମୁହୂର୍ତ୍ତ ଆସେ ଯାହା ଜାତିର ଜୀବନ ଶକ୍ତିପାଇଁ ସ୍ମୃତି ହୋଇ ରହିଯାଏ । ସେ ସମୟ ୧୯୨୧ ମସିହାରେ ଆମ ଦେଶପାଇଁ ଆସିଥିଲା । ଏହି ବର୍ଷ ମହାତ୍ମା ଗାନ୍ଧୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସ ଏ ସମୟକୁ ଚାରି ଦଶନ୍ଧି ଧରି କାର୍ଯ୍ୟ କରିଆସିଥିଲା । ପ୍ରତିବାଦ, ଶୋଭାଯାତ୍ରା, ଆକସ୍ମିକ ଜନ ଅସନ୍ତୋଷର ବିସ୍ଫୋରଣ ଇତ୍ୟାଦି ଲାଗି ରହିଥିଲା । ମାତ୍ର ଏସବୁ ଥିଲା ନିଃସଙ୍ଗ । ଅର୍ଦ୍ଧକାଂଶ ଆନ୍ଦୋଳନ କଥାବାର୍ତ୍ତା, ସମ୍ମିଳନୀ ଓ ବୁଝାମଣା ଭିତରେ ସୀମାବଦ୍ଧ ଥିଲା । କାର୍ଯ୍ୟପନ୍ଥା ଗ୍ରହଣପାଇଁ କୌଣସି ପରିଷ୍କାର ଉଦ୍ଦେଶ୍ୟ ଓ ସର୍ବ ସମ୍ମତି କ୍ରମେ ଅନୁମୋଦିତ କାର୍ଯ୍ୟକ୍ରମ ନଥିଲା । ତେଣୁ ବନ୍ଧନ ଥିଲା ଶିଥିଳ ଓ ଅସଂଲଗ୍ନ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ କରି ମହାତ୍ମାଗାନ୍ଧୀ, ଯାହାଙ୍କୁ ଦେଶସାରା ଲୋକେ ଆଦରରେ ବାପୁଜୀ ଡାକୁଥିଲେ, ସମସ୍ତ ଶିଥିଳ ରଜ୍ଜୁକୁ ଦୃଢ଼ କରିଦେଲେ ଓ ଯାବତୀୟ ଅସଂଲଗ୍ନତାକୁ ଜାତୀୟ କଂଗ୍ରେସରେ ଐକ୍ୟବଦ୍ଧ କରି ଦେଶ ସହିତ ଏହାକୁ ଗଣ ସଙ୍ଗଠନ ଓ ମୁକ୍ତି ସଂଗ୍ରାମରେ ପରିଣତ କରିଦେଲେ । ସେ ଲକ୍ଷ୍ୟ ସ୍ଥିର କଲେ, ଲକ୍ଷ୍ୟ ହାସଲ ପାଇଁ ଉପାୟ ବାହାର କଲେ ଓ ତାଙ୍କଦ୍ୱାରା ନିର୍ଦ୍ଧାରିତ ମାର୍ଗରେ ଲକ୍ଷ୍ୟ ହାସଲ ପାଇଁ ଦେଶବାସୀଙ୍କୁ ଆହ୍ୱାନ ଜଣାଇଲେ । ସେ ସତ୍ୟାଗ୍ରହର ପତାକା ଉଡ଼ାଇ ବଜ୍ରଗମ୍ଭୀର ବାଣୀରେ ଉଦ୍‌ବୋଧନ ଦେଲେ— ଆମେ ଆମ ପ୍ରତିଜ୍ଞା ବଳରେ ଦୀପ୍ତିମାନ ହେବା, ଆମ କାର୍ଯ୍ୟକଳାପ ଦ୍ୱାରା ଆମେ ବିଶ୍ୱରେ ପରିଚିତ ହେବା । ଆସ ଆମେ ଆମ ନିଜ ଗୋଡ଼ରେ ଛିଡ଼ା ହେବା ଓ ବିଶ୍ୱକୁ ଆମର ଯୋଗ୍ୟତା ଦେଖାଇବା । ଏହା ସମଗ୍ର ଉପମହାଦେଶର ତିରିଶକୋଟି ଲୋକଙ୍କୁ ମନ୍ତ୍ରବତ ଜାଗ୍ରତ କରି ଦେଲା । ଅଗଣିତ କବି, ଲେଖକ, ବୁଦ୍ଧିଜୀବୀ, ବୈଷୟିକ ବ୍ୟକ୍ତି ଓ ସ୍ୱାଧୀନତା ସଂଗ୍ରାମୀ ଆନ୍ଦୋଳନରେ ଲମ୍ଫ ଦେଲେ ଓ ସମସ୍ତେ ଏକାକାର ହୋଇଗଲେ ।

ଜାତୀୟ କବି ବୀରକିଶୋର ମହାତ୍ମାଙ୍କ ବାର୍ତ୍ତାକୁ ଗଭୀର ଭାବରେ ଅନୁଧ୍ୟାନ କଲେ ଓ ତାହାକୁ ଶକ୍ତିଶାଳୀ ମାଧ୍ୟମ କବିତାରେ ପରିବେଷଣ କଲେ । ରାଜ୍ୟର ଲକ୍ଷଲକ୍ଷ ଲୋକ ଏହି କବିତା ବ୍ୟତୀତ ମହାତ୍ମାଙ୍କ ଆହ୍ୱାନ ସଂପର୍କରେ ଜାଣିବାର ଅନ୍ୟ ଉପାୟ ନଥିଲା । ସତ୍ୟହିଁ ଉଜ୍ଜ୍ୱଳ କିନ୍ତୁ କବିତା ମାଧ୍ୟମରେ ସତ୍ୟର ପରିପ୍ରକାଶ ଉଜ୍ଜ୍ୱଳତର । ଦୁଇ ଶତାବ୍ଦୀ ଧରି ବିଦେଶୀ ଶାସନ ଭାରତର ଲୋକଙ୍କୁ ଦାସ କରିଦେଇଥିଲା । ସେମାନଙ୍କର ଚିନ୍ତା ନିସ୍ତେଜ ହୋଇଯାଇଥିଲା । ସେମାନେ ଯେ ପ୍ରଥମେ ମଣିଷ ଓ ପରେ ନାଗରିକ, ଏହା ଜାଣିପାରୁ ନଥିଲେ । ଜନଗଣଙ୍କୁ ନିଦ୍ରାରୁ ଉଠାଇବା, ଅତୀତର ଗୌରବ ସଂପର୍କରେ ସଚେତନ କରାଇବା ଓ ସେମାନଙ୍କର ଚିନ୍ତାଧାରାକୁ ନୂତନ ଆଶା ନୂତନ ଉଦ୍ଦୀପନାରେ ବୈପ୍ଳବିକ କରାଇବା ପାଇଁ ଏହା ଥିଲା ଏକାନ୍ତ ଆବଶ୍ୟକ । କେବଳ ଭାଷଣ ଦ୍ୱାରା ଏହା ସମ୍ଭବ ନୁହେଁ । ଭାଷଣ ଦେଶ ପ୍ରେମ ମୂଳକ ସଙ୍ଗୀତ ଦ୍ୱାରା ପ୍ରରୋଚିତ ହେବା ବିଧେୟ । କେନ୍ଦ୍ର-ଲକ୍ଷ୍ୟ ପୂରଣ ପାଇଁ ଏହା ଜନସାଧାରଣଙ୍କ ହୃଦୟ ଓ ମନକୁ ପ୍ରଭାବିତ କରେ ଓ ସେମାନଙ୍କୁ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ, ଭାବ ଓ ନୀତି ନିୟମ ସଂପର୍କରେ ସଚେତନ କରାଏ । ଅସହଯୋଗ ଆନ୍ଦୋଳନ ବା ଆଇନ ଅମାନ୍ୟ ଆନ୍ଦୋଳନ ବା ଭାରତଛାଡ଼ ଆନ୍ଦୋଳନର କେନ୍ଦ୍ର-ଲକ୍ଷ୍ୟ କଣ ? କେନ୍ଦ୍ର-ଲକ୍ଷ୍ୟ ହେଉଛି ପ୍ରତ୍ୟେକ ଦେଶ ହେଉଛି ସାର୍ବଭୌମ ଓ ତାର ଲୋକମାନେ ହିଁ ଭାଗ୍ୟ ନିୟନ୍ତା, ଯେତେ ଶକ୍ତିଶାଳୀ ହେଉନା କାହିଁକି (ଯେପରି ବ୍ରିଟିଶ ସାମ୍ରାଜ୍ୟ), ତାର ନୈତିକ କର୍ତ୍ତବ୍ୟ ହେଉଛି ଲୋକଙ୍କ ସ୍ୱାଧୀନ ଇଚ୍ଛାକୁ ସମ୍ମାନ ଦେବା ଓ ସାର୍ବଭୌମ ତଥା ଗଣତାନ୍ତ୍ରିକ ଧାରାକୁ ପ୍ରବର୍ତ୍ତନ କରିବା । ତେଣୁ ମୁକ୍ତି-ସଂଗ୍ରାମ ଇଂରାଜୀ ଲୋକଙ୍କ ବିରୋଧରେ ନୁହେଁ, ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ । ଫଳରେ ଅସହଯୋଗ ଆନ୍ଦୋଳନ କିମ୍ବା ଆଇନ ଅମାନ୍ୟ ଆନ୍ଦୋଳନ ବା ଭାରତଛାଡ଼ ଆନ୍ଦୋଳନରେ କୌଣସି ମନ୍ଦ ଉଦ୍ଦେଶ୍ୟ, ଶତ୍ରୁତା ଓ ତିକ୍ତତା ନଥିଲା । ଏହା ଥିଲା ଆମ ଚିନ୍ତା, ସଂସ୍କୃତି ଓ ଧର୍ମର ମୌଳିକ ମତର ସ୍ୱୀକୃତି । 'ମନ୍ଦକୁ ପରିହାର କର କିନ୍ତୁ ମନ୍ଦ ଲୋକକୁ ନୁହେଁ । ଶତ୍ରୁର ଖରାପ କାର୍ଯ୍ୟକୁ ଘୃଣା କର କିନ୍ତୁ ଶତ୍ରୁକୁ ନୁହେଁ'—ଏହାହିଁ ଥିଲା ମହାତ୍ମାଙ୍କ ଆନ୍ଦୋଳନର ସାର ଲକ୍ଷ୍ୟ ।

ଜାତୀୟ କବି ବୀରକିଶୋର ତାଙ୍କର ଅନ୍ୟାନ୍ୟ ସମଧର୍ମୀଙ୍କ ପରି ମହାତ୍ମାଙ୍କ ବାର୍ତ୍ତାର ଦର୍ଶନ ଓ ବାର୍ତ୍ତାକୁ ତାଙ୍କର କ୍ଷୁଦ୍ର ଦାନ ମାଧ୍ୟମରେ ପ୍ରଚାର ଓ ବହନ କରିପାରିଥିଲେ । ତାଙ୍କର ଅସଂଖ୍ୟ ଇଂରାଜୀ ଓ ଓଡ଼ିଆ ରଚନା ମାଧ୍ୟମରେ ସେ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି କରିଥିଲେ । ଯାହା ମାନବିକତା, ସର୍ବଜନୀନତା ଓ ବିଶ୍ୱବୋଧ ସଂପର୍କରେ ପରବର୍ତ୍ତୀ ବଂଶଧରଙ୍କୁ ଅନୁପ୍ରାଣିତ କରିଥିଲା । ତାଙ୍କର ରଚନାବଳୀ ତାଙ୍କ ହୃଦୟର ଅଭିବ୍ୟକ୍ତି । ସେହି ହୃଦୟ ହେଉଛି ଭାବ ପ୍ରବଣ ମାନବ ହୃଦୟ, ବୁଦ୍ଧିଦୀପ୍ତ ହୃଦୟ ନୁହେଁ । ସେ ଦାର୍ଶନିକ, ରହସ୍ୟମୟ ଓ ଆଧିଭୌତିକ ସତ୍ୟର ପରିପୋଷଣ କରୁନଥିଲେ । ତାଙ୍କର ଥିଲା ଗୋଟିଏ ଲକ୍ଷ୍ୟ ଗୋଟିଏ ସତ୍ୟ ଓ ଗୋଟିଏ ଆବେଗ—ଯାହା ଦେଶର ଲକ୍ଷଲକ୍ଷ ଲୋକଙ୍କ ଅନ୍ତରକୁ ସମ୍ବେଦନଶୀଳ କରାଇଥିଲା ଓ ସେମାନଙ୍କୁ ସ୍ୱାଧୀନତା ଆନ୍ଦୋଳନ ଏବଂ ମହାତ୍ମାଙ୍କ ପ୍ରତି ଆକର୍ଷଣ କରିଥିଲା । ସେ ମହାତ୍ମାଙ୍କ ଜୀବନ ଦର୍ଶନ ଓ କାର୍ଯ୍ୟସହିତ ସ୍ୱର ମିଳାଇଥିଲେ । ତାଙ୍କର ସ୍ତୁତି-କଣିକା ସତ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ ଗାନ୍ଧିବାଦ ପ୍ରତି ଗଭୀର ଅନୁରାଗର ନିଦର୍ଶନ । ସେ ମହାତ୍ମାଙ୍କୁ ଭଗବାନଙ୍କ ଦୂତ ଭାବରେ ଦେଖୁଥିଲେ ଏବଂ ସେଥିଲାଗି ସ୍ୱରାଜ ପାଇଁ ମହାତ୍ମା ଆମରଣ ଅନଶନ କରିବା ସମୟରେ ତାଙ୍କର ଜୀବନ ରକ୍ଷା ପାଇଁ ପ୍ରାର୍ଥନା କରିଥିଲେ । ମହାତ୍ମାଙ୍କର ସେ ଏତେ ପ୍ରଶଂସକ ଥିଲେ ଯେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫର ଖାଁଙ୍କୁ ଦେଖି ତାଙ୍କୁ ଗାନ୍ଧିବାଦର ଦ୍ୱିତୀୟ ଅବତାର କହୁଥିଲେ । ସୀମାନ୍ତ ଗାନ୍ଧିଙ୍କ ପ୍ରତି ତାଙ୍କର ଅନ୍ତରର ନୈବେଦ୍ୟ ସାବଲୀଳ ଓ ଶକ୍ତିଶାଳୀ ଭାବରେ 'Rosary' କବିତାରେ ନିମ୍ନୋକ୍ତ ଶବ୍ଦରେ ପ୍ରକାଶ ପାଇଛି ।

I chanced to meet thee once
on the sea shore of the noblest of mankind
Thou hast gone far ahead now, dimly visible
I grope all alone lagging behind.

× × × ×

ଜାତୀୟ କବିଙ୍କ ତିରୋଧାନ ଏବକୁ ଦେଢ଼ ଦଶନ୍ଧି ବିତିଗଲଣି । ସ୍ୱାଧୀନତା ପ୍ରାପ୍ତି ଓ ମହାତ୍ମାଙ୍କ ହତ୍ୟାର ପ୍ରାୟ ଚାରି ଦଶନ୍ଧି ଅତିବାହିତ ହୋଇଗଲଣି । ଏହି ଦୀର୍ଘ ପ୍ରର୍ଣ୍ଣିକ ସମୟ ଭିତରେ ଆମ ଦେଶର ସାମାଜିକ, ରାଜନୀତିକ ଓ ଅର୍ଥନୀତିକ ଜୀବନଧାରରେ ଅନେକ ପରିବର୍ତ୍ତନ ଘଟିଯାଇଛି । ପ୍ରତିବର୍ଷ ଖୁବ୍ କମ୍ ଉତ୍ସବରେ ଆମେ ଏକତ୍ର ବସି ଆମର ମହାତ୍ମାଙ୍କ ସମେତ ଅନ୍ୟାନ୍ୟ ମହାନ୍ ଶହୀଦମାନଙ୍କ ସଂପର୍କରେ ସ୍ମୃତି ଚାରଣ କରୁଅଛୁ । କେତେକ ସମୟ ପାଇଁ ଆମେ ଉତ୍ତେଜିତ ହୋଇଯାଉଁ ଓ ଯେଉଁମାନେ ଟିକିଏ ଅଧିକ ଭାବପ୍ରବଣ ସେମାନେ ଅତୀତରେ ଆନ୍ଦୋଳନ, ଆନ୍ଦୋଳନର ବାର୍ତ୍ତା, କଣ ଆମେ ପାଇଛୁ ? ଏବେ ଆମେ କିପରି ଅଛୁ ? ଆମେ କଣ ଲକ୍ଷ୍ୟପୂରଣ କରିପାରିବୁ ଇତ୍ୟାଦି ବିଷୟ ଭାବି ଉଦ୍‌ବିଗ୍ନ ହୋଇପଡ଼ନ୍ତି । ଏହିପରି ଅନେକ ଜଟିଳ ପ୍ରଶ୍ନ ଆମକୁ ଯଥାର୍ଥ ସ୍ୱାଧୀନତା ନ ପାଇବା ପର୍ଯ୍ୟନ୍ତ ଉତ୍ତେଜିତ କରୁଥିବ । ଏହି ସ୍ୱାଧୀନତା ହେଉଛି ଅଭାବରୁ ମୁକ୍ତି, ଅସଂଖ୍ୟ ବାସନାରୁ ମୁକ୍ତି, ବୈରତା ଓ ଅପବାଦରୁ ମୁକ୍ତି, ବଦ୍ଧମୂଳ ଧାରଣା, ବିଶ୍ୱାସ ଓ କଠୋର ଭାବନାରୁ ମୁକ୍ତି । ରାଜନୀତିକ ସ୍ୱାଧୀନତା, ସାମାଜିକ ଓ ଅର୍ଥନୀତିକ ସ୍ୱାଧୀନତା ବିନା ନିରର୍ଥକ । ମହାତ୍ମାଙ୍କ ହୃଦୟରୁ ସୃଷ୍ଟ ମୂଲ୍ୟବୋଧ ଓ ନୀତି ଉପରେ ଏହା ପ୍ରତିଷ୍ଠିତ ନ ହେଲେ ଅତ୍ମାହୀନ ହୋଇଯାଏ । ଜାତୀୟ କବି ବୀରକିଶୋର ତାଙ୍କର ସୃଜନାତ୍ମକ କଳାରେ ଏହାକୁ ପ୍ରକାଶ କରିଥିଲେ । ଆଜି ଏହି ଶୁଭ ଦିବସରେ କବିଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ଅବକାଶରେ ମୁଁ ଉତ୍ସବର କର୍ମକର୍ତ୍ତାମାନଙ୍କୁ, ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରମାନଙ୍କୁ ଏହି ମହାପୁରୁଷଙ୍କ ସ୍ମୃତିରକ୍ଷା ପାଇଁ ଯାହା କରୁଛନ୍ତି ସେଥିପାଇଁ ସାଧୁବାଦ ଜଣାଉଅଛି । ମୁଁ ସମସ୍ତଙ୍କୁ ପଚାରୁଛି ଆମେ କଣ ପ୍ରକୃତରେ କବିଙ୍କ ଭାବନା ଓ ଆଦର୍ଶକୁ ଅନୁସରଣ କରୁଛୁ କି ? ଯଦି ନୁହେଁ, କଣ ଏହାର ବ୍ୟବଧାନ ଓ କିପରି ଏହା ମଧ୍ୟରେ ସେତୁ ବନ୍ଧା ଯାଇପାରିବ । ମୋ ଦୃଷ୍ଟିରେ ତାହା ହେଉଛି ଜାତୀୟ କବିଙ୍କପରି ଜଣେ ମହାନ ବ୍ୟକ୍ତି, ମହାନ ସାହିତ୍ୟିକ ଓ ସ୍ୱାଧୀନତା ସଂଗ୍ରାମୀଙ୍କର ସ୍ମୃତି ଚାରଣ କରି ଗଭୀର ଶ୍ରଦ୍ଧାଞ୍ଜଳୀ ପ୍ରଦାନ କରିବା । ଏତିକି କହି ମୁଁ ସମସ୍ତଙ୍କୁ ଅଭିନନ୍ଦନ ଜଣାଉଛି ଓ ସମସ୍ତଙ୍କର ମଙ୍ଗଳ କାମନା କରୁଛି ।

—ଜୟହିନ୍ଦ୍—

ଭାଷାନ୍ତର—ଡ. ବୈଷ୍ଣବଚରଣ ସାମଲ
[ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର



# ମୁଖବନ୍ଧ

ସମଗ୍ର ଓଡ଼ିଆ ଜାତି ଯେତେବେଳେ ଦାରିଦ୍ର୍ୟ ଓ ପରାଧୀନତାର ଆତ୍ମଗ୍ଲାନି ମଧ୍ୟରେ ମୂହ୍ୟମାନ, ଓଡ଼ିଶା ମାତ୍ର କେତୋଟି ଜିଲ୍ଲା ମଧ୍ୟରେ ସୀମିତ ଓ ଓଡ଼ିଆ ଭାଷା ଚରମ ଦୁର୍ଦ୍ଦିନର ସମ୍ମୁଖୀନ, ଠିକ୍ ସେହିପରି ଏକ ସନ୍ଧିକ୍ଷଣରେ ୧୮୯୬ ମସିହାରେ ବୀରକିଶୋର ଦାସଙ୍କର ଆବିର୍ଭାବ । ଓଡ଼ିଆ ଜାତିର ଆତ୍ମଜାଗୃତି କାଳରେ ତାଙ୍କର କୈଶୋର ଅତିବାହିତ । ତାଙ୍କ ଜନ୍ମର କିଛି ବର୍ଷ ପୂର୍ବରୁ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ହୋଇଥାଏ । ୧୯୦୩ ମସିହାରେ ମଧୁ ବାବୁ ଉତ୍କଳୀୟ ଜନତା ପ୍ରାଣରେ ନବଚେତନା ସୃଷ୍ଟି କରିବାପାଇଁ ଆରମ୍ଭ କରିଥାନ୍ତି 'ଉତ୍କଳ ସମ୍ମିଳନୀ' । ବାଲ୍ୟକାଳରେ ବୀରକିଶୋର ତାଙ୍କ ସମ୍ମୁଖରେ ଦେଖିଛନ୍ତି ରାଧାନାଥ, ମଧୁସୂଦନ ଫକୀର ମୋହନ, ଗଙ୍ଗାଧର, ଗୋପବନ୍ଧୁ ପ୍ରଭୃତି ସାହିତ୍ୟ ସ୍ରଷ୍ଟାଙ୍କୁ । ଏହି ସ୍ରଷ୍ଟାମାନେ ଓଡ଼ିଆ ମାଟି ଓ ଓଡ଼ିଆ ଜାତିର ମହିମା ଗାନକରି ଓଡ଼ିଆ ସାହିତ୍ୟ ସୃଷ୍ଟି କରିଥିଲେ । କବି ବୀରକିଶୋର ଥିଲେ ଜାତି ପ୍ରାଣ । ପରାଧୀନତାର ଅନ୍ଧକାର ମଧ୍ୟରେ ଥିବା ଉତ୍କଳୀୟ ମାନବଙ୍କୁ ଜାତୀୟତାର ଭାବରେ ଉଜ୍ଜୀବିତ କରିବା ପାଇଁ ସେ ଲେଖନୀ ଧାରଣ କରିଥିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚାଇବାର ପ୍ରଚେଷ୍ଟା କରି କବି ସୃଷ୍ଟି କରିଥିଲେ ଜାତୀୟତାବାଦୀ ଅଗ୍ନିବର୍ଷୀ କବିତା ।

କବି ବୀରକିଶୋର ଇଣ୍ଟରମିଡ଼ିଏଟ୍ ପାସ୍ କରିବା ପରେ ସରକାରଙ୍କ ପୂର୍ତ୍ତ ବିଭାଗରେ ଅମସ୍ଥ ଭାବରେ ଚାକିରି କରିଥିଲେ । ମାତ୍ର ଏହି ସ୍ୱାଧୀନଚେତା ସ୍ୱାଭିମାନୀ ଯୁବକ ବୀରକିଶୋର ସରକାରୀ ଚାକିରିରେ ବେଶୀ ଦିନ ରହିପାରି ନଥିଲେ । ୧୯୨୧ ମସିହାରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଡାକରେ ଉଦ୍‌ବୁଦ୍ଧ ହୋଇ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ଭାରତବର୍ଷକୁ ବିଦେଶୀ ଶାସନରୁ ମୁକ୍ତ କରିବାକୁ ହେବ—ଏହି ଲକ୍ଷ୍ୟରେ ସେ ରଚନା କରିଥିଲେ ବହୁ ସରକାର ବିରୋଧୀ କବିତା । ଏହି କବିତାଗୁଡ଼ିକ ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ଇନ୍ଧନ ଯୋଗାଇଥିଲା । ଫଳତଃ କବି ସରକାରୀ ଚାକିରିର ମୋହ ତ୍ୟାଗ କରି ଖଦଡ଼ ବସ୍ତ୍ର ପରିଧାନ କରି ନିଜକୁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସଂପୂର୍ଣ୍ଣ ରୂପେ ସାମିଲ କରି ଦେଇଥିଲେ । ନିଜର କବିତା ସୃଷ୍ଟି ସମ୍ପର୍କରେ ବୀରକିଶୋର କହନ୍ତି—"ମୁଁ କବିତାକୁ ଭଲ ପାଏ, କବିତା ମୋତେ ଭଲ ପାଏ । ଋଷ୍ୟ ଶୃଙ୍ଗ ମୁନିଙ୍କୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମୋତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏଇ କବିତା ଲାଗି ଥରକୁ ଥର ଜେଲ୍ ଗଲି, ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସମ୍ପର୍କ, ସେ ତୁଟିଲା ନାହିଁ; ବରଂ ଅଧିକ ଶକ୍ତ ହୋଇଛି ।" ଫଳରେ ସେ ରଚନା କରିଛନ୍ତି 'ମୋହନ ବଂଶୀ', 'ରଣ ଭେରୀ', 'ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ', 'ବିଦ୍ରୋହୀ ବୀଣା', 'ରଣ ଦୁନ୍ଦୁଭି', 'ସମର ଯୁଗର ଅମର ସଂଗୀତ', 'ମୋହନ ବେଣୁ', 'ଫୁଲ ଚନ୍ଦନ', 'ଶାନ୍ତି ଦୂତ', 'ସ୍ୱାତ ଦୀପ' 'ସ୍ମୃତି କଣିକା' ପ୍ରଭୃତି କାବ୍ୟ-କବିତା ।

ବୀରକିଶୋରଙ୍କର ଦେଶ ପ୍ରେମ ବର୍ଦ୍ଧିର ପ୍ରଥମ ଓ ପ୍ରଚଣ୍ଡ ଉଦ୍‌ଗୀରଣ ହେଉଛି 'ମୋହନ ବଂଶୀ' (୧୯୨୨) । ପଞ୍ଜାବରେ ଜାଲିଓ୍ୱାନାବାଗ ହତ୍ୟାକାଣ୍ଡର ଲୋମ ହର୍ଷଣ ପୂର୍ଣ୍ଣ ଘଟଣା ଓ ମହାତ୍ମାଗାନ୍ଧୀଙ୍କ ଡାକରରେ ସମଗ୍ର ଭାରତର ଅସହଯୋଗ ଆନ୍ଦୋଳନ ଉପରେ ସେ ଲେଖିଛନ୍ତି 'ମୋହନ ବଂଶୀ' । ଏହି କ୍ଷୁଦ୍ର ପୁସ୍ତିକାର ପ୍ରଥମ କବିତା 'ଉତ୍କଳ ଜନନୀ' ମଧ୍ୟରେ କବି ସମକାଳୀନ ଉତ୍କଳର ସ୍ଥାଣୁ ଅବସ୍ଥା ଦେଖି ଦୁଃଖ ପ୍ରକାଶ କରିବା ସହିତ ଏହି ଅବସ୍ଥା କ୍ରମେ ସମାଜରୁ ଅପସରି ଯିବ ବୋଲି ଆଶାବାଦୀ ହୋଇ ପ୍ରକାଶ କରିଛନ୍ତି :

"କେତେ ଓଳିତଳ ହେବୁ ଗୋ ଜନନୀ
ଅଳି କି ଶୁଣିବୁ ନାହିଁ ?
ମାତ୍ର ଗାଳି ଖାଇ ସବୁ ଦୁଃଖ ସହି
ପଡ଼ିଛୁଁ ତୋ ପାଦ ଗୁହିଁ ।"

ପରାଧୀନ ଭାରତୀୟ ମାନଙ୍କର ଦୟନୀୟ ଅବସ୍ଥା ଦେଖି ସେ ଗାଇଛନ୍ତି :

ସୁନାର ଭାରତ ଆମ ହେଲା ଛାରଖାର,
ଖାଇବାକୁ ନ ପାଇଲୁ ଓଳିଏ ଆହାର ।
ବିଦେଶୀ ଦରବେ ଆମ ଦେଶ ଗଲା ଭରି,
ସତ କହିବାକୁ ଲୋକେ ମରୁଛନ୍ତି ଡରି ।"

୧୯୩୦ ମସିହା ଥିଲା କବି ବୀରକିଶୋରଙ୍କ ପାଇଁ ସବୁଠାରୁ ସ୍ମରଣୀୟ ମୁହୂର୍ତ୍ତ । କବି ଅନୁଭବ କରିଥିଲେ ସମଗ୍ର ଓଡ଼ିଶାରେ ବହୁ ବୁଦ୍ଧିଜୀବୀ ଥିଲେ ମଧ୍ୟ ସାମ୍ରାଜ୍ୟବାଦୀ ଶକ୍ତିର ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ କାହାର ସାହସ ନଥିଲା । ସମଗ୍ର ସମାଜ ସ୍ଥାଣୁ ଓ ନିର୍ବେଦ ଥିଲା । ନିଜକୁ ଓ ନିଜ ମାତୃଭୂମିକୁ ଚିହ୍ନିବାକୁ କାହାର ସାମର୍ଥ୍ୟ ନଥିଲା । ବିଦେଶୀମାନଙ୍କୁ ପ୍ରତିରୋଧ କରିବ କିଏ ? କିଏ ଏ ସୁପ୍ତ ଜାତିର ନିଦ୍ରା ଭାଙ୍ଗିବ ? କିଏ ଏ ଜାତିକୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ କରିବ ? ସମଗ୍ର ଓଡ଼ିଶାରେ ଗଣ ଆନ୍ଦୋଳନକୁ ଅଧିକ ତୀବ୍ର କରିବା ପାଇଁ ସ୍ୱାଧୀନତା ସଂଗ୍ରାମକାଳୀନ ବିଭିନ୍ନ ସମୟର ଘଟଣାକୁ ନେଇ ସେ ସରଳ ପ୍ରାଣସ୍ପର୍ଶୀ ଭାଷାରେ କବିତା ରଚନା କରି ସେଥିରେ ସ୍ୱର, ଲୟ ଓ ତାଳ ଇତ୍ୟାଦି ଦେଇ ସେ ଗୁଡ଼ିକୁ ମନମତାଣିଆ କଲେ । ଏହା କ୍ଷୁଦ୍ର ପୁସ୍ତିକାଆକାରରେ 'ଅରି ଫେରିନାହିଁ ଯୁଦ୍ଧ ସରିନାହିଁ' ନାମରେ ପ୍ରକାଶ ପାଇ ଓଡ଼ିଶାରେ ନୂତନ ଉଦ୍ଦୀପନା ସୃଷ୍ଟି କରିଥିଲା । ତାଙ୍କ ଲେଖା ପ୍ରାଣକୁ ସ୍ପର୍ଶ କରୁଥିଲା । ତାକୁ ସମସ୍ତେ ବୁଝିପାରୁଥିଲେ ଓ ଗାଇପାରୁଥିଲେ ।

ରଣ ସମୟରେ ବହି ଧରିବାକୁ
ମୋତେ ଆଉ ତୁମେ କହନା
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା, ଭାଇ ହେ......(ରଣ ଦୁନ୍ଦୁଭି)

କବି ବୀରକିଶୋରଙ୍କ ସମକାଳୀନ ସବୁଜ ଯୁଗର କବିମାନେ ଥିଲେ ରୋମାଣ୍ଟିକ ଓ ରହସ୍ୟବାଦୀ । ଏଇ ମାଟି ପୃଥିବୀରେ ବାସ କରି ମଧ୍ୟ ପରାଧୀନ ଭାରତର ବାସ୍ତବତାକୁ ଉପେକ୍ଷା କରି ସେମାନେ ସ୍ୱର୍ଗର

ସ୍ୱପ୍ନ ଦେଖୁଥିଲେ । କବି ବୀରକିଶୋରଙ୍କୁ ସବୁଜ କବିମାନଙ୍କର ଏପରି ଆଚରଣ ଆଦୌ ଭଲ ଲାଗିଲା ନାହିଁ । କାରଣ କବି ସେ ସମୟର ସ୍ପନ୍ଦନକୁ ଠିକ୍ ଭାବରେ ବୁଝିଥିଲେ । ସତ୍ୟବାଦୀ ଯୁଗର ଜାତୀୟ ଚେତନା ଓ ଦେଶାତ୍ମବୋଧଠାରୁ ଆହୁରି ବ୍ୟାପକ ଥିଲା ତାଙ୍କର ଜାତି ପ୍ରୀତି । ତେଣୁ ସେ 'ବିଦ୍ରୋହୀ ବୀଣା'ର 'କମାଣ ପଗଏ କଲମ ଧର' ଶୀର୍ଷକ କବିତାରେ ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସବୁଜ କବିଗୋଷ୍ଠୀଙ୍କ କବିତାର ମୌନ ପ୍ରତିବାଦ ସ୍ୱରୂପ ପ୍ରକାଶ କରିଥିଲେ--

> "କବି ବାଛେ କବିତା ବନ୍ଦ କର
> କମାଣ ପଗଏ କଲମ ଧର
> ଥରେ ବଜା ନବ ସମର ଭେରୀ
> ତରୁଣ ଯେତେ ସେହି ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।"

୧୯୩୦ ମସିହାରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା ଓଡ଼ିଶାରେ ତାହାର ପ୍ରଭାବ ପଡ଼ିଲା । ବାଲେଶ୍ୱରର ଇଞ୍ଚୁଡ଼ି ଓ କଟକ ଜିଲ୍ଲାର କୁଜଙ୍ଗ ଥିଲା ଓଡ଼ିଶାରେ ଲବଣ ସତ୍ୟାଗ୍ରହର ମୁଖ୍ୟ ରଣକ୍ଷେତ୍ର । ବୀରକିଶୋର ଓଡ଼ିଶାର ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିବା ସଂଗ୍ରାମୀମାନଙ୍କ ଉଦ୍ଦେଶ୍ୟରେ ରଚନା କରିଥିଲେ—"ଆସରେ ଆଜି ଆସ, ଆଜି ଆସ । ଦରିଆ ଦଖଲ କରି ଯିବ କିଏ ଆସ ।" କେବଳ ସେତିକି ନୁହେଁ ବିଲାତି ଜିନିଷ ବର୍ଜନ କରି ସ୍ୱାବଲମ୍ବଶୀଳ ହେବା ମହାତ୍ମାଗାନ୍ଧୀଙ୍କର ନୀତି ଥିଲା । ଏଥିପାଇଁ ସେ ଘରେ ଘରେ ଅରଟ ଚଳାଇବାକୁ ନିର୍ଦ୍ଦେଶ ଦେଇଥିଲେ । ଦେଶପ୍ରେମୀମାନେ ବିଲାତ ଲୁଗାକୁ ନିଆଁରେ ପୋଡ଼ି ଦେଉଥିଲେ । ବୀରକିଶୋରଙ୍କର ଦେଶାତ୍ମବୋଧକ ସଂଗୀତ ଏ ଦିଗରେ ସେହି ଜାତୀୟ ସଂଗ୍ରାମୀମାନଙ୍କୁ ଉତ୍ସାହିତ କରୁଥିଲା । ଅସହଯୋଗ ଆନ୍ଦୋଳନ ସମୟରେ ଛୋଟ ଛୋଟ ପିଲମାନେ ମଧ୍ୟ ଜାତୀୟ ସଂଗ୍ରାମରେ ମାତି ଉଠିଥିଲେ । ସେମାନେ ଥିଲେ ବାନର ସେନା । ଅଫିମ, ଗଞ୍ଜେଇ ଓ ମଦ ଦୋକାନ ଆଗରେ ପିକେଟିଂ କରିବାରେ ଏହି ସାନ ପିଲମାନେ ହିଁ ମୁଖ୍ୟ ସ୍ଥାନ ଅଧିକାର କରିଥିଲେ । ବ୍ରିଟିଶ୍ ସରକାରଙ୍କ ନିର୍ମମ ବେତମାଡ଼ ସେମାନଙ୍କ ଗତିରୋଧ କରି ପାରିନଥିଲା । ବୀରକିଶୋର ଏହି ବାନର ସେନାଙ୍କ ନିମିତ୍ତ ଗୀତ ରଚନା କରିଥିଲେ । ସଂଗ୍ରାମୀ ଶିଶୁମାନଙ୍କର ଦୃଢ଼ ମନୋବଳ ନିକଟରେ ବେତମାଡ଼ ହାର ମାନିଯାଇଥିଲା । ବୀରକିଶୋରଙ୍କ ରଚିତ ଏହିପରି ଏକ କବିତା ହେଉଛି—

> "ଭାଇ ହେ, ମାର କେତେ ବେତ ମାରିବ,
> ଦେଶ ଲାଗି ଆମେ ଜୀବନ ଦେଉଛୁ
> ତୁମେ କି ଆମକୁ ପାରିବ ?

କବିଙ୍କର 'ସବୁଜ ସାଥୀ' ୧୯୩୪ ମସିହାରେ ରଚନା । କାବ୍ୟର ଉତ୍ସର୍ଗ ପତ୍ରରେ ବୀରକିଶୋର ଉଲ୍ଲେଖ କରିଛନ୍ତି—"ଯେଉଁମାନେ ଅସ୍ପୃଶ୍ୟତାକୁ କେବଳ ହିନ୍ଦୁ ଜାତିର ନୁହେଁ, ଭାରତର ନୁହେଁ, ସମଗ୍ର ଜାତିର ଗୋଟିଏ କଳଙ୍କ ବୋଲି ବିଶ୍ୱାସ କରି ତାକୁ ମନୁଷ୍ୟ ସମାଜରୁ ତଥା ସ୍ମୃତି ପଟରୁ ପୋଛିଦେବା ପାଇଁ ବଦ୍ଧ ପରିକର, ସେହି ଭାଇ ଭଉଣୀମାନଙ୍କ କରକମଳରେ ଏ ପୁସ୍ତିକା ଖଣ୍ଡି ସଭକ୍ତିରେ ଅର୍ପଣ କଲି ।" ଏହି କବିତା ପୁସ୍ତିକାରେ କବି ତାଙ୍କର ବାଲ୍ୟସ୍ମୃତି ସ୍ମରଣ କରି କଥାବସ୍ତୁକୁ ଅତ୍ୟନ୍ତ ସରଳ ଭାବରେ ପାଠକମାନଙ୍କୁ କହିଛନ୍ତି ଓ ଅସ୍ପୃଶ୍ୟତା ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିଛନ୍ତି ।

ଏତଦ୍‌ବ୍ୟତୀତ ବୀରକିଶୋର 'ସମର ଯୁଗର ଅମର ସଂଗୀତ, 'ଫୁଲ ଚନ୍ଦନ' 'ସାତ ଦୀପ' 'ଶାନ୍ତି ଦୀପ' 'ସ୍ମୃତି କଣିକା', 'ମୋହନ ବେଣୁ' ସମେତ ବହୁ ଭଜନ ଓ ଜଣାଣର ସ୍ରଷ୍ଟା । ସେ ଥିଲେ 'ମୋ ଦେଶ' ଶିଶୁ ପତ୍ରିକାର ସ୍ୱନାମଧନ୍ୟ ସଂପାଦକ । ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ବୀରକିଶୋରଙ୍କ କାବ୍ୟ-କବିତାର ଅବଦାନ ଅତୁଳନୀୟ । ସେଥିପାଇଁ ସେ ଓଡ଼ିଶାର ଜାତୀୟ କବି । ସୁଖର ବିଷୟ, ଆଜି ଏହି ଜାତୀୟ କବିଙ୍କର ଗ୍ରନ୍ଥାବଳୀ ପ୍ରକାଶ ପାଉଛି । ଏ ଦିଗରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଜାତୀୟକବି ବୀରକିଶୋରଙ୍କ ପଟ୍ଟଶିଷ୍ୟ ଓ ପୂର୍ବତନ ମନ୍ତ୍ରୀ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନଙ୍କ ଉଦ୍ୟମ ଅଭିନନ୍ଦନୀୟ । ତାଙ୍କର ନିଷ୍ଠା ଓ ପ୍ରଚେଷ୍ଟା ଯୋଗୁ ଜାତୀୟ କବି ଗ୍ରନ୍ଥାବଳୀର ଆତ୍ମ ପ୍ରକାଶନ ସମ୍ଭବ ହୋଇଛି । ଏହି ଅବକାଶରେ ଗ୍ରନ୍ଥାବଳୀର ସଂପାଦନା ମଣ୍ଡଳୀ ଓ ଜାତୀୟ କବି ବୀରକିଶୋର ସ୍ମୃତି ସଂସଦର ସଭ୍ୟମାନଙ୍କର ସାହାଯ୍ୟ ପାଇଁ ମୁଁ ସେମାନଙ୍କୁ ଅନ୍ତରର ଧନ୍ୟବାଦ ଜଣାଉଛି । ସର୍ବୋପରି ଗଣଭାଷା ସମବାୟ ପ୍ରେସ୍ ଏ ପୁସ୍ତକର ମୁଦ୍ରଣ ଓ ପ୍ରକାଶନର ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ମଧ୍ୟ ସାଧୁବାଦ ଜଣାଉଛି ।

ଆଶାକରେ ଭବିଷ୍ୟତ ପାଇଁ ଏହି ଗ୍ରନ୍ଥାବଳୀ ଏକ ଅମୂଲ୍ୟ ସଂପଦ ହୋଇ ରହିବ ।

ଭୁବନେଶ୍ୱର
୨୫ ସେପ୍ଟେମ୍ବର, ୧୯୯୬

**ବସନ୍ତ କୁମାର ବିଶ୍ୱାଳ**
ଉପମୁଖ୍ୟ ମନ୍ତ୍ରୀ

# ଅଭିମତ



ଜାତୀୟ କବି ବୀରକିଶୋରଙ୍କ ରଚନାବଳୀ ଆଜି "ଗ୍ରନ୍ଥାବଳୀ"ର ରୂପ ନେଇଛି ଏହା ଏକ ଗୌରବର କଥା । ତାଙ୍କ ସମ୍ମାନାର୍ଥେ ଜଗତ୍‌ସିଂହପୁର ନିକଟରେ ତାଙ୍କ ଗ୍ରାମ ପୁନଙ୍ଗ ଘୁରିପୋଲିଆଠାରେ "ଜାତୀୟ କବି ଉଦ୍ୟାନ" ପ୍ରତିଷ୍ଠା କରଯାଇଛି । କଟକ ଓ.ଏମ.ପି ଛକଠାରେ "ଜାତୀୟ କବି ବୀରକିଶୋର ମହାବିଦ୍ୟାଳୟ" ପ୍ରତିଷ୍ଠା କରଯାଇଛି । ଏ ଜାତିର ମାନସ ପଟରେ ଜାତୀୟ କବି ବୀରକିଶୋର ଏକ ଅଲିଭସ୍ମୃତି ।

ଭାରତ ସ୍ୱାଧୀନ ହୋଇ ନଥାଏ । ମୁଁ ପାଠ ପଢ଼ା ଆରମ୍ଭ କରିଥାଏ । ବେଳେ ବେଳେ ସ୍ୱାଧୀନତା ସଂଗ୍ରାମୀମାନେ, ନେତାମାନେ ଆମ ଘର ଆନନ୍ଦପୁରଠାରେ ଆସି ରୁହନ୍ତି । ସେମାନଙ୍କର ସଂସ୍ପର୍ଶରେ ଆସି ତାଙ୍କର ସଂଗ୍ରାମୀ ଜୀବନ କାହାଣୀ ଯେ ବଡ଼ ରୋମାଞ୍ଚକର ଏହା ଶୁଣେ । ତାଙ୍କ କଥାରୁ ଆମେ ବୁଝୁ ଜାତୀୟତା କହିଲେ କଣ ବୁଝାଏ ? ଜାତୀୟ ଜୀବନ କହିଲେ କଣ ବୁଝାଏ ? ପ୍ରତ୍ୟେକ ବ୍ୟକ୍ତି ଭିତରେ ଜାତୀୟ ଚେତନା ଜାଗ୍ରତ ହେବା ଦେଶପାଇଁ ଶୁଭଙ୍କର । ସ୍ୱାଧୀନତା ପୂର୍ବରୁ ଏହା ଯେତିକି ପ୍ରଯୋଜନ ଥିଲା ସ୍ୱାଧୀନତା ପରେ ଏହା ଆହୁରି ଅଧିକ ପ୍ରଯୋଜନ ହୋଇପଡ଼ିଛି । ଏଥିପାଇଁ ଜାତୀୟବାଦୀ କବିମାନଙ୍କର ରଚନାବଳୀ ପ୍ରେରଣା ଦେଇଥାଏ । ନେତାମାନେ ଜାତୀୟବାଦୀ କବିତାରୁ ପଦେ ପଦେ ବୋଲନ୍ତି । ଜାତୀୟ କବି ବୀରକିଶୋରଙ୍କ ଜାତୀୟ ଚେତନାଭରା କବିତା ମୁଁ ଶୁଣିଥିଲି । ସ୍ୱାଧୀନତା ସଂଗ୍ରାମ ବେଳେ ସ୍କୁଲ ପିଲାମାନେ ସତ୍ୟାଗ୍ରହୀ ହୋଇଥିଲେ । ବାନର ସେନା ସାଜି ଥିଲେ । ସେମାନେ ଜାତୀୟ କବି ବୀରକିଶୋରଙ୍କ କବିତା ବୋଲି ଆଗେଇ ଚାଲୁଥିଲେ । ନିଷ୍ଠୁର ବେତ ମାଡ଼ ଖାଉଥିଲେ । ଏଇକଥା ଶୁଣିଲା ବେଳକୁ ମନ ଖରାପ ହୋଇଯାଏ । ତାଙ୍କର ସେଇ କବିତା ପଦକ ବାନର ସେନା ବୋଲୁଥିଲେ—

"ଭାଇରେ ମାର କେତେ ବେତ ମାରିବ
ଜୀବନକୁ ଆମେ ପାଣି ଛଡ଼ାଇଛୁ
ତୁମେକି ଆମକୁ ପାରିବ ।"

ଏ ପଦଟି ମୋତେ ଭାରି ଭଲ ଲାଗେ । ମୋର କିଶୋର ପ୍ରାଣକୁ ଥରାଇ ଦିଏ । ଦିନେ ମୋ ପିଉସା ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପଟ୍ଟନାୟକ ଏବଂ ମାମୁଁ ଓଡ଼ିଶାର ଶିଳ୍ପପତି ଶ୍ରୀଯୁକ୍ତ ବଂଶୀଧର ପଟ୍ଟନାୟକଙ୍କ ସହ ତାଙ୍କ ଘରକୁ ଯିବାର ସୁଯୋଗ ମିଳିଲା । ତାଙ୍କ ସହିତ ଯାଇ ଜାତୀୟ କବିଙ୍କୁ ଦର୍ଶନ କଲି । ତାଙ୍କର ଋଷି ପ୍ରତିମ ବ୍ୟକ୍ତିତ୍ୱ ମତେ ଭାରି ଭଲ ଲାଗିଥିଲା । କେଜାଣି କେମିତି ମୁଁ ତାଙ୍କର ଅନୁଗତ ହୋଇଗଲି । ଘଟଣା କ୍ରମେ ତାଙ୍କର ଜ୍ୟେଷ୍ଠ ପୁତ୍ର ନିରଞ୍ଜନଙ୍କ ସହିତ ମୋ ପିଉସା ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ଝିଅ ଭଉଣୀ ଅପାର ବାହାଘର । ଏଣିକି ମୁଁ ତାଙ୍କର ନିକଟତର ହୋଇଗଲି । ମୁଁ ତାଙ୍କଠାରୁ ଯାହା ଶୁଣିଥିଲି ତାହା ମୋ ପାଇଁ କେତେ ଯେ ଉପଯୋଗୀ ଥିଲା, ତାହା ଏବେ ବୁଝୁଛି । ସେ କହୁଥିଲେ—

"ବାବୁ ନ ଚିହ୍ନିବ ଛତା ଯୋତାରୁ
ସାଧୁ ନ ଚିହ୍ନିବ ଖାଲି ଟିକାରୁ

ନେତା ନ ଚିହ୍ନିବ ଖାଲି କଥାରୁ
ଥରେ ବୁଲି ଆସ କଲିକତାରୁ"

ଏଇ ପଦକ କଥା ଆଜି ମଧ୍ୟ ଏକ ଚେତାବନୀ ବୋଲି ଗ୍ରହଣ କରିବାକୁ ହେବ ।

ସନ ୧୯୨୧, ୧୯୩୦, ୧୯୪୨ ଜାତୀୟ ଆନ୍ଦୋଳନରେ, ପର୍ଯ୍ୟାୟକ୍ରମେ ଧାରାବାହିକ ଭାବେ କବି ବୀରକିଶୋର ଯେଉଁ ସ୍ୱାଧୀନତା ସଂଗ୍ରାମ ସଙ୍ଗୀତଗୁଡ଼ିକ ରଚନା କରିଥିଲେ ତାହା ସବୁ ଜାତୀୟ ସଙ୍ଗୀତ ଭାବେ ଗ୍ରହଣ କରି ଏ ଜାତି କବିଙ୍କୁ ଜାତୀୟ କବି ବୀରକିଶୋର ଭାବରେ ସମ୍ମାନିତ କରିଛି । ଡଃ ମହତାବ ବିଷୁବ ମିଳନ ଉତ୍ସବମାନଙ୍କରେ ଜାତୀୟ କବିଙ୍କୁ ସମ୍ମାନିତ କରୁଥିଲେ । ତାଙ୍କ ଲେଖାଗୁଡ଼ିକ ଓଡ଼ିଶା ଜାତୀୟ ସାହିତ୍ୟର ମୁକୁଟ ବୋଲି ଆପ୍ୟାୟିତ କରିଥିଲେ । ସେ ସର୍ବଦା ବିଭିନ୍ନ ସାହିତ୍ୟ ଆସରରେ କହୁଥିଲେ ଆମ ପଡ଼ୋଶୀ ବଙ୍ଗ ପ୍ରଦେଶରେ ରବି ଠାକୁର, ନଜରୁଲଇସଲାମ ବଙ୍କିମ ଚନ୍ଦ୍ରଙ୍କ ଜାତୀୟ ସାହିତ୍ୟ ବଙ୍ଗଳା ସାହିତ୍ୟରେ ସାମିଲ ହୋଇଛି । ଆମ ଓଡ଼ିଶାରେ ଏହି ପ୍ରକାରର ରଚନାକୁ ଜାତୀୟ ସାହିତ୍ୟ ରୂପେ ଅନ୍ତର୍ଭୁକ୍ତ କରଯାଇନାହିଁ । ଏହା ଅତି ଦୁଃଖର ବିଷୟ । ଡଃ ମହତାବ ବିଭିନ୍ନ ସଭାରେ କ୍ଷୋଭ ପ୍ରକାଶ କରୁଥିଲେ ।

ମୁଁ ଜାତୀୟ କବିଙ୍କୁ ଯେତିକି ଦେଖିଛି ତାଙ୍କ ବ୍ୟକ୍ତିତ୍ୱରେ, ମାନବିକତାରେ ସେତିକି ପ୍ରଭାବିତ ହୋଇଛି । ତାଙ୍କର ଦେଶପ୍ରେମୀ ଚିନ୍ତାଧାରା ମତେ ଉଦ୍‌ବୁଦ୍ଧ କରିଛି । କେବଳ ମତେ ନୁହେଁ ମୂଳ ପୀଢ଼ିକୁ ଏହା କାଳ କାଳ ଧରି ପ୍ରଭାବିତ କରୁଥିବ । ତାଙ୍କର ସେଇ କବିତା ପଦଟି—

ତୁମେ କେତେ ଜଣ ଜୀବନକୁ ପାଣି
ଛଡ଼ାଇ ନ ଦେଲେ ଚଳିବକି
ଦଧିଚିର ହାଡ଼ ଉଜାଡ଼ି ନ ଦେଲେ
ଏ ଜାତିର ଭାଗ୍ୟ ଫେରିବକି ।

ଏହା ସେ ସ୍ୱାଧୀନତା ପୂର୍ବରୁ ଯୁବକମାନଙ୍କ ପାଇଁ ଲେଖିଥିଲେ । ଆଜି ମଧ୍ୟ ଏହାର ଉପଯୋଗୀତା ରହିଛି । ସେମିତି ଆଉ ଗୋଟିଏ ପଦ—

ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ
ଆସ ମୋ ଶିବିରେ ଆସ ଭାଇ
ହିମାଚଳେ ଶିରେ ଶବଦ ଶୁଭଇ
ଡର ନାହିଁ ଆଉ ଡେରି ନାହିଁ ।

ଏହି କବିତାଟି ମଧ୍ୟ କାଳଜୟୀ କବିତା । କବିତାଟି ମତେ କେବଳ ଅନୁପ୍ରାଣିତ କରୁ ନାହିଁ । କାଳ କାଳକୁ ଏକ ଜାତୀୟ ଜୀବନର ଉତ୍ସ ହୋଇ ରହିବ । ସେ ମହାନ ଆତ୍ମାର ଏହା ମହାନ ବାଣୀ—ଆମେମାନେ ସେହି ମହାନ ବ୍ୟକ୍ତିତ୍ୱ ନିକଟରେ ଚିରଋଣୀ ।

ନିରଞ୍ଜନ ପଟ୍ଟନାୟକ
ଶିକ୍ଷା ମନ୍ତ୍ରୀ, ଓଡ଼ିଶା ସରକାର
ତା ୨୮ । ୯ । ୯୬

# ଜାତୀୟ କବି ବୀରକିଶୋର

ତେର ବର୍ଷ ବୟସରେ ମୁଁ ଆଠଗଡ଼ ଗଡ଼ୁ ଆସି କଟକ କାଜିଗଳିରେ ରହିଲି । ସେହି ସମୟରେ ବୀରକିଶୋର ଦାସ କଲେକ୍ଟର ଅଫିସରେ ଚାକିରି କରିଥିବାରୁ ପ୍ରତ୍ୟହ ସେହି ବାଟ ଦେଇ ଯିବା ଆସିବା କରନ୍ତି । ଦଶଟା ବେଳେ ମୋର ଭିକ୍ଟୋରିଆ ସ୍କୁଲକୁ ଯିବା ଓ ତାଙ୍କର କଚେରୀକୁ ଯିବା ସମୟରେ ଉଭୟଙ୍କର ଦେଖା ସାକ୍ଷାତ ହୁଏ । ଥରେ ଥରେ ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ହେବାର ସୁଯୋଗ ଘଟେ । ସେ ଯେତେବେଳେ ଜାଣିଲେ ମୋ ନାମ ନାରାୟଣ ବୀରବର, ସେ ତାଙ୍କ ନାମ ବୀରକିଶୋର ଦାସ ବୋଲି କହିଲେ । ସେତେବେଳେ ଉଭୟଙ୍କ ମଧ୍ୟରେ ବୟସରେ ଯଥେଷ୍ଟ ପାର୍ଥକ୍ୟ ଥିଲେ ମଧ୍ୟ ମୋତେ ମୈତ୍ର ଡାକିବାକୁ ସେ ସ୍ଥିର କଲେ ଏବଂ ଡାକିଲେ ମଧ୍ୟ ।

ସେତେବେଳେ ପଣ୍ଡିତ ଗୋପବନ୍ଧୁ ଦାଶ କଟକ ଆସି ସ୍ୱରାଜ୍ୟ ଆଶ୍ରମ ଘରେ ରହିଥାନ୍ତି ଏବଂ ଓକିଲାତି ସହିତ ରାଜନୀତି ମଧ୍ୟ କରୁଥାନ୍ତି । କେତେକ ସ୍କୁଲ କଲେଜ ଛାତ୍ର ସେଠାକୁ ନିୟମିତ ଯାଇ ତାଙ୍କ ରାଜନୈତିକ ଭାଷଣ ଶୁଣନ୍ତି । ମୁଁ ସପ୍ତାହରେ ଦିନେ ଦୁଇ ଦିନ ସେଠାରେ ଯୋଗ ଦିଏ । ଯେତେବେଳେ ମୈତ୍ର ଶୁଣିଲେ ଯେ ମୁଁ ପଣ୍ଡିତଙ୍କ ସଭାରେ ଯୋଗ ଦିଏ ସେ ମୋତେ ତାଙ୍କୁ ସେଠାକୁ ନେବାକୁ ପ୍ରବର୍ତ୍ତାଇଲେ ଓ ମୁଁ ମଧ୍ୟ ତାଙ୍କୁ ନେଲି । ଏହିପରି ଆମ ଦୁହିଁଙ୍କ ଘନିଷ୍ଠତା ଅଧିକ ହେଲା । ଇତି ମଧ୍ୟରେ ଦାସେ ଆପଣଙ୍କ ରାଜନୈତିକ ସଭା ନିୟମିତ ନାନା ସ୍ଥାନରେ ହେଲା ଏବଂ ସେ ଓକିଲାତି ଛାଡ଼ି ରାଜନୀତିରେ ଲିପ୍ତ ରହିଲେ । ତାଙ୍କର ପ୍ରତିଷ୍ଠିତ ସମାଜ ପତ୍ରିକା ସତ୍ୟବାଦିରୁ କଟକ ଆସିଲେ । ଆମ ମୈତ୍ର ବୀରକିଶୋର ବାବୁଙ୍କର ଗୋଟିଏ ରାଜନୈତିକ କବିତା ଦେଖି ଦାସେ ଆପଣେ ତାଙ୍କୁ ପ୍ରୋତ୍ସାହନ ଦେଲେ ଅଧିକା ଯେହିପରି କବିତା ଲେଖିବାକୁ ଏବଂ ସେ ମଧ୍ୟ ପ୍ରତ୍ୟେକଟି ରାଜନୈତିକ ସଭାକୁ କବିତା ଯୋଗାଇଲେ । ତେଣୁ ସ୍ୱଳ୍ପକାଳ ମଧ୍ୟରେ ସେ ଜଣେ କବିଭାବେ ସମାଜରେ ସ୍ଥାନ ପାଇଲେ ।

ସେତେବେଳକୁ ତାଙ୍କର ବିବାହ ବୟସ ଅତୀତ ହୋଇଯାଇଥିଲା । ବାଲ୍ୟକାଳରେ ସେ ମାତୃହରା ହୋଇଥିଲେ । ତେଣୁ ତାଙ୍କ ବିବାହ ପ୍ରସ୍ତାବରେ ପିତା ଓ ବିମାତା ସେତେ ଦୃଷ୍ଟି ଦେଇ ନଥିଲେ । କାଜିଗଳିରେ ଜଣେ ଓକିଲ ଧର୍ମାନନ୍ଦ ପଟ୍ଟନାୟକ ତାଙ୍କ ଝିଅ ପାଇଁ ବର ଖୋଜୁଥିଲେ । ମୁଁ ସେ ଖବର ପାଇ ମୈତ୍ରଙ୍କ ପାଇଁ ବିବାହ ପ୍ରସ୍ତାବ ଦେଲି ଏବଂ ବାଧା ବିଘ୍ନ ବ୍ୟତୀତ ଏହା ଗୃହୀତ ହେଲା ଓ ନିକଟରେ ବିବାହ ସମ୍ପାଦିତ ହୋଇଗଲା ମଧ୍ୟ । ତେଣୁ ମୋର ଓ ମୈତ୍ରଙ୍କ ସମ୍ପର୍କ ଘନିଷ୍ଠରୁ ଘନିଷ୍ଠତର ହେବା ସ୍ୱାଭାବିକ ।

ବିବାହ ପରେ ଧର୍ମାନନ୍ଦ ବାବୁ କନ୍ୟାକୁ କଟକ ଆଣିବାରୁ ବୀର ବାବୁ ମଧ୍ୟ କଟକରେ ରହିଲେ । ତାଙ୍କ ରାଜନୈତିକ କବିତା ସବୁ ସଭାରେ ବୋଲା ଯାଉଥିଲା ଏବଂ ସେଥିପାଇଁ ସବୁ ରାଜନୈତିକ ସଭାକୁ ତାଙ୍କୁ ଡକା ଯାଉଥିଲା । ମହାତ୍ମାଜୀଙ୍କ ଅସହଯୋଗ ଆନ୍ଦୋଳନର ଡାକ ଯଦିଓ ଶିକ୍ଷିତ ଲୋକମାନେ ଅସହଯୋଗ ବୋଲି ପ୍ରସ୍ତ

କରିଥିଲେ କିନ୍ତୁ ପରରେ ଜନସାଧାରଣ ଏହାକୁ ନିବୃତ ମାର୍ଗ ବୋଲି ଗ୍ରହଣ କରିଥିଲେ । ବୀର ବାବୁ ଏହି ନିବୃତ ବାଟାକୁ ଧରି ଲୋକ ସାଧାରଣଙ୍କୁ ବୁଝାଉଥିଲେ ଯେ ଏହା ହିଁ ଇଂରେଜ କବଳରୁ ମୁକ୍ତି ପାଇବାର ଏକମାତ୍ର ପଥ । କାରଣ ଇଂରେଜମାନେ ଆମ ଦେଶକୁ ଦଖଲ କରିଛନ୍ତି ସେମାନଙ୍କ ପ୍ରବୃତ୍ତି ମାର୍ଗରେ । ସେହି ମାର୍ଗର ସମୂଳ ଧ୍ୱଂସ ସାଧନ କରିବାର ଏକମାତ୍ର ପଥ ହେଉଛି ନିବୃତ୍ତି ମାର୍ଗ ଯାହାକି ଭାରତବର୍ଷର ମୌଳିକ ଆଦର୍ଶ । ଯେପରି ବିଶାଳ ବାହ୍ୟ ପଦାର୍ଥର ସ୍ତୂପକୁ ବିନ୍ଦୁଏ ମାତ୍ର ଅଗ୍ନି ପୋଡି ଶେଷ କରିଦିଏ ସେହିପରି ଇଂରେଜମାନଙ୍କର ବିରାଟ ଶାସନର ପ୍ରବୃତ୍ତିକୁ ନିବୃତ୍ତି ମାର୍ଗର ଅସହଯୋଗ ଆନ୍ଦୋଳନ ଶେଷ କରି ଦେବାକୁ ସମର୍ଥ ହୋଇପାରେ ଏହା ହିଁ ବୀରବାବୁଙ୍କ ସରଳ ଭାଷା ବୁଝାଇବାକୁ ସକ୍ଷମ ହୋଇଥିଲା ସାଧାରଣ ଲୋକଙ୍କୁ ଏବଂ ଗୃହୀତ ହୋଇଥିଲା ମଧ୍ୟ ।

୧୯୪୨ ପରେ ଇଂରେଜମାନଙ୍କ ଦମନ ମୂଳକ ପ୍ରଚେଷ୍ଟା ସର୍ବାପେକ୍ଷା କଠିନ ଥିଲା ଏବଂ ସେଥିପାଇଁ ସମସ୍ତ ମୁଖ୍ୟ ନେତାମାନଙ୍କୁ କାରାଗାରରେ ନିକ୍ଷିପ୍ତ କରା ହୋଇଥିଲା । ଏହାଦ୍ୱାରା ଆନ୍ଦୋଳନ ଛିଡିଯିବା ପରିବର୍ତ୍ତେ ଉତ୍କଟତର ହୋଇଉଠିଲା । ବୀରବାବୁ ନିଜେ କେବେ କୌଣସି ସଭାରେ ଭାଷଣ ନ ଦେଲେ ମଧ୍ୟ ତାଙ୍କ ଲିଖିତ କବିତା ଯେ ଜନସାଧାରଣଙ୍କୁ ପାଗଳ କରିଦେଇଥିଲା ଆନ୍ଦୋଳନ କରିବାକୁ ତାହା ସରକାର ଭଲ ଭାବରେ ଅଧିକ ବୁଝୁଥିଲେ ଏବଂ ବୀରବାବୁଙ୍କୁ କାରାରୁଦ୍ଧ କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ସେତେବେଳେ ମୁଁ କଟକରେ ଅଟକ ବନ୍ଦୀ ହୋଇ ରହିଥିଲି ମାନ୍ୟବର ଗୋଦାବରୀଶ ମିଶ୍ରଙ୍କର ନିର୍ଦ୍ଦେଶ କ୍ରମେ । ସେହି ସମୟରେ ମୋର ପରିବାର ତାଙ୍କ କାଳିଗଳି ଘରେ ତାଙ୍କ ପୁଅ ଓ ଝିଅଙ୍କ ସଙ୍ଗରେ ରହୁଥିଲେ । କିଛି ଦିନ ପରେ ବୀରବାବୁ ଅନ୍ୟ ସମସ୍ତ କର୍ମୀମାନଙ୍କ ସହିତ ଖଲାସ ହେଲେ ଏବଂ ତାଙ୍କ ପରିବାର ସହ କଟକରେ ରହିଲେ । ସେ ସମୟରେ ମୁଁ ଲବଣ ସତ୍ୟାଗ୍ରହ ପରିଚାଳନା ପାଇଁ କୁଜଙ୍ଗ ଆସିଲି ଏବଂ ସେଠାରୁ ଲବଣ ସତ୍ୟାଗ୍ରହୀ ଭାବେ କାରାବରଣ କଲି । ଫଳରେ ମୋର ବୀରବାବୁଙ୍କ ସହ ସମ୍ପର୍କ ତୁଟିଗଲା ।

ଶେଷ ସମୟରେ ସେ ଭୁବନେଶ୍ୱରରେ ତାଙ୍କ ପୁଅ ପାଖରେ ରହୁଥିଲେ ଏବଂ ମୁଁ ପ୍ରାୟ କଟକରେ ରହୁଥିବାରୁ ସେ ପୂର୍ବ ସମ୍ପର୍କ ଆଉ ରହିପାରିଲା ନାହିଁ । କିନ୍ତୁ ପରେ ମୋର ଭୁବନେଶ୍ୱରରେ ଅବସ୍ଥାନ ବେଳେ ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥିଲା । ତାଙ୍କର ପରଲୋକ ପ୍ରାପ୍ତି ଭୁବନେଶ୍ୱରରେ ହେବାବେଳେ ମୁଁ ପାରାଦ୍ୱୀପରେ ଥିବାରୁ ଆସିପାରିନଥିଲି ଏବଂ ଉଭୟଙ୍କର ଦେଖା ସାକ୍ଷାତ ହୋଇପାରି ନଥିବାରୁ ମୋର ଏକ ଜୀବନ ବ୍ୟାପି ଅସନ୍ତୋଷ ରହିଗଲା । ତଥାପି ସନ୍ତୋଷର ଗୋଟିଏ କାରଣ ଥିଲା ଯେ ତାଙ୍କ ରୋଗ ଶଯ୍ୟାରେ ସେବା କରିବାକୁ ଜଣେ କର୍ମୀ ମୋ ଅଞ୍ଚଳରୁ ପଠାଇଥିଲି ଯାହାଙ୍କର ସେବା କାର୍ଯ୍ୟ ତାଙ୍କର ଶେଷ ଜୀବନରେ ଆଶାତୀତ ସନ୍ତୋଷ ପ୍ରଦାନ କରିଥିଲା ।

ନାରାୟଣ ବୀରବର ସାମନ୍ତ
ସ୍ୱାଧୀନତା ସଂଗ୍ରାମୀ
ପୂର୍ବତନ ଉପବାଚସ୍ପତି
ଓଡ଼ିଶା ବିଧାନସଭା.

# ଜାତୀୟ ଗୀତ ଜନତାର ଗଙ୍ଗୋତ୍ରି

ସ୍ୱର୍ଗୀୟ କବି ବୀରକିଶୋରଙ୍କର କବିତା ସମାହାର ମୁଖବନ୍ଧ ଲେଖିବାପାଇଁ ଉଦ୍ୟତ ହେଲାବେଳେ ଏହି ଲେଖକର ଆଖି ଆଗରେ ଭସି ଆସୁଛି ତାଙ୍କର ସେହି ଅତୁଳ କାନ୍ତ ମୂର୍ତ୍ତି । ଯାହାର ଗୀତ ସାରା ଓଡ଼ିଶାର ପୁରପଲ୍ଲୀ, ଗଗନ ପବନ, ଅରଣ୍ୟ ପର୍ବତରେ ଝଙ୍କୃତ ହୋଇଥିଲା । ଏବେ ବି ତାର ପ୍ରତିଧ୍ୱନି ମୋର କାନ କୁହରରେ ବାଜୁଛି ।

୧୯୩୨ ସାଲ, ଦ୍ୱିତୀୟ ଗୋଲଟେବୁଲ ବୈଠକରୁ ଗାନ୍ଧିଜୀ କବିଙ୍କ ଭାଷାରେ "କାନ୍ଦି କାନ୍ଦି" ଫେରିଆସି । ଜାତୀୟ କଂଗ୍ରେସ ଉପରେ ବେଆଇନ ଆଦେଶ ଜାରି ହୋଇଥାଏ । ସେତେବେଳେ ମୁଁ ରେଭେନ୍‌ସା କଲିଜିଏଟର ଦଶମ ଶ୍ରେଣୀର ଛାତ୍ର । ରାସ୍ତାଘାଟରେ ଏକ ସ୍ମରଣୀୟ ଗୀତି ବୋଲା ହେଉଥାଏ ।

> "ଭଲ ଗୋଲଟେବୁଲ ପାଲ ଲଗିଲା ରେ
>
> କାନ୍ଦି କାନ୍ଦି ଗାନ୍ଧି ବୁଢ଼ା ଫେରିଲା ରେ"

କଲିଜିଏଟ ସ୍କୁଲ ପାଖରେ ଥିବା ସ୍ୱରାଜ ଆଶ୍ରମକୁ ବିଲାତ ସରକାର ବାଜ୍ୟାପ୍ତି କରିଥାଆନ୍ତି ଓ ପ୍ରତ୍ୟେକ ଦିନ ନିରସ୍ତ୍ର ସତ୍ୟାଗ୍ରହୀ କଂଗ୍ରେସ କର୍ମୀମାନେ ସ୍ୱରାଜ ଆଶ୍ରମକୁ ଦଖଲ କରିବାକୁ ଆସୁଥାନ୍ତି ଓ ପୋଲିସ ଲାଠିରେ ଲହୁ ଲୁହାଣ ହେଉଥାଆନ୍ତି । ସେତେବେଳେ ସାରା ଭାରତରେ ବ୍ରିଟିଶ ଶାସନର ଉତ୍କଟ ଦମନ ଲୀଳାର ନରକ ପାଲଟି ଥାଏ । ଦଳ ଦଳ ସତ୍ୟାଗ୍ରହୀ ବ୍ରିଟିଶ ସରକାର ବାଜ୍ୟାପ୍ତ କରିଥିବା କଂଗ୍ରେସ ଭବନକୁ ବିଲାତର କବଳରୁ ମୁକୁଳାଇବା ପାଇଁ ସଂଗ୍ରାମ କରୁଥାଆନ୍ତି । ସେତେବେଳେ ସେମାନଙ୍କର ତୁଣ୍ଡରେ ଥାଏ ଜାତୀୟ କବିଙ୍କର ଅବିସ୍ମରଣୀୟ ଗୀତ—

> ଉଡ଼ାଇ କେତନ ଗଲ ଘର ଆଜି
>
> ବଜାଇ ବିଜୟ ଭେରୀ ହେ
>
> ଶିବାଜୀ ଦୁର୍ଗରେ ସେନାପତି ତୋର
>
> ଯୁଝୁଛନ୍ତି ସୈନ୍ୟ ଧରି ହେ
>
> ଭାଇ ଭୁଲନା ଭୁଲନା
>
> ଭରିଲଣି ସବୁ ଜେଲଖାନା ହେ । ୧ ।
>
> ସିମିଳା ପାହାଡ଼ ଥରି ଉଠିଲଣି
>
> ସରିଲଣି ସବୁ ଦଫା ହେ
>
> ବିଲାତରେ ଏବେ ଭବନା ପଡ଼ିଛି
>
> ଯାତ୍ରା ହୋଇ ଯଦି ଉଫାହେ
>
> ଲୁଗାକଳ ବନ୍ଧା ଦେଇ
>
> ବସି ବ୍ରିଟିଶ ମାରୁଛି ହାଇ ହେ । ୨ ।
>
> ମଦଖଟି ତ ଳ ହାକିମ ଡାକନ୍ତି
>
> ମଦୁଆକୁ ବାଟ ଛାଡ଼ ହେ ।

ନିଶା ଖାଇବାକୁ ମନା ଯେ କରିବ
ଭଗ୍ୟେ ତାଙ୍କ ବେତ ମାଡ଼ ହେ
ନ୍ୟାୟବନ୍ତ ସରକାର
ଖୋଲିଛନ୍ତି ସୁର୍ଦ୍ଧି କାରବାର ହେ
ନ୍ୟାୟବନ୍ତ ସରକାର । ୩ ।

× × × ×

ଏହି ପରିସ୍ଥିତିରେ ଦିନେ ସକାଳ ୮ଟା ବେଳେ ସେହି ଅଞ୍ଚଳରେ ପ୍ରସିଦ୍ଧ ଇଣ୍ଡା ଦେଉଳର ହତାଭିତରୁ ଗୋଟିଏ ଗୀତ ଭସିଆସିଲା—

"ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ
ଆସ ମୋ ଶିବିରେ ଆସ ଭାଇ"

ସେଶରର ଆକାଶତଳେ ପ୍ରାୟ ନୀରବ ବାତାବରଣରେ ସେହି ସଙ୍ଗୀତର ମୂର୍ଚ୍ଛନାରେ ମୁଁ କାହିଁକି କଲିଜିଏଟ ବୋର୍ଡିଂର ଅଧିକାଂଶ ଅନ୍ତେବାସୀଙ୍କର ପ୍ରାଣରେ ଏକ ଶିହରଣ ଆସିଥିଲା । ଏବେ ମଧ୍ୟ ସେହି କବିତାର ମୂର୍ଚ୍ଛନା ସ୍ମରଣରେ ଆସିଲେ ମୋର ପ୍ରାଣ ପୁଲକିତ ହୋଇଯାଏ ।

ଏହି କବିତାର କବି ଯେ ଥିଲେ ବୀରକିଶୋର ତାହା ମୁଁ ଜାଣିବା ପରେ ମୋର ମନ ଉଚ୍ଚାଟ ହେଲା । କିନ୍ତୁ ତାଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବାର ମୋର ସୁଯୋଗ ନଥିଲା । ଏହି ସୁଯୋଗର ସୌଭାଗ୍ୟ ମୋତେ ମିଳିଲା ପ୍ରାୟ ଦଶ ବର୍ଷ ପରେ ଯେତେବେଳେ ଅଗଷ୍ଟ ୪୨ର ଭାରତଛାଡ଼ ଆନ୍ଦୋଳନରେ ଆମ୍ଭେମାନେ ବ୍ରହ୍ମପୁର ଜେଲରେ ଅଟକବନ୍ଦି ଭାବରେ ପ୍ରାୟ ତିନି ବର୍ଷ କାଳ ଏକାଠି କଟାଇଥିଲୁ ।

ବ୍ରହ୍ମପୁର ଜେଲରେ ଜାତୀୟ କବି ଯେତେଗୁଡ଼ିଏ ଗୀତି କବିତା ଲେଖିଥିଲେ ସେଗୁଡ଼ିକର ସ୍ୱର ସଂଯୋଜନା ଏହି ଲେଖକ କରିଥିଲା ଓ ତାହାକୁ ଶ୍ରଦ୍ଧେୟ ଦୋଳଗୋବିନ୍ଦ ଯିଏ ଆମର ସହବନ୍ଦୀ ଥିଲେ ସେ ସେତେବେଳେ ସେହି ଗୀତଗୁଡ଼ିକ ତାଙ୍କର ସେ ବେଳର ବାଳୁତ କଣ୍ଠର ମୂର୍ଚ୍ଛନାରେ ବୋଲୁଥିଲେ । ସେଗୁଡ଼ିକ ଏପରି ମର୍ମସ୍ପର୍ଶୀ ଓ ହୃଦୟଗ୍ରାହୀ ହେଉଥିଲା ଯେ ସେଗୁଡ଼ିକ ଏବେ ମଧ୍ୟ ମୋର ସ୍ମୃତି ପଟରୁ ଲିଭି ନାହିଁ । ଗୀତିଗୁଡ଼ିକ ସବୁବେଳେ ପ୍ରତ୍ୟକ୍ଷ ଦେଶାତ୍ମବୋଧ ଗୀତ ନଥିଲା । କିନ୍ତୁ ପ୍ରତ୍ୟେକ ଗୀତରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ମାର୍ମିକତା ପ୍ରତ୍ୟେକ ଶ୍ରୋତାଙ୍କୁ ମୁଗ୍ଧ କରୁଥିଲା ।

ଜାତୀୟ କବି ବୀରକିଶୋର ଥିଲେ ଯୁଗର କବି । ଅଭାବ, ଅନାଟନ, ଦୁଃଖ, ଶୋକ ପ୍ରତ୍ୟେକ ଅବସ୍ଥାରେ ତାଙ୍କର ଗୀତି କବିତାରେ ଅନ୍ତଃସ୍ୱର ଥିଲା ଆଶା, ଉଦ୍ଦୀପନା ଓ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା । ଏହି ସଂକଳନରେ ଯେତେଗୁଡ଼ିଏ ଗୀତି କବିତା ସଂଯୋଜିତ ହୋଇଛି ସେ ଭିତରୁ ପ୍ରାୟ ଅନେକ କବିତାର ବହୁ ଅଂଶ ମୋର–କେବଳ କାହିଁକି ବହୁ ସହବନ୍ଦୀଙ୍କର ମୁଖସ୍ଥ ହୋଇଯାଇଥିଲା । ଅଟକବନ୍ଦୀଙ୍କର ପ୍ରାୟ ତିନିଗୋଟି ବର୍ଷର ଅବରୋଧ ସମୟରେ ଏହି ଗୀତଗୁଡ଼ିକ ପ୍ରାୟ ପ୍ରତ୍ୟେକଙ୍କ ଭିତରେ ଉଦ୍ଦୀପନା ଓ ଉତ୍ସାହ ସୃଷ୍ଟି କରିଥିଲା । ତେଣୁ ଜେଲ ଜୀବନରେ ନିରସପୂର୍ଣ୍ଣ ଶୁଷ୍କତା ଏକ ପଲ୍ଲବିତ ଉଦ୍ୟାନରେ ପରିଣତ ହୋଇପାରିଥିଲା । ଏହି ସଂକଳନରେ ଥିବା କବିତାଗୁଡ଼ିକ

କେବଳ କବିତା ନୁହନ୍ତି ସେମାନେ ସଞ୍ଜୀବନୀ ମନ୍ତ୍ର ଥିଲେ । ଶହୀଦ ଲକ୍ଷ୍ମଣ ନାୟକଙ୍କର ଫାଶୀ ଦିବସଠାରୁ ଆରମ୍ଭ କରି ଅନ୍ୟ ସମସ୍ତ ସ୍ମରଣୀୟ ଘଟଣାରେ ଏହି କବିତାଗୁଡ଼ିକ ଥିଲା ସମସ୍ତ ଜେଲ ବନ୍ଦୀଙ୍କର ଉଣା ଅଧିକେ ସାଥୀ ସ୍ଫୂର୍ତ୍ତି ଉଦ୍ଦୀପକ ।

ପରିଶେଷରେ ଜେଲଖାନାର କ୍ଳାନ୍ତିକର ଜୀବନ ଭିତରେ ପ୍ରାୟ ସର୍ବମୋଟ ଆମେ ସାଢ଼େ ତିନିଶହ ଦେଶସେବୀ ନାନାପ୍ରକାରେ ଆପଣାକୁ ନିୟୋଜିତ କରି ସମୟ ବିତାଇଥିଲୁ । ଏହି ସମୟରେ ଜେଲଖାନାରେ ଏହି ଲେଖକ ପ୍ରଣୀତ ନାଟକ 'ରକ୍ତ ରବିବାର' ସେଠାରେ ଅଭିନୀତ ହୋଇଥିଲା । ସେହି ନାଟକର ଗୋଟିଏ ଦୃଶ୍ୟରେ ବର୍ମାରୁ ଫେରୁଥିବା ଏକ ଭାରତୀୟ ବାଳକ ମୁଁହରେ ଗୋଟିଏ କବିତା ଷ୍ଟେଜରେ ବୋଲା ହୋଇଥିଲା । ସେହି କବିତା ଲେଖିଥିଲେ ସେହି ସ୍ୱର୍ଗୀୟ ଜାତୀୟ କବି । ତାହାର ପ୍ରଥମ ଦୁଇଧାଡ଼ିଟି ଥିଲା—

କହ ମୋତେ କିଏ ତୋତେରେ
ରହିଛି ଆକୁଳେ ଚାହିଁ
ସେ ଯେ ତୋର ସେ ଯେ ମୋର
ଜନନୀ ଜନମ ଭୂଇଁ । (ଘୋଷା)

ସେହି କବିତାର ସ୍ୱର ସଂଯୋଜନା କରିଥିଲା ଏହି ଲେଖକ । ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଗୋଟିଏ ବିଶ୍ୱବିଶ୍ରୁତ କବିତାର ସ୍ୱରରେ । ଏକଥା ଦମ୍ଭର ସହିତ କୁହାଯାଇପାରେ ଯେ ଓଡ଼ିଆ ଭାଷାରେ ଜନ୍ମଭୂମି ବିଷୟ ଓ ଓଡ଼ିଶାର ପ୍ରାକୃତିକ, ସାଂସାରିକ ଜୀବନ ବିଷୟରେ ଯେତେ ଗୀତି କବିତା ଲେଖା ଯାଇଛି ଏହି କବିତା ମାନଙ୍କର ପ୍ରଥମ ଧାଡ଼ିରେ ଆସ୍ଥାନ ରଖିଛି । ବିଶ୍ୱକବି ରବୀନ୍ଦ୍ରନାଥଙ୍କର କବିତାର ପ୍ରଥମ ଦୁଇଧାଡ଼ି ଥିଲା—

ଏଲେ ଏଲେରେ ଓଇ ସୁଦୂର ବଂଧୁ ଏଲେ
ଏଲେ ପଥ ଖୁଞ୍ଜେ ଯାୟ
ଏଲେ ହାରିଏ ପାଓୟାୟ
ମନେର ଆଂଧାର ଟୁଟେ ଗେଲ
ଓଇ ବନ୍ଧୁ ଏଲେ ।

ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ତାଙ୍କର ଆତ୍ମ ଜୀବନୀରେ ଠାଏ ଲେଖିଥିଲେ "କବି ଗୋଟିଏ ପଦାର୍ଥ । ପୃଥିବୀରେ ଲକ୍ଷରେ କେତୋଟି କବି ଅଛନ୍ତି" ।

ଏହି ପୁଣ୍ୟ ପଦାର୍ଥ କବି ତାଙ୍କର କବିତାପାଇଁ ଚିରକାଳ ଜନ ସ୍ମୃତିରେ ବଞ୍ଚି ରହିବେ ସନ୍ଦେହ ନାହିଁ ।

ମନମୋହନ ମିଶ୍ର
ସ୍ୱାଧୀନତା ସଂଗ୍ରାମୀ
ପୂର୍ବତନ ଚେଆରମ୍ୟାନ, କଟକ ମ୍ୟୁନିସିପାଲିଟି
ନୀଳାଦ୍ରି ବିହାର, କଟକ

# ସ୍ୱାଧୀନତା ସଂଗ୍ରାମର ଚାରଣ କବି ବୀରକିଶୋର

ସ୍ୱାଧୀନତା ସଂଗ୍ରାମର ଚାରଣ କବିଭାବେ ବୀରକିଶୋର (୧୮୯୬-୧୯୭୨) ଅଗ୍ରଗଣ୍ୟ; ଜାତୀୟ କବି ଭାବେ ସେ ଚିରନମସ୍ୟ ଓ ବରେଣ୍ୟ । କବି ସୁଲଭ ସମ୍ବେଦନଶୀଳ କୋମଳ ହୃଦୟବତ୍ତା ଥିଲା ତାଙ୍କର ସହଜାତ ଗୁଣ । କିଶୋର ବୟସରୁ ହିଁ ତାହାଙ୍କ କବିତାନୁରାଗ ଓ ସୃଜନଶୀଳତାର ଉନ୍ମେଷ ଘଟିଥିଲା । ଟାଉନ ଭିକ୍ଟୋରିଆ ସ୍କୁଲର (ଆଧୁନିକ ଭକ୍ତ ମଧୁ ବିଦ୍ୟାପୀଠ) ଛାତ୍ର ଥିବାବେଳେ ଷୋହଳବର୍ଷ ବୟସରେ ରଚିତ ତାହାଙ୍କ ଶିଶିର ଟୋପା କବିତା 'ମୁକୁର'ରେ ପ୍ରକାଶ ପାଇଥିଲା । ମାତ୍ର ତତ୍କାଳୀନ ରାଜନୈତିକ ପରିସ୍ଥିତି ହିଁ ତାଙ୍କର କବି ମାନସକୁ ଏକ ବୈପ୍ଳବିକ ଚେତନାରେ ଉଦ୍‌ବୁଦ୍ଧ କରିଦେଲା । ଅବସ୍ଥା ଦୃଷ୍ଟିରୁ ଉଚ୍ଚଶିକ୍ଷା ଲାଭର ଆଶା ପରିତ୍ୟାଗ କରି ସେ ବାରିକ ମିସ୍ତ୍ରୀ ବିଭାଗରେ କାର୍ଯ୍ୟ କରୁଥିଲେ ହେଁ ଗାନ୍ଧିଜୀଙ୍କ ଅସହଯୋଗ ଆହ୍ୱାନରେ ସେ ହେଲେ ଅନୁପ୍ରାଣୀତ । ଏ ଦେଶର ଚାଷୀ ମୂଲିଆର ଦୁଃଖ ତାହାଙ୍କ ହୃଦୟକୁ ବିଗଳିତ କରିଥିଲା । ବିଦେଶୀ ଶାସନର ଶୋଷଣ, ଅତ୍ୟାଚାରର କାହାଣୀ ତାହାଙ୍କ ହୃଦୟରେ ବିପ୍ଳବର ଯେଉଁ ଅଗ୍ନିଶିଖା ପ୍ରଜ୍ଜ୍ୱଳିତ କରାଇଥିଲା ତାହା ହିଁ ରୂପ ଲାଭ କଲା ତାହାଙ୍କ ପ୍ରଥମ କବିତା ପୁସ୍ତକ 'ମୋହନ ବଂଶୀ'ରେ । ଏହି କ୍ଷୁଦ୍ରାବୟବ ସଙ୍ଗୀତ ସଙ୍କଳନଟି ଛଦ୍ମନାମରେ ପ୍ରକାଶ ପାଇଥିଲା ଓ ଏହାକୁ ଏକ ରାଜଦ୍ରୋହାତ୍ମକ ରଚନାଭାବେ ସେତେବେଳେ ସରକାର ଘୋଷଣା କରିଥିଲେ ।

ଏହାର କେତେବର୍ଷ ପରେ କବି ସରକାରୀ ଚାକିରିରୁ ଇସ୍ତଫା ଦେଇଦେଲେ ଓ ଜାତୀୟ ବିପ୍ଳବସହ ଆପଣାକୁ ପୂର୍ଣ୍ଣ ପ୍ରାଣରେ ଜଡ଼ିତ କରିଦେଲେ । ସେ ଯୁଗରେ ଜନସାଧାରଣଙ୍କୁ ବୈପ୍ଳବିକ ଚେତନାରେ ଉଦ୍‌ବୁଦ୍ଧ କରାଇବା ଲାଗି ଜାତୀୟ ସଙ୍ଗୀତ କିପରି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ତାହା ବର୍ଣ୍ଣନା କରି ବିନୋଦ କାନୁନଗୋ ଲେଖିଛନ୍ତି—"ଗାଁ ଗହଳରେ ସ୍ୱାଧୀନତାର ବାର୍ତ୍ତା ପହଞ୍ଚାଇବାର ଉପାୟ କଣ ? ଏକମାତ୍ର ଉପାୟ ଥିଲା ଜାତୀୟ ସଙ୍ଗୀତ ଗାଇ ଗାଇ ବୁଲିବା ଏବଂ ସେହି ଗୀତ ଶୁଣିବା ପାଇଁ ଲୋକେ ଏକାଠି ହୋଇଗଲେ ସେମାନଙ୍କ ଉଦ୍ଦେଶ୍ୟରେ ଭାଷଣ ଦେବା । ଅତି ଅଳ୍ପ ବୟସର ପିଲା ଆସି ଯାଇଛନ୍ତି ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇ ସ୍ୱାଧୀନତା ସଂଗ୍ରାମରେ ଭାଗ ନେବେ ବୋଲି । ସେମାନେ ଲୋକଙ୍କୁ ଯାଇ ବୁଝାଇବେ କଅଣ ? ସେମାନଙ୍କୁ ଧରାଇ ଦିଆଯାଇଥିଲା ଏକମାତ୍ର ଅସ୍ତ୍ର 'ଜାତୀୟ ସଙ୍ଗୀତ' । ପିଲା କଣ୍ଠରୁ ସେହିସବୁ ଗୀତ ଶୁଣିଲାବେଳେ ଲୋକେ କାମଦାମ ଛାଡ଼ି ବସି ରହୁଥିଲେ । ଗାଁଏ ଗାଁଏ ବୁଲି ସ୍ୱଦେଶୀ ଭାବନା ଜାଗ୍ରତ କରାଇବାକୁ ହେବ । ଅଳ୍ପ ବୟସର ସ୍କୁଲ ପିଲା, ବେଶୀ ପାଠ ପଢ଼ି ନଥିବା ଗାଉଁଲୀ ଲୋକେ କଣ କେବଳ ଭାଷଣ ଦେଇ ସେହି ଭାବ ସଫଳତାର ସହିତ ଜାଗ୍ରତ କରାଇପାରିବେ ? ସେମାନଙ୍କ ହାତରେ ରହିଯାଇଛି ବୀରବାବୁଙ୍କ ଗୀତ—ସେହି ଗୀତ ଭିତରେ ଏଭଳି ମାଦକତା ଭରି ରହିଥିଲା ଯେ ଦୁର୍ବଳ ଭିତରେ ବଳ ସଞ୍ଚାର କରି ଦେଉଥିଲା ।"

ବୀରକିଶୋରଙ୍କ ସଙ୍ଗୀତାବଳୀ ଓଡ଼ିଶାର ଜାତୀୟ ଜୀବନରେ ଯଥାର୍ଥତଃ ସ୍ପନ୍ଦନ ଖେଳାଇ ଦେଇଥିଲା । ଜନସାଧାରଣଙ୍କ ନିକଟରେ ବିପ୍ଳବର ବାର୍ତ୍ତା ପହଞ୍ଚାଇ ଦେଇଥିଲା, ରାଜନୈତିକ କର୍ମୀମାନଙ୍କୁ ଉତ୍ସାହିତ, ଉଦ୍ଦୀପ୍ତ କରି-ପାରିଥିଲା । କହିବା ଅନାବଶ୍ୟକ ଏହି ସଙ୍ଗୀତ ରଚନାପାଇଁ କବିଙ୍କୁ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି, ଚରମ ଦୁଃଖ ଭୋଗିବାକୁ ପଡ଼ିଛି । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହବେଳେ ପ୍ରକାଶିତ ତାହାଙ୍କ 'ରଣ ଦୁନ୍ଦୁଭି' ସମ୍ପର୍କରେ କବି ଲେଖିଛନ୍ତି—"ଏହା ଯେତେବେଳେ ପ୍ରକାଶିତ ହେଲା ବ୍ରିଟିଶ ସରକାର ସଙ୍ଗେ ସଙ୍ଗେ ତାକୁ

ବେଆଇନ କରିଦେଲେ ଓ ସବୁ ଛାପା ବହିକୁ ବାଜ୍ୟାପ୍ତ କରିଦେବାପାଇଁ ଆମ ଗୃହ ଓ ମୋ' ଶ୍ୱଶୁରଙ୍କର ଖାନତଲାସ କରିଥିଲେ ।" ପୁନଶ୍ଚ ଏହି ସମୟରେ ପ୍ରକାଶିତ 'ବିଦ୍ରୋହୀ ବାଣୀ' ସମ୍ପର୍କରେ ଲେଖିଛନ୍ତି—(ଏ ବହିଯୋଗୁ) ସରକାର ମୋ ନାମରେ ମକଦମା କଲେ, ଶେଷରେ ମୁଁ ବର୍ଷେ ଜେଲଦଣ୍ଡ ଭୋଗିଲି ।

ଏହିପରିଭାବେ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଜାତୀୟ ସଂଗ୍ରାମର ନାନା ପର୍ଯ୍ୟାୟରେ ବିଭିନ୍ନ ପ୍ରସଙ୍ଗ ଓ ଗାନ୍ଧିଜୀ ବିଚାରଧାରାକୁ ଭିତ୍ତି କରି କାରାକକ୍ଷର ବାହାରେ ରହି ଅଥବା କାରାକକ୍ଷରେ ଥାଇ ସେ ଯେଉଁସବୁ ସଙ୍ଗୀତ ରଚନା କରିଯାଇଛନ୍ତି ତାହାର ଐତିହାସିକ ମହତ୍ତ୍ୱ ଅକଳନୀୟ । କବି ତାହାଙ୍କ ରଚନାକୁ ନିଜେ ଗାଇ ପାରୁ ନଥିଲେ ହେଁ ବହୁ ରାଜନୈତିକ କର୍ମୀ ଓ ଗାୟକଙ୍କ କଣ୍ଠରେ ସେଗୁଡ଼ିକ ଗୀତ ବୋଲା ହୋଇ ଅଗଣିତ ଶ୍ରୋତାଙ୍କୁ ଅନୁପ୍ରାଣୀତ ଓ ଭାବାବିଷ୍ଟ କରି ଦେଉଥିଲା । ପ୍ରତ୍ୟକ୍ଷଦର୍ଶୀଙ୍କ ମତରେ ଏହା ଥିଲା 'ଅଭୂତପୂର୍ବ' ।

ବୀରକିଶୋରଙ୍କ ସମଗ୍ର ସତ୍ତା ଗାନ୍ଧିଜୀଙ୍କ ପନ୍ଥା ଓ କର୍ମଧାରାରେ ଅନୁପ୍ରାଣୀତ ହୋଇଯାଇଥିଲା । ତାହାଙ୍କ ବ୍ୟକ୍ତିଗତ ଅନୁଭୂତି ହଜି ଯାଇଥିଲା ଜାତୀୟ ଅନୁଭୂତିର ବିରାଟ ପ୍ରବାହ ଭିତରେ । ସେଥିପାଇଁ ସେ ଲେଖିଥିଲେ—

ଛାତିକି ପଥର କରି ସବୁ ଦୁଃଖ ସହିଛି, ସହିବି
ଆସୁ ଝଡ଼ ବତାସ
ହେବି ନାହିଁ ହତାଶ
ତୁମରି ପତାକା ଧରି
ଦାଣ୍ଡେ ଦାଣ୍ଡେ ବୁଲିବି, ବୁଲିବି ।
× × ×
ଲୋଡ଼େନା ମୁଁ ସମ୍ମାନ
ଅହମିକା ସ୍ୟନ୍ଦନ
ମୋ' ଜାତି ରୁକୁଣା ରଥ
ଚକ ହୋଇ ଘୁରିବି, ଘୁରିବି ।
× × ×
ଲୋଡ଼ା ନାହିଁ ସରଗ
ଭୋଗେ ପଛେ ନରକ
ମୋ ଦେଶ ଉଦ୍ଧାର ଲାଗି
ମାଟିତଳେ ମିଶିବି, ମିଶିବି ।"

ଏହା ହିଁ ତାଙ୍କର ଜୀବନାଦର୍ଶ ଥିବାରୁ ତତ୍କାଳୀନ ରୋମାଣ୍ଟିକ ଚେତନା ସମ୍ବଳିତ କବିତା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରି ଲେଖିଥିଲେ—

"କବି ବାଜେ କବିତା ବନ୍ଦ କର,
କମାଣ ପରଏ କଲମ ଧର

ଅରେ ବଜା ନବ ସମର ଭେରୀ

ତରୁଣ ଯେତେ ସେଇ ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।

ଗୋଲାପୀ ଅଧର ଯାଉଛି ଶୁଖି

କବିତା ଲେଖିବୁ କାହାକୁ ଦେଖି

ସ୍ଳାନ ବଦନେ ନାହିଁରେ ହସ

ଶରତ ଗନ୍ଧ ଦେଖିବ କିଏ, ଚାଖିବ କିଏ ବସନ୍ତ ରସ ।

× × ×

ପଲ୍ଲୀ ହୃଦୟ କଜଳ ନିତି

କଙ୍କାଳ ବୁକେ ଲେଢ଼ିବ କିଏ ଅଭିସାରିକାର ଗୁପ୍ତ ପ୍ରୀତି ।'

(ବିଦ୍ରୋହୀ ବୀଣା)

ତାହାଙ୍କ ସଙ୍ଗୀତାବଳୀ କିପରି ଉଦ୍‌ବୋଧନାତ୍ମକ ଥିଲା ତାହା ତାତ୍କାଳୀନ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଲିଖିତ ନିମ୍ନୋକ୍ତ ଗୀତାଂଶରୁ ଅନୁମେୟ ।

ରଣ ସମୟରେ ବହି ଧରିବାକୁ

ମୋତେ ଆଉ ତୁମେ କହନା ।

ଛାତିର ରକତ ତାତି ଉଠେ ମୋର

ବାଜିବାରୁ ଯୁଦ୍ଧ ବାଜଣା, ଭାଇ ହେ ।

× × ×

ଯୁଦ୍ଧ ଇତିହାସ ହୋଇଲେ ପଠିତ

ଶୁଣି ବଂଶଧର ହୋଇବେ ଲଜ୍ଜିତ

ନରହନ୍ତାର କଂସେଇଖାନେ ମୁଁ

ଲେଖୁଥିଲି ବସି ରଚନା, ଭାଇ ହେ, (ରଣ ଦୁନ୍ଦୁଭି)

ତ୍ରୁଟିପୂର୍ଣ୍ଣ ବିଦେଶୀ ଶାସନର ଅପସାରଣ ପାଇଁ ସ୍ପଷ୍ଟ ଆହ୍ୱାନ ଜଣାଇ ସେ ଲେଖିଥିଲେ—

'ଦିନ ରାତି ମୋର ସେଇ ଚିନ୍ତା, ବନ୍ଧୁ ସେଇ ଚିନ୍ତା

ଏ ସରକାର ଶବ ଦାହ ହେବ କେବେ

ଦେଖିବି ମୁଁ ତାର ଶେଷ ଚିତା (୧) (ର. ଦୁ)

ଏହିପରି ବହୁ ସଙ୍ଗୀତରେ ସେ ସରକାରଙ୍କୁ କଠୋରଭାବେ ତାଚ୍ଛଲ୍ୟ ଓ ବିଦ୍ରୂପ କରିଛନ୍ତି ।

ଯଥା—

ଏ ଯେ ଗୁଣ୍ଡା ସରକାର

ଏ ଯେ ହୁଣ୍ଡା ସରକାର

ଗୁଣ୍ଡାମି ସଙ୍ଗେ ହୁଣ୍ଡାମି ତାର ନିତ୍ୟ କାରବାର । (ର. ଦୁ)

ଅଥବା—

'ଆସ ଭାଇ କାଟିବା ଖଦୁରୀ
ଏ ଶୁର୍ଣ୍ଣ ସରକାର ଘଣ୍ଟି ବଢ଼ାଇଛି
ତା ବେକରେ ମାରିବା କଟୁରୀ ।'

ବିଦେଶୀ ଦ୍ରବ୍ୟ ବର୍ଜନ ପୂର୍ବକ ସ୍ୱଦେଶୀ ଦ୍ରବ୍ୟ ପ୍ରତି ଜନସାଧାରଣ ଆଗ୍ରହାନ୍ୱିତ ହୁଅନ୍ତୁ—ଏହି ଉଦ୍ଦେଶ୍ୟରେ ସେ ରଚନା କରିଥିଲେ—

'ତୁମ ପାଖେ ଆଜି ମାଗୁଣି ଏତିକି
ଆଉ ନ ଯାଅ ସେ ବିଦେଶୀ କତିକି
ଦେଶର ଦରବ ଆଦର କର ଗୋ
ଚଳା ଭାରତର ସଇନୀ ।'

ଲବଣ ସତ୍ୟାଗ୍ରହ ସମୟରେ ସେ ରଚନା କରିଥିଲେ ନିମ୍ନୋକ୍ତ ଜନପ୍ରିୟ ପଟୁଆର ସଙ୍ଗୀତ

'ଆସରେ ଆଜି ଆସ, ଆଜି ଆସ
ଆସ ଦରିଆ ଦଖଲ କରି ଯିବ କିଏ ଆସ ।'

ପରିଚିତ ଚିତ୍ରକଳ୍ପ ଓ ପରମ୍ପରା ଭିତ୍ତିକ ଆର୍କିଟାଇପ ସମୃଦ୍ଧ ତାହାଙ୍କ ସଙ୍ଗୀତ କିପରି ସଙ୍ଗୀତ ଓ ଉଦ୍‌ବୋଧାତ୍ମକ ତାହାର ଗୋଟିଏ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରଯାଇପାରେ ।

'ସରିଗଲାଣି ସରକାରର ସରଞ୍ଜାମରେ
ସାର କାଢ଼ି ନେଇଥିଲା ଦେଶେ ଅଗାଡ଼ି ଦେଇରେ ।
ସମ୍ପଦ ଥିଲା ଭାରତ ଦଗାଦେବ ଏଥର ତ
ରଙ୍ଗାମୁହାଁ ଇଂରେଜ ହେବ ଘରମୁହାଁରେ ।
ଶାଣଦିଆ ଟାଣ ଅସି ଅଣ୍ଡାରେ ଥିଲା ସେ ଖୋସି
ଦରଫଟା ହୋଇଗଲାଣି ଯିବ ଏଣିକି ଖସିରେ ।'

କବି ଏହିପରି ଭାବେ ସାଂପ୍ରଦାୟିକ ଏକତା, ନାରୀ ଜାଗରଣ, ଅସ୍ପୃଶ୍ୟତା ବର୍ଜନ, ନିଶା ନିବାରଣ, ସତ୍ୟାଗ୍ରହୀଙ୍କ ଅନଶନ, ବାନର ସେନାଙ୍କ ଶାସ୍ତି, ଜେଲରେ ଫାଶିଦଣ୍ଡ ପ୍ରଭୃତି ପ୍ରସଙ୍ଗକୁ ଭିତ୍ତିକରି ବହୁ ସଙ୍ଗୀତ ରଚନା କରିଥିଲେ । ତାହାଙ୍କ ସଙ୍ଗୀତର ଭାଷା ଯେପରି ସହଜ, ସରଳ ସେହିପରି ତାହାର ଭାବ ସ୍ୱତଃସ୍ଫୂର୍ତ୍ତ ଓ ଅନୁଭୂତି ଉଦ୍ଭାସିତ । ସେଥିପାଇଁ ତାହା ବିଦ୍ୟୁତ ଭଳି ଶ୍ରୋତାର ହୃଦୟକୁ ଛୁଇଁ ଯାଉଥିଲା ଏହା ହିଁ ବୀରକିଶୋରଙ୍କ ସ୍ମରଣ କବିତାର ବୈଶିଷ୍ଟ୍ୟ । ସାଧାରଣ କଥ୍ୟଭାଷାର ଶୈଳୀକୁ ଅନୁସରଣକରି ସେ ଯେପରି ସଙ୍ଗୀତ ରଚନା କରିଯାଇଛନ୍ତି ତାହାର ପଟାନ୍ତର ନାହିଁ । ଏହି ଦୃଷ୍ଟିରୁ ବୀରକିଶୋର ଯଥାର୍ଥତଃ ସ୍ୱାଧୀନତାର ସ୍ମରଣ କବି ।

ଜାନକୀ ବଲ୍ଲଭ ମହାନ୍ତି (ହେବସ୍ବାନ)

● ● ●

# ଅଭିମତ

ଜାତୀୟ କବି ବୀରକିଶୋର ଦାସଙ୍କ ରଚନାବଳୀକୁ ସଂଗ୍ରହ କରି ଏକ ଗ୍ରନ୍ଥାବଳୀ ଆକାରରେ ମୁଦ୍ରଣ କରି ପ୍ରକାଶ କରିବାର ପ୍ରୟାସ କରୁଛନ୍ତି ଯେଉଁମାନେ ସେମାନଙ୍କୁ ଭୂୟସୀ ସାଧୁବାଦ୍ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ମୋର ହୃଦୟର କୃତଜ୍ଞତା ଜଣାଉଛି । ବୀରବାବୁଙ୍କ ଦେହାନ୍ତ ହେବାର ଦୀର୍ଘ ବର୍ଷ ପରେ ତାଙ୍କର ସୁଯୋଗ୍ୟ ସନ୍ତାନ ନିରଞ୍ଜନ କିଶୋର ଦାସ (ବୁଢ଼ାବାବୁ) ଓଡ଼ିଶା ରାଜ୍ୟ ବିଦ୍ୟୁତ ପରିଷଦର ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେବା ପରେ ଏ କାମରେ ମନଦେବା ଓ ଏଥିରେ ବୀରବାବୁଙ୍କ ପ୍ରିୟ ଶିଷ୍ୟ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନ ମୁଖ୍ୟ ଭୂମିକା ଗ୍ରହଣ କରି ଏପରି ଏକ ଜାତୀୟ ଗ୍ରନ୍ଥାବଳୀ ପ୍ରକାଶ କରିବାରେ ସହାୟତା କରିଥିବାରୁ ମୁଁ ତାଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି । ଜାତୀୟ ସଂଗ୍ରାମରେ ଭାରତ ଛାଡ଼ ଆନ୍ଦୋଳନ ବେଳେ ଦୋଳ ଗୋବିନ୍ଦ ଅଟକବନ୍ଦୀ ଭାବେ ଏକ ସଙ୍ଗେ ବୀର ବାବୁଙ୍କ ସହିତ କଟକ ତଥା ବ୍ରହ୍ମପୁର କେନ୍ଦ୍ର ଜେଲ୍‌ରେ ରହିଥିଲେ ଏବଂ ଜେଲ୍‌ରୁ ମୁକ୍ତିଲାଭ ପରେ ବୀର ବାବୁଙ୍କ କଟକ ସହର କାଳୀଗଳିସ୍ଥ ବାସଭବନରେ ରହି ଶିକ୍ଷା ଲାଭ କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରକାଶିତ ଶିଶୁପତ୍ରିକା "ମୋ ଦେଶ" ପତ୍ରିକାର ପରିଚାଳନା ଦାୟିତ୍ୱ ନେଇଥିଲେ । ବୀର ବାବୁଙ୍କ ସହିତ ମୋର ସଂପର୍କ ହୁଏ ୧୯୨୯ ଓ ୧୯୩୦ ମସିହାରେ । ମୁଁ ସେତେବେଳେ କଟକ ସହର ତେଲେଙ୍ଗା ବଜାରରେ ଏକ ଦୋତାଲା ଭଡ଼ା ଘରେ ଥିବା ରାମକୃଷ୍ଣ କଟେଜ ଏକ ଆଦର୍ଶ ସ୍କୁଲ ପିଲାଙ୍କ ଛାତ୍ରାବାସରେ ରହୁଥାଏ ଓ କଟକର ମୁସଲିମ୍ ସେମିନାରୀ ସ୍କୁଲରେ ପଢୁଥାଏ । ୧୯୨୯/୧୯୩୦ ମସିହାରେ କାଠଯୋଡ଼ି ନଈ ବାଲିରେ ବା କଟକ ସହରର ଅନ୍ୟତ୍ର ଯେତେ ସଭା ସମିତି କଂଗ୍ରେସ ତରଫରୁ ହେଉଥାଏ, ମୁଁ ଏବଂ ବୀର ବାବୁ ସେସବୁ ସଭାରେ ଯୋଗ ଦେଉଥିଲୁ, ସେଠି ଦେଖା ହୁଏ ଓ ଖବର ଆଦାନ ପ୍ରଦାନ ହୁଏ । ପରସ୍ପର ବନ୍ଧୁତା ବଢ଼େ । ତାପରେ ୧୯୩୦ ମସିହା ଅଗଷ୍ଟ ମାସରେ ବୀର ବାବୁଙ୍କୁ ଜେଲ୍ ଦଣ୍ଡ ହୁଏ ଓ ମୋତେ ମଧ୍ୟ ଭାରତ ରକ୍ଷା ଆଇନର କୁଇଟି ଦଫାରେ ଦୁଇଟି କେଶ୍‌ରେ ମୋତେ ପିଲା ହୋଇଥିବା ହେତୁ କୋହଳ ଦଣ୍ଡ ୨୫ ଟଙ୍କା କରି ଦୁଇଟି କେଶ୍‌ରେ ୫୦ ଟଙ୍କା ଅର୍ଥଦଣ୍ଡ ବା ଅନାଦାୟେ ୫୦ ଦିନ ଜେଲ ଦଣ୍ଡ ଭୋଗିବାକୁ ପଡ଼ିଥାଏ, ଦୁଇ ଜଣଯାକ ରାଜବନ୍ଦୀ । ସେ ଥାଆନ୍ତି ଦ୍ୱିତୀୟ ଶ୍ରେଣୀ ବନ୍ଦୀ ଓ ମୁଁ ଥାଏ ତୃତୀୟ ଶ୍ରେଣୀ ବନ୍ଦୀ । ଏ ଦୁଇ ଶ୍ରେଣୀ ବନ୍ଦୀଙ୍କୁ ଖାଇବା ରହିବା ଇତ୍ୟାଦିରେ ଟିକିଏ ତଫାତ ଥାଏ । ଦ୍ୱିତୀୟ ଶ୍ରେଣୀ ବନ୍ଦୀଙ୍କ ପିଛା ସରକାର କିଛି ଅଧିକ ଖର୍ଚ୍ଚ କରନ୍ତି । ବୀରବାବୁଙ୍କୁ କଟକ ଜେଲ୍‌ରୁ ହଜାରୀବାଗ୍ ଜେଲ୍‌କୁ ବଦଳି କରାଗଲା । ଆମର ମେଳ ଭାଙ୍ଗିଗଲା । ହଜାରୀବାଗ୍ ଜେଲ୍‌ରେ ପ୍ରଥମ ଶ୍ରେଣୀ ଓ ଦ୍ୱିତୀୟ ଶ୍ରେଣୀ ବନ୍ଦୀଙ୍କ ରହିବା ଖାଇବାର ବିଶେଷ ବ୍ୟବସ୍ଥା ସରକାର କରିଥାନ୍ତି ।

୧୯୩୧ ମସିହାରୁ ୧୯୪୮ ମସିହା ଯାଏ, ମୁଁ ଜଣେ କଂଗ୍ରେସର ମୁଖ୍ୟ ସଂଗଠକ ଥିଲି । ୧୯୩୦ ମସିହା ଠାରୁ କଂଗ୍ରେସ ଛାଡ଼ିବା ଯାଏ, ପ୍ରଦେଶ କଂଗ୍ରେସର ଜଣେ ନିର୍ବାଚିତ ପ୍ରାଦେଶିକ କଂଗ୍ରେସ କମିଟି ସଭ୍ୟ ଥିଲି । କଟକ ସ୍ୱରାଜ ଆଶ୍ରମ ଦୋତାଲା ଘରର ବାରଣ୍ଡାରେ ଥିବା ଗୋଟିଏ ଛୋଟ ଘରେ ରହୁଥିଲି । ସେହି ରୁମ୍‌କୁ ଲାଗି ଗୋଟିଏ ବଡ଼ ରୁମ୍ । ହଜାରୀବାଗ୍ ଜେଲ୍‌ରେ ରହି ଫେରି ଥିବା ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ

ବନ୍ଦୀଙ୍କ ରହିବା ଓ ଖାଇବା ଇତ୍ୟାଦିର ବିଶେଷ ବ୍ୟବସ୍ଥା କରଯାଇଥାଏ । ମୁଁ ୧୯୩୧ ମସିହାରୁ ୧୯୪୮ ମସିହା ଯାଏ କଂଗ୍ରେସର ଜଣେ ସଂଗଠକ ହିସାବରେ ସ୍ୱରାଜ୍ୟ ଆଶ୍ରମର ଦୋତାଲା ମୁଖ୍ୟ ଘରର ବାରଣ୍ଡାରେ ଥିବା ଗୋଟିଏ ରୁମ୍‌ରେ ରହୁଥାଏ । ସେହି ରୁମ୍‌କୁ ଲାଗି ଅନ୍ୟ ଘରଟିରେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ ମଧ୍ୟ ରହୁଥିଲେ । ବୀରବାବୁ ମଝିରେ ମଝିରେ ଆସି କଂଗ୍ରେସ ସଂଗଠନ ବିଷୟରେ ଆମ ଦୁଇ ଜଣଙ୍କ ସହ ଆଲୋଚନା କରୁଥିଲେ । ବୀ'ଛଡ଼ା ବୀରବାବୁ ଯେଉଁ ସବୁ ଜାତୀୟ ସଂଗୀତ ରଚନା କରୁଥିଲେ, ମୁଁ ସେହି କବିତାର ସ୍ୱର ସଂଯୋଜନା କରୁଥିଲି । ଆଉ କେତେକ କବିତାର ସ୍ୱର ଆମର ସାଥୀ ସଂଗ୍ରାମୀ ମାଣିକ ଘୋଷ୍ ବଜାରର ଅଦ୍ୱୈତ ବଲ୍ଲଭ ରାୟ କରୁଥିଲେ । ୧୯୪୭ରେ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ୧୯୩୬ ମସିହାରେ କଟକ ଜିଲ୍ଲା ବୋର୍ଡ଼ର ନିର୍ବାଚନ ହୁଏ । କଟକ ଜିଲ୍ଲା ବୋର୍ଡ଼କୁ ଜଗତସିଂହପୁରରୁ ନିର୍ଦ୍ୱନ୍ଦରେ ବୀରବାବୁ ସଭ୍ୟ ନିର୍ବାଚିତ ହୁଅନ୍ତି । କଟକ ସଦର ଲୋକାଲ ବୋର୍ଡ଼ର ସେ ଚେୟାରମ୍ୟାନ୍ ଓ ମୁଁ ଭାଇସ୍ ଚେୟାରମ୍ୟାନ୍ ନିର୍ବାଚିତ ହେଲୁ । ସେତେବେଳକୁ କଟକ ସଦର ଲୋକାଲ୍ ବୋର୍ଡ଼ ଅଧୀନରେ ପ୍ରାୟ ୧୭୦୦ ପ୍ରାଇମେରୀ ସ୍କୁଲ,ଗ୍ରାମ୍ୟ ରାସ୍ତା, ଡାଇନ୍ ହାଉସ୍, କୂପ ଖନନ ଇତ୍ୟାଦିର ପରିଚାଳନା ଦାୟିତ୍ୱ ଥିଲା । ବୀର ବାବୁଙ୍କର, ମୋର ସାଧୁତା ଏବଂ ଦକ୍ଷତା ଉପରେ ଏପରି ଅଟଳ ବିଶ୍ୱାସ ଥିଲା ଯେ, ଲୋକାଲ୍ ବୋର୍ଡ଼ ଅଫିସର ସମସ୍ତ ପରିଚାଳନା ସଂପର୍କୀୟ ଫାଇଲ୍‌କୁ ମୋ ପାଖକୁ ଦେଇ ଦିଅନ୍ତି । ସନ୍ତକମିନ୍ ଚଳନ କାର୍ଯ୍ୟ ପ୍ରାୟ ମୋ ଉପରେ ଛାଡ଼ି ଦିଅନ୍ତି । ନିହାତି ଆବଶ୍ୟକ ନ ପଡ଼ିଲେ ସେ ପ୍ରାୟ ଗସ୍ତରେ କ୍ୱଚିତ୍ ଯାଉଥାନ୍ତି । ଲୋକାଲ୍ ବୋର୍ଡ଼ର କାମ କରିବା ସଙ୍ଗେ ସଙ୍ଗେ କଂଗ୍ରେସର ସାଂଗଠନିକ କାର୍ଯ୍ୟ ସମସ୍ତ ସବ୍‌ଡ଼ିଭିଜନ୍ ଓ ଜିଲ୍ଲାର ଅନ୍ୟତ୍ର ଚଳାଇବାକୁ ହୁଏ ।

କଂଗ୍ରେସ ଦଳ ମଧ୍ୟରେ ଅନ୍ୟ କୌଣସି ସଂଗଠିତ ଦଳ କାର୍ଯ୍ୟ କରିପାରିବ ନାହିଁ ବୋଲି ନିଷ୍ପତ୍ତି କରିବା ପରେ, କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଯେଉଁମାନେ କଂଗ୍ରେସ ଭିତରେ ଥିଲେ, ସେମାନେ କଂଗ୍ରେସର ସାଂଗଠନିକ ପ୍ରତିନିଧିତ୍ୱ ତ୍ୟାଗ କଲେ ।

ବୀର ବାବୁଙ୍କ ରଚିତ 'ରଣ ଭେରୀ' ଓ 'ରଣ ଦୁନ୍ଦୁଭି' ବହି ଦୁଇଟି ଇଂରେଜ ସରକାର ବ୍ୟାଜାପ୍ତି କରିଥିଲେ । ସେହି ବହିପାଇଁ କଟକର ସ୍ୱରାଜ ଆଶ୍ରମ ଓ ମୋ ଘର ଏକାଧିକବାର ପୋଲିସ ଖାନତଲାସ୍ କରିଛନ୍ତି । ଏ ବହି ଦୁଇଟି ଛଡ଼ା ଆହୁରି 'ମୋହନ ବଂଶୀ' 'ବକୁଳ ବନର ଗୁମ୍ଫା' 'ଶାନ୍ତି ଦୂତ' ଇତ୍ୟାଦି ବହିର ରଚନା କରି ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ସତ୍ୟାଗ୍ରହୀ ଓ କର୍ମୀମାନଙ୍କୁ ଉଦ୍‌ବୁଦ୍ଧ କରିଛନ୍ତି । ପ୍ରେରଣା ଦେଇଛନ୍ତି ।

ସାରା ଭାରତରେ ହାହାକାର ଆମେ
ପକାଇ ଦେବୁ, ପକାଇ ଦେବୁ,
ଗୋରା ବେପାରୀଙ୍କୁ ଏପାରି ସେପାରି
ନଚାଇ ଦେବୁ, ନଚାଇ ଦେବୁ ।

ପୁଣି—

ଅରୀ ଫେରି ନାହିଁ, ଯୁଦ୍ଧ ସରି ନାହିଁ
ଆସ ମୋ ଶିବିରେ ଆସ ଭାଇ

ଗୀତ ଗୁଡ଼ିକ କର୍ମୀମାନଙ୍କ ମନରେ ଉନ୍ମାଦନା ସୃଷ୍ଟି କରୁଥିଲା । ଏସବୁ ଗୀତ ଏତେ ଲୋକପ୍ରିୟ ହୋଇଥିଲା ଯେ, ସେତେବେଳେ ଗାଁ ଗହଳିରେ ପ୍ରସାର ଲାଭ କରିଥିଲା ।

ଜାତୀୟ କବି ବୀରକିଶୋର ତାଙ୍କ ଜାତୀୟ ସଂଗୀତ ପାଇଁ ତାଙ୍କ ସ୍ଥୂଳ ଶରୀରରେ ଆମମାନଙ୍କ ମଧ୍ୟରେ ନଥିଲେ ମଧ୍ୟ ଏବେ ମଧ୍ୟ ତାଙ୍କ ସୂକ୍ଷ୍ମ ଶରୀର ଆମମାନଙ୍କ ମଧ୍ୟରେ ତାଙ୍କ ସ୍ମୃତି ଓ ଜୀବନ ବୃତ୍ତାନ୍ତ ମନେ ପକାଇ ଦେଉଛି । ତାଙ୍କ ଲେଖାମାନ ଆମ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରୁଛି । ତାଙ୍କର ସବୁ ଲେଖା ଗୋଟିଏ ଗ୍ରନ୍ଥାବଳୀରେ ମୁଦ୍ରିତ ହୋଇ ରହିଲେ ଭବିଷ୍ୟତରେ ଆମର ବଂଶଧରଙ୍କ ପାଇଁ ସେ ଅମର ହୋଇ ରହିବେ ।

ଆନନ୍ଦ ବେହେରା
ତା ୨ । ୫ । ୯୬ ରିଖ
ବୀର ବାବୁଙ୍କ ସହକର୍ମୀ, ପରମ ବନ୍ଧୁ,
ସ୍ୱାଧୀନତା ସଂଗ୍ରାମୀ ଓ ଚୌଦ୍ୱାର
ନିର୍ବାଚନ ମଣ୍ଡଳୀର ପୂର୍ବତନ ବିଧାୟକ

ପ୍ଲଟ ନଂ—୨୨୯, ବାପୁଜୀ ନଗର
ଭୁବନେଶ୍ୱର—୭୫୦ ୦୦୯
ଜିଲ୍ଲା—ଖୋର୍ଦ୍ଧା

# ଜାତୀୟ କବି ବୀରକିଶୋର

ଜାତୀୟ କବି ବୀରକିଶୋରଙ୍କ ସମଗ୍ର ସାହିତ୍ୟ କୃତିକୁ ସଙ୍କଳିତ କରିବା ଏକ ଗୌରବର ବିଷୟ । ଓଡ଼ିଆ ଜାତି ଓ ସାହିତ୍ୟକୁ ତାଙ୍କ ଅବଦାନ ଅତୁଳନୀୟ । ସେ ଏକାଧାରରେ ଜଣେ ଦେଶପ୍ରେମିକ, ମାନବବାଦୀ, ଗାନ୍ଧୀ ଦର୍ଶନବାଦୀ ଅଥଚ ଉଗ୍ର ଜାତୀୟବାଦୀ କବି ଥିଲେ । ତାଙ୍କ ରଚିତ ଗୀତି କବିତାଗୁଡ଼ିକ ମଧ୍ୟରୁ କେତେକ ପୁସ୍ତକାକାରରେ ଛପା ଯାଇଛି । ଶିଶିର ବିନ୍ଦୁ, ନାଉପୁଲ, ଶଙ୍ଖଚିଲ, ବସନ୍ତ ବନ୍ଧୁ, ଶତପତ୍ର, ପକ୍ଷୀ କୁମାର, ଶରତ୍‌ସଖା ନାମକ ତାଙ୍କର କେତେକ ଗୀତି କବିତା ଅଛି । ସେ ତିନିଶହରୁ ଅଧିକ ଗୀତି କବିତା ରଚନା କରିଥିଲେ ଆଠ ନଅ ବର୍ଷ ମଧ୍ୟରେ ।

ମୋହନ ବଂଶୀ, ରଣଦୁନ୍ଦୁଭି, ରଣଭେରୀ, ବିଦ୍ରୋହୀ ବୀଣା, ଫୁଲ ଚନ୍ଦନ, ସ୍ମୃତି କଣିକା, ସାତଦୀପ— ଏଗୁଡ଼ିକ ତାଙ୍କର କବିତା ସଙ୍କଳନ ପୁସ୍ତକ । ସମର ଯୁଗର ଅମର ସଂଗୀତ, ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ, ଶାନ୍ତିଦୂତ, ବକୁଳବନର ଗୁରୁ—ଏ ଗୁଡ଼ିକ ତାଙ୍କର ଗୀତିକାବ୍ୟ ଧର୍ମୀ (ବାଲାଡ଼) କବିତା । 'କବିର ଛବି' ତାଙ୍କ ରଚିତ ସାମାଜିକ ନାଟକ । ଏହା ବ୍ୟତୀତ ତାଙ୍କର ଭଜନ, ଶୋକଗୀତି, ଶିଶୁ ସାହିତ୍ୟ ଓ କେତେକ ଗଦ୍ୟ ରଚନା ମଧ୍ୟ ଅଛି । ଇଂରେଜ ସରକାର ତାଙ୍କ ଘରକୁ ବହୁବାର ଖାନତଲାସ କରିଥିଲେ । ଯଦ୍ଵାରା ତାଙ୍କର ବହୁ ରଚନା ନଷ୍ଟ ହୋଇଯାଇଛି ।

ଓଡ଼ିଆ ସାହିତ୍ୟରେ କବି ବୀରକିଶୋର 'ଜାତୀୟ କବି' ଭାବରେ ସମ୍ମାନିତ ହୋଇ ଆସିଛନ୍ତି । ୧୯୩୦ ମସିହାରେ ଘଟିଥିବା ଲବଣ ସତ୍ୟାଗ୍ରହପାଇଁ ତାଙ୍କ ରଚିତ କବିତା ଥିଲା ଜାଗରଣର ମନ୍ତ୍ର । ସେଇ ସମୟରୁ ତାଙ୍କୁ 'ଜାତୀୟ କବି' ଭାବରେ ଆଖ୍ୟାତ କରଯାଉଛି । ତାଙ୍କର ସାହିତ୍ୟ କୃତିକୁ ଦୁଇ ଭାଗରେ ବିଭକ୍ତ କରଯାଇପାରେ ଯଥା—ପ୍ରାକୃତିକ କବିତା ଓ ବିପ୍ଳବ କବିତା ।

ସେ ନିଜେ କହିଛନ୍ତି, "ମୁଁ କବିତାକୁ ଭଲପାଏ ଓ କବିତା ମତେ ଭଲପାଏ ।" ଉକ୍ତିଟି ବଡ଼ ମଧୁର । ସେ ଜନ୍ମ ହୋଇଥିଲେ ଏକ ସୁନ୍ଦର ପ୍ରାକୃତିକ ପରିବେଶ ଭିତରେ ଯାହା ତାଙ୍କ ପ୍ରାଣରେ କାବ୍ୟିକ ଚେତନା ଭରି ଦେଇଥିଲା । ଜଗତସିଂହପୁର ଜିଲ୍ଲାର ପୁନଙ୍ଗ ଗ୍ରାମରେ ୧୮୯୬ ମସିହାରେ ଏକ ମଧ୍ୟବିତ୍ତ ଜମିଦାର ପରିବାରରେ ବୀରକିଶୋର ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଗୋପାଳ ଦାସ ତାଙ୍କୁ ଅଢ଼େଇ ବର୍ଷ ବେଳେ ସେ ମାତୃହରା ହେଲେ ।

ପୁନଙ୍ଗ ବା ପୂର୍ଣ୍ଣଗ୍ରାମ ଏକ ନଈ କୂଳିଆ ଗାଁ । ଗାଁର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋହର । ଗାଁର କୋଇଲି, କୁମ୍ଭାଟୁଆ, କଜଳପାତିଙ୍କ ପରି ଗାଁ ପିଲାଏ ସ୍ଵାଧୀନ । ବର ଓହଳରେ ଦୋଳି ଖେଳି, ନଈରେ ସିର୍ଙ୍ଘ ବୁଡ଼ା

ନାଲି ମେଘ ଛାଇ ଯାଇଛି ମିଳାଇ
ଶୁଭୁଛି ଚକୋର କାନ୍ଦ ।”

ପଦ୍ମର ବିରହ ଲଗ୍ନ କିନ୍ତୁ କୁମୁଦର ଅଭିସାର ଲଗ୍ନ । ସରଗ ଗଚ୍ଛର ରାଜକୁମାର ଚନ୍ଦ୍ର ଆସିବେ ବୋଲି 'କୁମୁଦରାଣୀ' ଅଭିସାରିକା ସାଜିଛି ।

"ଶ୍ୟାମଳ ଶେଯରେ କୁମୁଦ ବାଳୀ
ହାତେ ଧରି ବାସ ଚନ୍ଦନ ଥାଳି
ଆସିବେ ବୋଲି ତା ଜୀବନ ମାଳୀ
ବସିଛି ପ୍ରବୁଦ୍ଧେ ଗୁହିଁ
ଆଶା ଅଛି ତାର ପିନ୍ଧି ଜ୍ୟୋସ୍ନାହାର
ସଂସାର କରିବା ପାଇଁ ।

ଏହି ପ୍ରେମ ପ୍ରଣୟର ଗୀତିକା କବିଙ୍କ ନୈସର୍ଗିକ ଭାବିୟକ ମାନସର ପରିଚୟ ଦିଏ । ଏହିପରି ଏକ ପ୍ରଣୟ ମଧୁର କବିତା ତାଙ୍କ ଲିଖିତ ସାମାଜିକ ନାଟକ କବିର ଛବିରେ ଦେଖାଯାଏ । ନାୟିକା କଣ୍ଠରେ ଏଇ ଗୀତଟି ଦିଆଯାଇଛି—

"ମୁଁ ତ ଜାଣେନା ଜାଣେନା କାହିଁକି
ସ୍ମୃତି ପଲ୍ଲୁଆରେ ସାଇତିଛି ତା'ରେ
ପଢିଲି ଭେଟରେ ରୁହିଁକି ।

ଏଇ କବିତାଟି ✓ ମାୟାଧର ମାନସିଂହଙ୍କର ପ୍ରଣୟ ମଧୁର କବିତା ପରି ଅତ୍ୟନ୍ତ ହୃଦୟସ୍ପର୍ଶୀ । କବି ଜେଲରେ ଥାନ୍ତି । ଘର କଥା ଭାବି ବ୍ୟଥିତ । ଜେଲ ସାଥୀମାନଙ୍କର ବିରହ ବେଦନାର କଥା ଶୁଣୁଥାନ୍ତି । ସେଇ ବିରହ ବ୍ୟଥାକୁ ନେଇ ସେ ଲେଖିଲେ—

"କହନା କହନା ବନ୍ଧୁ ସେ କଥା ମୋତେ
ହେଲ ନଥିବ ସେ ବ୍ୟଥିତ କେତେ
ସକାଳରୁ ସଂଜ, ସଂଜରୁ ସକାଳ
ପିଇଙ୍କ କବାଟ ଘରର ଜଞ୍ଜାଳ
ଶାଢୁଥିବ ତାର କୋମଳ ଚିତେ ।

× × × ×

କବିତାର ଶେଷ ଧାଡ଼ିଟିରେ କବିପ୍ରାଣର ସକଳ ବିଧିର ଭବନା ରୂପାୟିତ ହୋଇଛି । ଏହା କେବଳ ତାଙ୍କର ନୁହେଁ ଜେଲ ବନ୍ଧୁମାନଙ୍କର ବିରହ ବେଦନାର ପ୍ରକାଶ । ଏହା ଏକ ସଂବେଦନଶୀଳତାର ପରିଚୟ । ମାଘ ପୂର୍ଣ୍ଣିମା ଦିନ ଅଗ୍ନି ଉତ୍ସବ ହୁଏ । କବି 'ଅଗ୍ନି ଉତ୍ସବ' କବିତା ରଚନା କଲେ ।

ଫୁଟି ପଡ଼େ ଜ୍ୟୋସ୍ନାଫୁଲ ଚୌଦିଗ ଉଷେ ଧଳ
ହସୁଛନ୍ତି ଲକ୍ଷ ତାରା ହୋଇ ଆତୁହର ।
ସୁନୀଳ ଗଗନ ତଳେ
ଚଞ୍ଚଳ ଦଳେ ଦଳେ
ଉଡ଼ିଉଡ଼ି ପିଉଛନ୍ତି ନବ ଜ୍ୟୋତି ଝର
କୁମୁଦିନୀ ଘରେ ଆଜି ମହୋତ୍ସବ ପର । (ଅଗ୍ନି ଉତ୍ସବ)

କବି ପୁନେଇ ରାତିରେ ଜ୍ୟୋସ୍ନା ଦୁଆର ଦେଖି ଆତୁହର । ଅଗ୍ନି ଉତ୍ସବ ଶେଷ ହେଲ । ଶୀତ ସରିଲ ବସନ୍ତ ଆସିବ । ଧୀରିର ମଳୟ ବହିବ । କେତକୀ ଫୁଲ ଫୁଟିବ, ବୃକ୍ଷରେ ନବ ପଲ୍ଲବ ଢର୍ଷିବ, କୋଇଲି ମଙ୍ଗଳଗାନ କରିବ । ଋତୁରାଜ ବସନ୍ତଙ୍କର ଅଭିଷେକ ହେବ । ଏସବୁକୁ କବି ଲେଖିଛନ୍ତି—

"ସୁବାସେ ଉଛୁଳି ପଡ଼େ କେତକୀ ପସରା
ପଲ୍ଲବ ପତାକା ମାଳ ବନଯାକ ମରା
ମଳୟ ଡଗର ଆସି
ଟିଟାଉ ଦେଉଛି ହସି
ଏବେ କେବେ ଋତୁରାଜ ଅଭିଷେକପର,
କାଲିଠୁ ଗଲଣି ଦେଇ କୋଇଲି ନାଗରା ।

ଏହା ମଧ୍ୟଯୁଗୀୟ ସାହିତ୍ୟ ରୀତି । କବି ବସନ୍ତ ଉତ୍ସବକୁ ସେଇ ମଧ୍ୟଯୁଗୀୟ ଚିନ୍ତନକୁ ଅନୁସରଣ କରି ବର୍ଣ୍ଣନା କରିଥିବା ଜଣାଯାଏ । କିନ୍ତୁ କବି 'ବସନ୍ତ ବନ୍ଧୁ' ବୋଲି ଗୋଟିଏ କବିତା 'କୋଇଲି'କୁ ଉପଲକ୍ଷ୍ୟ କରି ଲେଖିଛନ୍ତି । କୋଇଲି ଏକ ଦରଦୀବନ୍ଧୁ ରୂପେ ବର୍ଣ୍ଣିତ ହୋଇଛି । କବି ଲେଖିଛନ୍ତି "ମୋ ନବ ବସନ୍ତେ ପାଇବ ନଥିଲି ବନ୍ଧୁ କଏଣ ତୋହ ସମ ।" ପଂକ୍ତିଟି କବି ହୃଦୟର ନିଷ୍କପଟ ସହୃଦୟତାର ନିଦର୍ଶକ ।

ତାଙ୍କର ପିଲାଦିନର କଥା 'ସବୁଜ ସାଥୀ'ରେ ଦୃଷ୍ଟିଗୋଚର ହୁଏ । ତାଙ୍କ ପିଲାଦିନର ସାଥୀ ବନ୍ଧୁଆ । ତା ସହିତ ବନ୍ଧୁତା କରିଥିବାରୁ କବିଙ୍କୁ ବହୁ ବାଧାର ସମ୍ମୁଖୀନ ହେବାକୁ ହୋଇଥିଲା । ବନ୍ଧୁଆ ଅଛବ । ସେଇ କଥା କବିଙ୍କୁ ଏତେ ବ୍ୟଥିତ କରିଥିଲା ଯେ ସେ ତାହା ଭୁଲି ପାରି ନଥିଲେ । ବନ୍ଧୁଆ ଓ ତା ବାପା ମଧୁଆ ଦୁହେଁ ଗାଁ ଛାଡ଼ି କଲିକତା ଚାଲିଯାଇଥିଲେ । ସେ କରୁଣ ଦୃଶ୍ୟ କବିଙ୍କ ପ୍ରାଣକୁ ବିଦୀର୍ଣ୍ଣ କରିଥିଲା । ସେ ସବୁକୁ ନେଇ ସେ କବିତା ରଚନା କରିଛନ୍ତି ଯାହା 'ସବୁଜ ସାଥୀ'ରେ ସଙ୍କଳିତ ହୋଇଛି ।

୧୯୩୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଦୀର୍ଘ ସତର ବର୍ଷକାଳ କବି କେବଳ ଏକ ବିପ୍ଳବର ସ୍ୱର ଉଚ୍ଚାରଣ କରିଛନ୍ତି । ସେ ନିର୍ଭୀକ ସୈନିକଙ୍କର କୃତିକୁ ଆଲୋଚନାରେ ସୀମିତ କରିବା ଦୁଃସାଧ୍ୟ । କିଏ ତାଙ୍କୁ ଜାତୀୟ କବି କୁହେ, କିଏ ବିପ୍ଳବୀ କୁହେ । ମୁଁ ତାଙ୍କୁ କହେ ଦୁର୍ମଦ ସୈନିକ । ସେ ନିଜେ କହିଥିଲେ ମୁଁ ଜାତୀୟ କବି ନୁହେଁ, ମୁଁ ସେ ସୈନିକ ପରି ମୁକ୍ତିର ମଶାଲ ଧରି, ବଜ୍ର ଘୋଷରେ ରାଜ କରି କରି ଅବାରିତ ଗତିରେ ସ୍ୱାଧୀନତା ପଥରେ ଆଗେଇ ଚାଲିଥିଲେ । ତାଙ୍କ ଲେଖନୀରୁ ଆଉ ଧାଡ଼ିଏ—

ଦେଇ, ଦଣ୍ଡାରେ ବାଗୁଡ଼ି ଖେଳି, ନଟିଲ୍ଲ କୋଳି ତୋଳି, ପୋଖରୀରୁ ନୀଳକଇଁ ନାଲିକଇଁ ତୋଳି, ଓଷା ବ୍ରତରେ ମାଙ୍ଗି ପିଇଲ୍ଲ ଜୀବନ କିପରି କଟେ କେବଳ ଅନୁଭବୀ ଜାଣେ । ଜୀବନର ଯେକୌଣସି ଅଧ୍ୟାୟରେ ଯେ କୌଣସି ସ୍ଥାନରେ ଏ ସ୍ମୃତି ମନକୁ ଚହଲାଇ ଦିଏ । ୧୯୪୩ ମସିହା କବି ସେତେବେଳକୁ ପୌଢ଼–ହଜାରିବାଗ ଜେଲରେ ଥାନ୍ତି । ଗାଁ କଥା ମନେ ପଡ଼ିଥିଲା । ସେ ରଚନା କଲେ 'ଆମ ଗାଁ' କବିତା । ଏକଦା ସେ କହିଥିଲେ ଆମ ଗାଁ ମତେ ଭାରି ଭଲ ଲାଗେ । ବର୍ଷା ଛାଡ଼ି ଯାଇଥିବ ସଂଧ୍ୟା ନଇଁ ଆସୁଥିବ । ଓଦା ଘରରୁ ଧୂଆଁ ଉଠୁଥିବ, ନାଉଫୁଲ ଫୁଟି ଦାଉ ଦାଉ ଦିଶୁଥିବ, ଏସବୁ ଦେଖିବାକୁ ମତେ ଭାରି ଭଲ ଲାଗେ ।" ମନେ ହୁଏ ଅଳକା କୂଳିଆ ଗାଁଟିର ଶାନ୍ତ ସବୁଜ ପରିବେଶ ବୀରକିଶୋରଙ୍କୁ କବି କରି ଗଢ଼ିଛି ।

ବୀରକିଶୋର ଭିକ୍ଟୋରିଆ ହାଇସ୍କୁଲରେ ଛାତ୍ର ଥାନ୍ତି । ତାଙ୍କର ଶିକ୍ଷକ ଭକ୍ତକବି ମଧୁସୂଦନଙ୍କୁ ସେ ପଚାରିଲେ, ମୁଁ କିପରି କବି ହେବି ? ମଧୁସୂଦନ ମଧ୍ୟ ତାଙ୍କୁ କହିଥିଲେ, "ତୁମେ ଦିନେ କବି ହେବ ।" ସେଇଦିନୁ ତାଙ୍କ ଭିତରେ କାବ୍ୟିକ ଚେତନା ସୃଷ୍ଟି ହୋଇଥିଲା । ପ୍ରଖ୍ୟାତ ଲେଖକ ନାରାୟଣ ମୋହନ ଦେ ମଧ୍ୟ ତରୁଣ ବୀରକିଶୋରଙ୍କ ଶିକ୍ଷା ଗୁରୁ ଥିଲେ । ସେ ତାଙ୍କୁ କବିତା ଲେଖିବାପାଇଁ ପ୍ରେରଣା ଦେଇଥିଲେ । ତାଙ୍କରି ଉତ୍ସାହ ଓ ପ୍ରେରଣା ପାଇ ବୀରକିଶୋର ଇଂରାଜୀରୁ ଦୁଇଧାଡ଼ି କବିତା ଅନୁବାଦ କରିଥିଲେ ।

ଟୋପି ଟୋପି ପାଣି ମିଶି ସାଗର<br>
ଟିକିଟିକି ବାଲି ମିଶି ଭୂଧର

ଏହା ତତ୍‌କାଳୀନ ମୁକୁର ପତ୍ରିକାରେ ପ୍ରକାଶିତ ହୋଇଥିଲା । ସାଥୀମାନେ ତାଙ୍କୁ ଥଟ୍ଟାକରି କହିଲେ, 'ବୀର କବି" । କବି ବୀରକିଶୋରଙ୍କ ଜନ୍ମ ଏଇ ସମୟରୁ ତରୁଣ କବିଙ୍କୁ ସେତେବେଳେ ୧୬ ବର୍ଷ ବୟସ । କାର୍ତ୍ତିକ ପୂର୍ଣ୍ଣମିର ପାହାନ୍ତା ଦୂବ ଘାସ ଉପରେ ପଡ଼ିଛି ଶିଶିର ବିନ୍ଦୁ । କବି ତାକୁ ଦେଖି ଭାବବିହ୍ୱଳ ହୋଇପଡ଼ିଥିଲେ । ଶିଶିର ବିନ୍ଦୁକୁ ଉପଲକ୍ଷ୍ୟ କରି ସେ ଲେଖିଲେ–

କେଉଁ ଦୂରଦେଶେ ବଂଟୋଇ ଘରରେ<br>
କେଣେ ଯିବୁ ମତେ କହ<br>
ଗଚ୍ଛିତ ପାହୁଛି ତରବର କିଆଁ<br>
ସାଥୀ ହୋଇ ଯିବା ରହ । (ଶିଶିର ବିନ୍ଦୁ)

ଏଇଟି ତାଙ୍କର ପ୍ରଥମ କବିତା । ଏହାପରେ ସେ ଅନେକ ଗୁଡ଼ିଏ ପ୍ରକୃତି କବିତା ରଚନା କରିଛନ୍ତି । କିନ୍ତୁ ଦେଶମାତୃକାର ଆହ୍ୱାନରେ ତାଙ୍କୁ ବାରମ୍ବାର ଜେଲ ଯିବାକୁ ପଡ଼ୁଥିଲା । ସେ ସଂଗ୍ରାମୀ ଜୀବନ ଯାପନ କରିଥିଲେ । ତଥାପି ତାଙ୍କର ସୁଲଳ ସୁନ୍ଦର କବିତା ରଚନା ଶିଥିଳ ହେଇ ନାହିଁ କି ପଲ୍ଲୀପ୍ରାଣ ତାର ବିସ୍ମୃତ ଘଟିଲା ନାହିଁ । ସେ ଲେଖିଛନ୍ତି 'ମୋ ଗାଆଁ' କବିତା—

"ଜନନୀ ଜନମ ଭୂଇଁ ଏଇ ମୋର ଗାଆଁ<br>
ମହୁରୁ ମଧୁର ଲାଗେ ମୋତେ ତାର ନାଆଁ । (ମୋ ଦେଶ–୨ୟ ବର୍ଷ ୪ର୍ଥ ସଂଖ୍ୟା)

କବିଙ୍କ ପ୍ରକୃତି କବିତା ମଧ୍ୟରୁ ଅନ୍ୟତମ କବିତା 'ବର୍ଷା' । ପ୍ରକୃତି କବି ଯଥାନାମ, ଇଂରେଜ କବି W. Wordsworthଙ୍କ ପରି ବାଉଳିଶୋର ମଧ୍ୟ ପ୍ରକୃତିର ବିଚିତ୍ର ଶୋଭା ଦର୍ଶନକରି ଉଲ୍ଲସିତ ହୋଇଉଠିଛନ୍ତି । ଆକାଶରୁ ବର୍ଷା ଝରୁଛି ଝରଝର । କବି ତନ୍ମୟ ହୋଇ ଲେଖିଲେ—
ବର୍ଷା କବିତା—

"ଝୁମୁ ଝୁମୁ ଶୁଭେ କାର ଝୁମୁକି ଲଠାଉ
ଦୁମୁ ଦୁମୁ ନାଚେ କିଏ ହୋଇ ଦାଉଦାଉ
ଧଉ ଦେବୀ ଘରେ କିଆଁ ମାରନ୍ତି ପିଠାଉ
ଘରିଆଢ଼େ ବଣା ହୁଏ କା ଶୁଭ ଚିଟାଉ ।"

ବର୍ଷା ଝରୁଛି । ବର୍ଷାର ସ୍ୱରକୁ "ମେଘ ବରଷିଲ ଟୁପୁରୁ ଟୁପୁରୁ" ବୋଲି ପିଲାଏ ଗୀତ ବୋଲନ୍ତି । କବି ସେଇ ସ୍ୱରକୁ 'ଝୁମୁ ଝୁମୁ' ଶବ୍ଦ ବୋଲି ମନେ କରିଛନ୍ତି । ବର୍ଷା ସାଙ୍ଗକୁ ଘଡ଼ଘଡ଼ି ମାରୁଛି । କବି କଳ୍ପନା କରିଛନ୍ତି ମେଘ ରୂପକ ନଟୀ ଆକାଶରେ ଦୁମୁଦୁମୁ ହୋଇ ନାଚୁଛି ।

କବିଙ୍କର ପଲ୍ଲୀପ୍ରାଣ ତାର ଆଉ ଏକ ନିଦର୍ଶନ 'ଜହ୍ନିଫୁଲ' କବିତା । ଆଶିଣ ମାସ ଖରା ମଉଳି ଯାଏ । ବେଳ ଗଡ଼ିପଡ଼େ । ସାଂଧ୍ୟ ଲଗ୍ନରେ ସରଗ ତରାପରି ଜହ୍ନିଫୁଲ ଫୁଟିଉଠେ । ଜହ୍ନି ଫୁଲକୁ ଦେଖି କବି ବିଭୋର ହୋଇ ପଡ଼ିଛନ୍ତି । କିନ୍ତୁ କବି ବଡ଼ ନକଲିଆ । ସେ ଜହ୍ନି ଫୁଲକୁ ଗୋଟିଏ ଠାପେଇ ଝିଅ ସଙ୍ଗେ ତୁଳନା କରି ଯାଇଛନ୍ତି 'ଏଇ ଠାପେଇ ଝିଅଟା, ଦିନଯାକ ଶୋଇ ଶୋଇ ସଂଜବେଳକୁ ଉଠୁଛି ।

ସେ ଲେଖିଲେ—

"ଜହ୍ନିଫୁଲ ବାଳୀ ଅଟେ ଅତ୍ୟନ୍ତ ଠାପୋଇ
ବେଳ ବୁଡ଼ଟାରେ ଉଠେ ଦିନ ଯାକ ଶୋଇ ।"

ଏଇପରି ନକଲିଆ କଥା କହିବା ପିଲାଦିନୁ ତାଙ୍କର ସ୍ୱଭାବ । ସ୍କୁଲରେ ପଢ଼ୁଥାନ୍ତି । ପରିଦର୍ଶକ ସ୍କୁଲକୁ ଆସିଲେ । ସେ ବାଉଳିଶୋରଙ୍କୁ ପଚାରିଲେ 'ହ୍ୱାଟ ଇଜ୍ ଇଓର ନେମ ?' ବାଉଳିଶୋର ଉତ୍ତର ଦେଲେ ମାଇଁ ନେମ ଇଜ ହିରେ ଇନଫାଣ୍ଡ ଏହା ହିଁ ତାଙ୍କର ବକ୍ରୋକ୍ତି ପ୍ରାଣତା ।

ପ୍ରକୃତି ପ୍ରେମୀ କବି କେବଳ ଜହ୍ନିଫୁଲକୁ ଦେଖି କବିତା ରଚନା କରିନାହାନ୍ତି । ପଦ୍ମଫୁଲ ଓ କଇଁଫୁଲକୁ ମଧ୍ୟ ଉପଲକ୍ଷ୍ୟ କରି କବିତା ରଚନା କରିଛନ୍ତି । ସଂଧ୍ୟା ବେଳକୁ ଜହ୍ନିଫୁଲ ଫୁଟିଲା, ହେଲେ ପଦ୍ମଫୁଲ ମଉଳିଲା ପୁଣି କଇଁଫୁଲ ହସି ଉଠିଲା ଓ ଚକୋର ଚକୋରୀ ବିଳାପ କରିଉଠିଲେ । ସାଂଧ୍ୟ ଲଗ୍ନରେ ଏ ଗୁଡ଼ିକ ଘଟିଗଲା । କାହାର ପୁଷମାସ ତ କାହାର ସର୍ବନାଶ । ପଦ୍ମର ମଉଳା ମୁହଁକୁ ଦେଖି କବି ଲେଖିଲେ—

ସୁରୁଜ ପାଖରୁ ନେଇ ମେଲାଣି
ସରୋଜ ଯାଉଛି ଓଢ଼ଣା ଟାଣି
କଳାକାଠ ଦିଶେ ସରସୀ ରାଣୀ
ଆସ ନାହିଁ ଘରୁ ଘର

ମଣିଷର ଅତ୍ମା ମରେ ନାହିଁ କେବେ
ଥିବା ଯାଏ ତା'ର ମନରେ ଅଶା
କବିର ଜୀବନ ସରେ ନାହିଁ କେବେ
ଥିବା ଯାଏ ଜାତି ମୁହଁରେ ଭଷା—

ଜାତୀୟ କବିଙ୍କର ଦରଜ ସ୍ୱଚ୍ଛନ୍ଦ ଭଷା ତାଙ୍କର ଭାବାବେଗକୁ ପ୍ରକାଶ କରିବାରେ ସମର୍ଥ ହୋଇଥିଲା । ତାଙ୍କର ବିପ୍ଳବ ଧର୍ମୀ କବିତା ସକଳ ବୀରରସରେ ପରିପୂର୍ଣ୍ଣ । ସେ ସରଳ ଭଷାରେ ଅଗ୍ନିବର୍ଷୀ କବିତା ଲେଖି ଦେଶବାସୀଙ୍କୁ ସ୍ୱାଧୀନତା ସଂଗ୍ରାମରେ ଉଦ୍‌ବୋଧିତ କରିଥିଲେ । ତାଙ୍କ ଭଷା ବିଷୟରେ ସେ କହନ୍ତି, ମୋ ଭଷା ମୋ ମାଟିର ଭଷା । ଏହା ବ୍ୟତୀତ ମୁଁ ଅନ୍ୟ କୌଣସି ଭଷା ଜାଣେ ନାହିଁ ।

ସେ ତ ନିଜେ ଥିଲେ ସଂଗ୍ରାମୀ, ରଣ ଦୁନ୍ଦୁଭି ଓ ରଣ ଭେରୀ ରଚନା କରି ସେ ୨ ବର୍ଷ କାରାବରଣ କରିଥିଲେ ଏବଂ ବିଦ୍ରୋହୀ ବୀଣା ପାଇଁ ୧ ବର୍ଷ କାରାବରଣ କରିଥିଲେ । ସେ ସାତ ଥର ଜେଲ ଯାଇଥିଲେ ।

ତାଙ୍କ ଜୀବନୀ ଥିଲା ଏକ ଶିକ୍ଷଣୀୟ ଅଧ୍ୟାୟ । ନିଜେ ଅସୁବିଧାରେ ଥିଲେ ମଧ୍ୟ ସେ ଧାର ଉଧାର କରି ଅନ୍ୟକୁ ସାହାଯ୍ୟ କରୁଥିଲେ । ୧୯୨୪ ମସିହାରେ ସେ ଲୋକାଲ ବୋର୍ଡ଼ର ଚେୟାରମ୍ୟାନ ହୋଇଥିଲେ ।

୧୯୩୯ ମସିହାରେ ସେ ଓଡ଼ିଶାର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପାଠ୍ୟ ପୁସ୍ତକ ଜାତୀୟକରଣ କାର୍ଯ୍ୟକୁ ସେ ଆଦରରେ ଗ୍ରହଣ କରିଥିଲେ । ମୋ ଛବି ବହି ଦୁଇଖଣ୍ଡ ବାହାର କରିଥିଲେ । Text Book Committeeର ସେ Secretary ବି ଥିଲେ ।

ପଣ୍ଡିତ ନୀଳକଣ୍ଠଙ୍କ ବିୟୋଗରେ ସେ କହ୍ଲ ବନର ଗୁଳ୍ମ କବିତାଟି ରଚନା କରିଥିଲେ । ସାଥି ମୂରଲୀଧର ମଧ୍ୟ ତାଙ୍କର ସେହିପରି ଏକ ଶୋକ ଗୀତିକା । ରୋଗଶଯ୍ୟାରେ ପଡ଼ି ମଧ୍ୟ ସେ ଭଜନ ଗୀତ ଗାଉଥିଲେ ।

କବି ଶେଷ ଜୀବନରେ ବହୁତ ଭକ୍ତି କବିତା ରଚନା କରିଥିଲେ । କବିତାଗୁଡ଼ିକ ତାଙ୍କ ସରଳ ପ୍ରାଣର ପରିଚୟ ଦେଉଥାଏ । ସର୍ବଦା ସେ ଲେଖନୀରୁ ନିର୍ମଳ ଭକ୍ତିର ସ୍ରୋତ ଛୁଟିଥାଏ । କବି ସତ୍ୟସାଇ ଭଜନରେ ଲେଖିଛନ୍ତି । ଫୁଲ ଚନ୍ଦନରେ ନାହିଁ ମତ ତାର ଗୁନ୍ଥି ଦିଅ ତାଙ୍କୁ ପ୍ରୀତି ଫୁଲହାର—ଏଇ ପଂକ୍ତିଟି କବିଙ୍କର ପବିତ୍ର ନିର୍ମଳ ହୃଦୟର ପରିଚୟ ଦେଉଥାଏ । ସେହିପରି କବିଙ୍କ ନିର୍ମଳ ବିଶୁଦ୍ଧ ଅନ୍ତରରୁ ତାଙ୍କ ସେବିତ ନିରାକାର ମା'ଙ୍କ ପାଇଁ କେତେକ କବିତା ଝରିପଡ଼ିଥିଲା । ତନ୍ମଧ୍ୟରୁ

ତୁ ଆମ ଚୂଡ଼ାନ୍ତ, କନକଗିରିର ମହିମା, ମନୋବାଞ୍ଛା, ଭକ୍ତମନ ଦୁର୍ଗା ଦେବୀକି, କି ଦେବି ଭେଟି, ମାଗୁଣି—ଏଇ କେତେକ କବିତା ହସ୍ତଗତ ହୋଇଛି ।

କନକଗିରିର ମହିମା—

ହେ ମୋର କନକଗିରି
ଛଡ଼ାଇ ଆଣିଲୁ ସରଗ ଶିରି
କେଉଁ ଜନ୍ମ ଫଳେ କେଉଁ ତପ ବଳେ
ମା'ଙ୍କୁ ବସିଲୁ କୋଳରେ ଧରି ।

( କନକଗିରି—ଏହି ପର୍ବତରେ ନିରାକାର ମା ସାଧନାରତ ଥିଲେ )

ଜାତୀୟ କବିଙ୍କ କୃତି ବିଷୟରେ ଯତ୍‌କିଞ୍ଚିତ ରଚନା କରିଛି । କବିଙ୍କର ଯୋଗ୍ୟତମ ବାଯାବ ଶ୍ରୀଯୁକ୍ତ ଦୋଳଗୋବିନ୍ଦ ପ୍ରଧାନ (ଦୋଳଭାଇ) ଏ ବିଷୟରେ ମୋତେ ବାରମ୍ବାର ଚେତାଇ ଥିଲେ । କବିଙ୍କ କନ୍ୟା ଶତଦଳ ବାସିନୀ ( ମୈନାଅପା ) ପୁଅ ନିରଞ୍ଜନ ଭାଇ, ବୋହୂ ଲତି ନୂଆବୋଉ ମତେ ବହିପତ୍ର ସାହାଯ୍ୟ କରିଥିଲେ । ମୁଁ କବିଙ୍କୁ (ମୋ ମଉସା) କଥା ଦେଇଥିଲି ତାଙ୍କ ଜୀବନୀ ସମ୍ବନ୍ଧରେ ନିଶ୍ଚୟ ଲେଖିବି ।

"ତୁ ମୋତେ ଠକିବୁ ନାହିଁ"—ସେ ଏହା ମତେ କହିଥିଲେ । ମୁଁ ଯାହା ଲେଖିଲି ତାହା ଯଥେଷ୍ଟ ନୁହେଁ ।

କବି ଶେଷ ନିଃଶ୍ୱାସ ତ୍ୟାଗ କଲେ ୧୯୭୩ ମସିହାରେ । ସେ ପର୍ଯ୍ୟନ୍ତ ତାଙ୍କ ଲେଖନୀ ସୃଜନା ବନ୍ଦ ନଥିଲା—

ବିବେକୀ ଗ୍ରାହକ କୋଟି କବି ଆସ୍ଥ ଘେନି<br>
କିର୍ତ୍ତିଥିଲେ କବି କବିତ୍ୱକି ହୁଏ ମ୍ଳାନି

ଅଧ୍ୟାପିକା କ୍ଷୀରୋଦା ପରଜା<br>
(ଅମଳ) N3-202, ନୟାପଲ୍ଲୀ-୧୫<br>
ଜିଲ୍ଲା–ଖୋର୍ଦ୍ଧା



# ଜାତୀୟ କବିଙ୍କ ସମ୍ପର୍କରେ

କବି ବୀରକିଶୋର ଥିଲେ ଏକାଧାରରେ ସ୍ୱାଧୀନତା ସଂଗ୍ରାମର ସୈନିକ ଓ ସ୍ୱାଧୀନତା ସଂଗ୍ରାମର ଚାରଣ କବି । କବି ବୀରକିଶୋର ହୃଦୟର କବି, ମନର ନୁହନ୍ତି । ସେ କହନ୍ତି—

ରାଜନୈତିକ କାଜ ମୋତେ ଝଣ୍ଡିଆ କରି ପକାଇଛି । କବି, କମାର, ଚିତ୍ରକାର, ଯାନ୍ତୁ ନାହିଁ ଭବୁ ପାର" ଜାତି ପ୍ରେମ ବହ୍ନିକୁ ପ୍ରଜ୍ୱଳିତ କରି ଜାତି ନନ୍ଦିଘୋଷକୁ ଆଗେଇ ନେବାପାଇଁ ବୀରକିଶୋରଙ୍କ କବିତାଗୁଡ଼ିକ ଥିଲା ଯଥାର୍ଥରେ ଜାତୀୟ ପ୍ରେରଣାର ଉତ୍ସ ।

ଏହି ମହାନ ସ୍ୱାଧୀନତା ସଂଗ୍ରାମୀ ଜାତୀୟ କବି ବୀରକିଶୋର ୧୮୯୬ ମସିହା ନଭେମ୍ବର ମାସ ତା ୨୩ ତିଖରେ ରାଜନୀତିକି, ଐତିହାସିକ, ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ଜିଲ୍ଲା ଜଗତସିଂହପୁର ସବ୍‌ଡ଼ିଭିଜନ ଅନ୍ତର୍ଗତ ଦୂତନେ ହାତୀ ଦୀ ତୀରବର୍ତ୍ତୀ ଛୁରାଅନା. ତମାଳ, ବକୁଳ, ପୁନାଗ, ନାରୀକେଳ ବୃକ୍ଷ ସୁଶୋଭିତ ପନଙ୍ଗ ଗ୍ରାମରେ ଏକ ମଧ୍ୟବିତ୍ତ ଜମିଦାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ ।

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଏହି ଜଗତସିଂପୁର ଅଞ୍ଚଳ ଏକଦା ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀରମାଦେବୀ, ଶ୍ରୀମତୀ ମାଳତୀ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଶ୍ରୀମତୀ ବୁବୁ ଚୌଧୁରୀ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ଭଗୀରଥି ମହାପାତ୍ର, ଶ୍ରୀ ମାଗୁଣି ଚରଣ କାନୁନ୍‌ଗୋ, ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ଶ୍ରୀ ନାରାୟଣ ବୀରବର ସାମନ୍ତ, ଶ୍ରୀମତୀ ରତ୍ନମାଳୀ ଜେମା, ଶ୍ରୀ ହରେକୃଷ୍ଣ ବିଶ୍ୱାଳ, ଶ୍ରୀ କ୍ଷେତ୍ରମୋହନ କାନୁନ୍‌ଗୋ, ଶ୍ରୀ ଗୌରୀଶ୍ୟାମ ନାୟକ, ଶ୍ରୀ ନିଳମଣି ପ୍ରଧାନ, ଶ୍ରୀ ଗୌରଙ୍ଗ ଚରଣ ଦାସ, ଶ୍ରୀ ବିଶ୍ୱମ୍ବର ପରିଡ଼ା, ଶ୍ରୀ ନିଶାମଣି ଖୁଣ୍ଟିଆ ପ୍ରମୁଖ ଓଡ଼ିଶାର ମହାନ ସ୍ୱାଧୀନତା ସଂଗ୍ରାମର ରଥୀମାନେ ଏହି ଅଞ୍ଚଳର ଲୋକ । ଏମାନଙ୍କର ଆହ୍ୱାନରେ ଶହ ଶହ ବାନର ସେନା ଓ କର୍ମୀ ଏହି ଅଞ୍ଚଳରେ ସୃଷ୍ଟି ହୋଇଥିଲେ । ଜଗତସିଂହପୁର ସମୀପବର୍ତ୍ତୀ ସୋମନାଥପୁର ହାଟ ନିକଟସ୍ଥ ପ୍ରାଚୀ ନଦୀ ତୀରବର୍ତ୍ତୀ ଅଳକା ଆଶ୍ରମ ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନର ପ୍ରାଣ କେନ୍ଦ୍ର ଥିଲା ।

ଜାତୀୟ କବିଙ୍କ ପିତାଙ୍କ ନାମ ଗୋପାଳ ଚରଣ ଦାସ, ସହଧର୍ମିଣୀ ଶାରଦା ଦେବୀ, ଦୁଇ ସାନ ଭାଇ ଦାମୋଦର ଏବଂ ବଂଶୀଧର । ବାନର ସେନା ହିସାବରେ ଅଗ୍ରଜଙ୍କ ଅନୁଗାମୀ, ପରାଧୀନତାର ଶୃଙ୍ଖଳକୁ ଛିନ୍ନ କରି ଯେଉଁ କେତେକ ସ୍ୱନାମଧନ୍ୟ ଜାତୀୟ ନେତା ଉତ୍ସର୍ଗୀକୃତ ଭାବେ ବିପ୍ଳବମାନ ସଂଗଠିତ କରି ସ୍ୱାଧୀନତା ସଂଗ୍ରାମ

ଇତିହାସରେ ଅଭିନବ ଆଲେଖ୍ୟ ସୃଷ୍ଟି କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଜାତୀୟ କବି ବୀରକିଶୋର ଅଗ୍ରଗଣ୍ୟ । ସ୍ୱାଧୀନତା ସଂଗ୍ରାମରୂପୀ ବିପ୍ଳବର ବହ୍ନିଶିଖାକୁ ପ୍ରଜ୍ୱଳିତ କରିବା ମାନସରେ ସରଳ, ତରଳ ସାବଲୀଳ ଭାଷାରେ ଯେଉଁସବୁ ବୈପ୍ଳବିକ ଜାତୀୟ ସଂଗୀତ ରଚନା କରିଥିଲେ ତାହାଦ୍ୱାରା ଓଡ଼ିଶାର ପ୍ରତି ପଲ୍ଲୀର ଆବାଳ-ବୃଦ୍ଧ-ବନୀତା ଉଦ୍‌ବୁଦ୍ଧ ହୋଇ ପତଙ୍ଗ ପରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ତାଙ୍କର ଏକା-ନିଷ୍ଠ ଦେଶ ପ୍ରେମ ଓ ଦେଶାତ୍ମବୋଧ ସଂଗୀତର ହୁଙ୍କାର ବ୍ରିଟିଶ ସାମ୍ରାଜ୍ୟର ଶାସକ ବର୍ଗଙ୍କୁ ପ୍ରକମ୍ପିତ କରି ଦେଇଥିଲା । ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ସମୟରେ କବିଙ୍କ ରଚିତ "ମୋହନ ବଂଶୀ" ତାଙ୍କର ସାନଭାଇ ବାନାମ୍ବରଙ୍କ ଛଦ୍ମ ନାମରେ ପ୍ରକାଶିତ ହୁଏ । ତା ପୂର୍ବରୁ ବୋଧହୁଏ ଜନ ଜାଗରଣ ପାଇଁ ଏପରି ଜାତୀୟ ସଂଗୀତ ଓଡ଼ିଶାରେ କେହି ରଚନା କରି ନଥିଲେ ।

ଗ୍ରାମ ସ୍କୁଲର ପାଠ ପଢ଼ା ସରିଲାପରେ ତାଙ୍କର ପିତା ପୁଅକୁ ଉଚ୍ଚ ଶିକ୍ଷା ଦେଇ ଡିପୋଟି (ଡେପୁଟି କଲେକ୍ଟର) କରାଇବା ମାନସରେ କଟକ ସହର ଜଗନ୍ନାଥ ବଲ୍ଲଭରେ ଥିବା ତାଙ୍କ ବସାଘରେ ରଖାଇ ଭକ୍ତ ମଧୁସୂଦନ ବିଦ୍ୟାପୀଠ (ଭିକ୍ଟୋରିଆ ସ୍କୁଲ) ରେ ପାଠ ପଢ଼ାଇବାର ବ୍ୟବସ୍ଥା କରାଇଥିଲେ । ପରେ ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ଅବସ୍ଥାରେ ପୂର୍ତ୍ତ ବିଭାଗର ସରକାରୀ ଚାକିରିରେ ଯୋଗ ଦେଇଥିଲେ ।

ସେ ନିଜର କବି ଜୀବନର କୈଫିୟତ ଦେବାକୁ ଯାଇ କହିଛନ୍ତି, "ମୁଁ କବିତାକୁ ଭଲ ପାଏ, କବିତା ମୋତେ ଭଲପାଏ । ଋଷ୍ୟଶୃଙ୍ଗ ମୁନିଙ୍କୁ ଜରତୀ ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମୋତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏଥି କବିତା ଲାଗି ଥରକୁ ଥର ଜେଲ ଗଲି । ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସଂପର୍କ ସେ ତୁଟିଲା ନାହିଁ, ବରଂ ଅଧିକ ଶକ୍ତ ହୋଇଛି ।" ଜାତିର ଜନକ ମହାତ୍ମା ଗାନ୍ଧି ଭାରତମାତାକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଯେଉଁ ପେଉଁ ଅହିଂସା ଆନ୍ଦୋଳନର ଆହ୍ୱାନ ଦେଶବାସୀଙ୍କୁ ଦେଇଥିଲେ ଯେଥିରେ ଦେଶପ୍ରେମୀ ବୀରକିଶୋର ଅନୁପ୍ରାଣୀତ ହୋଇ ଭାରତୀୟ ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ ଓ ଜାତୀୟ ସଂଗୀତ ରଚନା ମାଧ୍ୟମରେ ଏକ ନୂତନ ବୈପ୍ଳବିକ ଦିଗନ୍ତ ସୃଷ୍ଟି କରିଥିଲେ । ଭାରତର ସ୍ୱାଧୀନତା ହାସଲ ପାଇଁ ଜ୍ୱାଳାମୟୀ ଜାତୀୟ ସଂଗୀତ ରଚନାକୁ ଏକ (ନିର୍ଦ୍ଦିଷ୍ଟ) ମାର୍ଗ ହିସାବରେ ବାଛି ନେଇଥିଲେ । ତାହାକୁ ଛପାଇ ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ ଓ ନିଜେ ସେହି ସଂଗୀତ ଗାନ କରି ଲୋକମାନଙ୍କୁ ଉଦ୍‌ବୋଧିତ କରୁଥିଲେ । ଚାକିରି ଏବଂ ପଦ ପଦବୀର ମୋହ ତାଙ୍କୁ ବାନ୍ଧିରଖି ପାରିଲା ନାହିଁ । ସଂପୂର୍ଣ୍ଣ ତ୍ୟାଗ ଭାବନାର ଫଳ ସ୍ୱରୂପ ସେ ଜୀବନକୁ ତିଳ ତିଳ କରି ଜାଳିଦେଇ ଗଲେ ଯୁବାବସ୍ଥାରେ ବାରମ୍ବାର କାରାବରଣ କରି । ସେ ମାନବ ମଧ୍ୟରେ ଦେବତାର ଦର୍ଶନ କରିଛନ୍ତି । ମାନବ ସେବାରେ ମାଧବ ସେବାର ଫଳ ମିଳିବ ବୋଲି ବିଶ୍ୱାସ କରି କବି ଲେଖିଛନ୍ତି—

"ଯେତେ ଅହଂକାର ଅଛି ମୋର ହରି, ହରି ନିଅ ଏହି ପ୍ରାର୍ଥନା
ଦେହର ମୁକତି ଲୋଡ଼ା ନାହିଁ ମୋର ଦେଶର ମୁକତି ବାସନା (ଘୋଷା)
ଦେଶ ଲାଗି ଜେବେ ଜିତି କିଛି କାମ ନ ଖୋଜେ କ୍ଷମତା ନ ଖୋଜେ ମୁଁ ନାମ
ଜୀବ ସେବାରେ ମୋ ଦିନ କଟିଯାଉ ଶିବମୟ ହେଉ ଭାବନା—ହରି ହେ । ୧ ।

ଏହି ଅମର ଜାତୀୟ କବିଙ୍କର ସ୍ୱାଧୀନତା ସଂଗ୍ରାମକୁ ବିଶିଷ୍ଟ ଅବଦାନ ହେଉଛି, ମୋହନ ବଂଶୀ, ବିଦ୍ରୋହୀ ବୀଣା, ରଣଭେରୀ, ରଣ ଦୁନ୍ଦୁଭି, ମୋହନ ବେଣୁ, ମହାତ୍ମାଙ୍କ ବିଜୟ ଯାତ୍ରା, ସବୁଜ ସାଥୀ, ଅରି ସେପରି ନାହିଁ ଇତ୍ୟାଦି କବିତା ପୁସ୍ତକ । ସବୁଜ ସାଥୀ କାବ୍ୟରେ ବାଲ୍ୟ ଜୀବନର ସହପାଠୀ ତାଙ୍କ ଜମିଦାରୀ ଅନ୍ତର୍ଗତ ଘରପାଖ ପ୍ରଜାର ପୁଅ ବନ୍ଧୁ ହେଇ ସହ ସେ ଅବାଧ ମିଳାମିଶା କରୁଥିବା ଯୋଗୁ ସେତେବେଳେ ତାଙ୍କୁ ଅଜାତ କରଗଲା । ଏହା ତାଙ୍କ ଭିତରେ ସୃଷ୍ଟି କଲା ଘୋର ପ୍ରତିକ୍ରିୟା । ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଅନ୍ତର ଭାବନାକୁ ଲେଖନୀ ମୁନରେ ସେ ଯେଉଁଳି ଭାବରେ ପ୍ରକାଶ କରିଛନ୍ତି ସତେ ଯେପରି ତାହା ମହାତ୍ମା ଗାନ୍ଧିଙ୍କର ଅଛୁଆ ହରିଜନମାନଙ୍କ ପ୍ରତି ଆଦର୍ଶର ଜନ୍ମ ଜନ୍ମାନ୍ତର ସଂପର୍କ ଭଳି ସୂଚନା ଦିଏ । ସ୍ୱାଧୀନତା ସଂଗ୍ରାମ କ'ଣ ? ତାଙ୍କ ଲିଖିତ "ସମର ଯୁଗର ଅମର ସଂଗୀତ" ହିଁ ଜ୍ୱଳନ୍ତ ଉଦାହରଣ । ତାଙ୍କ ରଚିତ ସଙ୍ଗୀତ ବୋଲି ବୋଲି ବାନର ସେନା ଦଳ ମଦ, ଗଞ୍ଜେଇ, ଅଫିମ, ଭାଙ୍ଗ, ବିଦେଶୀ ଲୁଗା ଦୋକାନ ସାମ୍ନାରେ ପିକେଟିଙ୍ଗ କରୁଥିବା ବେଳେ ବ୍ରିଟିଶ ପୋଲିସର ଯାଉଁଳି ବେତ ମାଡ଼ରେ ହାତର ପାପୁଲି ଫାଟି ରକ୍ତ ଧାର ଧାର ବହି ଯାଉଥିଲେ ମଧ୍ୟ ଗୀତ ବୋଲା ବନ୍ଦ ହେଉ ନ ଥିଲା କି ଆଖିରୁ ଲୋତକର ଧାର ମଧ୍ୟ ଗଡ଼ୁ ନଥିଲା । ବେତମାଡ଼ ଖାଉଥିବା ପିଲାମାନଙ୍କୁ ପୂଜ୍ୟା ରମା ଦେବୀ ଓ ଡାକ୍ତର ରଜନୀକାନ୍ତ ଘୋଷ ସେବା ଚିକିତ୍ସା କରୁଥିଲେ । କବି ବୀରକିଶୋର ଯେଉଁସବୁ ଜାତୀୟ ସଙ୍ଗୀତ ରଚନା କରିଥାନ୍ତି ଅଗ୍ରଣୀ ବାନର ସେନା ହିସାବରେ ପିକେଟିଙ୍ଗ ପାଖରେ ସଭା ସମିତି ମାନଙ୍କରେ ପଥ ପ୍ରାନ୍ତ ସଭାରେ, ପଦ ଯାତ୍ରା ସମୟରେ ତାଲିମ ଶିବିରରେ ଆଗମନୀ ଓ ବିଦାୟ ସଙ୍ଗୀତ ହିସାବରେ ମୁଖ୍ୟତଃ ଶ୍ରୀ ଅଦ୍ୱୈତ ବଲ୍ଲଭ ରାୟ, କଟକ, ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ବାଲିକୁଦା, ଶ୍ରୀ ଅଚ୍ୟୁତାନନ୍ଦ ବେହେରା ସାଲେପୁର, ଶ୍ରୀ ବୈଦ୍ୟନାଥ ତ୍ରିପାଠୀ, ବାଙ୍କି, ଶ୍ରୀ ନିରଞ୍ଜନ ଘୋଷ, ଶ୍ରୀ ପୁରୁଷୋତ୍ତମ ସିଂ, ଶ୍ରୀ ଜାହ୍ନବୀ ଚରଣ ସାହୁ, ଶ୍ରୀ ଗିରିଶ ଚନ୍ଦ୍ର ଘୋଷ କଟକ ପ୍ରମୁଖ ଗାୟନ କରୁଥିଲେ ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ମହାତ୍ମା ଗାନ୍ଧିଙ୍କ ସମେତ ସ୍ୱାଧୀନତା ସଂଗ୍ରାମର ସବୁ ରଥୀ ମହାରଥୀ ନେତାମାନେ ଗିରଫ ହେଲେ । ଗାନ୍ଧିଜୀ ଗିରଫ ହୋଇଗଲା ବେଳେ ଦେଶବାସୀଙ୍କୁ ଆହ୍ୱାନ ଦେଇଗଲେ ଆନ୍ଦୋଳନକୁ ଚାଲୁ ରଖିବାପାଇଁ । ଗାନ୍ଧିଜୀଙ୍କ ଆହ୍ୱାନକୁ କାର୍ଯ୍ୟକାରୀ କରାଇବା ପାଇଁ ଘର ଛାଡ଼ି ଆତ୍ମଗୋପନ କରି ରହିଲେ ଜାତୀୟ କବି ବୀରକିଶୋର । ତାଙ୍କର ଜ୍ୱାଳାମୟୀ ଦେଶାତ୍ମବୋଧ ଜାତୀୟ ସଙ୍ଗୀତ ନବୀନ ଉନ୍ମାଦନା ସୃଷ୍ଟି କରି ବିପ୍ଳବର ବହ୍ନି ଶିଖାକୁ ପ୍ରଜ୍ୱଳିତ କରିଦେଲା । ସ୍କୁଲ କଲେଜ ବର୍ଜନ କରି ଛାତ୍ର-ଛାତ୍ରୀ ମାନେ ବିପ୍ଳବ ପଥକୁ ବରଣ କରିନେଲେ । କେତେ ମଧ୍ୟ ସରକାରୀ ଚାକିରି ଛାଡ଼ିଦେଲେ । ଗ୍ରାମର ଉଦାମ ଯୁବକ ଯୁବତୀ ବୃଦ୍ଧ ବୃଦ୍ଧା ବିପ୍ଳବରେ ସାମିଲ ହୋଇ ରାତାରାତି ଲୁଚିଛପି ରହିଲେ । ସ୍ୱାଧୀନତା ପାଇଁ ସମସ୍ତେ ଉନ୍ମତ୍ତ । ଥାନା ଜଳୁଛି, ପୋଷ୍ଟ ଅଫିସ ଜଳୁଛି, ଡାକ ବଙ୍ଗଳା ଜଳୁଛି । ଖୋଜି ବୁଲୁଛନ୍ତି ପୋଲିସବାଲା । ଗିରଫ ହେଲେ କବି ଏବଂ ପରେ ପରେ ଶତାଧିକ ସ୍ୱାଧୀନତା ସଂଗ୍ରାମୀ ।

ମାତ୍ର ଏହା ଏକ ଗଭୀର ପରିତାପର ବିଷୟ ଯେ ଏ ଜାତି ସ୍ୱାଧୀନତା ଲାଭପରେ ଜାତୀୟ କବି ବୀର କିଶୋରଙ୍କ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କଲା ନାହିଁ । ତତ୍କାଳୀନ ଶାସନର ବିଶିଷ୍ଟ ପଦାଧିକାରୀମାନେ ଏଇମିତି ଗୋଟିଏ କବିମୟ ଜୀବନ ଯେକି ଜାତୀୟ ସଙ୍ଗୀତ ମାଧ୍ୟମରେ ଲୋକମାନଙ୍କ ଭିତରେ ବିପ୍ଳବର

ଉନ୍ମାଦନା ସୃଷ୍ଟି କରିଥିଲେ ତାଙ୍କୁ ଅଦରକାରୀ ପରିଚାଳକ କାଗଜ ଛୁଟିରେ ପଠାଇଦେଲେ । ସାହିତ୍ୟିକ ଉପେକ୍ଷିତ ଓ ପରିକଳ୍ପିତ ଗଣତନ୍ତ୍ର ପ୍ରତିଷ୍ଠାର ବିଫଳ ହେବା ଦେଖି କବିଙ୍କ ଲେଖନୀରୁ ନିସୃତ ହେଲ "ଧନୀ ବଡ଼ଲୋକେ ବଡ଼ ହେଲେ ଲୋକ, ମେଣ୍ଟିବନି କୋଟି ଗରୀବଙ୍କ ଦୁଃଖ, ଗାନ୍ଧୀ ମୁକ୍ତିମନ୍ତ୍ର ଶପ୍ତରିତି ଚୁରି ଦିଲ୍ଲୀ ଦରବାର ଚୋରିକରନ୍ତି" ତାଙ୍କର ସ୍ୱର୍ଗତ ଅମର ଆତ୍ମା ଏବେ ବି ଚିତ୍କାର କରୁଥିବ ଓ କହୁଥିବ, ହେ ଜାତି, ଏଇଭଳି ଅଭିଶପ୍ତ ମାନଙ୍କୁ ଟିକେ ଚିହ୍ନ, ଟିକେ ବୁଝ । ସ୍ୱରାଜ ସଂଗ୍ରାମରେ ଶିବଙ୍କ ଚତୁର୍ଦ୍ଦିଗରେ ପରିକ୍ରମା କରି ବିଜୟୀ ସାଜିଥିବା ଗଣେଶଙ୍କ ପରି ଯେଉଁ ତଥାକଥିତ ସ୍ୱାଧୀନତା ସଂଗ୍ରାମୀମାନେ ଓଡ଼ିଶାର ମୁଖ୍ୟ ଶାସକ ବର୍ଗ ସାଜି କଟକରେ କଇଁଶରେ ଗାଦି ମାଡ଼ିବସି ଶାସନ ନାମରେ ଶୋଷଣ ସାଜିଲେ ସେମାନେ ସାମାନ୍ୟ ବିଧାନ ସଭା ଟିକଟ ଖଣ୍ଡେ ଜାତୀୟ କବିଙ୍କୁ ଜନସାଧାରଣଙ୍କ ଦାବି ସତ୍ତ୍ୱେ ଦେଇ ନଥିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବିଧାୟକ ଶ୍ରୀଯୁକ୍ତ ନୀଳମଣି ପ୍ରଧାନଙ୍କ ଅକାଳ ବିୟୋଗ ପରେ ବିଧାନ ସଭାର ଅର୍ଦ୍ଧେକ ସମୟ ପାଇଁ ଅନ୍ୟ କାହାକୁ ଟିକଟ ଦେଲେ କଂଗ୍ରେସ ପ୍ରାର୍ଥୀ ନିଶ୍ଚିତ ହାରିଯିବ ଜାଣି ଜାତୀୟ କବିଙ୍କୁ ଖଣ୍ଡିଆ ଟିକଟ ଖଣ୍ଡିଏ ଦେଲେ । ନିର୍ବାଚନ ପ୍ରତିଦ୍ୱନ୍ଦିତାରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ସହକର୍ମୀ ସ୍ୱାଧୀନତା ସଂଗ୍ରାମୀ ପ୍ରଜା ସୋସାଲିଷ୍ଟ ଦଳର ତତ୍କାଳୀନ ନେତା ଶ୍ରୀଯୁକ୍ତ ଲୋକନାଥ ଗଉ ପ୍ରତିଯୋଗିତା କଲେ । ଅର୍ଦ୍ଧେକ ସମୟପାଇଁ ବିଧାନ ସଭାକୁ ନିର୍ବାଚିତ ହେଲେ ଜାତୀୟ କବି ବୀରକିଶୋର । ଏତିକିରେ ବିଧାନ ସଭାକୁ ଆସିବା ପୋଥିରେ ତାଙ୍କର ଡୋରି ବନ୍ଧା ହୋଇଗଲା ଶେଷ ଜୀବନ ପର୍ଯ୍ୟନ୍ତ । ପୁଣି ନିର୍ବାଚନ ସମୟରେ ଜନସାଧାରଣଙ୍କ ଦାବିକୁ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରି ସେ କହିଥିଲେ, ମିଥ୍ୟାବାଦୀ ତାଲିକାରେ ମୋ ନାମ ଲେଖାଇବାପାଇଁ ପ୍ରବର୍ତ୍ତାରୁ ନାହିଁ । ଦ୍ୱିତୀୟ କଥା ମୋର ଧନ ବଳ ନାହିଁ କି ବାହୁବଳ ନାହିଁ ଟିକଟ ମିଳିବ ନାହିଁ । ଥରେ ଭୋଟରେ ଠିଆ ହେଲି ରାସ୍ତା, ଘାଟ, ପୋଲ, କୂଅ, ଯୋଜନା, ବନ୍ଧବାନ୍ଧ, ଡାକ୍ତର ଖାନା କରାଇବା ପାଇଁ ଓ ଚାକିରି ଯୋଗାଇ ଦେବାପାଇଁ ପ୍ରତିଶ୍ରୁତି ଦେଲି, ସରକାରକୁ ଗାଳି ସବୁ କରିବି, କାହିଁ କାଣିଚାଏ ତ କରିନାହିଁ ପୁଣି ଯାଇଁ ଲୋକଙ୍କୁ କହିବି କ'ଣ ?

୧୯୪୫ ମସିହାରେ କବି ବୀରକିଶୋର ବ୍ରହ୍ମପୁର ସେଣ୍ଟ୍ରାଲ ଜେଲରୁ ଖଲାସ ହୋଇ ଫେରିଲେ ଜେଲରୁ ତାଙ୍କର ସମସ୍ତ ଭୂ ସମ୍ପତ୍ତି ଓ ଜମିଦାରୀ ବ୍ରିଟିଶ ସରକାର ବାଜ୍ୟାପ୍ତି କରି ନେଇଥିଲେ । ଦୈନନ୍ଦିନର ତେଲ ଲୁଣ ସଂସାର ପାଇଁ ସେ କାବୁଲିୱାଲାର ଦ୍ୱାରସ୍ଥ ହୋଇଛନ୍ତି । ଓଡ଼ିଶା ମାଟିରେ ସ୍ୱାଧୀନତା ପରେ ପଦାଧିକାରୀ ଶାସକ ବର୍ଗ ତାଙ୍କୁ ପ୍ରକୃତରେ ଚିହ୍ନି ପାରିଲେ ନାହିଁ କି ତାଙ୍କର ମୂଲ୍ୟବୋଧକୁ ସମ୍ମାନ ଦେଇ ପାରିଲେ ନାହିଁ । ଅନାଦର ଅନାଶ୍ରୟ ତାଙ୍କୁ ସାଧନାରୁ ବିଚ୍ୟୁତ କରିପାରି ନାହିଁ । ଉତ୍କଳର ବରପୁତ୍ର ଜାତୀୟ କବି ବୀରକିଶୋର ଗାନ୍ଧୀଜୀଙ୍କ ପରିକଳ୍ପିତ ଗଣତନ୍ତ୍ର ପ୍ରତିଷ୍ଠା ବିଡ଼ମ୍ବିତ ହୋଇଯାଇଥିବା ସମାଜର ଦଳିତ ନିଷ୍ପେଷିତ ଜାତିର ଦୁଃଖ ଦୁର୍ଦ୍ଦଶା ବୃଦ୍ଧି ପାଉଥିବା ଓ କଂଗ୍ରେସ ଦଳ ଦିନକୁ ଦିନ ରସାତଳଗାମୀ ହେଉଥିବା ଲକ୍ଷ୍ୟ କରି ରୋଗଶଯ୍ୟାରେ ପଡ଼ି ଜୀବନ ମରଣ ସହିତ ସଂଗ୍ରାମ କରୁଥିବା ବେଳେ ମନରେ ଶତସିଂହର ଗର୍ଜନ ନେଇ ପୁଣି ଦେଶରେ ୧୯୪୨ ମସିହାର ଭାରତ ଛାଡ଼ ଆନ୍ଦୋଳନର ଆବଶ୍ୟକତା ଉପଲବ୍ଧି କରି ଲେଖିଲେ "ତୁମେ କେତେଜଣ ଜୀବନକୁ ପାଣି ଛଡ଼ାଇ ନଦେଲେ ଚଳିବନି ଦଧୀଚିର ହାଡ଼ ଉଜାଡ଼ି ନଦେଲେ ଏ ଦେଶର ଭାଗ୍ୟ ଫେରିବନି" ଇତ୍ୟାଦି କବିତା । ମନର ଅକୁହା ନିବେଦନକୁ ବିଭିନ୍ନ କବିତାରେ ପ୍ରକାଶ କରି ୧୯୬୩ ମସିହା ଅପ୍ରେଲ ମାସ ତା ୨୮ ରିଖ ମହାପଥର ଯାତ୍ରୀ ହୋଇଗଲେ ।

୧୯୮୬ ମସିହା ଶାସକଙ୍କର ନେତୃତ୍ୱ ପରିବର୍ତ୍ତନବାଦୀମାନେ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ଦାବି ଉପସ୍ଥାପିତ କରୁଥାନ୍ତି । ୧୯୮୭-୮୮ ମସିହାରେ ଓଡ଼ିଶାର ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳରେ ଉତ୍କଟ ମରୁଡ଼ି ଓ ଅନାହାରଜନିତ ମୃତ୍ୟୁର ପ୍ରକାଶିତ ଖବରର ପତ୍ରିକାରରେ ଶାସନ କଳର ଓ ନେତୃତ୍ୱର ବିଫଳତା ଉପଲବ୍ଧି କରି ପରିବର୍ତ୍ତନବାଦୀର ନେତା ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳଙ୍କ ନେତୃତ୍ୱରେ କେତେକ ସହଯୋଗୀ ମରୁଡ଼ି ଅଞ୍ଚଳ ପରିଭ୍ରମଣ କରିଯିବା ଅବସରରେ କୋରାପୁଟ ଜିଲ୍ଲା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଆମ୍ବାଡ଼ୋଳା ଠାରେ ଏକ ବିରାଟ ଆଦିବାସୀ ଜନ ସମାବେଶ ଶ୍ରୀ ବିଶ୍ୱାଳଙ୍କୁ ଭେଟି ସେମାନଙ୍କର ଦୟନୀୟ ଜୀବନର କାହାଣୀ ଜଣାଇବା ପାଇଁ ଅପେକ୍ଷା କରି ରହିଥିଲେ । ଏକଦା ୧୯୪୩ ମସିହା ମାର୍ଚ୍ଚ ୨୯ ତାରିଖ ପାହାନ୍ତା ପହରରେ ବ୍ରହ୍ମପୁର କେନ୍ଦ୍ର ଜେଲରେ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ଦେଶ ଓ ଦଶକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ବୀର ଦର୍ପରେ ଆଗେଇ ଆସିଥିବା ସଂଗ୍ରାମୀ ଯୁବକ ବୀର ଲକ୍ଷ୍ମଣ ନାୟକଙ୍କୁ ବ୍ରିଟିଶ ସରକାର ଫାଶି ଖୁଣ୍ଟରେ ଝୁଲାଇ ଦେଇଥିଲେ । ୧୯୪୨ ଅଗଷ୍ଟ ବିପ୍ଳବରେ ଭାରତବର୍ଷରେ ଏକମାତ୍ର ଫାଶୀ ପାଇଥିବା ଶହୀଦ ହେଉଛନ୍ତି ବୀର ଲକ୍ଷ୍ମଣ ନାୟକ । ଫାଶୀ ଦିବସର ପୂର୍ବଦିନ ସନ୍ଧ୍ୟାରେ ଜେଲ ମଧ୍ୟରେ ଥିବା ପ୍ରାୟ ଦେଢ଼ ହଜାରରୁ ଊର୍ଦ୍ଧ୍ୱ ରାଜନୈତିକ ବନ୍ଦୀମାନଙ୍କର ଲକ୍ଷ୍ମଣ ନାୟକଙ୍କର ଅମୂଲ୍ୟ ଅମ୍ଳାନ ଜୀବନ ଅବସାନ ହେବାକୁ ଯାଉଥିବା ପରିପ୍ରେକ୍ଷୀରେ ଏକ ସଭା ହୋଇଥିଲା । ସଭା ପୂର୍ବରୁ ଯେଉଁ ବନ୍ଦୀ ସ୍ୱଜନବର୍ଗ ଜେଲ ଭିତରେ ରୁଦ୍ଧ ସେଲ ମଧ୍ୟରେ ଆବଦ୍ଧ ଥିବା ଲକ୍ଷ୍ମଣ ନାୟକଙ୍କୁ ଶେଷ ଦର୍ଶନ କରିବାକୁ ଯାଇଥିଲେ ସେମାନେ ହେଲେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ଶ୍ରୀଯୁକ୍ତ ରାଧାକୃଷ୍ଣ ବିଶ୍ୱାସ ରାୟ, ଶ୍ରୀଯୁକ୍ତ ରାଧା ମୋହନ ସାହୁ, ଶ୍ରୀଯୁକ୍ତ ବିଶ୍ୱନାଥ ଦାସ, ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ ଓ ଜାତୀୟ କବି ବୀରକିଶୋର ପ୍ରମୁଖ । ରୁଦ୍ଧ ସେଲ ମଧ୍ୟରେ ଲକ୍ଷ୍ମଣ ନାୟକ ବସିଛନ୍ତି, ସାକ୍ଷାତ କରିବାକୁ ପହଞ୍ଚିଥିବା ବନ୍ଦୀ ପ୍ରମୁଖ ସେଲ ଫାଟକ ବାହାରେ ଯାଇଁ ଠିଆ ହୋଇଛନ୍ତି । କିଏ କାହାକୁ କଣ କହିବେ ? ଅନ୍ତିମ ଦର୍ଶନରେ ସମସ୍ତ ନିରବତାକୁ ଭଙ୍ଗକରି ଫାଶୀ ଖୁଣ୍ଟକୁ ଅପେକ୍ଷାରତ ଲକ୍ଷ୍ମଣ ନାୟକଙ୍କର ଶେଷବାଣୀ "ମନରେ ଦୁଃଖ ରହିଗଲା, ସ୍ୱାଧୀନତା ଦେଖି ପାରିଲି ନାହିଁ, ମୋର ଭାଇ ଭଉଣୀ ଓ ପିଲାମାନଙ୍କୁ ଖବର ଦେବେ ମୁଁ ସ୍ୱାଧୀନ ଭାରତରେ ଜନ୍ମ ଗ୍ରହଣ କରିବି" ଏହି ଦୁଇପଦ କଥାକୁ ଆଧାର କରି କବି ଫେରିଆସି ଯେଉଁ ଗୀତ ଲେଖିଥିଲେ ତାହାକୁ ବୋଲିବାର ସୌଭାଗ୍ୟ ମୋତେ ମିଳିଥିଲା ସେହି ସଭାରେ । ପରବର୍ତ୍ତୀ କାଳରେ ୪୩ ବର୍ଷ ବ୍ୟବଧାନରେ ଆମ୍ବାଡ଼ୋଳା ସଭାରେ ଶହୀଦ ଲକ୍ଷ୍ମଣ ନାୟକଙ୍କ ପ୍ରିୟଜନ ଆଦିବାସୀମାନଙ୍କ ସମାବେଶରେ ସେମାନଙ୍କ ଆଦରର "ଲକ୍ଷ୍ମଣ"ର ମାର୍ମିକ ଶେଷବାଣୀ ସଂଗୀତ—

"ମୋର ଯିବାର ବେଳତ ଆସି ହେଲାଣି ଭାଇ ହସି ହସି ମୋତେ ଦିଅ ମେଲାଣି (ଘୋଷା)

ମନରେ ରହିଲା ମନର ଯା କଥା କି କହିବି ଭାଇ ମୋ ମରମ ବ୍ୟଥା
ମୁଁ ସ୍ୱାଧୀନ ଭାରତ ଦେଖି ନପାରିଲି ଯାଉଛି ବାନ୍ଧିଲି ମୋର ଆଶା ନିଶୁଣି (୧)

ଯେଉଁ ଦିନ ହେଲେ ଯାଆନ୍ତିତ ଦିନେ,
ସେଥିକି ଶୋଚନା ନାହିଁ ମୋର ମନେ

ମୋ ପିଲପିଲିଙ୍କି ଭହିଚ ଏଟିକି

ମୁଁ ସ୍ୱାଧୀନ ଭାରତେ ନିଶ୍ଚେ ଫେରିବି ପୁଣି (୨)

ମୋର ଯିବାର ବେଳତ,

ଗୀତଟି ଯେଉଠାରେ ଆବୃତ୍ତି ହେବାଦ୍ୱାରା ସଭାସ୍ଥଳି ଶୋକାପ୍ଲୁତ ହୋଇଯାଇଥିଲା । ଶ୍ରୋତା ବକ୍ତା ମ୍ରିୟମାଣ ହୋଇଯାଇଥିଲେ । ସେହି ସଭାପରେ ଜାତୀୟ କବିଙ୍କର ସମସ୍ତ ଲେଖା ସଂଗ୍ରହ କରି ଜାତୀୟ କବି "ବୀର କିଶୋର ଗ୍ରନ୍ଥାବଳୀ" ମୁଦ୍ରଣ କରିବା ପାଇଁ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ ପରାମର୍ଶ ଦେଇଥିଲେ । ସେଦିନର ପ୍ରେରଣା ବାସ୍ତବ ରୂପନେଇ ଶ୍ରୀ ବିଶ୍ୱାଳଙ୍କ ଅଧ୍ୟକ୍ଷତାରେ ପରିଚାଳିତ ଗଣଭାଷା ସମବାୟ ପ୍ରେସରେ ମୁଦ୍ରିତ ହୋଇ ଆଜି ପ୍ରକାଶିତ ହେଉଛି । ଶ୍ରୀ ବିଶ୍ୱାଳ ଯେଉଁ ଜାତୀୟ ମହାନ କାର୍ଯ୍ୟ କରାଇଛନ୍ତି ତାଙ୍କୁ ଓ ତାଙ୍କ ଅନୁଷ୍ଠାନର ପରିଚାଳନାବର୍ଗଙ୍କୁ କେଉଁ ମର୍ମରେ କେଉଁ ଭାଷାରେ କୃତଜ୍ଞତା ଜ୍ଞାପନ କରିବି ତାହା ଅବା କେପାରି ଜାହାଜ ମୂଲ କଲା ଭଳି ଧୃଷ୍ଟତା ହେବ । ଏ ଗ୍ରନ୍ଥାବଳୀ ସଂକଳନ କରାଯିବାରେ ଇଂ ଶ୍ରୀ ପଞ୍ଚାନନ ସ୍ୱାଇଁ, ଅଧ୍ୟାପକ ଶ୍ରୀ ବିଜୟ କୁମାର ଶତପଥୀ, ଅଧ୍ୟାପକ ଆଦିତ୍ୟ କୁମାର ଧଳ, ସମାଜସେବକ ଶ୍ରୀ ବସନ୍ତ କୁମାରଙ୍କ ସାହାଯ୍ୟ ଚିର ସ୍ମରଣୀୟ ହୋଇ ରହିବ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀମାନେ କବିଙ୍କର ଘନିଷ୍ଠ ସାହିତ୍ୟିକ ଓ ପ୍ରକାଶକ ବନ୍ଧୁମାନେ ଗ୍ରନ୍ଥାବଳୀ ଛପାଇବାପାଇଁ ଯେଉଁ ଅମୂଲ୍ୟ ପ୍ରେରଣା ଦେଇଛନ୍ତି ଓ ପ୍ରକାଶ କରିଛନ୍ତି ସେମାନଙ୍କ ପାଖରେ ବିନମ୍ରତାର ସହିତ କୃତଜ୍ଞତା ଜ୍ଞାପନ କରୁଛି । କବିଙ୍କର ପୁତ୍ର ଶ୍ରୀ ନିରଞ୍ଜନ କିଶୋର ଓ ତାଙ୍କ ବନ୍ଧୁ ପରିଜନଙ୍କ ପ୍ରେରଣା ପାଇଁ କୃତଜ୍ଞତା ଜଣାଇଛି । ଛାପାଖାନାର କର୍ମକର୍ତ୍ତା, କର୍ମଚାରୀ, ହାତ ତିଆରି କାଗଜ ବିଭାଗର କର୍ମଚାରୀମାନଙ୍କ ସହଯୋଗ ଲାଗି ଧନ୍ୟବାଦ ଜଣାଉଛି । ସମୟ ବଳବାନ, ବିଳମ୍ବରେ ହେଲେ ମଧ୍ୟ ବିଶ୍ୱନିୟନ୍ତାଙ୍କ ଅପାର କରୁଣା ନ ହୋଇଥିଲେ ଗ୍ରନ୍ଥାବଳୀର ସଫଳ ରୂପାୟନ ହୋଇ ପାରିନଥାନ୍ତା । ତାଙ୍କ ପାଦ ପଦ୍ମରେ ବିନମ୍ର ପ୍ରଣତି ଜଣାଉଛି ।

ଜାତୀୟ କବି ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଏକ ମୂର୍ତ୍ତିମନ୍ତ ଅଗ୍ନିଶିଖା । ସ୍ୱାଧୀନତା ପୂର୍ବରୁ ପ୍ରାୟ ପଚିଶ ବର୍ଷ ଥିଲା ତାଙ୍କ ଜୀବନର ବହ୍ନି ବଳୟ । ମହାତ୍ମା ଗାନ୍ଧିଙ୍କ ପ୍ରେରଣା ଓ ଆଦର୍ଶ ଥିଲା କବି ପ୍ରତିଭାର ଭୂୟୋ ବିକାଶ କାଳ । ଦେଶର ମୁକ୍ତି ଥିଲା ତାଙ୍କର ସ୍ୱପ୍ନ । ଚାରଣ କବିପରି ସେ ନଗରରୁ ନଗର ବୁଲି ଜନପଦରୁ ଜନପଦ ବୁଲି ବୁଲି ଜାତୀୟବାଦୀ ସଂଗୀତ ମାନ ବୋଲାଇ ଜନ ଜୀବନକୁ ଉଦ୍‌ବୁଦ୍ଧ କରୁଥିଲେ । ତ୍ୟାଗ, ମାନବ ସେବା ଓ ଜାତିର ମୁକ୍ତି ଥିଲା ତାଙ୍କର ଆଦର୍ଶ । ସ୍ୱାଧୀନତା ପରେ ସେ ଉପଲବ୍‌ଧି କଲେ ଗଣତାନ୍ତ୍ରିକ ରାଜନୀତିର ବ୍ୟର୍ଥତା ଉପଭୋଗୀ କ୍ଷମତାଭିଳାଷୀ ନେତାମାନଙ୍କର ମନୋଭାବ ତାଙ୍କୁ ଗଭୀର ଦୁଃଖ ଦେଇଥିଲା । ତାଙ୍କର ରାଶି ରାଶି ସଙ୍ଗୀତ ଭିତରେ ପ୍ରକାଶ ପାଇଛି ତାଙ୍କ ହୃଦୟର ପ୍ରତିକ୍ରିୟା । ରାଜନୀତି ନୁହେଁ କୂଟ ନୀତି ନୁହେଁ, କ୍ଷମତା ସିଂହାସନ ନୁହେଁ ରାଷ୍ଟ୍ରନୀତି ଓ ମାନବ ମୁକ୍ତି ହିଁ ତାଙ୍କର ଲକ୍ଷ୍ୟ । ସେହି ଲକ୍ଷ୍ୟ ତାଙ୍କ ଜୀବଦଶାରେ ପୂର୍ଣ୍ଣ ହେଲା ନାହିଁ । ଗାନ୍ଧିବାଦ ହେଲା ବିଡ଼ମ୍ବିତ । ଜାତୀୟ କବି ହେଲେ ମର୍ମାହତ । ସଳିତା ପରି ଜଳି ଜଳି ତାଙ୍କର ଜୀବନ ଶେଷ ହୋଇଗଲା । ତଥାପି ତାଙ୍କର ବ୍ୟକ୍ତିତ୍ୱ ମରି ଯାଇନାହିଁ । ମରିପାରେ ନାହିଁ ମଧ୍ୟ । ସେହି ବ୍ୟକ୍ତିତ୍ୱ ଅନିର୍ବାଣ । ଏ ଜାତିକୁ ଘୋର ଅନ୍ଧକାର ଭିତରେ ଯେ ଆଲୋକ ଦେଖାଇବ ଏପରି ଆଶା କରିବା ବୃଥା ହେବ ନାହିଁ । ପରିଶେଷରେ ଅସହଯୋଗ ଆନ୍ଦୋଳନ ବେଳେ ଯେଉଁ ସବୁ ସଙ୍ଗୀତ ଜାତୀୟ କବି ରଚନା କରିଥିଲେ ତାହା କିପରି ଯୁଗୋପଯୋଗୀ ତାହା ଏଇ ଗୋଟିଏ କବିତା

"ଘରରେ ଏତେ ଦିନେ ସିନା ଗଞ୍ଜ ଜଣା, ଗଞ୍ଜା ନୁହନ୍ତି ଏ ବେପାରି ଅଟନ୍ତି କୋଇଲି ନୁହନ୍ତି କାଠହଣା"ଙ୍କୁ ଜଣାଯାଏ ।

ଭାରତଛାଡ଼ ଆନ୍ଦୋଳନ ସମୟରୁ ମୁଁ ସ୍କୁଲ ଛାଡ଼ି ଜାତୀୟ କବିଙ୍କ ମୋହନ ମନ୍ତ୍ରରେ ଅଭିଭୂତ ହେଲି । ତାଙ୍କ ସଙ୍ଗୀତ ବୋଲି ବୋଲି ଜାତୀୟ ସଂଗ୍ରାମରେ ଝାସ ଦେଲି । କାରାବରଣ କଲି । ବୀରକିଶୋର ମୋର ଆଦର୍ଶ, ମୋର ଗର୍ବ, ଆଜି ତାଙ୍କର ଗ୍ରନ୍ଥାବଳୀ ପ୍ରକାଶ ପାଉଥିବା ଅବକାଶରେ ମୁଁ ବ୍ୟକ୍ତିଗତ ଭାବରେ ଯେ କେତେ ଆନନ୍ଦିତ ତାହା ଭାଷ ରେ ପ୍ରକାଶ କରିପାରୁ ନାହିଁ । ଯେଉଁ ବର୍ଷିୟାନ ସ୍ୱାଧୀନତା ସଂଗ୍ରାମୀମାନେ ଅନତୀ ବିଳମ୍ବେ ଗ୍ରନ୍ଥାବଳୀ ପ୍ରକାଶ ପାଇବା ପାଇଁ ପ୍ରେରଣା ଦେଇଛନ୍ତି ସେମାନେ ଓ ଯେଉଁମାନେ ଗ୍ରନ୍ଥାବଳୀ ପ୍ରକାଶ ପାଇବାପାଇଁ ଉତ୍‌କଣ୍ଠିତ ହୋଇ ଇହଲୀଳା ସମ୍ବରଣ କରିଛନ୍ତି ସେମାନଙ୍କ ସ୍ୱର୍ଗତ ଆତ୍ମା ଏବଂ ତାଙ୍କ କବିତାର ଗୁଣ ଗ୍ରାହୀମାନେ କିଭଳି ବିଶେଷ ଭାବରେ ଆନନ୍ଦିତ ହେବେ ତାହା ବର୍ଣ୍ଣନାତୀତ । ସେମାନଙ୍କ ପ୍ରେରଣା ଓ ସଦିଚ୍ଛାର ଭଲ ଏହି ଗ୍ରନ୍ଥାବଳୀ ଦେଶବାସୀଙ୍କ ହାତରେ ଅର୍ପଣ କରି ଯେ ଏକ ଜାତୀୟ କାର୍ଯ୍ୟ ସଂପାଦନା ହୋଇପାରିଛି ଏତିକି ଭାବି ମୋର ସହଯୋଗୀ ବନ୍ଧୁମାନଙ୍କ ସହ ଆମେ ସାନ୍ତ୍ୱନା ଲଭିବୁ । ଜାତୀୟ କବିଙ୍କର ଅମର ଆତ୍ମାର ଆଶୀର୍ବାଦ ଏ ଜାତି ଉପରେ ଝରିପଡ଼ୁ ଏ ଜାତିକୁ ଅନ୍ଧାର ଭିତରେ ପଥ ଦେଖାଉ ଏତିକି ମୋର ପ୍ରାର୍ଥନା ।

ନୀଳଗୋବିନ୍ଦ ପ୍ରଧାନ
ସ୍ୱାଧୀନତା ସଂଗ୍ରାମୀ
ଓ
ପୂର୍ବତନ ମନ୍ତ୍ରୀ

ତା ୨୩ । ୧୦ । ୯୫



ତା ୧୩ । ୬ । ୧୯୫୮ ମସିହାରେ ବ୍ରହ୍ମପୁରଠାରେ ପି.ଇ.ଏନ. ସାହିତ୍ୟ ସମ୍ମିଳନୀରେ ଅଧ୍ୟକ୍ଷତା କରନ୍ତି ତଦାନୀନ୍ତନ ଭାରତର ଉପ-ରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ । ଡାହାଣରୁ ବାମକୁ—ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଗୋପୀନାଥ ମହାନ୍ତି, କାଳନ୍ଦୀଚରଣ ପାଣିଗ୍ରାହୀ, ଡଃ ହରେକୃଷ୍ଣ ମହତାବ, ଉପରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ, ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଓ୍ୱାଇ. ଏନ୍ ସୁଖଠଣକର, ରାଧାକୃଷ୍ଣଙ୍କ ପୁଷ୍ପଭାର ତଥା ଉପର ଧାଡ଼ିରେ ଦଣ୍ଡାୟମାନ ପଞ୍ଚମ ବ୍ୟକ୍ତି ଜାତୀୟ କବି ବୀରକିଶୋର ।

# ସୂଚିପତ୍ର

ବିଷୟ — ପୃଷ୍ଠାଙ୍କ

ବିଷୟ ପୃଷ୍ଠାଙ୍କ



## ରଣ ଭେରୀ



## ମହାତ୍ମାଙ୍କ ବିଜୟଯାତ୍ରା



## ବିଜୟୀ ବୀଣା



## ମୋହନ ବେଣୁ

| ବିଷୟ | ପୃଷ୍ଠାଙ୍କ |
|---|---|



## ଫୁଲ ଚନ୍ଦନ



## ସବୁଜସାଥୀ



## ସ୍ମୃତି କଣିକା

| ବିଷୟ | ପୃଷ୍ଠାଙ୍କ |
|---|---|



## ବକୁଳ ବନର ଗୁଚ୍ଛ



## ସମର ଯୁଗର ଅମର ସଙ୍ଗୀତ



## ବୀର ଗୀତିକା

( ସ୍ୱାଧୀନତା ସଂଗ୍ରାମ ସମୟର ରଚନା )

ବିଷୟ | ପୃଷ୍ଠାଙ୍କ
--- | ---

## ବୀର ଗୀତିକା

(ସ୍ୱାଧୀନତା ପରବର୍ତ୍ତୀ ସମୟର)

**ବିଷୟ** **ପୃଷ୍ଠାଙ୍କ**

| ବିଷୟ | ପୃଷ୍ଠାଙ୍କ |
|---|---|

ବିଷୟ ପୃଷ୍ଠାଙ୍କ



## ନୀତି ବାଣୀ



## ଶିଶୁ କବିତା

| ବିଷୟ | ପୃଷ୍ଠାଙ୍କ |
| --- | --- |

ବିଷୟ ପୃଷ୍ଠାଙ୍କ

# ମୋହନ ବଂଶୀ

## ଉତ୍ସର୍ଗ ପତ୍ର

ଉତ୍କଳ ନନ୍ଦନାଗ୍ରଣୀ ଉତ୍କଳ ନନ୍ଦନ ମଗଧ କଳିଙ୍ଗର ମନ୍ତ୍ରୀ **ଶ୍ରୀଲ ଶ୍ରୀଯୁକ୍ତ ମଧୁସୂଦନ ଦାସ,** ସି.ଆଇ.ଇ
ମହୋଦୟଙ୍କ ଶ୍ରୀଚରଣ କମଳେଷୁ;

ମହାତ୍ମନ୍,

ମୋର ଏହି ପତ୍ରରୁ ପ୍ରଣାମ ଗ୍ରହଣ କରିବେ । ମୁଁ ଆପଣଙ୍କ ନିକଟରେ ସମ୍ପୂର୍ଣ୍ଣ ଅପରିଚିତ ହେଲେ ସୁଦ୍ଧା ମୁଁ ଜଣେ ଉତ୍କଳବାସୀ, ଉତ୍କଳଭାଷୀ ଓ ଉତ୍କଳର ସୁଖଦୁଃଖରେ ମୋର ଅଂଶ ଅଛି ବୋଲି ମୁଁ ଆପଣଙ୍କ ନିକଟରେ ମୋର ମନୋଗତ ଭାବ ପ୍ରକାଶ କରିବାକୁ ଉପସ୍ଥିତ ହୋଇଅଛି । ମୁଁ ଆଶାକରେ ଆପଣ ଧୈର୍ଯ୍ୟଚ୍ୟୁତ ନ ହୋଇ ମୋର ଏ ପତ୍ରଖଣ୍ଡି ପାଠ କରିବେ । ମୋର ଛାତ୍ର ଜୀବନ ପ୍ରାରମ୍ଭରୁ ଆପଣଙ୍କ ନାମ ଅନେକବାର ଲୋକ ମୁଖରୁ ଶୁଣିଥିଲି । ଆପଣଙ୍କ କାର୍ଯ୍ୟାବଳୀ ଅନେକ ସ୍ଥାନରେ ଦେଖିଥିଲି ଓ ଆପଣଙ୍କ ଲେଖା ମଧ୍ୟ ଅନେକଥର ସମ୍ବାଦ ପତ୍ରରୁ ପାଠ କରିଥିଲି । ମାତ୍ର ଆପଣଙ୍କୁ ଦର୍ଶନ କରିବାର ସୁଯୋଗ ମୋ ଭାଗ୍ୟରେ ଘଟି ନଥିଲା । ସନ ୧୯୧୮ ମସିହାରେ ଆପଣଙ୍କ କର୍ତ୍ତୃକ ନିମନ୍ତ୍ରିତ ହୋଇ ଜଗତସିଂହପୁର ଅଞ୍ଚଳର ମୋର କେତେଜଣ ପ୍ରତିବେଶୀଙ୍କ ସହିତ ମୁଁ କଟକ ନଗରରେ ବସୁଥିବା ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ ଯୋଗ ଦେବାକୁ ଯାଇଥିଲି । ଆଜି ମୋର ମନେପଡୁଛି, ସେ ସମ୍ମିଳନୀର ପବିତ୍ର ମାତୃପୂଜା ମଣ୍ଡପରେ ମୁଁ ଆପଣଙ୍କୁ ସର୍ବ ପ୍ରଥମେ ଦର୍ଶନ କରିଥିଲି । ସେହି ପ୍ରଥମ ଦର୍ଶନରେ ମୋ ମନରେ ଯେ ପବିତ୍ର ଭାବ ଓ ଜାତୀୟ ସାହସ ଉଦିତ ହୋଇଥିଲା ତାହା ଏହି ଦୁର୍ବଳ ଲେଖନୀରେ ପ୍ରକାଶିତ ହୋଇପାରିବ ନାହିଁ । କେହି ମୋ କଥାକୁ ବାହୁଲ୍ୟ ମନେ କରିପାରନ୍ତି, ମାତ୍ର ମୋ ହୃଦୟର ଯାହା ଯଥାର୍ଥ ସତ୍ୟ, ତାହାହିଁ ଏଠାରେ ପ୍ରକାଶ କରୁଅଛି ।

ପୂଜ୍ୟପାଦ ! ବହୁଦିନବ୍ୟାପୀ ଝଡ଼ି ବର୍ଷା ପରେ ସୂର୍ଯ୍ୟାଲୋକ ପ୍ରକଟିତ ହେଲା ପରି ଆଜି ଏ ହତଭାଗ୍ୟ, ଅଧଃପତିତ ଉତ୍କଳରେ ଗୋଟିଏ ଗୋଟିଏ ଶିକ୍ଷିତ, କଷ୍ଟସହିଷ୍ଣୁ ଓ ସ୍ୱଦେଶ ପ୍ରେମିକ ଯୁବକ ଦେଖା ଦେଉଛନ୍ତି ସତ, ମାତ୍ର ଆପଣ ହିଁ ଉତ୍କଳର ପ୍ରଥମ କର୍ମୀ, ଆପଣ ହିଁ ନାନା ପ୍ରକାର ଅପମାନ ଓ ନିର୍ଯ୍ୟାତନା ସହ୍ୟକରି ଉତ୍କଳ ବାହାରେ ଓଡ଼ିଆ ବୋଲି ପରିଚୟ ଦେଇଅଛନ୍ତି, ଆପଣ ହିଁ ଉତ୍କଳର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଉତ୍କଳ ମିଳନ-ମେଳା ଭିଆଇ ଅଛନ୍ତି । ଆପଣ ହିଁ ଉତ୍କଳବାସୀଙ୍କୁ ନିଜର ଉଦାହରଣ ଦେଖାଇ କହିଥାନ୍ତି, ନିଜ ପାଦରେ ନିଜେ ଛିଡ଼ା ହୁଅ । ଆପଣଙ୍କ ପ୍ରବର୍ତ୍ତିତ "The Oriya" ସମ୍ବାଦ ପତ୍ରର ଶିରୋନାମା—"ଉଠରେ ଉଠରେ ଉତ୍କଳ ସନ୍ତାନ ଉଠିବୁ ତୁ କେତେ ଦିନେ, ପୂର୍ବର ଗୌରବ ପୂର୍ବର ମହିମା ପଡ଼ିବ କି ତୋର ମନେ ?" ସେଦିନ ମଧ୍ୟ ଆପଣଙ୍କର ଉତ୍କଳ ସମ୍ମିଳନୀରୁ ଶୁଣିଥିଲି "ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର, ସ୍ୱାର୍ଥକୁ ଦିଅ ଆହୁତି ।"

ପୂଜ୍ୟପାଦ ! ଆଜି ସେହି ବହ୍ନି ଉତ୍କଳର ସ୍ଥାନେ ସ୍ଥାନେ ଦେଖା ଦେଇଅଛି; ଆଜି ତ କେତେକ ଉତ୍କଳୀୟ ଯୁବକ ସ୍ୱାର୍ଥ କ'ଣ ଜୀବନ ପର୍ଯ୍ୟନ୍ତ ଆହୁତି ଦେବାକୁ ପ୍ରସ୍ତୁତ ଅଛନ୍ତି । ଆଜି ଉତ୍କଳର କେତେକ କର୍ମୀ ସନ୍ତାନ ମଧ୍ୟ ପର ପାଦରେ ଛିଡ଼ା ନ ହୋଇ ନିଜ ପାଦରେ ମହେନ୍ଦ୍ର ପର୍ବତ ପରି ଅଟଳଭାବରେ ଦଣ୍ଡାୟମାନ । ତେବେ ଆପଣ କାହିଁକି ଆଜି ଏ ବୃଦ୍ଧ ବୟସରେ ଜରାଜୀର୍ଣ୍ଣ ଭଗ୍ନ ସ୍ୱାସ୍ଥ୍ୟ ଘେନି ଆପଣଙ୍କର ସଦା ସ୍ୱାଧୀନ ମତକୁ ନାନାଦି ବିଭିନ୍ନ ମତର ଅଧୀନ କରଇ ପରମୁଖାପେକ୍ଷୀ ହୋଇଅଛନ୍ତି ? କେତେ ଲୋକ କେତେ କଥା ଭାବୁଅଛନ୍ତି, ମାତ୍ର ମୋର ଦୃଢ଼ ଧାରଣା, ଆପଣ ଅର୍ଥ କିମ୍ବା ସମ୍ମାନ ଉଦ୍ଦେଶ୍ୟରେ ପରମୁଖାପେକ୍ଷୀ ହୋଇନାହାନ୍ତି । ଅର୍ଥ—ଆପଣଙ୍କର ବାର୍ଷିକ ଆୟ ଯାହା ଥିଲା ତାହା ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କୁ ଜଣା ଅଛି । ତା'ପରେ ସମ୍ମାନ—ଆଧୁନିକ କର୍ମଯୁଗରେ ମନ୍ତ୍ରୀ ପଦ ଗ୍ରହଣ କରିବାଦ୍ୱାରା ଆପଣଙ୍କର ସମ୍ମାନ ପରିବର୍ଦ୍ଧିତ ହୋଇନାହିଁ । ବରଂ ସଙ୍କୁଚିତ ହୋଇଅଛି । ଆପଣଙ୍କୁ ଉତ୍କଳର ଦୁର୍ଭିକ୍ଷପୀଡ଼ିତ ଦୀନ କୃଷକଠାରୁ ପ୍ରାସାଦବାସୀ ରାଜପୁରୁଷ ପର୍ଯ୍ୟନ୍ତ ସମ୍ମାନ ଓ ଭକ୍ତି ଦେଖାଇଥାନ୍ତି । ଏହା ଛଡ଼ା ଉତ୍କଳକୁ ଯଦି ବିଦେଶରେ କେହି ପ୍ରଥମେ ଚିହ୍ନିଥାଏ ତାହାହେଲେ ଦୁଇଟି ବିଷୟ ଘେନି, ଗୋଟିଏ କୋଣାର୍କର ଶିଳ୍ପ, ଅନ୍ୟଟି ଆପଣଙ୍କର ନାମ । ତେବେ ଆପଣ ପରାଧୀନ ହେଲେ କାହିଁକି ? କେହି କେହି କହିସାରିଛନ୍ତି ଯେ ଆପଣ ସେହି ଛିନ୍ନ ହସ୍ତା, ଛିନ୍ନ-ମସ୍ତା, ବିକଟ ରୂପା ଉତ୍କଳ ଜନନୀର କାତର ଆହ୍ୱାନରେ ବ୍ୟାକୁଳ ହୋଇ ତାର ଦୁଃଖ ଦୂର କରିବାକୁ ଯାଇଅଛନ୍ତି । ଆପଣ ଉତ୍କଳର ଦେଶମିଶ୍ରଣ ଫଳ ତୋଳିବା ସକାଶେ ସେ କଣ୍ଟକ କାନନରେ ପ୍ରବେଶ କରିଅଛନ୍ତି । ଆପଣ ସମଗ୍ର ଉତ୍କଳକୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରିବାନିମନ୍ତେ କଠୋର ତପସ୍ୟା କରୁଅଛନ୍ତି । ମୁଁ ବାଧ୍ୟହୋଇ ଏମାନଙ୍କ ସହିତ ଏକମତ ହେଉଅଛି, କାରଣ ଏହା ଛଡ଼ା ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ, ଯେଉଁ ସକାଶେ ଆପଣଙ୍କ ପରି ଦେଶଭକ୍ତ, ସ୍ୱାଧୀନଚେତା ଓ ଅଭିଜ୍ଞ ବ୍ୟକ୍ତି ଏ କର୍ମଯୁଗରେ ସେ ନାଗପାଶ ବନ୍ଧନରେ ପଡ଼ିରହି ନିଷ୍କର୍ମା ହେବ । ଏହା ସ୍ୱତଃସିଦ୍ଧ, ଯଦି ଉତ୍କଳର ଦେଶମିଶ୍ରଣ ଫଳ ଉତ୍କଳବାସୀ ଲାଭ ନ କରନ୍ତି, ତେବେ ଆପଣଙ୍କର ଯେ ଅନ୍ତରଙ୍ଗ ଭକ୍ତ ସେ ମଧ୍ୟ କହିବେ—

"ଅସମ୍ଭବଂ ହେମ ମୃଗସ୍ୟ ଜନ୍ମ, ତଥାପି ରାମୋ ଲୁଲୁଭେ ମୃଗାୟ ।
ପ୍ରାୟଃ ସମ ପନ୍ନ ବିପତ୍ତିକାଳେ, ଧିୟୋଽପି ପୁଂସା ମଳିନା ଭବନ୍ତି ।।"

ପୂଜ୍ୟପାଦ ! ଆପଣ ଯେସବୁ କାର୍ଯ୍ୟରେ ହାତ ଦିଅନ୍ତି ସେସବୁ କାର୍ଯ୍ୟରେ ସଫଳକାମ ହୁଅନ୍ତି କି ନା, ତାହା ଜାଣେ ନାହିଁ । ତେବେ ଆପଣ ହୃଦୟର ସହିତ ଜନସାଧାରଣଙ୍କ ନିକଟରେ ଯେସବୁ କଥା ପ୍ରକାଶ କରିଥାନ୍ତି ତାହା କାର୍ଯ୍ୟରେ ପରିଣତ ହୋଇଥାଏ । ମୋର ଆଜି ଗୋଟିଏ କଥା ମନେପଡ଼ୁଛି; ଆପଣ ଉକ୍ତ ସମ୍ମିଳନୀ ମଣ୍ଡପରେ କହିଥିଲେ "ଭୂମିକମ୍ପ ହେବ, ଧରଣୀ ଫାଟିବ, ଉଠିବେ ସହସ୍ରଭୁଜା; ସେହି ତୋର ମାତା, ସେହି ତୋର ପିତା କର ରେ ତାହାକୁ ପୂଜା ।" ଆପଣଙ୍କର ସନ ୧୯୧୮ ମସିହାରେ ଏ ଭବିଷ୍ୟତ ବାଣୀ ବର୍ଷକ ପରେ କିପରି କାର୍ଯ୍ୟରେ ପରିଣତ ହୋଇଯାଇଅଛି ତାହା ଆପଣ ଥରେ ଭାବି ଦେଖନ୍ତୁ । ମୁଁ ଆଜି ପ୍ରତ୍ୟେକ ଉତ୍କଳବାସୀଙ୍କୁ କାହିଁକି, ପ୍ରତ୍ୟେକ ଭାରତବାସୀଙ୍କୁ ଏହା ଭାବି ଦେଖିବାକୁ ଅନୁରୋଧ କରୁଛି । ତା' ପରେ "ଅସହଯୋଗ ଆନ୍ଦୋଳନ", ଯାହା ଘେନି ଆଜି ହିମାଚଳଠାରୁ ସୀମାଚଳପର୍ଯ୍ୟନ୍ତ କୋଳାହଳ ପଡ଼ିଅଛି ତାହାକୁ ମହାତ୍ମାଗାନ୍ଧୀ କଲିକତା କଂଗ୍ରେସରେ ପ୍ରଥମେ ଉତ୍‌ଥାପିତ କରିଥିଲେ । କିନ୍ତୁ ତାହାର ଦୁଇ ବର୍ଷ ପୂର୍ବରୁ ସେହି ଅସହଯୋଗର ପ୍ରଧାନ ପ୍ରଧାନ ପ୍ରସ୍ତାବଗୁଡ଼ିକ

ଆପଣଙ୍କ ଉତ୍କଳ ସମ୍ମିଳନୀରେ ଉତ୍‌ଥାପିତ ହୋଇ ଆପଣଙ୍କଦ୍ୱାରା ଓ ଆପଣଙ୍କ ଦେଶବାସୀଙ୍କଦ୍ୱାରା ଗୃହୀତ ହୋଇଯାଇଅଛି । ପ୍ରଥମ ଅଭିଭାଷଣରେ ଆପଣ କହିଥିଲେ, "ଆତ୍ମା ସ୍ୱଦେଶରେ କାର୍ଯ୍ୟ କରେ । ସ୍ୱଦେଶୀ ବସ୍ତ୍ର ପ୍ରଚାର ସକାଶେ ଅରଟ ଚଳାଇବା ଓ କପାଚାଷ କରିବା ପ୍ରସ୍ତାବଟି ଗୃହୀତ ହେଲାବେଳେ କନିକାର ରାଜା ମହୋଦୟ କହିଥିଲେ ଲଜ୍ଜା ନିବାରଣ ସକାଶେ ବସ୍ତ୍ର ଆବଶ୍ୟକ । ସେ ବସ୍ତ୍ର ସକାଶେ ଯଦି ଆମ୍ଭେମାନେ ବିଦେଶୀମାନଙ୍କ ଉପରେ ନିର୍ଭର କରୁଁ, ତାହା ହେଲେ ଆମ୍ଭେମାନେ ନିର୍ଲ୍ଲଜ ଅଟୁଁ । ତା ପରେ "ସରକାରଙ୍କ ନିକଟରୁ ସମ୍ପର୍କ ତୁଟାଇବା ଓ ଶାନ୍ତଭାବରେ ଈଶ୍ୱରଙ୍କ ଉପରେ ନିର୍ଭର କରିବା ।"

ଆପଣଙ୍କର ଜନୈକ ସହକର୍ମୀ, ଉତ୍କଳର ଦେଶହିତୈଷୀ ଯେ କି ସେ ସମୟର ଲାଟସଭାର ସଭ୍ୟ ଥିଲେ, ସେ ସ୍ପଷ୍ଟଭାବରେ ବ୍ୟକ୍ତ କରିଥିଲେ ଯେ ଉତ୍କଳ ପ୍ରେମର ରାଜ୍ୟ; ଧର୍ମର ରାଜ୍ୟ, ଭକ୍ତିର ରାଜ୍ୟ । ଆଜି ପର୍ଯ୍ୟନ୍ତ ଯେ ଆନ୍ଦୋଳନ ହୋଇଅଛି ତାହା ଛଡ଼ା ଉତ୍କଳବାସୀ ଆଉ କିଛି କରି ନ ପାରେ । ଏଣିକି ଆନ୍ଦୋଳନ 'ହରି ଭରସା' । ସରକାର ଯଦି ଉତ୍କଳବାସୀଙ୍କ ପ୍ରତି ଅବିଚାର କରନ୍ତି, ତାହେଲେ ମୁଁ ଜୀବନ ଥିବାଯାଏ ସରକାରଙ୍କ ସହିତ ଆଉ କୌଣସି ସଂପର୍କ ରଖିବି ନାହିଁ । ସରକାର ଉତ୍କଳବାସୀଙ୍କ ପ୍ରତି ଅବିଚାର କଲେ କି ସୁବିଚାର କଲେ ତାହା ସରକାର ଜାଣନ୍ତି; ମାତ୍ର ସେହି ଦେଶ-ଭକ୍ତ, ସତ୍ୟନିଷ୍ଠ, କର୍ମବୀର ଆଜି ସରକାରଙ୍କଠାରୁ 'ସକଳ ସଂପର୍କ ତୁଟାଇ ଦେଇ' ନିଜର କର୍ତ୍ତବ୍ୟ ପାଳନ କରିଅଛନ୍ତି । ସେ ଆଜି ମାତୃଭୂମିର ଖଣ୍ଡ ବିଖଣ୍ଡ ଛିନ୍ନମସ୍ତା ବିକଟ ରୂପ ପୂଜା କରି ଉତ୍କଳବାସୀଙ୍କ ପାଇଁ ପ୍ରାଣ ଅର୍ପଣ କରିଅଛନ୍ତି । ସେ ଉତ୍କଳର ସର୍ବାଙ୍ଗସୁନ୍ଦର ମୂର୍ତ୍ତି ଦେଖିବା ସକାଶେ ଭାରତ ମହାସଭାର ସିଂହଦ୍ୱାରରେ ଉପସ୍ଥିତ ହୋଇଅଛନ୍ତି । ସେ ଆଜି ସକଳ ଭୋଗ ବିଳାସ ପରିତ୍ୟାଗ କରି ଉତ୍କଳର ଗ୍ରାମେ ଗ୍ରାମେ ପ୍ରଚାର କରୁଅଛନ୍ତି, "ଅହିଂସା ପରମୋ ଧର୍ମଃ; ଯତୋ ଧର୍ମସ୍ତତୋ ଜୟଃ ।" କେବଳ ତାହା ନୁହେଁ । ସେ ଆଜି ଉତ୍କଳର ଜାତୀୟ ମର୍ଯ୍ୟାଦା ଲଙ୍ଘନ ନ କରି ଭାରତ ମହାସଭାର ଆଦେଶ ପାଳନ ପୂର୍ବକ ହସି ହସି ଖୋରଧାର ବନ୍ଦୀଶାଳାର ଅତିଥି ହୋଇ ଆସି ଅଛନ୍ତି । କେହି ବର୍ତ୍ତମାନ ପଚାରି ପାରନ୍ତି, ସରକାର ଉତ୍କଳବାସୀଙ୍କ ପ୍ରତି ଅବିଚାର କଲେ କେବେ ? ଉତ୍କଳର ଦେଶ ମଣ୍ଡଣର ଦ୍ରାକ୍ଷାଫଳ ବର୍ତ୍ତମାନ ଭାରତର ରାଜଦରବାରରେ ଦୋଳାୟମାନ । ତାକୁ ଲମ୍ଫ ଦେଇ ନ ଆଣି ଭୀରୁଭାବରେ ପଳାଇଯିବା ତାହାଙ୍କର ଅବିମୃଷ୍ୟକାରିତାର ଚିହ୍ନମାତ୍ର । ପୂଜ୍ୟପାଦ ! ତାହାର ଉତ୍ତରରେ କୋଟୋଟି ପ୍ରକୃତ କଥା କହିବାକୁ ମୁଁ ବାଧ୍ୟ ହେଉଅଛି ।

ଯେତେବେଳେ ମୋ ହସ୍ତରେ ଟଙ୍କାକିଆ ନୋଟ ଖଣ୍ଡିମାନ ପଡ଼େ ଏବଂ ମୁଁ ତାହାର ଅପରପାର୍ଶ୍ୱ ଲେଉଟାଇ ଦେଖେଁ ସେତେବେଳେ ମୁଁ ଜାଣିପାରେ ସରକାର ୬୦ ଲକ୍ଷ ଓଡ଼ିଆଙ୍କ ଭାଷା ପ୍ରତି କିପରି ମର୍ଯ୍ୟାଦା ଦେଖାଇଅଛନ୍ତି । ଯେତେବେଳେ ମୁଁ ବିଜନ ସ୍ଥାନରେ ବସି ଆପଣଙ୍କ କଳ୍ପିତ ଉତ୍କଳ ଜନନୀର ବିଷାଦ ମୂରତି କଥା ଭାବେଁ ଆଉ ବାଲେଶ୍ୱର ଜିଲ୍ଲାର ଭେଟିଆ ଗ୍ରାମ କଥା ମୋର ମନେପଡ଼େ, ସେତେବେଳେ ମୁଁ ବୁଝିପାରେ ସରକାର ଓଡ଼ିଆ ଜାତି ପ୍ରତି ସୁବିଚାର କରିଛନ୍ତି କି ଅବିଚାର କରିଛନ୍ତି । ଯେତେବେଳେ ପୁରୀ ଜିଲ୍ଲାର ଦୁର୍ଭିକ୍ଷପୀଡ଼ିତ ଗ୍ରାମମାନଙ୍କର କରୁଣ ଦୃଶ୍ୟ, ନରମୁଣ୍ଡ-ଧବଳିତ ଅସ୍ଥିକଙ୍କାଳ ପୂରିତ ଭୀଷଣ ଶ୍ମଶାନର ବିଭତ୍ସ ଚିତ୍ର ମୋର ସ୍ମୃତି ପଥାରୂଢ଼ ହୁଏ ଏବଂ ସଦାଶୟ ଗେଟ୍ ସାହେବଙ୍କ କଥା (ଯାହା ହେବା ଉଚିତ ତାହା ହୋଇନାହିଁ) ମନେ ପଡ଼େ, ସେତେବେଳେ ମୁଁ ଜାଣିପାରେ ସରକାର ଓଡ଼ିଆ ଜାତିଙ୍କ ପ୍ରତି ସୁବିଚାର କରିଅଛନ୍ତି କି ଅବିଚାର କରିଅଛନ୍ତି ।

ପୂଜ୍ୟପାଦ ! ମୋପରି ଲୋକ ଜାଣିବା ନ ଜାଣିବାରେ କିଛି ଲାଭ ନାହିଁ । ଯେତେବେଳେ ପଞ୍ଜାବ ପରି ସ୍ଥାନର ଅତ୍ୟାଚାରକୁ ଡିଉକ୍ ଅଫ୍ କନଟ ଆସି "Forgive and Forget" କହି ଆଶ୍ୱାସନା ଦେଇ ଯାଇଅଛନ୍ତି ଏବଂ ତାଙ୍କର ଆଶ୍ୱସ୍ତି ବାଣୀ ଶୁଣି ଅନେକ ବିଜ୍ଞ ଲୋକ ଆଶ୍ୱସ୍ତ ହୋଇଅଛନ୍ତି, ସେତେବେଳେ ଏ ଅଧଃପତିତ ବନ୍ୟା-ପୀଡ଼ିତ, ମେଲେରିଆଗ୍ରସ୍ତ ଓ ଦୁର୍ଭିକ୍ଷ-ହତ, ତଥାପି ରାଜଭକ୍ତ ଓଡ଼ିଆଙ୍କ କଥା ପଚାରେ କିଏ ?

ପୂଜ୍ୟପାଦ ! ଆପଣ ବାହୁଲ୍ୟ ମନେ କରିପାରନ୍ତି, ମାତ୍ର ମୁଁ ଭଲରୂପେ ଜାଣେ, ଓଡ଼ିଆ ନିଜ ପ୍ରାଣ ଅପେକ୍ଷା ରାଜ-କରକୁ ବେଶି ମୂଲ୍ୟବାନ ମନେ କରେ । ଉତ୍କଳରେ ପ୍ରବାଦ ଅଛି "ଛାଡ଼ ପିତୃକାର୍ଯ୍ୟ କର ରାଜକାର୍ଯ୍ୟ" । ମୁଁ ଆଖିରେ ଦେଖିଛି ଉତ୍କଳର କୃଷକ ରମଣୀ ଘରେ ଗର୍ତ୍ତ ଖୋଳି ତହିଁରେ ପତ୍ର ପାରି ପିଲାମାନଙ୍କୁ ବାସି ପେଜ ଦେଇଅଛି । ସ୍ୱାମୀ ଆସନ୍ନ ମୃତ୍ୟୁଶଯ୍ୟାରେ ଶାୟିତ, ନିଜେ ତିନି ଦିନ ଉପବାସ, ନିଜର କ୍ଷୁଧା ନିବାରଣ ସକାଶେ ମୁଠି ଶାଗ ଓ ବଣସାରୁ ଚୁଲି ଉପରେ ବସାଇଅଛି, ଏପରି ସମୟରେ ଚୌକିଦାର ଆସି ପହଞ୍ଚିଅଛି; ସେ ସ୍ତ୍ରୀ ତାହାର ହସ୍ତର *ଗୁନିଙ୍ଗ ସାହେବଙ୍କ କଳ୍ପିତ, ସୁବର୍ଣ୍ଣ ଖଡ଼ୁକୁ ବିକ୍ରୟ କରି ଟିକସ ଆଦାୟ ଦେଇଅଛି । ଆଖିରେ ଦେଖିଛି ଉତ୍କଳର କୃଷକ ବହୁ ଦିନ ପାଳିତା ବୃଦ୍ଧା ଗୋମାତାକୁ ଅଶ୍ରୁପୂର୍ଣ୍ଣ ନୟନରେ ହତ୍ୟାକାରୀକୁ ବିକ୍ରୟ କରି ବିକ୍ରୟ ଲବ୍ଧ ଅର୍ଥରେ ଚୁଲି ଟିକସ ଦେଇଅଛି । ଛାଡ଼ନ୍ତୁ, ସେସବୁ ବିଷୟର ସମାଲୋଚନା କରିବାର ଆବଶ୍ୟକ ନାହିଁ ଆଉ ସମାଲୋଚନା କଲେ ବା ଫଳ କ'ଣ ହେବ ? ମୋହର ଉଦ୍ଦେଶ୍ୟ, ଆପଣଙ୍କୁ ଉତ୍କଳ ସମ୍ମିଳନୀ କାର୍ଯ୍ୟାବଳୀର ପରିଚୟ ଦେବା କଥା । ମନେପଡ଼ୁଛି, ଆପଣ ସେହି ଉତ୍କଳ ସମ୍ମିଳନୀ ମଣ୍ଡପରେ ପଚାରିଥିଲେ "ଆଜି କେତେଜଣ ସରକାରୀ ଓଡ଼ିଆ କର୍ମଚାରୀ ଦେଶ ସକାଶେ ଚାକିରି ପଦତ୍ୟାଗ କରି ଗୌରୀଶଙ୍କର ପରି କଂଗ୍ରେସକୁ ଯିବାକୁ ଅଗ୍ରସର ହେବେ ?" ସେ ପ୍ରଶ୍ନର ଉତ୍ତର ଏ ହତଭାଗ୍ୟ ବଧିର ଉତ୍କଳୀୟ ତିନି ବର୍ଷପରେ ଦେଲା । ମୁଁ ଭାବେ, ସେହି ଦୃଢ଼-ପ୍ରତିଜ୍ଞ କର୍ମବୀର ଗୌରୀଶଙ୍କରଙ୍କ ଆତ୍ମା ହିଁ ବର୍ତ୍ତମାନ ଉତ୍କଳର କାର୍ଯ୍ୟ କ୍ଷେତ୍ରରେ କାର୍ଯ୍ୟ କରୁଛି । ମୁଁ ଭାବେ ଯେ କବିବର ରାଧାନାଥ ରାଜ-ଦରବାରର ମଣ୍ଡପରେ ବସି ଭାବୁଥିଲେ "ଥୋଇ ଏ ମୁକୁର ନିଜ ଆଗେ ଭାଇ, ନିଜ ମୁଖ କି ମୁଁ ନିଜେ ଦେଖୁ ନାହିଁ ।" ସେହି ରାଧାନାଥଙ୍କର ଆତ୍ମା ହିଁ ବର୍ତ୍ତମାନ ଉତ୍କଳରେ କାର୍ଯ୍ୟ କରୁଛି । ମୁଁ ଭାବେ ଯେ ଋଷିପ୍ରାଣ ଭକ୍ତ କବି ମଧୁସୂଦନ ଉତ୍କଳ ଜନନୀକୁ ଶୁଣାଇଥିଲେ, "କୋଟିଏ ସନ୍ତାନ ମା-ଗୋ ଧରିଅଛୁ କୋଳେ, ଗୋଟିଏ ମନୁଷ୍ୟ ମା-ଗୋ ନଦେଖିଲି ଡ଼ୋଳେ ।" ସେହି ମଧୁସୂଦନଙ୍କ ଆତ୍ମା ହିଁ ବର୍ତ୍ତମାନ ଉତ୍କଳରେ କାର୍ଯ୍ୟ କରୁଅଛି । ସର୍ବଶେଷରେ ଆପଣଙ୍କର କଥିତ ସେହି ସହସ୍ରଭୁଜା ହିଁ ବର୍ତ୍ତମାନ ଉତ୍କଳର ପୁଣ୍ୟ ପୀଠରେ ଅବତୀର୍ଣ୍ଣା ହୋଇଅଛନ୍ତି ନୋହିଲେ କି ଆଜି ଉତ୍କଳର ଅଳ୍ପବୟସ ଛାତ୍ରବୃନ୍ଦ ଯେଉଁମାନେ କି ପିତା- ମାତାଙ୍କର ସାମାନ୍ୟ କ୍ରୋଧରେ ଅଭିମାନ କରୁଥିଲେ, ଯେ ଛାତ୍ରଙ୍କ ଅବସ୍ଥା ଦେଖି କବି ଗାଇ ଅଛନ୍ତି "ବାଉଁଶ ବଣର ଭୂତ କଥା ଶୁଣ, କାନ୍ଥେ ଦେଖି ନିଜ ଛାଇ, ବିଲ ଆଡ଼ୁ ଶୁଣି ବିଲୁଆଙ୍କ ରଡ଼ି ପିଣ୍ଡେ ପ୍ରାଣ ଥାଏ ନାହିଁ ।" ସେହି ଉତ୍କଳର ଛାତ୍ରବୃନ୍ଦ ବ୍ୟାଘ୍ର- ଭଲ୍ଲୁକ-ସଙ୍କୁଳ ବାଙ୍କୀର ନିବିଡ଼ ଜଙ୍ଗଲରେ ନିରାହାରରେ ରହି ନାନାଦି ଅମାନୁଷିକ ଅତ୍ୟାଚାର ସହ୍ୟ କରି ରାତ୍ରିରେ କାଳଯାପନ କରିଥାନ୍ତେ । ନୋହିଲେ କି ଉତ୍କଳର L.M.S.M.A.B.L.B.A. ଇତ୍ୟାଦି ଉପାଧିଧାରୀ ଯୁବକବୃନ୍ଦ ନିଜ ନିଜର ଭୋଗ ବିଳାସ ପରିତ୍ୟାଗ କରି ଭବିଷ୍ୟତ୍ ଉନ୍ନତ ଆଶାରେ ଜଳାଞ୍ଜଳିଦେଇ ଦୀନ ଭିକ୍ଷୁକ ପ୍ରାୟ କାଳ କଟାଇ ସ୍ୱଦେଶ ସକାଶେ ନାନାଦି ନିନ୍ଦା, ଅପବାଦ ଓ ଭର୍ତ୍ସନା ଏପରିକି ଚର୍ମ ପାଦୁକା ପ୍ରହାର ପର୍ଯ୍ୟନ୍ତ ସହ୍ୟ କରୁଥାନ୍ତେ ? ନୋହିଲେ କି ସରଳ ନିରୀହ, କେନ୍ଦୁଝରବାସୀ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ି ହସି ହସି ଦ୍ୱୀପାନ୍ତରିତ ହୋଇଥାନ୍ତେ ? ନୋହିଲେ

* କମିସନର ଗୁନଙ୍ଗ ପିତ୍ତଳ ଖଡ଼ୁକୁ ସୁନାଖଡ଼ୁ ବୋଲି ପ୍ରକାଶ କରିଥିଲେ ।

କି ଆଜି କଲିକତାବାସୀ ମଜୁରିଦାରଙ୍କଠାରୁ ଆରମ୍ଭ କରି ଛାତ୍ର ରଜକୃଷ୍ଣ, ବାବାଜୀ ରାମଦାସ, ସେବକ ଗୋବିନ୍ଦ ମିଶ୍ର ଓ କର୍ମୀ ମହାବୀର ମହତାବ ପର୍ଯ୍ୟନ୍ତ ଉତ୍କଳବାସୀମାନେ ଅତି ପ୍ରଫୁଲ୍ଲ ଚିତ୍ତରେ ଲୌହ ଶୃଙ୍ଖଳ ପରିଧାନ ପୂର୍ବକ ବନ୍ଦୀଶାଳାବାସୀ ହୋଇଥାନ୍ତେ ?

ପୂଜ୍ୟପାଦ ! ଜାତି ସକାଶେ ଏପରି ଅତ୍ୟାଚାର ସହ୍ୟ କରିବାରେ ଓ ଲୌହ ଶୃଙ୍ଖଳ ପରିଧାନ କରିବାରେ କି ସୁଖ ଅଛି ତାହା ଧର୍ମପ୍ରାଣ ଓଡ଼ିଆମାନେ ବୁଝିପାରିବେ କି ନାହିଁ, ତାହା କହିପାରୁ ନାହିଁ । କିନ୍ତୁ ବଙ୍ଗର ବଙ୍ଗାଳୀମାନେ, ପଞ୍ଜାବର ପଞ୍ଜାବୀମାନେ, ଗୁଜୁରାଟର ଗୁଜୁରାଟୀମାନେ, ଏପରିକି ଆଫ୍ରିକାର କାଫ୍ରିମାନେ ସୁଦ୍ଧା ଏ ଯନ୍ତ୍ରଣାର ମର୍ଯ୍ୟାଦା ବୁଝି ଅଛନ୍ତି ।

ଯାହାହେଉ, ପୂଜ୍ୟପାଦ ! ଏତେ ଦିନେ ହିଁ ଆପଣଙ୍କର ଉତ୍କଳ ସମ୍ମିଳନୀର କାର୍ଯ୍ୟ ସଫଳ ହୋଇଅଛି । ଆଜି ଯେ ଉତ୍କଳର ସମ୍ମିଳନୀ ଚାଲିଅଛି ତାହା ଦିନ ଅଧକର ନୁହେଁ । ତାହା ଚିରସ୍ଥାୟୀ ହୃଦୟର ସମ୍ମିଳନୀ । ସେଥିରେ କୌଣସି ପ୍ରକାର ଭେଦାଭେଦ ନାହିଁ । ସେଥିରେ "Domiciled, Settler" ଭେଦ ନାହିଁ । ସେଥିରେ ସତ୍ୟବାଦୀ, ସମ୍ବଲପୁର ଦଳର ଭେଦ ନାହିଁ, ସେଥିରେ କଟକବାସୀ, ପୁରୀବାସୀର ଭେଦ ନାହିଁ । ସେଥିରେ ବ୍ରାହ୍ମଣ, କରଣର ଭେଦ ନାହିଁ, ସେଥିରେ ହିନ୍ଦୁ, ମୁସଲମାନର ଭେଦ ନାହିଁ । ସେଥିରେ ବ୍ରାହ୍ମ, ଖ୍ରୀଷ୍ଟିୟାନର ଭେଦ ନାହିଁ, ସେଥିରେ ଜମିଦାର ପ୍ରଜାର ଭେଦ ନାହିଁ । ଆଜି ସକଳ ପ୍ରକାର ଭେଦର ଚିହ୍ନ ଲିଭି ଯାଇଅଛି । ଆଜି "ଗୋଦାବରୀଠାରୁ ଗଙ୍ଗା ଯାଏ ବ୍ୟାପୀ, କାଉ ମାଳା ଯାର ବିରାଜେ ଅଦ୍ୟାପି" ସେହି ଉତ୍କଳର କୋଟିଏ ସନ୍ତାନ, ଭାରତବାସୀ ବତ୍ତିଶ କୋଟି ଭାଇଙ୍କ ସଙ୍ଗେ ମିଳିତ ହୋଇ ଗୋଟିଏ ସ୍ୱରରେ ଭାରତର ସିଂହଦ୍ୱାରରେ 'ଜନନୀ' 'ଜନନୀ' ଡାକୁଅଛନ୍ତି । ଆଜି ଆପଣଙ୍କ ରୋପିତ ଉତ୍କଳ ମିଳନ-ମେଳା ପାଦପ କୁସୁମ ମଞ୍ଜରୀରେ ପରିଶୋଭିତ ହୋଇ ଭାରତର କର୍ମ ଉଦ୍ୟାନରେ ଆଶ୍ରୟ ଲାଭ କରିଅଛି । ଆପଣ ପଛକେ ଆଜି ସେହି ସ୍ନେହ-ବର୍ଦ୍ଧିତ ବୃକ୍ଷର କଥା ଭୁଲିଯାନ୍ତୁ, କିନ୍ତୁ ଆମ୍ଭେମାନେ ଆପଣଙ୍କୁ ଭୁଲି ପାରିବୁ ନାହିଁ ।

ପୂଜ୍ୟପାଦ ! ଆପଣଙ୍କ ରୋପିତ ସେହି ଉତ୍କଳ ମିଳନ-ମେଳା ପାଦପଟି ଯେ ମହାତ୍ମାଙ୍କର ସ୍ୱଦେଶ-ପ୍ରେମ ମଳୟ ସ୍ପର୍ଶରେ ଆଜି କୁସୁମ ମଞ୍ଜରୀ ଧାରଣ କରିଅଛି, ସେହି ମହାତ୍ମା ଆଜକୁ ଏକ ବର୍ଷ ହେଲା ହିମାଚଳଠାରୁ ସୀମାଚଳ ପର୍ଯ୍ୟନ୍ତ ଏକ ଅପୂର୍ବ ମୋହନ ବଂଶୀ ବାଦନ କରୁଅଛନ୍ତି । ସେ ମୋହନ ବଂଶୀର ନାଦରେ ପଞ୍ଚନଦୀର ଜଳ ଚିଲିକାର ଜଳ ସଙ୍ଗେ ମିଶିବାକୁ ବସିଛି, ସେ ମୋହନ ବଂଶୀ ନାଦରେ ହିମାଦ୍ରି ଶିଖର ମେଘାସନକୁ ଆଲିଙ୍ଗନ କରିବାକୁ ରାହିଁ ରହିଛି । ସେ ମୋହନ ବଂଶୀ ନିନାଦରେ ଦ୍ରାବିଡ଼ ଜାତି ପଞ୍ଜାବବାସୀଙ୍କ ସକାଶେ ପ୍ରାଣଦେବାକୁ ଅଥୟ ହେଉଅଛନ୍ତି । ସେ ମୋହନ ବଂଶୀ ନାଦରେ ଆଲି ଭାଇମାନେ ଧର୍ମ ସକାଶେ ଖଡ଼୍ଗ ଧାରଣ ନ କରି ହସି ହସି କରାଚୀର ବନ୍ଦୀଶାଳାରେ ବସି କତା ଦଉଡ଼ି ବଳୁଅଛନ୍ତି ।

ସେ ମୋହନ ବଂଶୀ ନାଦ ଶୁଣି ବୃଦ୍ଧ ମୋତିଲାଲ ନେହେରୁ ତ୍ରିତଳ ପ୍ରାସାଦସ୍ଥିତ ଦୁଗ୍ଧ ଫେନନିଭ ଶଯ୍ୟା ତ୍ୟାଗ କରି ଏକମାତ୍ର ପ୍ରିୟତମ ପୁତ୍ର ସହ ପୁଲକିତ ଚିତ୍ତରେ କାରାବାସ ଭୋଗ କରୁଅଛନ୍ତି । ସେ ମୋହନ ବଂଶୀ ନିନାଦରେ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ହରିଶ୍ଚନ୍ଦ୍ର ମହାରାଜାଙ୍କ ପରି ସକଳ ସମ୍ପଦ ପରିତ୍ୟାଗପୂର୍ବକ ଏପରିକି ପୁତ୍ର କଳତ୍ରକୁ ମଧ୍ୟ ହତଭାଗ୍ୟ ଭାରତବାସୀଙ୍କ ପାଇଁ ବନ୍ଦୀଶାଳାକୁ ପଠାଇ ନିଜେ ସେହି ପଥର ପଥିକ ହୋଇଅଛନ୍ତି । ସେ ମୋହନ ବଂଶୀ

ନାଦ ଶୁଣି ସଟଲଣ୍ଡର କନ୍ୟା ଲିଲି ସେନ୍ ଗୁପ୍ତଙ୍କଠାରୁ ବଙ୍ଗର ଅବଳା ଊର୍ମିଳା ଦେବୀ ପର୍ଯ୍ୟନ୍ତ ବ୍ରିଟିଶ୍ ସରକାରଙ୍କ ଅଗ୍ନି ବର୍ଷୀ କମାଣ ସମ୍ମୁଖରେ ଛିଡ଼ାହୋଇ ନିର୍ଭୀକ ଚିତ୍ତରେ ନିଜ ନିଜର କର୍ତ୍ତବ୍ୟ କାର୍ଯ୍ୟ କରୁଅଛନ୍ତି । ସେ ମୋହନ ବଂଶୀ ନାଦ ଶୁଣି ଆମେରିକାବାସୀ ଷ୍ଟୋକ୍ ସାହେବ ତେତିଶ କୋଟି ଭାରତବାସୀଙ୍କ ଦୁଃଖ ଦୂର କରିବାସକାଶେ ଭାରତ-ସରକାରଙ୍କ ବନ୍ଦୀଶାଳାକୁ ନିଜର ପବିତ୍ର ପଦଧୂଳିରେ ପବିତ୍ର କରିଅଛନ୍ତି । ସେ ମୋହନ ବଂଶୀ ନାଦ ଶୁଣି ଯୋଗୀନ୍ଦ୍ର ଅରବିନ୍ଦ ତାହାଙ୍କର ବହୁ ବର୍ଷବ୍ୟାପୀ ତପସ୍ୟାର ଫଳ ସାର୍ଥକ ହେଲା ବୋଲି ଭାବି ଯୋଗ ବଳରେ ଭବିଷ୍ୟତ ଭାରତର ଅପୂର୍ବ ଛବି ପରିଦର୍ଶନ କରୁଅଛନ୍ତି । ସେ ମୋହନ ବଂଶୀ ନାଦ ଶୁଣି କବୀନ୍ଦ୍ର ରବୀନ୍ଦ୍ରନାଥ ନିଜ ହୃଦୟର ଭାବ ବର୍ତ୍ତମାନ କର୍ମକ୍ଷେତ୍ରରେ ପ୍ରତିଫଳିତ ହେବା ଦେଖି ବିମୋହିତ ହେଉଅଛନ୍ତି । ସେ ମୋହନବଂଶୀ ନାଦ ଶୁଣି ସେନାପତି ଲାଲ ଲଜ୍ପତରାୟ, ଲେଖକ ଶ୍ୟାମ ସୁନ୍ଦର, ମିତ୍ର ଜିତେନ୍ଦ୍ର ଲାଲ ଓ କୁମାର ସୁବାସଚନ୍ଦ୍ର ଆଦି ନୃପେନ୍ଦ୍ର, ଚିତ୍ତରଞ୍ଜନ ଓ ରାଜକୃଷ୍ଣ ପ୍ରଭୃତି ଛାତ୍ରମାନଙ୍କ ସହ ଭାରତମାତାଙ୍କ ପାଦରେ ପୁଷ୍ପାଞ୍ଜଳି ଦେବେ ବୋଲି ତୀର୍ଥବାସ କରି ପୁଣ୍ୟ ଉତ୍କଳର ଛାତ୍ରମାନଙ୍କ ଓ ଅନ୍ୟାନ୍ୟ ପ୍ରଦେଶରେ ଛାତ୍ରମାନଙ୍କୁ ଉତ୍କଣ୍ଠିତ ମନରେ ଗୃହିଁ ରହିଅଛନ୍ତି ।

ପୂଜ୍ୟପାଦ ! ଆପଣଙ୍କ ପୂର୍ବ କୀର୍ତ୍ତି ସ୍ମରଣ କରି ଆଜି ସେହି ମୋହନ ବଂଶୀ ନିନାଦିତି ସେ ମୋହନ ସଙ୍ଗୀତର ଭାବଦ୍ୟୋତକ ଛବି ଖଣ୍ଡି ମୋର ଏ ଦୁର୍ବଳ ଲେଖନୀରେ ଅଙ୍କନ କରି ଭକ୍ତି ସହକାରେ ଆପଣଙ୍କର କରକମଳରେ ଅର୍ପଣ କଲି । ॥ ଇତି ॥

ଗ୍ରାମ–ପୂର୍ଣ୍ଣଗ୍ରାମ
ଥାନା–ଜଗତ୍‌ସିଂହପୁର
ଜିଲ୍ଲା–କଟକ

ଆପଣଙ୍କର
ଆଶୀର୍ବାଦ୍‌କାଙ୍‌କ୍ଷୀ
ଲେଖକ

# ଛଦ୍ମ ନାମରେ ବହିଟି ଲେଖିଲ

ଜାଲିଆନାବାଗ ହତ୍ୟାକାଣ୍ଡ ବ୍ରିଟିଶ୍ ସରକାରଙ୍କର ଗୋଟାଏ କଳଙ୍କ ହୋଇଗଲା । ଚାରିଆଡ଼େ ସମସ୍ତେ ସରକାରଙ୍କର ନିନ୍ଦା କରୁଥାନ୍ତି । ଏହି କଳଙ୍କକୁ ଘୋଡ଼ାଇବାପାଇଁ ସରକାର ସେତେବେଳେ ଆଉ ଗୋଟାଏ ମିଥ୍ୟା ପ୍ରଚାର ଚଳାଇଲେ ।

ସରକାରୀ ପକ୍ଷରୁ ପ୍ରଚାର କରାଗଲା ଯେ ଜମୁନା ଲାଲ ବଜାଜ ବୋଲି ବମ୍ବେର ଜଣେ ବଣିକ ବହୁତ ତୁଳା ଆଣିଥିଲା । ତାର ତୁଳା ବଳିପଡ଼ିବାରୁ ବ୍ରିଟିଶ ସରକାରଙ୍କ ନାମରେ ସେ ମିଥ୍ୟା ପ୍ରଚାର ଚଳାଇଛି; ଜାଲିଆନାବାଗରେ ବେଶୀ ଲୋକ ମରିନାହାନ୍ତି । ଗାନ୍ଧୀ ହେଉଛନ୍ତି ଜମୁନାଲାଲଙ୍କ ଦଲାଲ । କିନ୍ତୁ ବ୍ରିଟିଶ ସରକାରଙ୍କର ଏହି ମିଥ୍ୟା ପ୍ରଚାରରେ ନ ଭୁଲି ଲୋକେ ଅସହଯୋଗ ଆନ୍ଦୋଳନକୁ ସାହାଯ୍ୟ କରୁଥାନ୍ତି ।

ଠିକ୍ ଏତିକିବେଳେ ମୁଁ କଟକରେ ପି.ଡ଼ବ୍ଲ୍ୟୁ.ଡ଼ି. ରେ କିରାନୀ କାମ କରୁଥାଏ ପଇଁଚାଳିଶି ଟଙ୍କା ଦରମାରେ । ମୋ ସାନ ଭାଇ ବାନାମ୍ବର ମୋ ପାଖରେ ରହି ପାଠ ପଢ଼ୁଥାଏ । ପାଖରେ ଥାଏ ଆଈ ମା' । ବାପାଙ୍କର ଇଚ୍ଛା ଥାଏ ବାନାମ୍ବର ବି.ଏ., ଏମ୍.ଏ. ପାଠ ପଢ଼ି ବଡ଼ ହାକିମ ହେବ । ମୋର ମଧ୍ୟ ସେଇ ଇଚ୍ଛା ।

କିନ୍ତୁ ହଠାତ୍ ଦିନେ ବାନାମ୍ବର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲା । ସେ ଖଣ୍ଡିଏ ବ୍ୟାଗ୍ ଧରି ଦଳେ ପିଲାଙ୍କ ସଙ୍ଗେ ଆମ ବସାରୁ ପଳାଇଗଲା । ଏହି ପିଲାମାନଙ୍କୁ ସେତେବେଳେ 'ବାନର ସେନା' ବୋଲି କହୁଥାନ୍ତି । ସେମାନଙ୍କ ସାଥିରେ ମିଶି ବାନାମ୍ବର କଟକର ସ୍ୱରାଜ ଆଶ୍ରମରେ ରହୁଥାଏ । ଏଣେ ତେଣେ ବୁଲି ସ୍ୱାଧୀନତା ଆନ୍ଦୋଳନ ପାଇଁ ଚାନ୍ଦା ଓ ଭିକ ମାଗେ । ବାନାମ୍ବରର ଏ ଦୁର୍ବୁଦ୍ଧି ଲାଗି ମୋର ଯେତିକି ଦୁଃଖ, ବାପାଙ୍କର ତାଠାରୁ ଅଧିକ ମନ କଷ୍ଟ । ଯେତେ ବୁଝାଇଲେ ମଧ୍ୟ ସେ ଆଉ ବାଟକୁ ଆସିଲା ନାହିଁ ।

ଏମିତି ଖରାତରାରେ ଅଖିଆ ଅପିଆ ବୁଲି ବୁଲି ଶେଷରେ ଦିନେ ବାନାମ୍ବରକୁ ହେଲା ଭୀଷଣ ଜ୍ୱର । ଯେତେ ଡାକ୍ତର ଦେଖାଇଲୁ କିଛି ଫଳ ହେଲା ନାହିଁ । ମୁଁ ଓ ଆଈ ମା' ବାନାମ୍ବରର ଆଶା ଛାଡ଼ି ଦେଇ ବସି ଥାଉ । ସେତେବେଳେ କଟକରେ ଜଣେ ଗୋରା ସାହେବ ସିଭିଲ ସର୍ଜନ ଥାନ୍ତି । ସେ ଗୋଟିଏ ପ୍ରେସ୍‌କ୍ରିପ୍‌ସନ୍ ଲେଖି ଦେଇ କହିଲେ, "ଏ ଔଷଧ ଚେଷ୍ଟା କର ।" କିନ୍ତୁ ବାନାମ୍ବର ଭଲ ହେବ ବୋଲି ସେ ନିର୍ଭର କରି କହିଲେ ନାହିଁ । ସମସ୍ତେ ଯେତେବେଳେ କହିଲେ ଯେ ବାନାମ୍ବର ବଞ୍ଚିବ ନାହିଁ । ଆମେ ସବୁ ଆଶା ଛାଡ଼ି ଦେଲୁ ।

ଯେଉଁ ଗତିରେ ବାନାମ୍ବରର ମୁମୂର୍ଷୁ ଅବସ୍ଥା, ସାଙ୍ଗମାନେ କହିଲେ, ତାର ସଂସ୍କାରପାଇଁ ପ୍ରସ୍ତୁତ ହୋଇଯାଅ । ମୁଁ ହତଜ୍ଞାନ ହୋଇ ଭାବୁଥାଏ ଯଦି ବାନାମ୍ବରର ମୃତ୍ୟୁ ହୁଏ ତେବେ ମୁଁ ତାର କୌଣସି ଚିହ୍ନ ଏଠି ଆଉ ରଖିବି ନାହିଁ । ତାର ବହିପତ୍ର ଲୁଗା ପଟା ଆଶ୍ରମର ବ୍ୟାଗ ଇତ୍ୟାଦି ସବୁ ଶ୍ମଶାନକୁ ପଠାଇ ଦେବି । ତା'ପରେ କେଜାଣି କ'ଣ ମନ ହେଲା ବାନାମ୍ବରର ପ୍ୟାଣ୍ଟ ପକେଟ ଓ ବ୍ୟାଗରେ କ'ଣ ଅଛି ଦେଖିଲି । ବ୍ୟାଗ ଭିତରୁ ଅସହଯୋଗ ଆନ୍ଦୋଳନ ସମ୍ପର୍କରେ କେତେଖଣ୍ଡି କାଗଜ ପାଇଲି । ଖଣ୍ଡିଏ କାଗଜରେ ବଡ଼ ବଡ଼ ଅକ୍ଷରରେ ଲେଖାଥାଏ—'ମହାତ୍ମା ଗାନ୍ଧୀ', ଭାବିଲି ଗାନ୍ଧୀ ଯଦି ପ୍ରକୃତରେ ମହାତ୍ମା ହୋଇଥିବ, ତେବେ ମୋ ଭାଇକି ବଞ୍ଚାଇବ ।

ଠିକ୍ ସେଇ ରାତିରେ ଆଈ ମା' ସ୍ୱପ୍ନ ଦେଖିଲା–ଜଣେ କିଏ ଧଳା ଟୋପି ପିନ୍ଧି ହସି ହସି ଦୁଆରେ ଠିଆ ହୋଇଛି । ଆଉ ତାକୁ କହୁଛି–ତୋ ନାତି ନିଶ୍ଚୟ ବଞ୍ଚିବ ।

ଆଈ ମା' ଓ ମନ କଥା ଏକାଠି ମେଳ ହୋଇଯିବାରୁ ଭାବିଲି–ରୋଗ ଡ଼ାକ୍ତରଙ୍କ ଔଷଧ ଆଣ ଚେଷ୍ଟା କରିବି। ତହିଁ ଆରଦିନ ଡ଼ାଃ,ଅଟଳ ବିହାରୀ ଆଚାର୍ଯ୍ୟଙ୍କ ପାଖକୁ ଗଲି । ଅଟଳବାବୁ ଶ୍ରୀ ରାଜକୃଷ୍ଣ ବୋଷଙ୍କୁ ସାଙ୍ଗରେ ଧରି ଆମ ବସାକୁ ଆସିଲେ । ସେମାନେ କହିଲେ କଟକରେ ତ ଏ ଔଷଧ ମିଳେ ନାହିଁ ଅକ୍ଷୟ ବାବୁ ଡାକ୍ତରଙ୍କ ଦୋକାନରେ ହୁଏତ ଆଇପାରେ, ଦେଖ । ଭାଗ୍ୟକୁ ଚୌଧୁରୀ ବଜାର ପାର୍କ ପାଖରେ ଅକ୍ଷୟ ବାବୁଙ୍କ ଦୋକାନରେ ସେ ଔଷଧଟି ପାଇଲି । ବାନାମ୍ବର ବଞ୍ଚିଗଲା ।

ସେଇ ଦିନଠୁଁ ମୋ ମନ ବଦଳିଗଲା । ମହାତ୍ମା ଗାନ୍ଧୀ ମୋତେ ପାଗଳ କରିଦେଲେ । ବାନାମ୍ବରକୁ ଘାଲି ଦେବି କ'ଣ, ନିଜେ ଖଦଡ଼ ପିନ୍ଧି ତାଳପତ୍ର ଛତା ଧରି ବାହାରିଲି । ମୋର ଏ ବେଶ ଆମ ଅଫିସ ଚହଲ ପକାଇଦେଲା । ତା ସଙ୍ଗେ ସଙ୍ଗେ ଗାନ୍ଧୀ ସ୍ୱପ୍ନରେ ଦେଖା ଦେବା କଥା ମଧ୍ୟ ବେଶ୍ ପ୍ରଚାର ହୋଇଗଲା ।

ତା ପରେ ଲେଖିଲି ଏଇ 'ମୋହନ ବଂଶୀ' । କିନ୍ତୁ ଛାପିବ କିଏ ? ପାଣ୍ଡୁଲିପିଟି ଧରି କଟକଯାକ ବୁଲିଲି । ମୋର ବେଶଭୂଷା, ତା ସାଙ୍ଗକୁ ଏ ପାଣ୍ଡୁଲିପି ଦେଖି ସମସ୍ତେ ଘଉଡ଼ାଇ ଦେଲେ । ସେତେବେଳକୁ ମୋର ଜଣେ ବନ୍ଧୁ ମୁକୁର ପ୍ରେସ୍‌ରେ ଚାକିରି କରୁଥାନ୍ତି-ଭଦ୍ରକ ଗରଦପୁରର ଭଗୀରଥି ମହାପାତ୍ର । ସେ କହିଲା–ଆଣ୍ ବେ, ଏଇ ପ୍ରେସରେ ଛପାଇ ଦେବା, ଯାହା ହେବ, ହେଉ । ମୁକୁର ପ୍ରେସ୍‌ର ମାଲିକ ବ୍ରଜସୁନ୍ଦର ଦାସ ସେତେବେଳେ ବ୍ରିଟିଶ ସରକାରଙ୍କର ହାତ-ବାରିସି ।

ତାଙ୍କ ଅଜଣାତରେ ମୁକୁର ପ୍ରେସ୍‌ରେ 'ମୋହନ ବଂଶୀ' ଛପା ହୋଇଗଲା । ମୋ ନାଆଁ ଦେଲେ ତ ଚାକିରି ସାଙ୍ଗେ ସାଙ୍ଗେ ଖସିଯିବ । ଭାବିଲି କାହା ନାଆଁ ଆଉ ଦେବି ? ବାନାମ୍ବର ତ କଂଗ୍ରେସରେ ଗଲାଣି–ବାବାଜୀ ହେଲାଣି । ତାରି ନାଆଁ ଦେବି । ତେଣୁ ଛଦ୍ମ ନାମରେ 'ବାନାମ୍ବର' ବୋଲି ଛପାଇଲି । ୧୯୨୨ରେ ପ୍ରଥମ ବହିଟି ଛାପା ହେଲା ପାଞ୍ଚ ହଜାର; ମୂଲ୍ୟ ଥିଲା ତିନି ଅଣା । ଖୁବ୍ କମ୍ ଦିନରେ ବହିତକ ବିକ୍ରି ହୋଇଗଲା । ବହି ବିକ୍ରି ସରିବା ପରେ ଖୋଳତାଡ଼ ହେଲା, ଘର ଖାନତଲାସ ହେଲା ଲେଖକକୁ ଧରିବାପାଇଁ । କିନ୍ତୁ କି ପ୍ରମାଣ ଅଛି ଯେ କିଏ ମୋତେ ଧରିବ ? ଅବଶ୍ୟ ଆସ୍ତେ ଆସ୍ତେ ସମସ୍ତେ ଜାଣିଲେ ଯେ ମୁଁ ଲେଖିଛି ବୋଲି । ସରକାର ଚେଷ୍ଟା କଲେ ମକଦମା କରିବାପାଇଁ । କିନ୍ତୁ ଯେଉଁ ବହିଟି ମଧୁବାବୁଙ୍କୁ ଉତ୍ସର୍ଗ କରଯାଇଛି, ପୁଣି ବ୍ରଜସୁନ୍ଦର ବାବୁଙ୍କ ପ୍ରେସ୍‌ରେ ଛପା ହୋଇଛି ତା ବିରୁଦ୍ଧରେ ମକଦ୍ଦମା ହୁଅନ୍ତା ବା କିପରି ? ଏ ଦୁଇ ଜଣଙ୍କ ଉପରେ ତ ବ୍ରିଟିଶ୍ ସରକାରଙ୍କର ଖୁବ୍ ବିଶ୍ୱାସ ଥାଏ କି ନା ! ତେଣୁ ବହିଟିକୁ ବେଆଇନ କରିଦିଆଗଲା ଓ କଟକଣା ଜାରୀ କରାଗଲା ଯେ ଏ ବହିର ପ୍ରଚାର ଆଉ ହୋଇପାରିବ ନାହିଁ । ହେଲେ, ସେତେବେଳକୁ ବହିତକ ଯେ ବିକ୍ରି ସରିଛି !

ସବୁ କଥା ଚାପି ଦିଆଗଲା ସିନା ମୁଁ କିନ୍ତୁ ଦାଗୀ ହୋଇଗଲି–ବିପ୍ଳବୀଙ୍କ ତାଲିକାରେ ରହିଗଲି ।

ପଚାଶ ବର୍ଷ ପରେ ଏବେ ପୁଣି ଏ ବହିଟି 'ମୋ ଦେଶ ପ୍ରକାଶନୀ' ଛପାଉଥିବାରୁ ଖୁବ୍ ଖୁସି ।

ବୀରକିଶୋର

# ମୋହନ ବଂଶୀ

## ଉତ୍କଳ ଜନନୀ ପ୍ରତି

କେତେ ଓଳିତଳ ହେବୁଁ, ଗୋ ଜନନୀ !
ଅଜି କି ଶୁଣିବୁ ନାହିଁ ?
ମାଡ଼ ଗାଳି ଖାଇ ସବୁ ଦୁଃଖ ସହି
ପଡ଼ିଛୁଁ ତୋ ପାଦ ଗ୍ରହିଁ ।
ଜାତି ପଦ୍ମବନେ ଉଠି ପାହିଲାଣି
ଡାକ ଶୁଭେ ଜାଇ ଭଇ,
ଆମେ ସବୁ ଆଜି ବାସି ଶେଯେ ବସି
ଅଳସେ ମାରୁଛୁ ହାଇ ।
ଭରତ ବର୍ଷିଷ୍ଠ କର୍ମଫୁଲେ ଭରା
ଫୁଲ ଫୁଟେ ଗଛେ ଗଛେ
ସବୁ ଭଇ ମିଳି ଫୁଲ ତୋଳି ଗଲେ
ଆମେ ତ ରହିଲୁ ପଛେ ।
ନାହିଁ ମାଘ ମାସ ସେ ବାଘୁଆ ଜାଡ଼
ନାହିଁ ସେ ଶିଶିର ଭୟ,
କର୍ମଗ୍ରନ୍ଦ ପାଦ-ପଦ୍ମ ଲାଗି ଆଜି
ଭରତେ ବହେ ମଳୟ ।
ଡାକନ୍ତି ରବୀନ୍ଦ୍ର, ଯୋଗୀ ଅରବିନ୍ଦ
ଆଜି ଭଇ, ଲଜପତ,
ପଣ୍ଡିତ ମଦନ, ଆନ୍ଧ୍ର ତପୋଧନ
ମୋତିଲାଲ ଦେଶ ଭକ୍ତ ।
ଗୟାରେ ଡାକନ୍ତି ସୁଧୀ ଗଜଇନ୍ଦ୍ର
ଗଙ୍ଗାକୂଳେ ଦେଶ ବନ୍ଧୁ
ଆମେ କିମ୍ପା ଆଜି ମୂକ ହେଲୁ ମା' ଗୋ !
[ଆମ] ଅଙ୍ଗ କି ହୋଇଲା ପଙ୍ଗୁ ?

ଡାକନ୍ତି ଊର୍ମିଳା, ଦେବୀ ସରୋଜିନୀ,
ସରଳା, ସାବିତ୍ରୀ, ସତୀ
ଆମ ହୃଦ ଏଡ଼େ ପାଷାଣ ହେଲା କି
ନ ଚିହ୍ନିଲୁ ନାରୀ ଭକ୍ତି ।
ସାରଳାଦି କବି ବଳରାମ ଦାସ
ଉପଇନ୍ଦ୍ର ଅଭିମନ୍ୟୁ,
ଜଗନ୍ନାଥ ଦାଶ ଭଗବତ କଥା
ଭୁଲିଗଲୁ ସବୁ ମନୁ ?
ଭକ୍ତ କବି ତୋର ଦାସ ଦୀନକୃଷ୍ଣ
ସୁଲକ୍ଷଣା ତୋର ସୁତା,
ଋଷି ପ୍ରାଣ ମଧୁସୂଦନଙ୍କ ପୂଜା
କରିବୁ କି ସବୁ ବୃଥା ।
ପିଆରି ତୋହର ପର-ଉପକାରୀ
ଗଉରୀ ତୋ କର୍ମବୀର,
ଫକୀର କଥାକୁ ଭୁଲିଗଲୁ ମାଆ,
ତୋ ଯୋଗୁଁ ଯିଏ ଫକୀର ।
ଗଧାନାଥ ପରା ତୋହରି ସନ୍ତାନ
ଚିଲିକା କୂଳରେ ବସି
ଗ୍ୱଦିନୀ ଗତିରେ ଗାଇଲା ଯେ ଗୀତ
ଶୁଣୁଥିଲୁ ହସି ହସି ।
ଅନନ୍ତ ଆକାଶେ କୋଟି କୋଟି ତାରା
ଗୋଟି ଗୋଟି କରି ଗଣି,
ଭାରତୀ ମନ୍ଦିରେ ରଖିଦେଲା ଗଲା
ସାମନ୍ତ ସେ ଶିରୋମଣି ।

ନୀଳ ଅମ୍ବୁ କୂଳେ ଝଙ୍କା ଆମ୍ବ ମୂଳେ
ରହିଛି ତୋ କାରିଗରୀ
ଆମେ ଆଜି ମା .. ଗା, ଦାନା କନା ଲାଗି
ଖୋଜୁଛୁଁ କିଗନିଗିରି ।
କର୍ପୂର ଗଲଣି ପଡ଼ିଅଛି କନା
କି କହିବୁ ଆମ କଥା ?
ହୃଦୟର ଜ୍ୱାଳା ହୃଦୟ ଜାଣଇ
ମନ ଜାଣେ ମନ ବ୍ୟଥା ।
ତୁ ତ ଧର୍ମ ରାଣୀ ସବୁ ଧର୍ମ ଆଣି
ସାଇତିଛୁ ସବୁ କାଳେ
ଫୁଲ ଉପବନେ, ବିଜନ କାନନେ
ଗିରି ପରବତ ମାଳେ ।
ଆଜି ସେହି ଧର୍ମ ଡାକ ଶୁଣି ମା ଗୋ,
ଡାକୁଛୁ ସରବେ ତୋତେ,
ଆଶିଷ କରି ଗୋ, ଅବଗାହୁ ଆମେ
ଧର୍ମ ଯୋଗୁଁ କର୍ମ ସ୍ରୋତେ ।
ତୋହରି ସନ୍ତାନ ବୋଲି ଯେଣ୍ଣେ ଆମ
ହୃଦୟରେ ଥାଉ ଜ୍ଞାନ,
ସତ୍ୟ ଯୋଗୁଁ ଆମ ଦେହ ଟଳି ଯାଉ
ଧର୍ମ ଯୋଗୁଁ ଯାଉ ପ୍ରାଣ ।

—

## ଧର୍ମ ବାଣୀ

ଶାକ୍ୟସିଂହ ଯେଉଁ ଦେଶେ ରାଜାହାର କାଢ଼ି
ସୁତ ଦାର ପରିବାର ସବୁ ଆଶା ଛାଡ଼ି
ଚାଲିଗଲେ ପର ଦୁଃଖ ତୁଟାଇବା ପାଇଁ
ସେ ଦେଶେ ଜନମ ମୁହିଁ ନେଇଅଛି ଭାଇ ।
ଯେ ଦେଶରେ ଦୟାଶୀଳ ଅଶୋକ ରାଜନ
ସତ୍ୟ ବଳେ ନ୍ୟାୟ ବଳେ କରି ରାଜପଣ
ମନ୍ଦିରେ ମନ୍ଦିରେ ପ୍ରତି ଶୈଳ କନ୍ଦରେ
ଲେଖିଗଲେ ଜୀବେ ଦୟା ଅକ୍ଷୟ ଅକ୍ଷରେ,
ସେ ଦେଶେ ଜନମ ମୁହିଁ ନେଇଅଛି ଭାଇ ।
କେତେ ଦିନ ରଖିବି ଯମା ମନକୁ ଭୁଲାଇ ?
ଯେ ଦେଶେ ଦଧୀଚି ମୁନି ଦେବତାଙ୍କ ପାଇଁ
ଦାନ କଲେ ନିଜ ଅସ୍ଥି ମନା କଲେ ନାହିଁ
ସେ ଦେଶର ଜଳବାୟୁ ଗଢ଼ିଅଛି ମୋତେ
କି କହିବି ମନ କଥା ଫେଡ଼ି ଆଉ ତୋତେ ?
ବହୁ ଦିନ ତଳ କଥା ଯେ ଦେଶରେ ଥରେ
ଭାଇ ସ୍ନେହ ଲାଗି ଭାଇ ନ ରହିଲା ଘରେ,
ଚଉଦ ବରଷ କାଳ ବନରେ ବୁଲିଲା
ନାରୀ ପାଶେ ଥାଇ ନାରୀ ମୁଖ ନ ଦେଖିଲା
ବ୍ରହ୍ମଚର୍ଯ୍ୟ ବ୍ରତ ବଳେ ବଧିଲା ବଇରୀ
ସେ ଦେଶ ମୋ ଜନ୍ମଭୂମି, ଭୁଲିବି କିପରି ?

ଆଉ ଦିନକର କଥା ମନେ ପଡ଼େ ଭାଇ
ପାରୁ ନାହିଁ ସତ କଥା ଅନ୍ତରେ ଲୁଚାଇ ।
ଦ୍ୱୈତ ବନେ ଆସି ଯେବେ ଗନ୍ଧର୍ବ ରାଜନ
ହରି ନେଲା କୁରୁ କୁଳେ କରି ନିବନ୍ଧନ,
ସହି ତ ପାରିଲେ ନାହିଁ ପାଣ୍ଡୁ ପାଞ୍ଚଭାଇ
ମହାବେଗେ ତାଙ୍କ ପଥ ଓଗାଳିଲେ ଯାଇ,
ଦେଖାଇଲେ ସ୍ୱଦେଶର ମହାପ୍ରେମ ସେଠି
ସେ ଦେଶେ ଜନମ ମୋର, ସେହି ଦେଶ ଏ ଟି ?
"ଶତ୍ରୁ ହେଲେ, ତାହା ପ୍ରତି ପ୍ରେମଭାବ ଧର
ଅଭିଶାପ ଦେଲେ, ତାଙ୍କୁ ଆଶୀର୍ବାଦ କର"
ଯୀଶୁଙ୍କର ଏହି ଗୀତ ଜଳେ ସ୍ଥଳେ ଗାଇ
ଆସିଲେ ସେବକେ ଯେବେ ଯୁଗେପରୁ ଭାଇ,
ବରି ନେଲା ଯେଉଁ ଦେଶ ନ କରି ସନ୍ଦେହ
ସେ ଦେଶ କୋଳରେ ମୁହିଁ ଧରିଅଛି ଦେହ ।
ଯେ ଦେଶରେ ସତ୍ୟପୀର ପ୍ରଭୁ ନାରାୟଣ
ଶଙ୍ଖ ଚକ୍ର ଗଦା କରେ ଫକୀର ଭୂଷଣ

ଧରି, ବିଜେ କରିଥିଲେ ରାଜ ଅନ୍ତଃପୁରେ,
ସେ ଦେଶ ଗୌରବ କଥା ମନେ କର ଥରେ ।
ସେ ଦେଶେ ଜନମ ମୁହିଁ ନେଇଅଛି ଭାଇ
ସେ ଦେଶରେ ପର କାଳି କେବେ ହେବ ନାହିଁ ।
ସେ ଦିନର କଥା ଏ' ତ, ଯେ ଦେଶ ସନ୍ତାନ
ଚିକାଗୋ ସଭାରେ ଦେଇ ମହାତତ୍ତ୍ୱ ଜ୍ଞାନ,
ଭାରତ ହୃଦୟ କଥା କହିଲା ବୁଝାଇ
ଉଲ୍ଲାସେ ରହିଲେ କୋଟି ନରନାରୀ ଚାହିଁ;
ସେ ଦେଶରେ ଭାଇ ମୋର ହୋଇଛି ଉଦୟ;
ସେ ଦେଶରେ ହେବ ନାହିଁ କେବେହେଁ ବିଲୟ ।
ଯେ ଦେଶେ ନାନକ ଗୁରୁ ସରସ୍ୱତୀ କୂଳେ
ପ୍ରଚାରିଲେ ନବ ଧର୍ମ ବସି ବଟ ମୂଳେ,
ଗର୍ଜିଲେ ନବୀନ ଶିଷ୍ୟ କାନେ ଦେଇ ମନ୍ତ୍ର,
କାଟିଲେ ସକଳ ଭେଦ ଧରି ପ୍ରେମ-ଯନ୍ତ୍ର ।
ସେ ଦେଶେ ଜନମ ମୁହିଁ ସେହି ଦେଶ ଶିଷ୍ୟ
ସାଧନର ସିଦ୍ଧି ଦିନେ ଲଭିବି ଅବଶ୍ୟ ।
ଯେଉଁ ଦେଶେ ଆଜି ଗଙ୍ଗୋଦଧି କୂଳେ କୂଳେ
ବ୍ରାହ୍ମଣ ଚଣ୍ଡାଳ ସଙ୍ଗେ ବସି ବଟ ମୂଳେ,
ମହାନନ୍ଦେ ମହାଭୋଗ କରନ୍ତି ଭୋଜନ
ସେ ଦେଶେ କରିଛି ମୁହିଁ ବିଶ୍ୱାସ ସ୍ଥାପନ ।
ଯେ ଦେଶରେ ରାଜା ଋଷି ଶ୍ରୀରାମ ମୋହନ,
ବେଦରୁ ଅମୃତ ଫଳ କରିଲେ ଚୟନ
ଚଖାଇଲେ ଡାକି ଡାକି ପ୍ରତି ନର ନାରୀ,
ସେ ଦେଶର ଭବିଷ୍ୟତ ପାରିଛି ମୁଁ ବାରି ।

ଯେ ଦେଶେ ଦ୍ୱାପର ଯୁଗେ ନିଜେ ନନ୍ଦସୁତ
ସହଯୋଗ ବରଜନ ନୀତି ଧରି ପୂତ
ଗୋପୀ ଗୋପାଳଙ୍କ ହୃଦୟ କରି ସଂଯୋଗ
ମନା କଲେ ଦେବରାଜେ ଦେବାପାଇଁ ଭୋଗ
ସେ ଦେଶର ଭାଗ୍ୟରବି ଆସିଲାଣି ଉଇଁ;
ବାସି ଶେଯେ କେତେ ଦିନ ଶୋଇଥିବି ମୁହିଁ ?

ଯେ ଦେଶେ ନିତାଇ ପ୍ରେମ ଗୀତ ଗାଇ ଗାଇ,
ଘରେ ଘରେ ଡାକଦେଲା ଆସ ଆସ ଭାଇ;
ଡାକ ଶୁଣି ନର ନାରୀ ହେଲେ ଆତ୍ମହରା,
କିଏ ସେ ନଗରରେ ତାକୁ ଫିଙ୍ଗିଲା ଖପରା;
ଫାଟିଗଲା ଶିର ତାର ବହିଲା ଶୋଣିତ
ତେବେ ସୁଧା ନ ଟଳିଲା ନିତାଇର ଚିତ୍ତ,
ଭାଇ ଭାଇ ଡାକି କଲା ସମସ୍ତଙ୍କୁ କୋଳ
ମହାନନ୍ଦେ ମହାପ୍ରେମେ ହୋଇଗଲା ଭୋଳ;
ସେ ଦେଶେ ଜନମ ମୁହିଁ ନେଇଛି ଏଥର,
ସବୁ ସହିପାରେ କରି ଛାତିକି ପଥର ।
ଯେ ଦେଶର ଛୋଟ ଭକ୍ତ ଧ୍ରୁବ, ପ୍ରହଲ୍ଲାଦ
ସାଧିଲେ ନୀରବ ଯୋଗ, ସାଧନା ଅଗାଧ,
ସାତ ବରଷର ଧ୍ରୁବ ଲଭି ଧର୍ମ ଜ୍ଞାନ
ସହି ତ ପାରିଲା ନାହିଁ ଆତ୍ମ ଅପମାନ,
ଘୋର ବନେ ଆରମ୍ଭିଲା ମହାତପ ଯାଇ
ଧନ୍ୟ ହେଲି ସେହି ଦେଶେ ଜନମି ମୁଁ ଭାଇ ।

ଧନ୍ୟ ହେଲି ପ୍ରହଲ୍ଲାଦ ନାମ ଧରି ଆଜି
ଯେତେ ତାକୁ ଭୁଲାଇଲେ ନ ହେଲା ସେ ରାଜି ।

ରାଜି ହେଲା ନାହିଁ ଭାଇ ଦେଖାଇଲା ଛାତି
ଛାତି ପରେ ଛିଡ଼ା ହେଲା ଆସି ମତ୍ତ ହସ୍ତୀ ।
ମତ୍ତହସ୍ତୀ ପଦ ତଳେ ମଲା ନାହିଁ ଯହୁଁ ।

ପର୍ବତ ଶୃଙ୍ଗରୁ ତାକୁ ଗଡ଼ାଇଲେ ତହୁଁ
ତେବେ ସୁଦ୍ଧା ନ ପାରିଲେ ତା ପଣ ଛଡ଼ାଇ ।

ଆତ୍ମବଳେ ବଳୀ ହେଲା ପ୍ରହଲ୍ଲାଦ ବୀର
କି କରିବେ ଛେଚି ତାର ମାଟିର ଶରୀର ?

ଆତ୍ମବଳେ ଛିଡ଼ା ହୋଇ ରଖିଲା ତା ପଣ
ସେ ଦେଶ ମାଟିରେ ମୋର ଗଢ଼ା ଏ ଜୀବନ ।

ସେ ଦେଶେ ମୋହନ ଆଜି ଧରି ନବ ବଂଶୀ
ଦିନ ରାତି ଚାହିଁ ଦେଖ ବଜାଉଛି ବସି ।

ବିଷାଦେ ଡାକଇ ବଂଶୀ "ଉଠ ଉଠ ଭଇ
ତୋ ଦେହରେ ଶୋଣିତ କି ଆଜି ଆଉ ନାହିଁ ?
ତୋ ଦେହରେ ନାହିଁ କିରେ ଦେବତାଙ୍କ ଅଂଶ ?
ଏ ଭାରତ ଭୂମି ପରା ଦେବତାଙ୍କ ବସ୍ତି ?
ପଞ୍ଜାବର ଅତ୍ୟାଚାର ନାହିଁ କିରେ ମନେ ?
ଦେଖୁ ଦେଖୁ ଶୁଣୁ ଶୁଣୁ ଭୁଲିଗଲୁ କ୍ଷଣେ ।
ହିମାଚଳ ପାଦତଳୁ ସୀମାଚଳ ଯାଏ
ମଦନର * ପ୍ରେତ ଆତ୍ମା ଡାକି ଡାକି ଯାଏ ।
ଡାକିଯାଏ ପ୍ରେତଆତ୍ମା ପଞ୍ଜାବ ସତୀର
ସତୀତ୍ୱ ହରଣ ଭୟେ ଦେଲା ଯେହୁ ଶିର ।
ଡାକୁଛିତି ସେହି ଆର୍ଯ୍ୟସୂତେ ଆଜି ଭଇ
ମରିଥିଲେ ଯେଉଁମାନେ ଯୋଡ଼ି ବେତ ଖାଇ ।
ଡାକୁଛନ୍ତି ପଞ୍ଜାବର କୁଳ ସୀମନ୍ତିନୀ
ବିନା ଦୋଷେ ମରିଥିଲେ ଯେ ସବୁ ଗର୍ଭିଣୀ ।
ପୁରୀ ଜିଲ୍ଲା ଶମଶାନେ ଦେଖ ପୁଣି ଭଇ
ଗଡ଼ୁଛନ୍ତି ମୁଣ୍ଡମାଳ ଗଗନକୁ ଚାହିଁ ।
ଗଡ଼ୁଛନ୍ତି ଶମଶାନେ ନାହିଁ ପ୍ରାଣବାୟୁ
ତେବେ କିଆଁ ଚାହିଁଛନ୍ତି ଗଗନକୁ ଆଉ ?
ଗଗନକୁ ଚାହିଁଛନ୍ତି ଦେଖି ଆମ ଦଶା
ଗଗନଟି ଥିଲା ତାଙ୍କ ଜାତିର ଭରସା ।
ଗଗନକୁ ଚାହିଁ ଚାହିଁ ମରିଗଲେ ଭଇ
ତାଙ୍କ ଡାକ ଶୁଭୁଅଛି ହୃଦୟରେ ଯାଇ ।
ଏଣେ ପୁଣି ସାତ କୋଟି ସହୋଦର ଭଇ
କାନ୍ଦନ୍ତି ବିଷାଦେ ମୋର ହୃଦୟ ଫଟାଇ ।
ଧର୍ମର କୋଗନ୍ ମୋର ଲୋଟେ ଆଜି ତଳେ
ଚର୍ଚ୍ଚୀଗଣୀ ଡାକୁଛନ୍ତି ଜୀବନ ବିକଳେ ।
ସବୁ ଡାକ ପରେ ଶୁଣି ଗୋମାତା କ୍ରନ୍ଦନ
ହୃଦୟକୁ ନିରନ୍ତର କରଇ ଦହନ ।
ହୃଦ ମୋର ଫାଟିଯାଏ କି କହିବି ଭଇ
ଅଇଗା ହୁଅନ୍ତା ଯଦି ଦିଅନ୍ତି ଦେଖାଇ ।

କାହାଠାରେ ଭଇ ଆଉ କରିବି ବିଶ୍ୱାସ
ବିଶ୍ୱାସେ ଖାଇଛି ବିଷ ବହେ ଅଣଶ୍ୱାସ ।
ବିଶ୍ୱାସରେ କଟିଗଲା ଏତେ ଦିନ ଭଇ
ଏ ଦୁଃଖୀର ଡାକ ତିଳେ ଶୁଣିଲେ ତ ନାହିଁ ।
ସୁନାର ଭରତ ଆମ ହେଲା ଛାରଖାର
ଖାଇବାକୁ ନ ପାଇଲୁ ଓଳିଏ ଆହାର ।
ବିଦେଶୀ ଦରବେ ଆମ ଦେଶ ଗଲା ଭରି
ସତ କହିବାକୁ ଲୋକେ ମରୁଛନ୍ତି ଡରି ।
ମାମଲାରେ ଜିହ ବିକି ମାଗିଲେଣି ଭିକ
ସେ ପୁତନା ରାଜନୀତି ଭଲକରି ଶିଖ ।
ରାଜନୀତି ଦେଖି ଆସ ଗ୍ରାମେ ଗ୍ରାମେ ଯାଇ
ଗଞ୍ଜାଇ ଅଫିମ ବିକା କାହିଁ ଛାଡ଼ ନାହିଁ ।
ସ୍ଥାନେ ସ୍ଥାନେ ବସିଗଲାଣି ସୁରାର ଦୋକାନ
ତପୋବନ ହୋଇଅଛି ନରକ ଗୋଦାମ ।
ଏ ରାଜନୀତିରେ କିବା ଦେଶର ଉନ୍ନତି
ବାଡ଼ ବୁଜିବାକୁ ଘରେ ନାହିଁଟି ଖଣତି ।
ଘୋର ଚଡ଼ିବାକୁ ଘରେ ବାଡ଼ି ଖଣ୍ଡେ ନାହିଁ
ଦେଢ଼ ଶତ ବରଷର ଶିକ୍ଷା ଦେଖ ଭଇ ।
ପଢ଼ି ପଢ଼ି ଆମ୍ଭେମାନେ ହେଲୁଁ ବଡ଼ ବାବୁ
ଜଣାଗଲା ଏତେ ଦିନେ ଆମ ଜାତି କାବୁ ।
ବାନ୍ଧିଲା କଙ୍କଡ଼ା ପରି ଆମ ଜାତି ବଳ
ଟାଣି ନେଇଗଲା ସବୁ ୟୁରୋପର କଳ ।
ଟାଣି ନେଲା ଧନ ଭଇ ଟାଣିନେଲା ଧାନ
ସର୍ବଶେଷେ ଟାଣିନେଲା ପିଣ୍ଡରୁ ପରାଣ ।
ତେବେ ସୁଦ୍ଧା ଭଇ ତୋର ନ ତୁଟିଲା ଆଶା
ଭଦ୍ରଫଣ ତମଠାରେ ରଖିଚୁ ବିଶ୍ୱାସ ।
କହ ଭଇ ସତ କଥା ତୋ ହୃଦ ଫିଟାଇ
ଚତୁରକୁ କେତେ ଆଉ କହିବି ଚେତାଇ ।
କି କରୁଛ ଏ ବିପଦେ କିସତୋ କାମନା
ଅସ୍ତ୍ର ବଳ ନାହିଁ ବୋଲି କରୁ କି ଭାବନା ?

* ଜାଲିଓ୍ୱାନବାଗରେ ନିହତ ଜଣେ ଯୁବକ ।

ଅସ୍ତ୍ର ବଳେ ହେବ କି ରେ ଦେଶର ଉଦ୍ଧାର
ଏ ଦେଶର ଧର୍ମ ନୁହେଁ ଗୁପତ ଶିକାର ।
ଏ ଭରତ ଜାଣେ ନାହିଁ କୂଟ ରାଜନୀତି
ପେଟ ଲାଗି ଯାଏ ଦିନ ଗୋଲାମରେ ବିତି ।
ଜାଣେ ନାହିଁ ଏ ଭରତ ବୋଇତ ବେପାର
ବୋଇତ ଚଳାଇ ପୃଥ୍ୱୀ କରିବ ଶିକାର ।
ଜଳଦସ୍ୟୁ ନୁହେଁ ମୋର ଏ ଭରତ ଭାଇ
କଟୁଥିଲା ଦିନ ତାର ତପୋବନେ ଥାଇ ।
ଅହିଂସା ପରମ ଧର୍ମ ଏ ଭରତ କଥା
ନ ଦେବ ଉତ୍ତର କିଛି କାଟି ନେଲେ ମଥା ।
ଭରତର ଏହି ନୀତି ଜାଣିଅଛି ଭାଇ
ମରିବା ପଛେକେ କା'କୁ ମାରିବା ତ ନାହିଁ ।
ଭରତ ବଳାଏ ଯଦି ଅସ୍ତ୍ର ଯୁଦ୍ଧେ ମନ
ରବି ତଳେ ନ ରହିବ କେବେ ତା ଆସନ ।
ସାହାରା ଭୂମିରେ ନିଶ୍ଚେ ହେବ ପରିଣତ
ଭରତ ପକାଏ ଯଦି ବିନ୍ଦୁଏ ରକତ ।
ବିନ୍ଦୁଏ ରକତ କେବେ ନ ପଡ଼ିବ ତଳେ
ଭରତକୁ ଉଦ୍ଧାରିବି ଏକା ଆତ୍ମବଳେ ।
ଆତ୍ମବଳେ ଉଦ୍ଧାରିବି ଭରତ ଭୂମିକି
ଯମ ସ୍ତମ୍ଭା ନ ପାରିବ ପଶି ମୋ କଡ଼ିକି ।
ଆତ୍ମାବଳେ ବଳୀ ହୋଇ ଧରିଛି ମୁଁ ବଳ
ସେ ବଳେ ଚୂରିବି ଆଜି ପୃଥିବୀର କଳ ।
ପୃଥିବୀର କଳ ଆଜି କରିବି ମୁଁ ଚୂର୍ଣ୍ଣ
ବାଣିଜ୍ୟ ଦାନବ ଆଶା ହୋଇ ନାହିଁ ପୂର୍ଣ୍ଣ ।
ବିଜ୍ଞାନର ବିଷ ଦାନ୍ତ ଝାଡ଼ିବି ମୁଁ ଆଜି
ଦେଖନ୍ତୁ ଏ ରବି ଶଶୀ ଗ୍ରହ ତାରା ରାଜି ।
ଦେଖନ୍ତୁ ସରବେ ଆଜି ଅମର ସନ୍ତାନ
ପୂର୍ବର ଭରତବର୍ଷ ଅଛି ବିଦ୍ୟମାନ ।
ପୃଥିବୀ ଦେଖନ୍ତୁ ଆଜି ନୟନ ଫିଟାଇ
ପଢ଼ିଥିଲ ଜମ୍ବୁଦ୍ୱୀପ ଅଛି କାହିଁ ଯାଇ ।

ନୟନ ଫିଟାଇ ଆଜି ଦେଖନ୍ତୁ ସରବେ
ଧର୍ମର ପ୍ରମାଣ ଅଛି ଭରତ ଗରଭେ ।
ଆସ ଆସ ଭାଇ ତୁହି ଆର୍ଯ୍ୟର ସନ୍ତାନ
ଧର୍ମ ରକ୍ଷା ଯୋଗୁଁ ଆଜି ନୁହଁ ସନ୍ଦିହାନ ।
ଧର୍ମ ରକ୍ଷା ଯୋଗୁଁ ତୋତେ କରଇ ଆହ୍ୱାନ
ଧର୍ମ ଯୋଗୁଁ ତେଜି ଆସ ମାନ ଅଭିମାନ ।
ଧର୍ମ ଯୋଗୁଁ ସବୁ କଥା ଭୁଲିଯାଅ ଭାଇ
ଧର୍ମ ଯୋଗୁଁ ଦିଅ ଆଜି ହୃଦ ମୁକୁଳାଇ ।
ଧର୍ମ ଯୋଗୁଁ ତେଜ ଭାଇ ଧନର ଲାଳସା
ଧର୍ମ ଯୋଗୁଁ ତୋହଠାରେ ରଖିଛି ଭରସା ।
ଧର୍ମ ଯୋଗୁଁ ହୁଅ ଆଜି ଦାଣ୍ଡର ଭିକାରୀ
ଧର୍ମ ଯୋଗୁଁ ହୁଅ ଭାଇ ଦେଶର ଭଣ୍ଡାରୀ ।
ଧର୍ମ ଯୋଗୁଁ ଭରତକୁ କର ତୁ ସମ୍ମାନ
ଧର୍ମ ଯୋଗୁଁ ତୁଟା ଆଜି ଭେଦାଭେଦ ଜ୍ଞାନ ।
ଧର୍ମ ପଦ ତଳେ ଆଜି ବଳା ତୋର ମନ
ଧର୍ମ ଯୋଗୁଁ ଧରିଛୁ ଏ ଅମୂଲ୍ୟ ଜୀବନ ।
ଧର୍ମ ଅଛି ବୋଲି ତୁହି ଧରିଛୁ ଏ ଦେହ
ଧର୍ମ ଯୋଗୁଁ ପୃଥ୍ୱୀ ସିନା ବୁଲେ ଅହରହ ।
ଧର୍ମ ଯୋଗୁଁ ଚାଲିଛନ୍ତି ରବି ଶଶୀ ତାରା
ଧର୍ମ ଯୋଗୁଁ ସରଗରୁ ପଡ଼େ ବର୍ଷାଧାରା ।
ଧର୍ମ ଯୋଗୁଁ ମହୋଦଧି ଲଙ୍ଘେ ନାହିଁ କୂଳ
ଧର୍ମ ଯୋଗୁଁ ଟେକିଅଛି ହିମାଳୟ ଚୂଳ ।
ଧର୍ମ ଯୋଗୁଁ ବ୍ୟାପିଅଛି ଅନନ୍ତ ଗଗନ
ଧର୍ମ ଯୋଗୁଁ ଧୀରେ ସିନା ବହଇ ପବନ ।
ଧର୍ମ ଯୋଗୁଁ ଧରଣୀରେ ଯୁଗେ ଯୁଗେ ଭାଇ
ଆସୁଛନ୍ତି ଦେବକୂଳ ସ୍ୱର୍ଗରୁ ଓହ୍ଲାଇ ।
ଧର୍ମ ଯୋଗୁଁ ଆସିଥିଲେ ମହମ୍ମଦ ମୋର
ଧର୍ମ ଯୋଗୁଁ ଆସିଥିଲେ ପୀର ପୈଗମ୍ବର ।
ଧର୍ମ ଯୋଗୁଁ ଆସିଥିଲେ ଯୀଶୁଖ୍ରୀଷ୍ଟ ଭାଇ
ଧର୍ମ ଯୋଗୁଁ ଆସିଥିଲେ ପ୍ରାଣର ନିମାଇ ।

ଧର୍ମ ଯୋଗୁଁ ଆସିଥିଲେ ଦେବ ଗଦାଧର (୧)
ଧର୍ମ ଯୋଗୁଁ ଆସିଥିଲେ ପଣ୍ଡିତ ଶଙ୍କର ।
ଧର୍ମ ଯୋଗୁଁ ଆସିଥିଲେ ଦେବ ଦୟାନନ୍ଦ
ଧର୍ମ ଯୋଗୁଁ ଆସିଥିଲେ ସେ ଗୁରୁଗୋବିନ୍ଦ ।
ଧର୍ମ ଯୋଗୁଁ ଆସିଥିଲେ ସେ କେଶବ ଭାଇ
ସମାଜର ଘୋର ଦୁଃଖ ଲିଭାଇବା ପାଇଁ
ଧର୍ମ ଯୋଗୁଁ ଆସିଥିଲେ ଦାଦାଭାଇ ଆଦି
ଭାରତରେ ରଖିଗଲେ ଜୀବନ୍ତ ସମାଧି ।
ଧର୍ମ ଯୋଗୁଁ ଆସିଥିଲେ ଶ୍ରୀ ଗୋପାଳକୃଷ୍ଣ
ଭାବିଲେ ଭାରତ ଦୁଃଖ ସହି କେତେ କଷ୍ଟ ।
ଧର୍ମ ଯୋଗୁଁ ଆସିଥିଲେ କର୍ମୀ ଗଙ୍ଗାଧର
ଧର୍ମ ଯୋଗୁଁ ତାଙ୍କେ ସୁଧା ରବି କବିବର ।
ଧର୍ମ ଯୋଗୁଁ ଦେଲେ ସବୁ ସେ ଚିରରଞ୍ଜନ
ଧର୍ମ ଯୋଗୁଁ ବୁଲେ ସିନା ଆଣ୍ଡ୍ରୁ ତପୋଧନ (୨) ।
ଧର୍ମ ଯୋଗୁଁ ଦେଖ ଧୀରେ ପଣ୍ଡିତ ପ୍ରବର (୩)
ଭଲ ଯେଣ୍ଡେ ସେ ପବିତ୍ର ହିମାଦ୍ରୀ ଶିଖର ।
ଧର୍ମ ଯୋଗୁଁ ଜନମିଲେ ରୁଷିଆରେ ଋଷି (୪)
ଧର୍ମ ଯୋଗୁଁ ଅରବିନ୍ଦ ଯୋଗ କରେ ବସି ।
ଧର୍ମ ଯୋଗୁଁ ଆଳିଭାଇ ପାଳି ଦେଶ ବ୍ରତ
ବନ୍ଦୀଶାଳେ ଦେଖୁଛନ୍ତି ସ୍ୱାଧୀନ ଭାରତ ।
ଧର୍ମ ଯୋଗୁଁ ବନ୍ଦୀ ହେଲେ ଗୋପବନ୍ଧୁ ମୋର
ତେବେ ସୁଦ୍ଧା ନ ଟଳିଲା ହୃଦୟଟି ତୋର !
ଧର୍ମ ରକ୍ଷା ଯୋଗୁଁ ତୁହି ଆସିଅଛୁ ଭାଇ
ନିରୋଳାରେ ବିବେକକୁ ପଚାରିବୁ ଯାଇ ।
ତପୋବନ ପାଳିତାଟି ତୋହର ଜନନୀ
ସତୀର ଶୋଣିତ ଖେଳେ ଦେଖ ତୋ ଧମନୀ ।
ଧମନୀକୁ ଚିରି ଦେଖ ଧୋକା ଯଦି ରହେ
ରାଣୀ ଦୁର୍ଗାବତୀ ରକ୍ତ ତୋ ଦେହରେ ବହେ ।

ତୋ ଦେହରେ ଦେଖ ଆଜି ହୁଏ ପ୍ରବାହିତ
ପଦ୍ମିନୀ ସତୀର ସେହି ପବିତ୍ର ଶୋଣିତ ।
ଅହଲ୍ୟାର ତପ ଭାଇ ମନରେ ଅଛି ତ ?
ମୀରାବାଈ କଥା ନୁହେଁ କପୋଳ କଳ୍ପିତ ।
ତେବେ କିଆଁ ଦେଖୁ ଆଉ ଧର୍ମର ବିପଦ ?
କି ହେବ ତୋ ବଡ଼ ପଦ କି ହେବ ସପଦ ?
ଧର୍ମ ଯୋଗୁଁ ଆତ୍ମବଳେ କର ତୁ ବିଶ୍ୱାସ
ଜୀବନରେ ହେବୁ ନାହିଁ କେବେଟି ନିରାଶ ।
ଆତ୍ମବଳେ ବଳୀ ହୋଇ କର ପ୍ରତିକାର
ଆସ ଆସ ଭାଇ ମୋର ହୃଦୟର ହାର ।
ଆସ ଆସ ଭାଇ ମୋର ଭାରତ ପଙ୍କଜ
ଧର୍ମ ଯୋଗୁଁ ଆସ ଆଜି ବେଗେ ହୋଇ ସଜ ।
ଆସ ଆସ ଭାଇ ମୋର ଭୟ ନାହିଁ ଆଉ
ଭାରତର ପୂର୍ବ ଆଶା ଜଳେ ଦାଉ ଦାଉ ।
ମାଘ ମାସ ଶୀତ ଆଉ ଭାରତରେ ନାହିଁ
ମଧୁର ବସନ୍ତ ନିଶି ଆସିଲାଣି ପାହି ।
ଧୀରେ ଧୀରେ ବହିଲାଣି ମଳୟ ପବନ
ଗୁଣୁ ଗୁଣୁ ଶୁଭୁଅଛି ମଧୁପ ଗୁଞ୍ଜନ ।
ମାନ ସରୋବର କୂଳୁ କୁମାରିକା ଯାକେ
ବସନ୍ତ କୋଇଲି ଆଜି ଘରେ ଘରେ ଡାକେ ।
ଆସ ଏହି ଶୁଭବେଳେ ଉଠିଆସ ଭାଇ
ଭାରତର ଚଳବାଳେ ଦେଖ ଆଜି ଗ୍ରାହି ।
ଦେଖ ଆଜି ନବରୂପ ଭାରତ ଆକାଶେ
ଦେଖ ଆଜି ନବରୂପ ହିମାଳୟ ପାଶେ ।
ଦେଖ ଆଜି ନବରୂପ ପଞ୍ଚନଦୀ କୂଳେ
ଦେଖ ଆଜି ନବରୂପ କଳ୍ପବଟ ମୂଳେ ।
ଦେଖ ଆଜି ନବରୂପ ଭଗିରଥୀ ତୀରେ
ଦେଖ ଆଜି ନବରୂପ ବିନ୍ଧ୍ୟଗିରି ଶିରେ ।

---

(୧) ରାମକୃଷ୍ଣ ପରମ ହଂସ, (୨) ରେଭରେଣ୍ଡ ଅଣ୍ଡ୍ରୁଜ, (୩) ମଦନ ମୋହନ ମାଲବ୍ୟ, (୪) ଟଲ୍‌ଷ୍ଟୟ ।

ଦେଖ ଆଜି ନବରୂପ ଦେଉଳେ ଦେଉଳେ
ଦେଖ ଆଜି ନବରୂପ ମସ୍‌ଜିଦ କୋଳେ ।
ଦେଖ ଆଜି ନବରୂପ ଗିରିଜା ଭିତରେ
ଦେଖ ଆଜି ନବରୂପ ଭାରତ ଅନ୍ତରେ ।
ଚଉଦିଗେ ନବରୂପ ଦେଖ ଆଜି ଚାହିଁ ।
ଆଲ୍ଲା ନାମ ଯୀଶୁ ନାମ ରାମ ନାମ ଗାଇ ।
ଜଳେ ସ୍ଥଳେ ପଡ଼େ ଦେଖ କନକ କିରଣ
ହୃଦୟ କୁଟୀରେ ତାକୁ କର ହେ ବରଣ ।
କର୍ମବୀର ହୋଇ ଏବେ କର୍ମ କର ଭାଇ
ଧର୍ମ ଯୋଗୁଁ ଦିଅ ଆଜି ଶରୀର ପତାଇ ।
ଧର୍ମ ଯୋଗୁଁ ପାଳ ଆଜି ସ୍ୱଦେଶର ବ୍ରତ
କର୍ମ ଯୁଗେ ଦେଶହିତେ ହୁଅ ଭାଇ ରତ ।
ଧର୍ମ ଯୋଗୁଁ କର୍ମ କର ଡାକୁଅଛି ଭାଇ
କି କହିବି ମନ କଥା ବେଶୀ ମୁଁ ଫିଟାଇ ।
ମନଠାରୁ ବଡ଼ ଧନ ନାହିଁ ଆଉ ମୋର
ଅରପିଲି ଆଜି ତାକୁ ଦେଶ ପଦେ ତୋର ।
ଅରପିଲି ଆଶୀର୍ବାଦ କର ମୋତେ ଭାଇ
ମୋ ଜୀବନ ଦିଏ ଯେଣ୍ଣେ ତୋ ଜୀବନପାଇଁ ।
ତୋହରି ମଙ୍ଗଳ କାମେ ଲାଗି ଦିବା ନିଶି
ମାଟି ଦେହ ଯାଉ ମୋର ମାଟି ତଳେ ମିଶି ।

ହୋମାନଳ ପରି ମୋର ଜୀବ ଲିଭିଯାଉ
ହିମାଳୟ ଗିରି ମୋର ସ୍ୱାଧୀନତା ପାଉ ।
ସ୍ୱାଧୀନତା ପାଉ ମୋର ଗଙ୍ଗା ମାତା ଆଜି
ସ୍ୱାଧୀନତା ପାଆନ୍ତୁ ସେ ସୀମାଚଳ ରାଜି ।
ସ୍ୱାଧୀନତା ପାଉ ମୋର ବିନ୍ଧ୍ୟ ଗିରିବର
ସ୍ୱାଧୀନତା ପାଉ ମୋର କର୍ଣ୍ଣାଟ ଗୁର୍ଜର ।
ସ୍ୱାଧୀନତା ପାଉ ସେହି ପଞ୍ଚ ନଦୀ ଜଳ
ସ୍ୱାଧୀନତା ପାଉ ମୋର ପ୍ରାଣର ଉତ୍କଳ ।
ତୂର୍କୀରଣୀ ଫେରି ତାର ପୂର୍ଣ୍ଣ ରାଜ୍ୟ ପାଉ
କୃଷକ କୁମାରୀ ମୋର ହସି ଗୀତ ଗାଉ ।
ତପୋବନେ ନ ଶୁଣେ ମୁଁ ଗୋମାତା କ୍ରନ୍ଦନ
ଯଜ୍ଞଧୂମେ ପୂରିଉଠୁ ଭାରତ ଗଗନ ।
ଘରେ ଘରେ ଅରଟକୁ ଚଳାନ୍ତୁ ଘରଣୀ
ସୁଜ୍ଞାନ ଲଭନ୍ତୁ ମୋର ସକଳ ଭଉଣୀ ।
ଅନ୍ତରରେ ରଖି ଭାଇ ଏହି ଏକ ଧ୍ୟାନ
ଦେଶ ପଦେ କଲି ଆଜି ଏ ଜୀବନ ଦାନ ।
ଏ ଜୀବନ ଦାନ କଲି ଦେଶ ଲାଗି ଭାଇ
ଆଗ ପଛ କଥା କିଛି ବାରେ ଚିନ୍ତି ନାହିଁ ।

* * *

## ଏ ବହିର ଇତି କଥା

୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ବେଳେ "ବିଦ୍ରୋହୀ ବୀଣା" ଲେଖିଥିଲି । ସେଥିରେ ଏ ବହିର ପ୍ରଥମ ସାତଟି ସଙ୍ଗୀତ ଥିଲା । ଏହା ଛାପା ହୋଇଥିଲା କଟକର ସତ୍ୟବାଦୀ ପ୍ରେସ୍‌ରେ । ମୂଲ୍ୟ ଥିଲା ଏକଅଣା ମାତ୍ର । ବହିଟି ଛପାଇବାପାଇଁ ଊଣେଇଶି ଟଙ୍କା ଲାଗିଥିଲା । ଏ ଟଙ୍କା ଦେଇଥିଲେ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ । ସରକାର ମୋ ନାମରେ ମକଦ୍ଦମା କଲେ । ଶେଷରେ ମୁଁ ବର୍ଷେ ଜେଲ ଦଣ୍ଡ ଭୋଗିଲି ।

ମୋର ଆଶା "ବିଦ୍ରୋହୀ ବୀଣା" ଜନସାଧାରଣଙ୍କୁ ଦେଶ ପ୍ରେମରେ ଉଦ୍‌ବୁଦ୍ଧ କରିବ ।

ବୀର କିଶୋର

### (୧) ତୋ ବିଜୟ ବାଦ୍ୟ ବଜାରେ ସୈନିକ

ତୋ ବିଜୟ ବାଦ୍ୟ ବଜାରେ ସୈନିକ
(ଆଜି) ଭାରତ ସ୍ୱାଧୀନ ରଣ
ସ୍ୱାଧୀନ ଯୁଗର ଶୁଭ କୁମ୍ଭ ବସା ଶିବିରେ ଉଡ଼ା କେତନ ।
ଦମନ ନୀତିର ଘନ ଗରଜନ
ବଧିର କଲାଣି ମରଣର କାନ
କାରାଗାରଠାରୁ ପାରବାର ଯାଏ ଲୁଣ୍ଠିତ ଜୀବନ ଧନ ।
ଜାଳୁ ପଛେ ଅରି ଅନୀତି ଅନଳ
ଭକତ ତୁ ରଖ ରକତ ଶୀତଳ
ଗଗନେ ପବନେ ଲଗା ତୋ ଆକୃତି ସାଜ ତୁ ପୁନେଇ ଜହ୍ନ ।
ଧ୍ରୁବ ପରିବାରେ ଦେଖା ତୋ ଭକତି
ଭୀଷ୍ମ ପରି ଜଗି ରଖ ତୋ ଶକତି
ଚଇତନ ପରି ସବୁ ଦୁଃଖ ସହି ଟଳାଅ ଜଗତ ମନ ।
ଅହିଂସା ନୀତିକି ଜୀବନରେ ଧରି
ଯୁଗ ଅତ୍ୟାଚାର ଦିଅ ଭାଇ ଦଳି
ଶବ ପ୍ରାଣେ ଶିବ- ତାଣ୍ଡବ ଦେଖାଅ ଏ ଶୃଙ୍ଖଳ ହେଉ ଛିନ୍ନ ।
ପଲାସୀ ଯୁଦ୍ଧର ରକତର ଛିଟା
ପୃଥିବୀ ଉପରୁ ହସି ହସି ଉଠା
ଉଲସି ଉଠନ୍ତୁ ରବି ଶଶୀ ତାରା ହେଉ ସେ ମହାତ୍ମା ଧନ୍ୟ ।

### (୨) ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ

ଅରି ଫେରି ନାହିଁ, ଯୁଦ୍ଧ ସରି ନାହିଁ
ଆସ ମୋ ଶିବିରେ ଆସ ଭାଇ !
ହିମାଚଳ ଶିରେ ଶବଦ ଶୁଭଇ ଡର ନାହିଁ ଆଉ ଡେରି ନାହିଁ
ସଭ୍ୟର ଜଗତୁଁ ରଣ ବିଜ୍ଞାନର
ବିଷ ପୂରାପୂରି ହରି ନାହିଁ ।
ପ୍ରକୃତି ସୁନ୍ଦରୀ ବିଜୟ-ଚନ୍ଦ୍ରିକା
ବିଶ୍ୱ ଗଗନରେ ଭରି ନାହିଁ ।
ଅରି ଫେରି ନାହିଁ......
ଭାରତର ନବ ମନ୍ତର ଉଚ୍ଚାଟେ
ଶିବ ନାଚିଲାଣି ଶବ ପାଇ,
ମାନବ ମୁକତି ଗଙ୍ଗା ଆସୁଛନ୍ତି
ବାରେ ଚଉଦିଗ ଦେଖ ଚାହିଁ ।
ଅରି ଫେରି ନାହିଁ......
ଜଡ଼ ଚେତନର ବଳ କଷାକଷି
ଅସ୍ତ୍ର ଯାବତ୍ ରଣ ଏହି
ତରଙ୍ଗ ଏହାର ରୋଧିବ କିଏ ସେ
ଯୁଗ ଯୁଗାନ୍ତର ଯିବ ବହି ।
ଅରି ଫେରି ନାହିଁ......
ଭକତ ଯେ ଅଛ ଦେବୀ ପୂଜା କର
ରକତ ମନ୍ଦାର ଢାଳି ଦେଇ,

ତରୁଣ କେ ଅଛ ମରଣକୁ ଦଳି
ଦେବତା ପରଏ ଉଠ ଚେଇଁ ।
ଅରି ଫେରି ନାହିଁ.....
ଚାଷୀ କାରିଗର ପ୍ରାଣ ରକ୍ଷା କର
ଆଜି ଫୁଲ ପାଣି ସିଞ୍ଚି ଦେଇ
ଅଚିରେ ଧରଣୀ ସଉଗ ସାଜିବ
କଳି ଚାଲିଯିବ ବଳି ପାଇ ।୫।
ଅରି ଫେରି ନାହିଁ.....

●

## କବି ବାଜେ କବିତା ବନ୍ଦ କର

କବି, ବାଜେ କବିତା ବନ୍ଦ କର,
କମାଣ ପରଏ କଲମ ଧର ।
ଥରେ ବଜା ନବ ସମର ଭେରୀ,
ତରୁଣ ଯେତେ ସେଇ ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।
ଗୋଇପୀ ଅଧର ଯାଉଛି ଶୁଖି,
କବିତା ଲେଖିବୁ କାହାକୁ ଦେଖି
ଚାନ୍ଦ ବଦନେ ନାହିଁ ରେ ହସ,
ଶରତ୍ ରସ ଦେଖିବ କିଏ ଚାଖିବ କିଏ ବସନ୍ତ ରସ
କଣ୍ୱ ମୁନିର ନାହିଁ ତପୋବନ,
ମୁଗ୍ଧ କଲ ଯେ ନରପତି ମନ,
ବନ ଛବି ତୋର ଜୀର୍ଣ୍ଣ ବେଶ
ଯଜ୍ଞ ଧୂମ ସପନ ସମ ବିଷ ବାଷ୍ପରେ ଥରଇ ଦେଶ ।
ଦମୟନ୍ତୀ ପ୍ରେମ ଆସିବ କାହୁଁ,
ବିଳାସ ଦାନବ ଶୋଷଇ ଲହୁ,
ସଂଯମ ଚିନ୍ତାମଣି ଗଲଣି ଚାଲି;
ଶିକ୍ଷା ଏଥି ଭିକ୍ଷା ପାଇଁ ବିବେକ ପଙ୍ଗୁ ବଢ଼ନ୍ତି ଖାଲି ।
ଗୀତା, ଗୀତାଞ୍ଜଳି ପଢ଼ୁଛି କିଏ,
କୁଟୁମ୍ବ ଜଞ୍ଜାଳ କମାଇ ଦିଏ
ପଲ୍ଲୀ ହୃଦୟ ଜଳଇ ନିତି,
କଙ୍କାଳ ବୁକେ ଲେଢ଼ିବ କିଏ ଅଭିସାରିକାର ଗୁପ୍ତ ପ୍ରୀତି ।
ସାବିତ୍ରୀ ଜଠରେ ଉଠଇ ଜଳି,
ଯମ ସଙ୍ଗେ କିଏ କରିବ କଳି,
ଅର୍ଣ୍ଣବ ପୋତେ ଯାଉ ଅଛି ଅନ୍ନ
ତ୍ରିଂଶ କୋଟି ଦ୍ୱିପଦ ସାଥୀ ଥାଆନ୍ତି ଏଠି ବସ୍ତ୍ର-ହୀନ ।
ମସୀଧାର ଆୟୁ ନେଉଛି ହରି
ଅସିଧାର ଦେଖି ଉଠନ୍ତି ଥରି
ଆତ୍ମସମ୍ମାନ ପାଇଛି ବଳି
ଉସିଧାର-ବନ୍ଧା ପଶୁଦଳ ପରି ଆପଣା ଭିତରେ ଲଗାନ୍ତି କଳି ।
ନାଦୀରସାହାର ଲୁଣ୍ଠନ ଭଳି,
ମରହଟ୍ଟା ପଛକେ କରୁ କଇବଲି
ଏ ରକ୍ତ-ଶୋଷୀ ଶାସନ ନୀତି,
ହୀରଠାରୁ ଜିଗ ସବୁ ଶୋଷି ନିଏ ପୂତନା ପରଏ ଦେଖାଇ ପ୍ରୀତି
କବି, ବାଜେ କବିତା ବନ୍ଦ କର,
କମାଣ ପରଏ କଲମ ଧର
ଥରେ ବଜା ନବ ସମର ଭେରୀ
ତରୁଣ ଯେତେ ସେହି ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।

●

## ଡାକେ ବନ୍ଧୁକ ଡାକେ ତରବାରି

ଡାକେ ବନ୍ଧୁକ, ଡାକେ ତରବାରି
ବନ୍ଦୁକ ମୁଖେ ଗର୍ଜେ କମାଣ ଉଡ଼େ ବ୍ୟୋମଯାନ ଧାଡ଼ି ଧାଡ଼ି ।
ମୃତ୍ୟୁ ସଙ୍ଗେ ଯୁଝିବ କେ ଆସ,
ସୌର ଜଗତେ ଅରଜିବ ଯଶ,
ଆସ ପ୍ରହଲ୍ଲାଦ ପରି ଦମ୍ଭ ଧରି ।
ଚୈତନ୍ୟ ସମ ସଂଗୀତ ତୋଳି,
କର୍ତ୍ତବ୍ୟ ପଥୁଁ କଣ୍ଟକ ଦଳି
ମଥା ରକ୍ତ ଧାରରେ ଦିଅ ଢାଳି ।
ସଂଯତ କର ପ୍ରକୃତି ବର୍ଗ,
ମୁକ୍ତ କର ଏ ଭରତ ଦୁର୍ଗ;
(ଆଜି) ହୋଇ ଗୋବର୍ଦ୍ଧନ ଗିରିଧାରୀ ।

ଅର୍ଦ୍ଧରତ୍ନେ ଯୋଗୀ ଗଜପୁଣ୍ଡ
ଖୋଜିଲ୍ଲ ସେ ଶକ୍ତି ବରଜି କଳଙ୍କ
ଘଇ ଆଜି ସେଇ ଶକ୍ତି ଧରି ।
ସିନ୍ଧୁ ସଲିଳ କମ୍ପାଇ ଆସେ
ଯୁଦ୍ଧ ବୋଇତ ସାରି ସାରି
ଡାକେ ବନ୍ଧୁକ, ଡାକେ ତରବାରି ।

## ମୁଁ ଯେ ବିଦ୍ରୋହୀ ଚିର ବିଦ୍ରୋହୀ

ମୁଁ ଯେ ବିଦ୍ରୋହୀ ଚିର ବିଦ୍ରୋହୀ
ଚିର ରଣଜୟୀ ରଣ ବିଦ୍ରୋହୀ;
ରଣ ମାନବ, ରଣ ଦାନବ, ରଣ ରକ୍ତ ମୁଖସ୍ଥ
ମୁକ୍ତ କରିବି ମୋର ମହୀ ।
ବିଷ କନ୍ଦୁକ ସବୁ ଚୂରିବି
ତୋପ ବନ୍ଧୁକ ଯେତେ ହରିବି ।
ଭଣ ଅସ୍ତ୍ର ଯେତେ ଭର୍ଗଭୁଙ୍ଗ ଦେଇ
ମୁଁ ତ ଗର୍ଜିବି ଇଙ୍ଗଳ ମଇ ।
ଶ୍ରମ ସଞ୍ଚିତ ଧନ କିଞ୍ଚିତ
କେବେ କରଇ ନ ଦେବି ବଞ୍ଚିତ ।
ଏ ଲୁଣ୍ଠନ ଚିତା ଦରବାର ଲଗି,
ଜମି ଗୁଣ୍ଡେ ନ ଦେବି କାହିଁ ।
ନର ହତ୍ୟାରେ ନର ଗୌରବ
ନର ବନ୍ଧନେ ନର ବୈଭବ;
ଏ ଗୌରବ ପଥା ରଖିବି ନାହିଁ ମୁଁ
ଏଠି ଦେଇ ବୀରତ୍ୱର ଦ୍ୱାହି ।
ଯୁଗ ଅତ୍ୟାଚ୍ଛର ମୁଁ ଦଳିବି
ଶତ ଶାନ୍ତି ପତାକା ତୋଳିବି ।
ଅନନ୍ତ ଆସନ ଟଳମଳ ହେବ
ନିଷ୍ଟେ ହୋଇବି ପନ୍ତୟ-ଦେହୀ ।

## ଦରିଆ ଦଖଲ କରି ଯିବ କିଏ ଆସ

ଆସ ରେ ଆଜି ଆସ,
ଆଜି ଆସ
ଆସ ଦରିଆ ଦଖଲ କରି ଯିବ
କିଏ ଆସ
କଳ କଳିଯୁଗ ହେଲା ବଳୀୟାର,
ମନୁଷ୍ୟ କରଇ ମନୁଷ୍ୟ ଶିକାର ।

ବିଦେଶୀ ଶାସନ କଲା ଶମଶାନ
ଆମ ଦେବତା କନକ ଦେଶ ।

ଅଭବ ଅନଳ ଘରେ ଘରେ ଜଳେ
ଜୀଅନ୍ତା ମୁର୍ଦାର ହେଲେ ରବି ତଳେ
ସର ଜାଳ୍ଚି ନିଏ କୂଟ ସରକାର
ସତ କହିଲେ ଲଗିବ ଦୋଷ;
ଥିଲେ ତ ପଠାଣ ଥିଲେ ମରହଟ୍ଟା
କେହି ତ ନ ଥିଲେ ଏଡ଼େ ଚିତାକଟା
ନିଆଁ ପାଣି ଚୂଲି ଘୁଉଳ ସବୁଠି
କା'ର ନଥିଲା ଟିକସ ଶୋଷ,
ଆସରେ ଆଜି ଆସ ।

କଚେରୀ ଇସ୍କୁଲ ଯେତେ ମାଳ ମାଳ
ସବୁ ତ ବେପାରୀ ବେପାରର ଜାଲ
ଧରମ କରମ ସବୁ ତ ଉଠିଲା
ଖାଲି ଦଳ ଦଳ କ୍ରୀତଦାସ
ଆସରେ ଆଜି ଆସ ।

ବୁଦ୍ଧ ଚଇତନ ମହମ୍ମଦ, ଯିଶୁ
ଏ ଶାସନ କଲା ସମସ୍ତଙ୍କୁ ପଶୁ,
ତୋପ ବନ୍ଧୁକ ଯେ ଦେବତା ଏହାର
ମିଥ୍ୟା ଅନୀତି ଭକତି ରସ
ଆସରେ ଆଜି ଆସ ।

ଏ ଶାସନ ଆଜି କରି ଖଣ୍ଡ ଖଣ୍ଡ
ପ୍ରଜା ହାତେ ଦେଇଯିବା ରାଜଦଣ୍ଡ,
ତଳେ ବସୁମାତା ଉପରେ ଦେବତା
ସଦା ଗାଇବେ ଆମରି ଯଶ ।
ଦରିଆ ଦଖଲ କରି ଯିବ କିଏ ଆସ ।

●

## ମୁଖ ବନ୍ଦ କରିଲେ କି ଦୁଃଖ ଯିବ ଭାଇ

ମୁଖ ବନ୍ଦ କରିଲେ କି ଦୁଃଖ ଯିବ ଭାଇ
ଭ୍ରମରେ ଭ୍ରମୁଛ ଖାଲି
ନିଜ ଗାତ ନିଜେ ଖୋଳି,
ଆପଣା ବେକରେ ଆପେ ଫେଟ ଲଗାଇ ।
ବୃଥାରେ ଦେଖାଅ ଦମ୍ଭ
ଟଳୁଛି ଆସନ ତବ;
ନେଡ଼ି ଗୁଡ଼ କହୁଣିକି ଦେଲ ବୁହାଇ ।
ତୁମ୍ଭ ଅତ୍ୟାଚାର କର୍ମ
ନ ସହି ପାରିଲା ଧର୍ମ,
ଗୁମର ଯେତକ ଦେଲ ସବୁ ଫିଟାଇ ।
କେତେ କରି କୂଟନୀତି
ଥାପିଥିଲ ଏହି ଭିତ୍ତି
ମସୀଜୀବୀ ଅସିମୁନେ ଦେଇ ଭଙ୍ଗାଇ ।
ପଢ଼ିନା ରାବଣ କଥା
ସୀତା ଲାଗି ଯିବ ମଥା
ଜଣାଥିଲା ନ ପାରିଲେ କେହି ଚେତାଇ ।
କ୍ରୋଧଟି ଅନ୍ଧାର କଣା
କରିଦିଏ ବୁଦ୍ଧି ବଣା
କାନ୍ଧର ଲକ୍ଷ୍ମୀଙ୍କି ଲୋକ ଗୋଡ଼େ ଠେଲଇ ।
ସାତ ପୁରୁଷକୁ ଭାବ
ରଖିବାକୁ ଯଦି ଭାବ
ଗରବର ଗିରିଶୃଙ୍ଗୁ ଆସ ଓହ୍ଲାଇ ।

ଲୋଡ଼ ଯଦି ପ୍ରତିକାର
ଭୁଲିଯାଅ ଅଧିକାର
ଆସ ଏ ପତାକା ତଳେ ମଥା ନୁଆଇଁ ।
ଛାଡ଼ ସେ ବେପାରୀ ବୁଦ୍ଧି
ଦେଖା ନା ଶିକାରୀ ସିଦ୍ଧ;
ବଳେ ଆଉ ନ ପାରିବ ତିଳେ ଚପାଇ ।
ଠକି ଠକି ରହିଲୁଣି
ଠକି ଠିକି ଶିଖିଲୁଣି
ବଇଠକେ ନ ପାରିବ ଆଉ ଭୁଲାଇ ।
ଚାହଁ ଯଦି ବିଶ୍ୱ ଶାନ୍ତି
ଖେଳ ନାହିଁ କୂଟନୀତି,
ଆସ ଯିଶୁ ପ୍ରେମ ବାକ୍ୟେ ହୃଦ ମଜାଇ ।

●

## ଗୋପବନ୍ଧୁଙ୍କ ଅଭ୍ୟର୍ଥନା

ଆହେ ତ୍ୟାଗୀ, ବନ୍ଦି ତବ ପଦ ନେବୁ । ୦ ।
ଆସିଛୁ ଯୁବକ ଶତ,
ଅନୁସରି ତବ ପଥ,
ଭାରତର ସ୍ୱାଧୀନତା ଲାଗି ମରିବୁ ।
କଲ ଆଜି ଯେଉଁ କାମ,
ରଖିଲ ଉଜ୍ଜ୍ୱଳ ନାମ,
ସହଜେ କି ଆମେ ତାହା ମନୁଁ ଭୁଲିବୁ ।
ଫିଙ୍ଗିଥିଲ ଚାକିରିକି,
ଭାଙ୍ଗିଲ ତା ଆଇନିକି,
ତୁମ୍ଭଙ୍କୁ ଛାଡ଼ି କି ଆମେ ଘରେ ବସିବୁ ।
'ହୋଦା' ପାଇଁ ମାଳେ ମାଳେ,
ସ୍ୱଭକ୍ଷ ତ ବନ୍ଦୀଶାଳେ,
ଯୁବକ କି ଆମେ ଏବେ ବକ ହୋଇବୁ ।

କଟେରି ଇସ୍କୁଲ ଯହିଁ
ସବୁତ ବେପାର ପାଇଁ
ସେ ଜାଲରେ ସହଜେ କି ଆମେ ପଶିବୁ ।

ନାହିଁ ଯହିଁ ସ୍ୱାଧୀନତା
କହିବାକୁ ମୁହେଁ କଥା;
ସେ ଦେଶରେ କୋଉ ପାଠ ଆମେ ଶିଖିବୁ ।

ତୁମ୍ଭେ ଯିବ କାରଗାରେ
ଆମେ ଯିବୁ ପାରବାରେ
ଲହରୀଠୁଁ ସ୍ୱାଧୀନତା ଗୀତ ଶୁଣିବୁ ।

ଗରିବର ଗଣ୍ଡିଧନ
ତୋଗଣିକି ତୁଚ୍ଛ ଲୁଣ,
ଅନନ୍ତଶୟନ ପାଶୁଁ ମାଗି ଆଣିବୁ ।

ବେ-ଆଇନ୍ ସରକାର
ସରକଢ଼ା ନୀତି ଯାର,
କେଉଁ ବଳେ ବାଧା ଦେବ ତାହା ଦେଖିବୁ ।

ଅଛି ତା'ର ବ୍ୟୋମଯାନ,
ଆମର ଫୁଲ ପଗଣ
ତୋପ ସଙ୍ଗେ ଟପୋବଳ ଥରେ କଷିବୁ ।

ସରିଯିବ ତା' ବେପାର
ଥରିଯିବ ଦରବାର
ପ୍ରହଲ୍ଲାଦ ପରି ନିଷ୍ଠେ ଆମ୍ଭେ ଜିଣିବୁ ।

ଦେଖିବେ ଜଗତ ସାରା,
ଚମକିବ ଗ୍ରହ ତାରା,
ଦେବତାଙ୍କ ଦରବାର ଆମେ ଖୋଲିବୁ ।

●

## ରଣ ରସରେ ରସିବୁ ରସିକ

ରଣ ରସରେ ରସିବୁ ରସିକ କେ' ତୁ ରସିଆ
ମରଣ ହେବ ତୋ ଚରଣ ସେବକ
ମୋହନ ମୁରଲୀ ଫୁଙ୍କିଆ । ୦ ।

କୋହିନୁର ସିନା ଘେନିଗଲେ କାହିଁ
କୁରୁକ୍ଷେତ୍ର ମାଟି ପଡ଼ିଅଛି ଗୁହିଁ,
ନା' ରଥୀ ସାରଥି ପ୍ରେମକଥା ରସ
ଭଲ କରି ମନେ ବୁଝିଆ । ୧ ।

ଯମୁନାର ପ୍ରାଣ ପାରିନାହିଁ ଶୋଷି,
ଦେଖିଲେ ତୋତେ ସେ ଉଠିବ ଉଲସି ।
ତା' ମନେ ନାଚିବ ରଙ୍ଗସଭ କଥା
କାଳିନ୍ଦୀ ହ୍ରଦରେ କାଳିଆ । ୨ ।

ମସୀଧାରେ ନାହିଁ ଦେଶର ମୁକତି,
ଅସିଧାର ଆଗେ ଢ଼ାଳି ଦେ' ତୋ ଛାତି ।
ଦେବରାଜ କଥା ମନେକର ଥରେ
(ସାଜ) ଗୋବର୍ଦ୍ଧନ-ଗିରି-ମେଳିଆ । ୩।

ଯୁଦ୍ଧରେ ଜିତିଲେ ଯୁଧିଷ୍ଠିର ପରି
ସରଗକୁ ଯିବୁ ଏଇ ଦେହ ଧରି ।
ଦେବବାଳାମାନେ ବରିନେବେ ତୋତେ
ଦେବତା ଧରିବେ ବଳିଆ । ୪ ।

●

## ମୁଁ ଭାରତ ଯୁବା ଭାଗ୍ୟବାନ

ମୁଁ ଭରତ ଯୁବା ଭଗ୍ୟବାନ
ମୁଁ ନୁହେଁ ହିନ୍ଦୁ ଇହୁଦି ଜୈନ
ମୁଁ ନୁହେଁ ପାର୍ଶି ଖ୍ରୀଷ୍ଟିୟାନ୍
ନୁହଁଇ ବୌଦ୍ଧ ନୁହେଁ ମୁଁ ବ୍ରାହ୍ମ
ନୁହେଁ ଶିଖ୍ ନୁହେଁ ମୁସଲମାନ୍ । ୦ ।

ଦେହ ରକ୍ଷା ମୋ ପରମ ଧର୍ମ
ଦେଶ ରକ୍ଷା ମୋର ଅସଲ କର୍ମ
ସଦା ସତ୍ୟ ମୋହର ଭଗବାନ୍ । ୧ ।

ଧରି ଅବତାର ଆସିଅଛି ଉର୍ଦ୍ଧେ
ସାଗର ପଗଏ ସମୁଦାର ମୁହିଁ
ଏ ହିମଗିରି ପରି ମହୀୟାନ । ୨ ।

ଶକ୍ତି କାହାର ଦେବ ମୋତେ ବାଧା
ପବନ ପରି ତ ମୁକ୍ତ ମୁଁ ସଦା
ମୁଁ ରବି ଶଶୀଠାରୁ ତେଜୀୟାନ୍ । ୩ ।
କୁଲି କାରିଗର କୃଷିଜୀବୀ ଦଳ
ଛାତ୍ର ଯେତେ ମୋ– ବନ୍ଧୁ କେବଳ
ତାଙ୍କ ମଙ୍ଗଳ ଲଗି ଦେବି ଜାନ୍ । ୪ ।

●

## ମଣନା ଏହାକୁ ପିଲା ଖେଳ

ମଣ ନା ଏହାକୁ ପିଲା ଖେଳ
ପଡ଼ିଛି ପରୀକ୍ଷା ଶେଷ ବେଳ
କଷଟି ପଥରେ କାଳ କଷି ବସେ
କେତେ ଅଛି ସୁନା, କେତେ ଭେଲ ।
ନିକିତି ତଉଲ କରେ ନିତି
କେତେ ଗ୍ରାମ ଅଛି ଦେଶ ପ୍ରୀତି
କେତେ ଅଛି ବୁଦ୍ଧି କେତେ ଅଛି ଶୁଦ୍ଧି
କେତେ ଅଛି ତମ ମନ ବଳ ।
ଧାନରୁ ଅଗାଡ଼ି ବଛାବଛି
ଦେଖିବେ ଯେ ଏଠି ଥିବେ ବର୍ତ୍ତି
ବଡ଼ ହେବେ ସାନ, ସାନ ହେବେ ବଡ଼
ସାର ପୃଥୀ ଆଜି ଟଳ ମଳ ।
ଦମ୍ଭ ଅଭିମାନ ଛୁଦୁଁ କାଢ଼ି
ଅଳସ ବିଳାସ ଦିଅ ଛାଡ଼ି
ଯୁଗ ବଦଳିବ ତୁମରି ଦୁଆରେ
ହଟି ପଳାଇବ କଳି କାଳ ।
ମଣନା ଏହାକୁ ପିଲା ଖେଳ..............କେତେ ଭେଲ ।

●

## ଆମେ ଭାରତୀୟ ଭାଗ୍ୟବାନ

ଆମେ ଭରତୀୟ ଭଗ୍ୟବାନ
ଭଗ୍ୟବାନ୍, ଭଗ୍ୟବାନ
ଭରତ ଆମର ଜନ୍ମମାଟି
ଭରତ ଆମ ଜନ୍ମ ସ୍ଥାନ ।

ଭରତର ସ୍ୱଷୀ ଭରତ ମୂଳିଆ
ଗର୍ଜିଛି ଆମର ଏହି ମାନ
ଭରତର ପାଣି ଭରତ ପବନ
ଦେଇଛି ଆମର ଜୀବ ଦାନ ।

ଯୁଗ ଯୁଗ ଧରି ଆମ ଇତିହାସ
କୀରତି ଆମର ମହୀୟାନ
ରବି, ଶଶୀ, ତାର ସସାଗର ଧର
କରନ୍ତି ଆମର ଜୟଗାନ ।

ମନ୍ଦିର ମସଜିଦ୍ ଗୁରୁଦ୍ୱାର ଗୀର୍ଜା
ନୁହେଁ କେହି ବଡ଼ ନୁହେଁ ସାନ
ଗୋଟିଏ ମାଟିରେ ଗଢ଼ା ଏହି ସବୁ
ଆମ ବଳେ ଆମେ ବଳୀୟାନ୍ ।

'ଜଗତ ହିତାୟ' ମନ୍ତ୍ର ଆମର
ଯୁଗେ ଯୁଗେ ରଖୁ ଜଗ ମାନ
ସୁନୀଳ ସାଗର ମନ୍ଥନ କରି
କରିଥିଲୁ ଆମେ ବିଷ ପାନ ।

ଯୁବକ ଆମର କରିଥାନ୍ତି ଯୋଗ
ମୁକତି ପଥରେ ରଖି ଧ୍ୟାନ
ଧ୍ୱଂସ ମୁଖରୁ ରଖିବୁ ପୃଥ୍ୱୀକି
ବିଜ୍ଞାନୀ ମହଲେ ଦେଇ ଜ୍ଞାନ ।

ଦାନବଙ୍କୁ ଆମେ ଦେବତା କରିବୁ
(ଆମ) ଦେହକୁ କରି କି କୋରବାନ
ଅହିଂସା ଆମର ବିଜୟ କେତନ
ସତ୍ୟ ଆମର ଭଗବାନ ।

ଆମେ ଭରତୀୟ ଭଗ୍ୟବାନ
ଭଗ୍ୟବାନ, ଭଗ୍ୟବାନ
ଭରତ ଆମର ଜନ୍ମମାଟି
ଭରତ ଆମର ଜନ୍ମସ୍ଥାନ ।

* * *

# ରଣଦୁନ୍ଦୁଭି

---

## ଏ ବହିର ଇତି କଥା

"ରଣ ଦୁନ୍ଦୁଭି" ଲେଖିଥିଲି ୧୯୩୦ ମସିହାରେ, ଲବଣ ସତ୍ୟାଗ୍ରହ ବେଳେ । ଏହି ବହିର ଗୀତଗୁଡ଼ିକ ସେତେବେଳେ ସତ୍ୟାଗ୍ରହୀମାନେ ଗାଇ ଗାଇ ଲୁଣ ମାରିବାକୁ ଯାଉଥିଲେ ଏବଂ ଗିରଫ ହେଉଥିଲେ ।

ଶେଷରେ ବହିଟିକୁ "ଲେଖକ ବୀରକିଶୋର" ନାମରେ ଛପାଇଲି । କୌଣସି ପ୍ରେସ୍ ନିଜ ନାମ ଦେଇ ଏହାକୁ ଛପାଇବା ପାଇଁ ରାଜି ହେଲେ ନାହିଁ । ତେଣୁ ଏହାକୁ ଗୋଟିଏ ପ୍ରେସ୍‌ର ଛଦ୍ମ ନାମ ଦେଇ ଛାପା ହେଲା । ପ୍ରେସ୍ ନାମ ରହିଲା—ରେଙ୍ଗୁନ୍ ବିପ୍ଳବୀ ପ୍ରେସ୍ । ମୁଦ୍ରକ ମଧ୍ୟ ଛଦ୍ମବେଶୀ—ଇ ୟାଂ ପୁଙ୍ଗୀ । ପ୍ରକାଶକ ହେଲେ କାମଦେବ । ସେତେବେଳେ ବହିଟିର ଦାମ୍ ଥିଲା ଏକ ଅଣା ।

ସେତେବେଳେ ଏହା ମାତ୍ର ବାର ପୃଷ୍ଠାର ବହିଟିଏ ଥିଲା । ମୋର ଆଉ କେତେଗୁଡ଼ିଏ ସଙ୍ଗୀତକୁ ଆଣି ବର୍ତ୍ତମାନ ସେହି ପୁରୁଣା "ରଣ ଦୁନ୍ଦୁଭି"ରେ ଯୋଡ଼ି ଦିଆଯାଇଛି ।

'ରଣ ଦୁନ୍ଦୁଭି' ଯେତେବେଳେ ପ୍ରକାଶିତ ହେଲା, ବ୍ରିଟିଶ ସରକାର ସଙ୍ଗେ ସଙ୍ଗେ ତାକୁ ବେଆଇନ୍ କରିଦେଲେ ଓ ସବୁ ଛାପା ବହିକୁ ବାଜ୍ୟାପ୍ତ କରିଦେବା ପାଇଁ ଆମ ଗୃହ ଓ ମୋ ଶ୍ୱଶୁରାଳୟ ଖାନ୍ ତଲାସ କରିଥିଲେ ।

ବୀରକିଶୋର

---

ଭାଇ ହେ,

ରଣ ସମୟରେ ବହି ଧରିବାକୁ
ମୋତେ ଆଉ ତୁମେ କହନା
ଛାତିର ରକତ ତାତି ଉଠେ ମୋର
ବାଜିବାରୁ ଯୁଦ୍ଧ ବାଜଣା,
ଭାଇ ହେ...।

ଘନ ଘନ ବାଜି ଉଠେ ରଣଭେରୀ
ମଦମତ୍ତ ଆଜି ଆମର ବଇରୀ
ମୋ ଦେଶ ଦେବତା ଛାତି ରକ୍ତ ଲାଗି
ଲହ ଲହ ତାର ରସନା,
ଭାଇ ହେ...।

କି ବହି ଘୋଷିବି ପଢ଼ିବି କି ପାଠ
କି ଅଙ୍କ କଷିବି ହୋଇ ଗବ କାଠ
ଯୁବକ ହୋଇ କି ବକ ହୋଇବି ମୁଁ
ବିବେକକୁ କରି ବଞ୍ଚନା,
ଭାଇ ହେ...।

ଟଙ୍କା ନୁହେଁ ମୋର ଜୀବନର ଲକ୍ଷ୍ୟ
ଶଙ୍କା ନହଇ ତ ଯୁବକ ପୋଷାକ
ଆଖିରେ ଲଗାଇ ଅନ୍ଧ ପୋଟଳିକି
ଦେଖୁଥିବି ଦେଶ ଯାତନା,
ଭାଇ ହେ...

କୁଳବଧୂମାନେ ମରୁଛନ୍ତି ଖଟି
ସାନ ସାନ ପିଲା ସହୁଛନ୍ତି ଲାଠି
ଗାନ୍ଧୀ, ଗୋପବନ୍ଧୁ ଗ୍ରହିଁଛନ୍ତି ମୋତେ
ନାହିଁ କି ମୋ ହୃଦେ କରୁଣା
ଭାଇ ହେ... ।

ଯୁଦ୍ଧ ଇତିହାସ ହୋଇଲେ ପଠିତ
ଶୁଣି ବଂଶଧର ହୋଇବେ ଲଜ୍ଜିତ
ନରହନ୍ତାର କଂସେଇ ଶାଳେ ମୁଁ
ଲେଖୁଥିଲି ବସି ରଚନା,
ଭାଇ ହେ... ।

ହିମାଳୟ ଶିରୁ ଡାକନ୍ତି ଦେବତା
"ଦ୍ୱାରେ ଉଭା ତବ ଜଗତ କରତା
ଉଠ ହେ ଯୁବକ ତେଜି ମନୁ ଦଳ
ଡେରି ନାହିଁ ଆଉ ଡରନା
ଭାଇ ହେ... ।

ସତ୍ୟର ବିଜୟ ଦେଖ ଯୁଗେ ଯୁଗେ
ହସି ହସି କଷ୍ଟ ସତ୍ୟାଗ୍ରହୀ ଭୋଗେ
ସେ ସତ୍ୟ କରଣେ ପ୍ରାଣ ଢାଳିଦେବି
ଭୁଲି ଆଗ ପଛ ଭାବନା
ଭାଇ ମୋତେ ଆଉ ତୁମେ କହନା ।

## ବଜାଇ ବାଦ୍ୟ ସଜାଇ ସୈନ୍ୟ

ବଜାଇ ବାଦ୍ୟ ସଜାଇ ସୈନ୍ୟ
ହଟାଇ ଶତ୍ରୁ ବୁଦ୍ଧି
(ଚାଲ) ଭାରତ ଦୁର୍ଗ ଦଖଲ କରିବା
ପାଷାଣ ପାଚେରୀ ଭେଦି ।

ସତ୍ୟାଗ୍ରହର ଖଡ଼୍‌ଗ ଧାରରେ
ଚାଲିବା ବିଜୟ ଯାତ୍ରୀ
ରକ୍ତ ଜବାର ଅଞ୍ଜଳି ଦେବା
ପୂଜିବା ଜନମ-ଦାତ୍ରୀ ।

ବ୍ରିଟିଶ କେଶରୀ କେଶର ଦଳିବା
ମୃତ୍ୟୁ ସାଥିରେ ଜୁଝି
ଆଇନ କାନୁନ ଭାଙ୍ଗିବା ତାହାର
ଆସରେ ଜବରଦସ୍ତି ।

ବନ୍ଧୁକ ଗୁଳି କନ୍ଦୁକ ପରି
ମସ୍ତକେ ଦେବା ଫିଙ୍ଗି ।
ଆତ୍ମା ସକାଶେ ଆତ୍ମା ବିକ୍ରିବା
ରକ୍ତ ସାଗର ଲଙ୍ଘି ।

ନୃମୁଣ୍ଡ-ମାଳିନୀ ପୂଜା ଦେବା ଆମ
ଶବ ଶିବିକାର ବକ୍ଷେ
ରବି ଶଶୀ ତାରା ଉଲସି ଉଠିବେ
ଚାହିଁବେ ମୁଗ୍‌ଧ ଚକ୍ଷେ ।

ଜଡ଼ ବିଜ୍ଞାନ ବିଷଦାନ୍ତ ଝାଡ଼ି
ତୋଳିବା ପ୍ରେମର ରାଜ୍ୟ
ତୋପ ବଳଠାରୁ ତପୋବଳ ବଡ଼
ଦେଖିବେ ଜଗତେ ଆର୍ଯ୍ୟ ।

ଇନ୍ଦ୍ରଜିତର ନାଗଫାଶ କାଟି
ଥାପିବା ସତ୍ୟର ଭିତ୍ତି
ଦାନବ ଜାତି କି ଦେବତା କରିବା
ଜଗତେ ରଖିବା କୀର୍ତ୍ତି ।

ମାନବ ନୋହିବେ ମାନବର ଦାସ
ତୁଟିବ ଅଜ୍ଞାନ ଭୀତି
ସାମ୍ୟବାଦର ନନ୍ଦନ ବନ
ଦେବ ପାରିଜାତ ପ୍ରୀତି ।

ତପ୍ତ ଉଦର ଶୀତଳ ହୋଇବ
ଭାଙ୍ଗିବ ବିଳାସ ପନ୍ଥା
ଭାଇ ବେଳେ ଭାଇ ଛୁରି ନ ମାରିବେ
ନ ରହିବେ ନରହନ୍ତା ।

## ଦିନ ରାତି ମୋର ସେହି ଚିନ୍ତା

ଦିନ ରାତି ମୋର ସେହି ଚିନ୍ତା,
ବନ୍ଧୁ, ସେହି ଚିନ୍ତା ।

(ଏ) ସରକାର ଶବ ଦାହ ହେବ କେବେ
ଦେଖିବି ମୁଁ ତାର
ଶେଷ ଚିତା,
ବନ୍ଧୁ, ସେହି ଚିନ୍ତା ।

ପଞ୍ଜାବଠାରେ ସେ ଯାହା କଲା
କେତେ ନିର୍ଦ୍ଦୋଷଙ୍କ ପ୍ରାଣ ନେଲା
ଗର୍ଭିଣୀ ନାରୀଙ୍କି ଗୋଇଠା ପାହାର
(ମନୁ) ଲିଭିବ କି କେବେ ସେହି ବ୍ୟଥା ।
ବନ୍ଧୁ, ସେହି ଚିନ୍ତା ।

ଭଗତ ସିଂହକୁ ଦେଲା ଫାଶି,
ମାଇଲା ଯତୀନ୍ଦ୍ର ଉପବାସୀ
ଲାଲା ଲଜପତ ମରିବା ଦିନରୁ
(ସଦା)ଅନ୍ନ ଜଳ ମୋତେ ଲାଗେ ପିତା,
ବନ୍ଧୁ, ସେହି ଚିନ୍ତା ।

ହିଜିଲି ଜିଅଲ ହତ୍ୟାକାଣ୍ଡ
କୁଳବଧୂଙ୍କର କାରାଦଣ୍ଡ
ମୋ ସାନ ଭାଇଙ୍କ ମୁଣ୍ଡେ ଲାଠିମାଡ଼
(ଆହା) କି କହିବି ସେହି କଂସ କଥା,
ବନ୍ଧୁ, ସେହି ଚିନ୍ତା ।

ଯୁଗ ଅବତାର ମୋର ଗାନ୍ଧି
ଧର୍ମ ଡାକ ଦେଇ କଲା ସନ୍ଧି
ବନ୍ଦୀ କଲା ତାଙ୍କୁ ବିନାଶ କାରଣେ
ନ ବୁଝିଲା ତାଙ୍କ ସରଳତା,
ବନ୍ଧ, ସେହି ଚିନ୍ତା ।

ପଟେଲ, ତୟାବ୍‌ଜି ଆଦି ବୃନ୍ଦ
ହେଲେଣି ତ କେତେ କାରାରୁଦ୍ଧ
ତାଙ୍କ ନିଃଶ୍ୱାସରୁ ଯେ ନିଆଁ ଆସୁଛି
ନ ରହିବ କେବେ ତାର ସତ୍ତା,
ବନ୍ଧୁ, ସେହି ଚିନ୍ତା ।

ଆଇନ ଜାରି ସେ କରେ ନିତି
ମରଣକୁ ଆଉ ନାହିଁ ଭୀତି
ଲକ୍ଷ ଲକ୍ଷ ଲୋକ ଜାଗି ଉଠିଲେଣି
ଗୁଳିକୁ ପତାଇ ନିଜ ମଥା,
ବନ୍ଧୁ, ସେହି ଚିନ୍ତା ।

ମାରିବ ସେ କେତେ ମାରୁ ବଳେ
ବାହାରିବୁ ଆମେ ଦଳେ ଦଳେ
ଜୀବନକୁ ଆମେ ପାଣି ଛଡ଼ାଇଛୁ
ନ ଛାଡ଼ିବୁ କେବେ ଆମ ପନ୍ଥା
ବନ୍ଧୁ, ସେହି ଚିନ୍ତା ।

କଚେରୀ କରିବୁ ଛତା ତଳେ
ସଭା ବସାଇବୁ ଗଛ ମୂଳେ
ସତ୍ୟାଗ୍ରହୀ ନୀତି ଦାଣ୍ଡେ ପ୍ରଚାରିବୁ
ଭାଙ୍ଗିବୁ ବେପାରୀ ଲୁହା ଯନ୍ତା,
ବନ୍ଧୁ, ସେହି ଚିନ୍ତା ।

କଂସାଥାଳି ପଛେ ନେଉ କାଢ଼ି,
କୋରିଖି କରୁ ସେ ଜମି ବାଡ଼ି
ବିଲାତି ଦରବ ଖିଏ ନ ଛୁଇଁବୁ
ପିନ୍ଧିବୁ ଖଦଡ଼ ଛିଣ୍ଡା କନ୍ଥା,
ବନ୍ଧୁ, ସେହି ଚିନ୍ତା ।

ଅହିଂସା ଆମର ଧର୍ମନୀତି
ସାହସ ଆମର କର୍ମଭିତ୍ତି
ଚରିତ୍ର ଆମର ପରମ ଦେବତା
ଜୀବନର ବ୍ରତ ସ୍ୱାଧୀନତା,
ବନ୍ଧ, ସେହି ଚିନ୍ତା ।

## କେତେ ଠେଙ୍ଗା ଅଛୁ କେତେ ବାଡ଼ି ଅଛୁ

କେତେ ଠେଙ୍ଗା ଅଛି, କେତେ ବାଡ଼ି ଅଛି
ଫଟାଇବ ତାଙ୍କୁ ଫଟାଅ
କେତେ ଗ୍ରବି ଅଛି, କେତେ ତାଲ ଅଛି
ପକାଇବ ତମେ, 'ପକାଅ

ଗଜା ବାହାନାରେ ଥିଲ ତ ବେପାରୀ
ବେପାରୀରୁ ଏବେ ହେଲଣି ଶିକାରୀ
ଶିକାରୀର ଧର୍ମ ଶିକାରୀର କର୍ମ
ଆମକୁ ଏଠାରେ ଶିଖାଅ ।

ବନ୍ଦୀ କରି ରଖ ଅହିଂସା-ବାଦୀଙ୍କି
ହିଂସାନଳ ତୁମେ ଜାଳ ଫୁଙ୍କି ଫୁଙ୍କି
ସେ ନିଆଁ ଏବେ ତ ଛିଡ଼ିଙ୍କେ ଉପରେ
ସଭିଙ୍କି କାହିଁକି ଦୋଷାଅ ?

ଭଗ୍ୟକୁ ତୁମର ଅବତାର ଗାନ୍ଧି
ନୋହିଲେ ତମେ ଯା ଧରିଅଛ ବୁଦ୍ଧି
ଶତ ଗୁଳି ଗୋଳା ଦେହରେ ଭେଗନ୍ତ
ପଡ଼ନ୍ତା ଯେସନେ ବୋଲୁଅ ।

ବାର ବର୍ଷ ହେଲ ଲଗିଛି ସମର
ନ ମାରି ମଲେଣି ଶତ ଶତ ବୀର
ସେଇ ଗାନ୍ଧି ଯୋଗେ ତାଙ୍କୁ ପୁଣି ଆଜି
ଗାରଦରେ ବାନ୍ଧି ସଢ଼ାଅ ।

ଥରେ ଯେବେ ଆଖି ଦିଅନ୍ତା ସେ ଠାରି
ଥରି ଉଠୁଥାନ୍ତା ଏ ପାରି ସେ ପାରି
ଲୁହ ରକତରେ ତମ ଆମ ଦେଶ
ହୁଅନ୍ତା ବିହୁଡ଼ା କାଦୁଅ ।

ହଣା କଟା ଲଗି ଗଢ଼ା ଥିଲେ ମନ
ଆମ ଧନ ଖାଇ ବୁଲି ସାଇମନ
ଲକ୍ଷ ଲକ୍ଷପତ ମଶାଣି ପରେ କି
ଜାଳନ୍ତେ ଡାହାଣୀ ଆଲୁଅ ।

ସୀମାନ୍ତ ପଠାଣ ବୀର ପେଶୁଆରୀ
ଦେଖାନ୍ତେ କି ଛାତି ଉପାୟ ନ କରି
ଅହିଂସାରେ ଯିଏ ମର୍ଦ୍ଦି ଯାଇଛନ୍ତି
କାହିଁକି ତାହାଙ୍କୁ ଭୁଲଅ ?

କଟକ, କୁଞ୍ଜଙ୍ଗ, ଇଅ୍ରୁଡ଼ି କାହାଣୀ
ହାତ କଥା ତମ ନାଥେ ଥିବେ ଜାଣି
କଂସାରୀ ଘରର ପାର ଆଗେ କିଆଁ
କୁଲ ଡାଉଁ ଡାଉଁ ବଜାଅ ।

ନେଡ଼ି ଗୁଡ଼ ଗଲ ବହି କହୁଣିକି
ଆଉ ନ ପାରିବ ଠକି ତ ଏଣିକି
ମାନେ ମାନେ ଯଦି ବିଦା ହେବା କଥା
(ଆଗେ) ଗାନ୍ଧିଙ୍କି ଗାରଦୁ ଫିଟାଅ ।

●

## ଏ ଯେ ଗୁଣ୍ଡା ସରକାର

ଏ ଯେ ଗୁଣ୍ଡା ସରକାର
ଏ ଯେ ହୁଣ୍ଡା ସରକାର
ଗୁଣ୍ଡାମି ସଙ୍ଗେ ହୁଣ୍ଡାମି ତାର ନିତ୍ୟ କାରବାର ।
ଆଇନ୍ କାନୁନ୍ ନାହିଁ ତାର କିଛି
ମନ ଖୋଦି ତାର ଗତି
ବୁଦ୍ଧିବଳ ତାର ଚୁଲିକି ଗଲଣି
[ଖାଲି] ଚରଣ ଚୁଟିଆ ନୀତି ।

ଅଣ୍ଡାଗୁଣ୍ଡା ଦେଇ ଆମରି ଭଇଙ୍କି
ଚଳାଏ ଶୋଷଣ କଳ
ଆମରି ପିଠିରେ ଆମରି ଠେଙ୍ଗା
ଦାଣ୍ଡକୁ ଦେଖାଏ ବଳ ।
ଲୋକ ଦେଖାଣକୁ ମାଇ ମାଇ କରି
କଚେରୀ କରିଚି ଛିଡ଼ା
ଭିତରେ ତାହାର ଦିନ ଦି ପହରେ
ସବୁ ଡକାୟତି ଆଡ଼ା ।

ଜାତି ଶତ୍ରୁଙ୍କର ଛାତି ଫୁଲେ ତାର
ଆମେ ଗଣି ମନ୍ତ୍ର କର
ଶତ୍ରୁଙ୍କ ପୁଅର ଗୁହାଳ ଧୋଇକି
ମୋଚି ପୁଅ ବାହାଘର ।
ମହଣ ମହଣ ସୁନା ବୋହିନେଲ
ପଦାକୁ କରିଲ ସନ୍ଧି
ଭିତରେ ଭିତରେ ଅଣ୍ଡା ଭିଡ଼ିଥିଲ
କଂଗ୍ରେସକୁ ଦେବ ଗର୍ଘି ।
ଠକିବା ସକାଶେ ଗୋଲ ଟେବୁଲରେ
ଦି ଥର ବୁଣିଲ ଟଙ୍କା
ଗୋଲ ଟେବୁଲ ତ ଗୋଲ ନୋହିଲ
ଘରିଆଡ଼ ଯାକ ବଙ୍କା ।
ସବୁ ଶ୍ରେଣି ତାର ଧର ପଡ଼ିବାରୁ
ହୁଏ ସେ ଅଥୟ-ଚିର
ରଜତ ଘଉଳ ସ୍ନେବାଇ ହେଉଛି
ମଥାରେ ଚହଟେ ପିଉ ।
ବଣିକ ବେପାର ଭର୍ଗିବାର ଦେଖି
ମନରେ ବହୁତ ଶଙ୍କା
ବିଲତ କୁଲିଙ୍କ ପେଟ ତାତେ ଏଣେ
ବଜେଟ୍‌ରେ ନାହିଁ ଟଙ୍କା ।
ବାତୁଳ ବିଲୁଆ ଗଡି ଧରି ସେ ତ
ଆଇନ କରୁଛି ଜାରି
ଆପଣା ଛାଇକୁ ଆପେ ସେ ଡରୁଛି
ନୀରିହ ପ୍ରଜାଙ୍କୁ ମାରି ।
ତୋପ ବନ୍ଧୁକର ଶରଣ ପଶିଛି
ଠେଙ୍ଗାକୁ କରିଛି ପୂଜା
ଲୋକଙ୍କ ଇଚ୍ଛା ତ ତିଳେ ନାହିଁ ଏଠି
ମନକୁ ମନକୁ ରଜା ।
ଜଙ୍ଗର ବାଘ ଏ ଗର୍ଜନ ଶୁଣି
ଭୟରେ ନ ଯାଅ ହଟି
ବେପାର ଜଚଟି ମୋଡ଼ି ଦେଲେ ତାର
କାମୁଡ଼ି ପଡ଼ିବ ମାଟି ।

୭

## ତମେ ମାର କେତେ ଲଠି ମାରିବ

ତମେ ମାର କେତେ ଲଠି ମାରିବ
ତମ ଲଗି ଆମେ ଜୀବନ ଦେଇଛ
[ତମେ] ତମରି ମହତ ସାରିବ ।
ଆମେ ଯେ ଧରିଛୁ ଅହଂକାର ନୀତି
ପୃଥୀରୁ ନାଶିବୁ ସବୁ ରଣ ଭୀତି
ଭାରତ କାହିଁକି ସଉର ଜଗତ
ମୁକତି ଏଥିରେ ଲଭିବ ।
ପେଟ ଲଗି ସିନା ବିକିଅଛ ମୁଣ୍ଡ
ପଇସା ସକାଶେ ନ ଫିଟାଅ ତୁଣ୍ଡ
ପାପ କରୁଛ କି ପୁଣ୍ୟ କରୁଅଛ
[ଥରେ] ମନକୁ ପଚାର ବୁଝିବ ।
ହସି ହସି ଏଠି ପୋଛିବୁ ରକତ
ପଗରେ ନୋହିବୁ ତିଳେ ବିଚଳିତ
ପ୍ରେମର ପାଗଳ କରିଛି ସେ ଗାନ୍ଧି
ତମେ କି ଆମକୁ ପାରିବ ?
ଗାନ୍ଧି ଯେ ଆମର ଯୁଗ ଅବତାର
ମରିଗଲେ ଆମେ ତରିବୁ ମୁକର
କେବେ ହେଲେ ଦିନେ ବସିଲେ ମଉନେ
ତମେ ଆମ କଥା ଭାବିବ ।
ଛାତି ହାଡ଼ ଦେଇ ସେହି ଗାନ୍ଧି ନାମେ
ସ୍ୱରାଜ୍ୟର ଦିଅଁ ଗଢ଼ିଯିବୁ ଆମେ
ତମ ପୁଅ, ନାତି ଭୋଗିବେ ଜପଭି
ତମ ଆଖି ସାକ୍ଷି ରହିବ ।
ପାପରେ ରାବଣ ଅଳ୍ପାୟୁ ହୋଇଲ
ଗର୍ବ କରି କଂସ ମଞ୍ଚାରୁ ପଡ଼ିଲ
ଭସ୍ମାସୁର ପରି ନିର୍ଦ୍ଦୟେ ଏ ଶାସକ
ନିଜ ହାତେ ନିଜେ ମରିବ ।

## ଭାଇ ମରିବା ତ ଦିନେ ମରିବା

ଭଇ, ମରିବା ତ ଦିନେ ମରିବା
ଛେଳି ମେଣ୍ଢାପରି ପାଞ୍ଚଣକୁ ଡରି
(ଏଠି) ଘୁଷୁରୀ ପରି କି ଚରିବା,
ମରିବା ତ ଦିନେ ମରିବା ।
ଜାତୀୟ ପତାକା ଜାତିର ଜୀବନ
ତାକୁ ଗର୍ଜି ଚିରି ନେଲେ ଅପମାନ
ସ୍ୱରାଜ୍ୟ ଆଶ୍ରମ କଲେ ବେଦଖଲ
କିପରି ଏହାକୁ ସହିବା,
ମରିବା ତ ଦିନେ ମରିବା ।
ସାନ ସାନ ପିଲା ଖାଇଛନ୍ତି ବେତ
ଥପ ଥପ ବହି ପଡ଼ଇ ରକତ
ଜୀବନ ବିକଳେ ଆଖି ଛଳ ଛଳ
ଆଖିରେ ଏହା କି ଦେଖିବା
ମରିବା ତ ଦିନେ ମରିବା ।
ଗୋରା ସର୍ଜେଣ୍ଟର ଗୋଇଠା ପ୍ରହାର
ନାହିଁ କିରେ ତାର କିଛି ପ୍ରତିକାର
ଧ୍ରୁବ ପ୍ରହ୍ଲାଦ ବଂଶଧର ହୋଇ
ଧିକ ଆମ ଦେହ ଧରିବା
ମରିବା ତ ଦିନେ ମରିବା ।
ଅତ୍ୟାଚାର ହେଲା ଦିନୁ ଦିନ ବେଶି
ଘରେ ନ ପାରିବା ଆଉ ଆମେ ବସି
ଗାନ୍ଧି ହରିହର ରହିଛନ୍ତି ଯାହିଁ
[ଜେଲ] ତପସ୍ୟା ସେଠାରେ କରିବା ।
ମରିବା ତ ଦିନେ ମରିବା ।

●

## ଠକ ସରକାର ଦେଶରୁ ନ ଗଲେ

(ଏ) ଠକ ସରକାର ଦେଶରୁ ନ ଗଲେ
ଆପେ ଆପେ କର ବନ୍ଦ ହେବ, ବନ୍ଦ ହେବ
ରଇତ ପାଖରେ ନାହିଁ ପଇସା
ଜମିଦାରଙ୍କର ଉଡ଼ଇ ହଂସା
ମହାଜନଙ୍କର ଖାତା ଫିଟୁ ନାହିଁ
ଜମି ବାଡ଼ି କିଏ ବନ୍ଧା ରଖିବ ?
ଆମ ବାବୁଗିରି ଯାଇଛି ବଢ଼ି
ବିଦେଶୀ ବିଳାସ ମୋହରେ ପଡ଼ି
ଘୋଡ଼ା ଛ' ଟଙ୍କାକୁ ଦାନା ନଅ ଟଙ୍କା
ସଂସାର ଏଥିରେ କାହୁଁ ଚଳିବ ?
ଜମି ପାଞ୍ଚ ମାଣେ ଗୋଟିଏ ହଳ
ମୂଲିଆ ମଜୁରି ହିସାବ କର
କର ପଥକର କଷିଲ ବେଳକୁ
ଓଇଟି ହାତରୁ କିଛି ପଡ଼ିବ ?
ଲାଟବନ୍ଦି ଏବେ ଲାଗିଛି ନିତି
ରଜା ପ୍ରଜାଙ୍କର ଅଭେଦ ପ୍ରୀତି
ମହଣ ମହଣ ସୁନା ବୋହିନିଏ
ଖପର ଦେଇ ସେ ପଳାଇ ଯିବ ।

●

## ପତାକା ତଳକୁ ଆସରେ

ଗାନ୍ଧି ନାମେ ଯେବେ ବିଶ୍ୱାସ ଅଛି
ପତାକା ତଳକୁ ଆସ ରେ
ମୁକତି ଗଙ୍ଗାର ଢେଉ ଛୁଟି ଆସେ
ବେଗାବେଗି ଦିଅ ଝାସ ରେ
ଜଳିଲାଣି ଅରି ପ୍ରଳୟ ଅନଳ
ଥରି ଉଠେ ଆଜି ଅଷ୍ଟ କୁଳାଚଳ
ଦେବତା ଦେଶରେ ଦାନବ ରାଜତ୍ୱ
ମେଲିଅଛି ନାଗଫାଶରେ ।
ବହଳା ଆଇନ କରି ଦେଇ ଜାରି
ଭବେ ସେ ଆମକୁ ଛେଳି ମେଣ୍ଢାପରି
ଭାରତ ଭୂଇଁକି ଗୋଚର କରି ସେ
ଚରଇବ ଏଠି ଘାସ ରେ ।

ନାରୀର ଇଜ୍ଜତ ନରର ସମ୍ମାନ
ଦଳିବାକୁ ଇଚ୍ଛେ ଏ ପାପୀ ଶାସନ
ସିଂହ ଶିଶୁ ତୁମେ ଶ୍ୱାନକୁ ସେବିବ
ହୋଇବ କି ଭୀରୁ ଦାସ ରେ ।

ଶହ ବର୍ଷ କଥା ଗଲା କି ପାଶୋର
ସିମଳା ପାହାଡ଼ ହେଲା ଥର ଥର
ସନ୍ଧି ହେବାଯାଏ ବୁଦ୍ଧି ନ ଦିଶିଲା
(ରାତି) ପାହିଗଲା ଲୋକ ଶୋଷରେ ।

ଗାନ୍ଧି ଯୁଗେ ବନ୍ଧୁ ନେଇଛ ଜନମ
ଆଉ ନ ମିଳିବ ଏପରି ଧରମ
ଦେବ-ଅଂଶୀ ତୁମ୍ଭେ ଉଠି ଆସ ଦମ୍ଭେ
ଏ କଂସର ଗାରିମା ନାଶ ରେ ।

## ଆମେ ଚାହୁଁନା ବନ୍ଧୁକ ତରବାରୀ

(ଆମେ) ଚାହୁଁନା ବନ୍ଧୁକ ତରବାରି
ଅବା ଭଙ୍ଗା ଟେବୁଲର ଦରବାରୀ ।
ରକତେ ଲାଗିଛି ସ୍ୱାଧୀନତା ନିଶା
ଆଦର୍ଶ ଆମର ବରଦୋଲି ଚଷା
ସହି ସବୁ ଦଶା ସମ୍ପତ୍ତି ସମାନ ଦେବୁ ସାରି ।

ଅହିଂସା ବିଜୟ ପତାକା ଉଡ଼ାଇ
ଜଗତର ଗତି ଦେବୁ ବଦଳାଇ
ଯୁଦ୍ଧରେ ଜିଣିବୁ ଜିଣିଲେ ଯେପରି ନାଗପୁରୀ ।

ଜୀବନ ଆମର ଉଠୁଅଛି ତାତି
ଅକାଳୀଙ୍କ ପରି ଦେଖାଇବୁ ଛାତି
ପେଶଓ୍ୱାରୀ ପରି ଗୁଳି ଖାଇ ଆମେ ଯିବୁ ମରି ।

ଦୀପିବେ ଯାବତ ରବି ଶଶୀ ତାରା
ରହିବ ଯାବତ ସସାଗରା ଧରା
ଚିର ଅବିଶ୍ୱାସୀ ବିଦେଶୀ ଶାସନ ଆମ ଅରି ।

ଲୋଡ଼ୁ ନାହୁଁ ଆମେ ଦିଲ୍ଲୀ ସିଂହାସନ
ପ୍ରଜାଧନ ଶୋଷି ମୟୂର ଆସନ
ଦେଶର ମଙ୍ଗଳ ଗଣତନ୍ତ୍ର ଯେତେ ଦେବୁ ଚରି ।

ଶ୍ରମଜୀବୀ ଚାଷୀ ଏ ଦେଶ ପାଳକ
ଯାହାଙ୍କ ହାଡ଼ରେ ଗଢ଼ା ଏ ଭୂଲୋକ
ପ୍ରକୃତ ଶାସକ, ତାଙ୍କ ଜିମା ଦେଶ ଯିବୁ କରି

## ଭାଙ୍ଗ ଆଇନ କାନୁନ୍

ଉନ୍ନତ ହୁଅ ଜାଗ୍ରତ ହୁଅ
ଭାରତ ବୀର ସନ୍ତାନ
ବିଦ୍ରୋହୀ ହୁଅ, ବିଦ୍ରୋହୀ ବୀର
ଭାଙ୍ଗ ପିଶାଚ ଶାସନ ।

ଭାଙ୍ଗ ଆଇନ କାନୁନ
ଦୁଷ୍ଟ ରକତ ଶୋଷଣ
ବିପ୍ଳବୀ ହୁଅ ଭାରତ ସାରା
ବନ୍ଧନ କର ଛେଦନ ।

ଅତ୍ୟାଚାରୀର ଗରବ,
ଦମ୍ଭ ସାହସ ସରବ
ଚୂର୍ଣ୍ଣକର ଦେଖୁ ଅଗତି
କରୁ (ତା) ମୃତ୍ୟୁ ଆହ୍ୱାନ ।

ତୋପ ବନ୍ଧୁକ କମାଣ
(କରୁ) କେତେ କରିବ ବର୍ଷଣ
କନ୍ଦୁକ କରି ଫିଙ୍ଗି ଦେବା
ପଶୁ ବଳ କରି ଦମନ ।

ଫାଶି କାଠେ ପଛେ ଝୁଲିବା
ଜନନୀ ଶିକୁଳି କାଟିବା
ଠେଙ୍ଗା ମାଡ଼ ସହି ତୁଚ୍ଛ କରିବା
କାରାଭୟ କିମ୍ବା ବନ୍ଧନ ।

ପଞ୍ଚତ୍ରିଂଶ କୋଟି ସନ୍ତାନ
ଫୁଙ୍କିଲେ ଉଡ଼ିବେ ଗଗନ
ଗୋରା ଦୁଇ ଲକ୍ଷ ନିର୍ଭୟରେ ଏଠି
କରି ପାରିବେ କି ଶାସନ ?

ବାଣିଜ୍ୟ ତାଙ୍କର ମୂଳ ଭିତ୍ତି
ଶୋଷଣ ତାଙ୍କର ରାଜନୀତି
ମଲୁ ମଲୁ ବୋଲି ଛାଡ଼ି-ପଳାଇବେ
କଲେ ଏ ବିକୃତି ବର୍ଜନ ।

ସ୍ତମ୍ଭିତ ହେବ ଜଗତ
ଦେଖି ଜାଗ୍ରତ ଭାରତ
ସତ୍ୟ ଅହିଂସା ମୂଳ ଭିତ୍ତି କରି
ବନ୍ଦିବା ଜନନୀ ଚରଣ ।

ଓ

## ଜଳ ଜଳ ବିଦ୍ରୋହାଗ୍ନି

ଜଳ ଜଳ ବିଦ୍ରୋହାଗ୍ନି  ତ୍ରିଂଶ କୋଟି ପ୍ରାଣେ
ଧ୍ୱଂସ ଶିଖା ଗର୍ଜି ଉଠୁ  ସିଂହ ଗର୍ଜନେ ।

ଆସ ବେର୍ଡ଼ି ଆସ ଜଢ଼ି
ବ୍ୟୋମଯାନ ଧାଡ଼ି ଧାଡ଼ି
ଜାତି ପ୍ରାଣ ନାଚି ଉଠୁ  ଭୀମ ଝନ୍ ଝନେ ।

ଆସ କମାଣ ବନ୍ଧୁକ
ଆସ ବିଷ ଜହ୍ଳକ
ଜାତି ଛାତି ପାତି ଦେବ  ସିଂହ ବିକ୍ରମେ ।

ଆସ ଭୀମ ଅତ୍ୟାଚାର
କର ଦେଶ ନାରଖାର
ଜାତି ନେବ ବରି ତୋତେ  ହାସ୍ୟ ଆନନେ ।

ଆସ ମୃତ୍ୟୁ ଆସ ଫାଶି
ତବ ଶର୍ତ୍ତ ପରକାଶି
ସ୍ୱାଧୀନତା ଲଭୁ ଜାତି  ଆତ୍ମ ବଳିଦାନେ ।

* * *

# ରଣଭେରୀ

## ଏ ବହିର ଇତି କଥା

ମୂଳ 'ରଣଭେରୀ' ପୁସ୍ତିକାଟି ମାତ୍ର ପାଞ୍ଚ ପୃଷ୍ଠାର ଓ ତାର ଦାମ୍ ଥିଲା ପଇସାଟିଏ । ୧୯୩୧ରେ ମହାତ୍ମା ଗାନ୍ଧି ଗୋଲଟେବୁଲ୍ ବୈଠକରେ ଯୋଗ ଦେବା ପାଇଁ ଗଲାବେଳେ ଏ ବହିଟି ଲେଖିଥିଲି, ଏହା ସହିତ "ମହାତ୍ମାଙ୍କ ବିଲାତ ଯାତ୍ରା" ନାମରେ ଆଉ ଖଣ୍ଡିଏ ଗୀତ ବହି ମଧ୍ୟ ଛପା ହୋଇଥିଲା ।

'ରଣଭେରୀ' ଓ 'ରଣ ଦୁନ୍ଦୁଭି' ଲାଗି ମୋ ନାମରେ ମକଦ୍ଦମା ହେଲା ଓ ମୋତେ ଦୁଇ ବର୍ଷ ଜେଲ ଭୋଗିବାକୁ ପଡ଼ିଲା ।

ବୀରକିଶୋର

---

ସାଗ ବିଲାତରେ ହାହାକାର ଆମେ
ପକାଇ ଦେବୁ
ପକାଇ ଦେବୁ
(ଏ)ଗୋରା ଶାସନକୁ ଏପାରି ସେପାରି
ନଗାଇ ଦେବୁ
ନଗାଇ ଦେବୁ ।

ଆମେ ନ କିଣିବୁ ବିଦେଶୀ ଚିଜ
ଆଉ ନ ଆସିବ ତାଙ୍କ ଜାହାଜ
ତାଙ୍କ ଠକପଣ ଛଡ଼ାଇ ଦେବୁ
ଛଡ଼ାଇ ଦେବୁ ।

ବିଦେଶୀ ମଟର ବିଦେଶୀ ପିକା
ଘଡ଼ି ଶୁନଗାଡ଼ି ଟାଣଇ ଟଙ୍କା
ବିକିରି ତାହାର ଉଠାଇ ଦେବୁ
ଉଠାଇ ଦେବୁ ।

ବିଦେଶୀ ଲଣ୍ଠନ ପାନିଆ ଛତା
ବିଦେଶୀ କୁଣ୍ଢେଇ ସାବୁନ ଜୋତା
ବିଦେଶୀ ଦରବ ପାଖ ନ ଯିବୁ
ପାଖ ନ ଯିବୁ ।

ଛୁଞ୍ଚି ସୂତା ଲୁଣ କାଗଜ ଚିନି
ଯାବତ ବିଦେଶ ଛାଡ଼ିବୁ ଚିହ୍ନି
ଆମ ଚିଜ ଆମେ ତିଆରି ନେବୁ
ତିଆରି ନେବୁ ।

ଆମେ ନ ଛୁଇଁବୁ ବିଦେଶୀ ଲୁଗା
ଗୋରୁ ଘୁଷୁରୀଙ୍କ ଚରବି ଲଗା
ସୂତା କାଟି ଲୁଗା ବୁଣାଇ ନେବୁ
ବୁଣାଇ ନେବୁ ।

ଆମେ ବାରି ଘରେ ଗେଇବୁ କପା
ମାଲି ମକଦ୍ଦମା କରିବୁ ରଫା
ଘରର କଉଡ଼ି ଘରେ ରଖିବୁ
ଘରେ ରଖିବୁ ।

ଆମେ ଦରିଆରୁ ମାରିବୁ ଲୁଣ ।
ଗୋରା ବେପାରୀଙ୍କ ଭାଙ୍ଗିବୁ ଟାଣ
ତାଙ୍କ ବୁଦ୍ଧିବଳ ହଜାଇ ଦେବୁ
ହଜାଇ ଦେବୁ ।

ଭୋଗ ବିଳାସରେ ମାରନ୍ତି ମଜା
ଆଉ ନ କରିବୁ ତାହାଙ୍କୁ ରଜା

ଗଜପଦ ଯେତେ ଉଠାଇ ଦେବୁ
ଉଠାଇ ଦେବୁ ।

ଗୋରା କେତେ ଜଣ ଥାଆନ୍ତି ଏଠି
ତିରିଶି କୋଟିଙ୍କ ଖଟାନ୍ତି ବେଠି

ମନକଲେ ଫୁଙ୍କି ଉଡ଼ାଇ ଦେବୁ
ଉଡ଼ାଇ ଦେବୁ ।

ଆମର ହାକିମ ଆମ କଚେରୀ
ଆମରି ପୁଲିସ ଅଛନ୍ତି ଘେରି

ତେଲି ତେଲ ପରି ମିଳି ତ ଯିବୁ
ମିଳି ତ ଯିବୁ ।

ଆମ ଚପରାସୀ ଆମ କିରାନୀ
ଘରକୁ ଆମର ଆଣିବୁ ଟାଣି

ହୃଦୟ ତାଙ୍କର ଟଳାଇ ଦେବୁ
ଟଳାଇ ଦେବୁ ।

ଆମ ରେଳବାଇ ଡାକ ବିଭାଗ
ଧର୍ମଘଟ କରି ହୋଇବୁ ସାଙ୍ଗ

ବିଦେଶୀ ଶାସନ ଏଠୁ ଚଳିବୁ
ଏଠୁ ଚଳିବୁ ।

ଆମରି ସଇନ ଗୁର୍‌ଖା ଶିଖ୍
ବେଳ କାଳ ଜାଣି ଛାଡ଼ିବେ ଭେକ

କୁରଢ଼ୀ ବେଣ୍ଟକୁ ହୁଗାଳି ନେବୁ
ହୁଗାଳି ନେବୁ ।

ଧୋବଲି ଠକଙ୍କୁ ନ ଦେବୁ କର
ଜୋରକି କରନ୍ତୁ ଘର ଦୁଆର

ଆମେ ପଛେ ପଥ ଭିକାରୀ ହେବୁ,
ଭିକାରୀ ହେବୁ ।

ନିଲମ କରନ୍ତୁ ସେ ଜମିବାଡ଼ି
ନେଇ ନ ପାରିବେ ମାଟିକୁ ତାଡ଼ି

ପୁଣି ଶାନ୍ତି ଯୁଦ୍ଧେ ହଟାଇ ଦେବୁ
ହଟାଇ ଦେବୁ ।

ପାର୍ଲିଆମେଣ୍ଟର ଭାର୍ଗବ ଆଣ୍ଡ
ଆଉ ନ ରହିବ ସଭାର ମେଣ୍ଟ

ମହତ ଦାଣ୍ଡରେ ପକାଇ ଦେବୁ,
ପକାଇ ଦେବୁ ।

ଆମରି ସକାଶେ ତାଙ୍କ ସମ୍ମାନ
ପୃଥୀବ୍ରୁ ଟାଳିବୁ ତାଙ୍କ ଆସନ

ମୟୂର କି କାଉ ଚିହ୍ନାଇ ଦେବୁ,
ଚିହ୍ନାଇ ଦେବୁ ।

ଭାରତ ଆମର ମୁକୁତା ହାର
ଆଉ ନ ରଖିବୁ ତାଙ୍କ ଗଳାର

ଚଞ୍ଚଳ ତାହାକୁ ଛଡ଼ାଇ ନେବୁ,
ଛଡ଼ାଇ ନେବୁ ।

ଭୟଭ୍ରାନ୍ତି ଆଉ ନାହିଁ ତ କିଛି
ଗାନ୍ଧି ଆମ ଆଖି ଖୋଲି ଦେଇଛି

ଦେଶ ଲାଗି ଆମେ ଜୀବନ ଦେବୁ,
ଜୀବନ ଦେବୁ ।

ବ୍ରହ୍ମା ଶିବ ପଛେ ଆସନ୍ତୁ ଏଠି
ଆମେ ଯିବୁନାହିଁ ପଛକୁ ହଟି

ଅଳପ ଦିନରେ ସ୍ୱାଧୀନ ହେବୁ,
ସ୍ୱାଧୀନ ହେବୁ ।

* * *

# ଉତ୍ସର୍ଗ ପତ୍ର

ଲେଖକଙ୍କ ପରମ ସୁହୃଦ୍ ସହକର୍ମୀ ଜେଲ-ଫେରନ୍ତା
ଡାକ୍ତର ଶ୍ରୀ ବ୍ରଜନାଥ ମିଶ୍ରଙ୍କ କର କମଳରେ
ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡି ଭକ୍ତିଭରେ ଅର୍ପିତ ହେଲା ।

ପ୍ରକାଶକ
ତା ୨ । ୯ । ୩୧

ଭୟ ସହି ବେଳ ଗୀତ ନ ଗାଇଲେ
ଭାଇଏ ଲଦିବେ ଦୋଷ,
ସତ ଗାଇଲେ ତ ବନ୍ଧୁ ସରକାର
ମନରେ ବହିବେ ରୋଷ,
ଥରେ ସତ କଥା ଲେଖି
ମୁକ୍ତି ମଣ୍ଡପ ଆସିଲି ଦେଖି ।

ବନ୍ଧୁଙ୍କ କୃପାରୁ ଶତ ଶତ ଭକ୍ତ
କଲି ତହିଁ ଦରଶନ,
ମୋ କୋଟି ଜନମ-ପାପ କାଟିଲା ସେ
କଳିଯୁଗ ତପୋବନ,
ଯା କୋଳେ ଜନମି କୃଷ୍ଣ
ନେଲେ ଦ୍ୱାପରେ ଅବନୀ କଷ୍ଟ ।

ତେଜସ୍ୱୀ ତିଳକ ସ୍ୱାଧୀନତା ଦୂତ
ଲେଖିଲେ ଅମର ଗୀତ,
ଯହିଁ ଲକ୍ଷାଧିକ ଭାରତ ସେବକ
କରିଲେ ସ୍ୱରାଜ୍ୟ ଚିନ୍ତା,
ଗଢ଼ା ହେଲା ଗାନ୍ଧି ମନ
ଯହିଁ ଯତୀନ୍ଦ୍ର ଫିଙ୍ଗିଲେ ପ୍ରାଣ ।

ସେ କାରା ବନ୍ଧନ ଫିଟି ଗଲା ସିନା
ଫିଟିଛି ଆମର ଆଖି,
ଦାସତ୍ୱ ବନ୍ଧନ ଅଫିଟା ରହିଛି
ବାର ପଣ କାମ ବାକି,
ଜାଗିଛନ୍ତି ଦେଶମାତା
ଚିତ୍ତେ ପଶିଛି କେବଳ ଚେତା ।

ଜଗତ ମୋହିନୀ ଭାରତ ଜନନୀ
ଧରିଛନ୍ତି ନବ ଛବି
କୋଳରେ ଦୋଳାଇ କନକ କିରଣ
ଭାଲେ ସ୍ୱାଧୀନତା ରବି,
ମହାତ୍ମା ବିଜୟ ବଂଶୀ
ଶୁଣି ଉଲ୍ଲାସେ ଉଠନ୍ତି ହସି ।

ଲକ୍ଷ ଲକ୍ଷ ଶିଷ୍ୟ ମୁକତି ସକାଶେ
ସଂପୁରୁଛନ୍ତି ମନପ୍ରାଣ,
ବିଦେଶୀ ଶାସକେ ବୁଝି ପାରିଛନ୍ତି
ଶାନ୍ତିଯୁଦ୍ଧ ବଡ଼ ଟାଣ,
ପିଠି ଆଉଁସାରେ ଠକି
ଅବା ଗାରଦ ଭିତରେ ରଖି ।

ଭାରତ ବାସୀଙ୍କି ମୁଠାରେ ରଖିବା
ଏଣିକି ତ ଅସମ୍ଭବ,
ଅହିଂସା ନୀତିର ଅକ୍ଷୟ ଶକତି
ଅଙ୍ଗେ କଲେ ଅନୁଭବ,
ପରଖିଲେ କେତେ ଗୁଳି
କେତେ ପରଖି ଦେଖିଲେ ଶୂଳି ।

ଆଇନ କାନୁନ ଯେତେ ଯା ଛନ୍ଦିଲେ
ସବୁ ହୋଇଗଲା ବ୍ୟର୍ଥ,
ବଣିକ ବେପାର ଭାଙ୍ଗି ସବୁଠି
ଅନାଟନ ହେଲା ଅର୍ଥ
ଅଚଳ ବେପାର କଳ
ନିତି ବଢ଼ିଲେ ନିକମା ଦଳ ।
ସାପ ନ ଧରିବ ବାଡ଼ି ନ ଭାଙ୍ଗିବ
ବାଟ ଧରି ସାବଧାନେ,
ଦମନ ନୀତିର ଗତି ଫେରାଇଲେ
ବଡ଼ଲାଟ ମାନେ ମାନେ
ବିଲାତୁ ବିଗ୍ୱର ନେଇ
ତଳ ଥାନପତି ଦଳେ କହି ।
'ମିଷ୍ଟର' ଗାନ୍ଧିଙ୍କୁ ମୁକାଳି ପହିଲେ
କଲେ ମିଷ୍ଟ ସମ୍ଭାଷଣ,
''ଲୁଣଗ୍ୱେର'' ସଙ୍ଗେ କଥା କହିବାରେ
ମାନିଗଲା ମୁନ ମନ
ସନ୍ଧିପତ୍ର ହେଲା ଭିଡ଼ା
ଗତି ପାହିଗଲା ଖାଡ଼ା ଖାଡ଼ା ।
ବହକା ଆଇନ ଉଠିଲା ସମସ୍ତ
ଉପକୂଳ ବାସୀ ଯେତେ,
ମାଇଲିକ ଯାଏ ଲୁଣ ମାରି ନେବେ
ନିଜର ଖରଚ ମତେ,
ଫିଟିଲା ଲୁହାର ବାଡ଼
ଶାନ୍ତି ସେନାଏଁ ପାଇଲେ ଛାଡ଼ ।
ଜେଲଖାନା ଭଗ ଉଶ୍ୱାସ ହୋଇଲା
ହାକିମେ ଦକରୁ ତ୍ରାହି,
ପୁଲିସ ଭଇଏ ନିଃଶ୍ୱାସ ମାଇଲେ
ସାଲିଶ ଖବର ପାଇ,
ଦେଶ ପ୍ରତିନିଧି ଦଳ
ମହା ହରଷେ ହୋଇଲେ ମେଳ ।

କରାଚି ପାଠରେ ବିଜୟୀ କଂଗ୍ରେସ
ଜଗତେ ବାଜିଲା ବାଜା,
ବିଜେ କଲେ ତହିଁ ଲଙ୍ଗୁଟୀ ଫକୀର
ଭାରତ-ହୃଦୟ-ରଜା,
[ସେଠି] ପ୍ରସ୍ତାବ ପଡ଼ିଲା ଯାହା
ଭବୀ ଆଇନ ସୂଚକ ତାହା ।
ବିନା ଦରମାରେ ଗାଁ ଗ୍ରହାଳିରେ
ପିଲାଏ ପଢ଼ିବେ ପାଠ,
ବିଦେଶୀ ବସନ ସୂତା ଉଠିଯିବ
ଚଳିବ ସ୍ୱଦେଶୀ ହାଟ,
ଯେତେ ଅଛି ମଦଖଟି
ସାର ଦେଶରୁ ଯିବଟି ଉଠି ।
ଗଂଜେଇ ଅଫିମ ଖିଆ ନ ରହିବ
ନିଶା କାରବାର ସରା
ପାଞ୍ଚଶ ଟଙ୍କାରୁ ବେଶି ହେବ ନାହିଁ
ବଡ଼ ହାକିମଙ୍କ ଭରା
ଗ୍ୱକିରି ପାଇବାଲାଗି
ଯିବ ପାତର ଅନ୍ତର ଭାଙ୍ଗି ।
ପ୍ରଜାଙ୍କ କ୍ଷମତା ବଢ଼ିବ ସଭାରେ
କହିବେ ମନର କଥା,
ଖବର କାଗଜ ମୁହେଁ ନ ଲାଗିବ
ଆଇନର ବାଡ଼ବତା,
ପାଳିବେ ଯେ ଯାର ଧର୍ମ
ସ୍ତିରୀ ପୁରୁଷ କ୍ଷମତା ସମ ।
ଶାନ୍ତି ରକ୍ଷା ଲାଗି ହାତ ହତିଆର
ସଭିଏଁ ରଖିବେ ପାଶେ,
ମୂଲିଆମାନଙ୍କୁ କାମ ଦିଆଯିବ
ନ ରହିବେ ଉପବାସେ,
ଦୁଃଖ ଯିବେ ସବୁ ଭୁଲି
ଖଣି, କଳ କାରଖାନା ଖୁଲି ।

ଶ୍ରମୀ କାରିଗର ସମିତି ରହିବ
ମାଲିକେ ନୋହିବେ ଯୋକ
କୁଲି କାମ ଲାଗି ଛେଳି ମେଣ୍ଢା ପରି
ରପ୍ତାନି ନ ହେବେ ଲୋକ,
ବେଠିଆ ବେଗାରି ନୀତି
ଆଉ ପ୍ରଜାଙ୍କୁ ନ ଦେବ ଭୀତି ।

ଦରିଆ ଦଖଲ ଖୋଲ ପଣେ ହେବ
ମାରିବେ ସମସ୍ତେ ଲୁଣ,
ମହାଜନଙ୍କର ଦାଉ ଭଙ୍ଗ ଯିବ
ମିଳିବ ସହଜେ ଋଣ,
କମିବ ସୁଧର ହାର
ଲୋକେ ନ ବୁଲିବେ ବାରଦ୍ୱାର ।

ଦେଶର ଆୟରୁ ଅଧେ ଯା ଶୋଷନ୍ତି
ସୈନ୍ୟଦଳ ବୃଥା ବସି,
ଷାଠିଏ କୋଡ଼ିଏ ଖରଚ ତାଙ୍କର
ଅଧେ ଦିଆଯିବ କଷି,
ଭୋଟ ଦେବା ଅଧିକାରୀ
ହେବେ ସାବାଳକ ନରନାରୀ ।

ବିଦେଶ ବେପାର ଢୁଲଭକୁ ଗ୍ରହି
ରହିବ 'ରେସିଓ' ବଟି,
ଟଙ୍କାର ଦୁର୍ଭିକ୍ଷ ନ ପଡ଼ିବ ଏତେ
ଚାଷୀ କାରିଗରେ ତୁଟି,
ଦେଶ ପୁରାତନ କାରି
କିଛି ହେବ ନାହିଁ ଚିଳେ ମାଟି ।

ଅଧେ ଅବା ବେଶି କମିବ ମୁକର
ଉଠିଆ ଜମିର କର,
ପଡ଼ିଆ ଜମିରେ ଜମା ନ ବସିବ
ଯାବତ ନୋହିଛି ଫଳ,
ପୁଣି ସାନି ବନ୍ଦୋବସ୍ତେ
ହେବ ଆୟକର ନ୍ୟାୟ ମତେ ।

ଏହି ସବୁ ଦଫା ରଫା ଲାଗି ରଖି
ମଞ୍ଜୁର କରିଲେ ସନ୍ଧି
ଘର ଫପିଦେଲେ ଜାତି ମହାସଭା
ପ୍ରତିନିଧି ଏକା ଗାନ୍ଧି,
ସନ୍ଧିର ଯା ସାର ଲକ୍ଷ୍ୟ
ମିଳି ମିଶି ଯିବେ ସବୁ ପକ୍ଷ ।

ସରଳ ଟିଉରେ କଥା ଭଷା ହେବେ
ଗୋଲଟେବୁଲରେ ପୁଣି,
ଭରତ ପ୍ରଜାଙ୍କ ଆଶା ମେଣ୍ଟାଇବେ
ଶାସନ ଖସଡ଼ା କରି,
ଭାଙ୍ଗିଯିବ ସବୁ କଳି
ନିଆଁ ନ ଉଠିବ ଜଳି ।

ଏହି ସବୁ କଥା ସୁଖ ନ ଲାଗିଲା
ଶକୁନି ପଞ୍ଚାଙ୍କି ମୋଟେ,
ଖବର କାଗଜେ ମେଳା ମଉଛବେ
ଦୋଷାଇଲେ ବଡ଼ଲାଟେ,
ବୋଇଲେ ଗଳୁତି ଗଲା
ଆମ ମୁହଁକୁ ତଳକୁ କଲା ।

ଜଗତେ ସରବେ ଖୁସି ହେଲେ କିନ୍ତୁ
ଶୁଣି ମିଳାମିଶା କଥା,
ଏପାରି ସେପାରି ଭାବିଲେ ବେପାରୀ
କଟିଲା ତାଙ୍କର ମଥା,
ଅଚିନ୍ତା ନିଦରେ ଶୋଇ
ଲାଟ ଗଲେ ପେନସନ ପାଇ ।

ତାଙ୍କ ପଛେ ପଛେ ଗ୍ଲିଲା କି ପାଞ୍ଚ
ଏହି ଶୁଭ ସନ୍ଧି ବେଳେ,
ସୁଧା କୁଣ୍ଡେ ବିଷ କଣିକା ଗୋଳିଲେ
ତଳ ଥାନ ପତି ଦଳେ,
ସନ୍ଧି ସରତକୁ ଲଘି
ସୁଖ ଶାନ୍ତି ଆଶା ଦେଲେ ଭାଙ୍ଗି ।

ଅଶାନ୍ତି ଘଟଣା ସାତ କାଣ୍ଡ ପୋଥି
ସବୁ ଲେଖି କଲେ ଠୁଳ,
ଥାଉ ଆନ କଥା ଆଖି ଆଗରେ ତ
ଅତ୍ୟାଚାର ଅନୁକୂଳ,
ସନ୍ଧି ଜବାବକୁ ଚାହିଁ
ଲୋକେ ଯାଉଛନ୍ତି ସବୁ ସହି ।

ସୁରଟ ଜିଲାର ଛାତି ଫଟା ଦୁଃଖ
ଗାନ୍ଧି ସ୍ୱଚକ୍ଷୁରେ ଦେଖି,
ନୂଆ ବଡ଼ଲାଟ ପାଖେ ଜଣାଇଲେ
ଗୋଟି ଗୋଟି କରି ଲେଖି,
ଦେଶ କାଳ ପାତ୍ର ଭାବି
(ଖାଲି) କଲେ ତଦନ୍ତ ପାଇଁ କି ଦାବି ।

ଆଗେ ସରକାର କାଢ଼ିଲେ ଛୁଟ୍ଟଡ଼ୁ
ପଛେ କଲେ "ହଅ, ନାହିଁ"
କେତେ ଟଣାଟଣି ପରେ ସାର ହେଲା
ବର୍ଦ୍ଦୋଲୀ ତଦନ୍ତ ପାଇଁ,
ସନ୍ଧିରେ ପଡ଼ିଲା ତାଳି
ଆଉ ନ ଭାଙ୍ଗିବେ ସନ୍ଧି ବୋଲି ।

ସର୍କାରୀ ଘୋଷଣା ପ୍ରକାଶ ପାଇଲା
ବଡ଼ଲାଟ ଦେଲେ କଥା,
ସନ୍ଧି ସରତକୁ ପାଳିବେ ସଂପୂର୍ଣ୍ଣ
ନ ଲାଗିବ କାରେ ବ୍ୟଥା,
ଚାଲିଲେ ବିଶ୍ୱାସ ରଖି
ଗାନ୍ଧି ବସିଥିଲେ ଗୋଡ଼ ଟେକି ।

ଅହିଂସା ଯୁଦ୍ଧର ମୂଳ ତତ୍ତ୍ୱ ନୀତି
ବିଲାତବାସୀଙ୍କି କହି,
ଶେଷ ଧର୍ମ ଡାକ ଦେବା ଲାଗି ତାଙ୍କ
ହୃଦ ରହିଥିଲା ଚାହିଁ,
ରହୁ ବା ନ ରହୁ କଥା
ସେଠି ଜଣାଇବେ ଆମ କଥା ।

ଦ୍ୱାପରେ ଶ୍ରୀକୃଷ୍ଣ ଯାଇଥିଲେ ଯଥା
ସତ୍ୟ ଗଉରବ ଲାଗି,
କୁରୁ ସଭା ତଳେ ଦୁର୍ଯ୍ୟୋଧନ ପାଶେ
ଗାଁ ପାଞ୍ଚ ଖଣ୍ଡ ମାଗି,
ଦରିଦ୍ର ଭିକାରୀ ବେଶେ
ଗାନ୍ଧି ବାହାରିଲେ ଗଲା ଦେଶେ ।

ବମ୍ବେ ଗଗନରୁ ଝରୁଥିଲା ଘନ,
ଲକ୍ଷ ଲକ୍ଷ ନର ନାରୀ,
ହୃଦୟ ନିଧିଠୁଁ ବିଦାୟ ଘେନିଲେ
ଆଖି ଛଳ ଛଳ କରି,
'ଗାନ୍ଧି ଅନୁକୂଳ ଆଜି'
ଡାକ ଜଗତରେ ଗଲା ବାଜି ।

ବାର ଶନିବାର ସାଲ ଅଠତ୍ରିଶ
ଦୂରେ ଥିଲା ବାର ବେଳା
ଭାଦ୍ର କୃଷ୍ଣ ପକ୍ଷ ପ୍ରତିପଦ ଅନ୍ତେ
ଜାହାଜ ଛାଡ଼ିଲା ବେଳା,
ଘେନି ଆମ ଜୀବ ଘଟ
'ରଜ ପୁତନା' କାଟିଲା ବାଟ ।

ମହାସିନ୍ଧୁ ପ୍ରାଣ ଉଚ୍ଛୁଳି ଉଠିଲା
ପଡ଼ିଗଲା ତା'ର ମନେ,
ନୀଳାଚଳ କୋଳେ ଭେଟିଥିଲା ପରା
ଏପରି ସନ୍ନ୍ୟାସୀ ଜଣେ,
ଯେ ପ୍ରେମର ପାଗଳ ହୋଇ
ପ୍ରେମ ବିଞ୍ଚୁଥିଲା ମାଡ଼ ଖାଇ ।

ତୁଣି ସେହି ଯୋଗ ଭାବି ବାରନିଧି
ପ୍ରଣମିଲା ବାରମ୍ବାର
ମହାମାନବର ଶ୍ରୀଚରଣ ତଳେ
ଫିଙ୍ଗିଲା ହୀରକ ହାର,
(ସ୍ୱର୍ଗେ) ଦେବତାଏ କଲେ ସ୍ତୁତି
ଧନ୍ୟ ଧନ୍ୟ ତୁ ଭାରତ ପୃଥୀ ।

* * *

## ସବୁରି ବନ୍ଧନ ତୁଟାଇ ଆସିଛି

(ରାଗ–ଖମାଜ ତାଳ–ଠୁଙ୍ଗ)

(ମାଗୋ) ସବୁରି ବନ୍ଧନ ତୁଟାଇ ଆସିଛି
(ଏକା) ତୁମରି ବନ୍ଧନେ ରହିଁ କି ।
ନବତଳ ବାସ ତଳେ ଲୋଟାଇଛି
(ତୁମ) କୁଟୀର ରଚନା ପାଇଁ କି । ପଦ ।

ପାଶୋରି ଦେଇଛି ଶିଶୁର କ୍ରନ୍ଦନ,
ଉପେକ୍ଷି ଆସିଛି ଯୁବତୀ ଯୌବନ,
ପର୍ଶୁରାମ ପରି ମାତାଙ୍କୁ ତେଜିଛି
ସତ୍ୟ ଗଉରବ ପାଇ କି । ୧ ।

ପ୍ରହ୍ଲାଦ ପରି ପିତାଙ୍କର ବୋଲ
ଶୁଣିବା ସକାଶେ ସାଜିଛି ମୁଁ କାଳ,
ଭାଇ ଭଉଣୀଙ୍କି ଭୁଲି ଯାଇଅଛି
ତୁମ୍ଭ ସ୍ନେହେ ହୋଇ ବାଇ କି । ୨ ।

ପାଗଳରୁ ବଳି ହୋଇଛି ପାଗଳ,
ଭାବୁଛି ତୁମ୍ଭରି ମୁକତି କେବଳ,
କୁଳ, ଶୀଳ, ମାନ ବଳିଦେଇ ବୁଲେ
ବୋଲି ତବ ପଦ ଧୂଳି କି । ୩ ।

## ଜାତି ମହାସଭା

(ଖମାଜ–ଏକତାଳି)

ଆସ କିଏ ଭାଇ ଜାତି ମହାସଭା
ଜାତୀୟ ମଣ୍ଡପ ତୋଳିବ
ମୁକତି ଯଜ୍ଞର ଉପବୀତ ପିନ୍ଧି
ଭକତି ଚନ୍ଦନ ଗୋଳିବ । ପଦ ।

ଭାରତର ଭାଗ୍ୟ ପରୀକ୍ଷା ଏଥର,
ଲିଭିଯିବ ଅବା ଜଳିବ ସମର,
ମହା ସନ୍ଧିବେଳେ ଆମରି ଉତ୍କଳେ
ପ୍ରଜା ଦରବାର ଖୋଲିବ । ୧ ।

ଶୁଣିବ ଚାଇନା ଶୁଣିବ ଜାପାନ,
ଶୁଣିବେ ରୁଷିଆ ଆନ ଦେଶମାନ,
ଓଡ଼ିଆର ନାମ ଓଡ଼ିଆର ଧାମ
ଜଗତେ ମହକି ଉଠିବ । ୨ ।

ଆସିବେ ଅକାଳି ବଙ୍ଗାଳ କାହାଳୀ,
ଆସିବେ ତେଲଙ୍ଗା ଆସିବେ ବଙ୍ଗାଳି,
ଆସିବେ ସେ ଚାଷୀ ବୀର ବରଦୋଲୀ
କେତେ ଆରଦୋଳି ଲାଗିବ । ୩ ।

ନାଲି ଜାମା ପିନ୍ଧି ସୀମାନ୍ତର ଗାନ୍ଧି
ଆସିବେ ତାଙ୍କର ଦଳବଳ ବାନ୍ଧି,
ସବୁ ଜାତିଙ୍କର ପଦଧୂଳି ପଡ଼ି
ପୁରୀ ଇନ୍ଦ୍ରପୁରୁ ବଳିବ । ୪ ।

ବିଦେଶୀ ଶାସନ ନ ପଡ଼ିବ ଜଣା,
ଦେଖିବ ସ୍ୱାଧୀନ ରାଜତ୍ୱ ନମୁନା,
ସେହି କେତେ ଦିନ ଭାରତର ମନ
ଉଲ୍ଲାସ–ସାଗରେ ଭାସିବ । ୫ ।

ଆମ ଦେଶର ଯା ବଛାବଛା ଚିଜ
କେତେ କାରିଗରି ହେବ ଏଠି ସଜ,
ବାହାଘର ପରି ଗହଳ ଲାଗିବ
ବିରାଟ ବଜାର ବସିବ । ୬ ।

ଲକ୍ଷାଧିକ ଟଙ୍କା ଲାଗିବ ଏଥିରେ
ସାରିବାକୁ ହେଲେ ଅତି ଅଳପରେ,

ହଜାର ହଜାର ସେବକ ସେବିକା
ସେବା ଏଥି ଲୋଡ଼ା ହୋଇବ । ୭ ।
ଏତିକି ବେଳରୁ ହେ ଭଉଣୀ ଭାଇ,
ସାଜ-ଧନ, ମନ ଆହୁତି ପକାଇ,
ଉଜଳ ପୀରତି ଉଜଳ କୀରତି
ପୃଥ୍ୱୀ ଇତିହାସେ ରହିବ । ୮ ।

## ଘରେ ଘରେ ଚଳା ଅରଟ

(ରାଗ–ପିଲୁବରୁଁଆ)

ଘରେ ଘରେ ଚଳା ଅରଟ
ଅରଟରେ ଭାଇ ଜାତିର ମୁକତି
ଅରଟ ଦେଶର କଳପବଟ । ପଦ ।

ହାତକଟା ସୂତା ଯହୁଁ ତୁଟିଲେ
ଲକ୍ଷ୍ମୀ ସାଆନ୍ତାଣୀ କାନ୍ଧୁ ଛାଡ଼ିଲେ,
ବିଦେଶୀ ଦରବେ ଦେଶ ଭରିଗଲା,
ବାଘ ଘରେ ହେଲା ମିରିଗ ନାଟ । ୧ ।

ଗୋରୁ ଘୁଷୁରିଙ୍କ ଚରବି ଲଗା
ବାବୁ ହେଲୁ ପିନ୍ଧି ବିଦେଶୀ ଲୁଗା,
ବାହା ବରତରେ କଳ ସୂତା ଘେନି
ଧରମ କରମ କରିଲୁ ନଷ୍ଟ । ୨ ।

ଆମ କପା ତୁଳା ଝୋଟକୁ ନେଇ
ଝିଲିମିଲି ଲୁଗା ଆଣନ୍ତି ବହି,
ବଦଳେ ଟାଣନ୍ତି ଏ ଦେଶ ଫସଲ
ସେଥିଲାଗି ସିନା ଯାବତ କଷ୍ଟ । ୩ ।

ଯୁଗ ଅବତାର ଜନମ ହୋଇ
ବେପାରୀ ଗୁମର ଦେଲେ ଫଟାଇ,
ଚିହ୍ନା ପଡ଼ିଗଲା ବିଦେଶୀ ଶାସନ,
ଦୁଃଶାସନ ପରି ଗଲେ ଅବାଟ । ୪ ।

ମହାତ୍ମା ବଚନ ମନେ ଲଗାଇ
ଦୁଃଖୀଙ୍କ ଅରଟ ଦଅ ଯୋଗାଇ
ନିକିମା ନହୋଇ ନିଜେ ସୂତା କାଟ
ଫିଟିଯିବ ଜାତି ମୁକତି ବାଟ । ୫ ।

## ଆସୁଛି ସେଦିନ ଆସୁଛି

(ତାଳ–କଓ୍ୱାଲି)

ଆସୁଛି ସେ ଦିନ ଆସୁଛି
ଭାରତ ଜନନୀ ଅଭିଷେକ ଲାଗି
(ସାଗ) ବିଶ୍ୱଜଗତ ସାଜୁଛି । ପଦ ।

ପ୍ରଜା ହୃଦ ତାର ଦିଲ୍ଲୀ ସିଂହାସନ,
ସାମ୍ୟବାଦ ତାର ମୟୂର ଆସନ,
ଅହିଂସା ତାହାର ବିଜୟ କେତନ
ହିମଗିରି ଶିରେ ଉଡ଼ୁଛି । ୧ ।

ଆଲଟ ଚାମର ପକାଏ ରଚନା,
ଦୂର ଆମେରିକା ବଜାଏ ବାଜଣା,
ରଖିଆ ସମ୍ମୁଖେ ଧରଇ ଆଇନା,
ସାଗର ଉଛୁଳି ଉଠୁଛି । ୨ ।

ଗାନ୍ଧି ତା'ର ରାଜପୁରୋଧା ବେଶରେ
ବସି ଦେଶବାସୀ ହୃଦୟ ପୀଠରେ
ଶାନ୍ତି ଚନ୍ଦନ ବନ ଚନ୍ଦନ ଘୋରେ,
ଗଗନ ମହକି ଉଠୁଛି । ୩ ।

ଅରବିନ୍ଦ ତା'ର ଯୋଗରେ ମଗନ,
ଗୁରୁ ଜଗଦୀଶ ପ୍ରଶ୍ନରେ ବିଜ୍ଞାନ,
ରବି କବିବର ମେଳି ଦିବ୍ୟ ତାନ
କୋଟି ନରନାରୀ ମୋହୁଛି । ୪ ।

## ଆମେ ନବ ଯୁବା ନବା ତରୁଣ

ଆମେ ନବ ଯୁବା ନବ ତରୁଣ
ଆମେ ନବୋଦିତ ଦେବ ଅରୁଣ,
ଏ ବିଶ୍ୱ ଅନ୍ଧାର ବିନାଶିବା ଲାଗି
ଆମ ଜନ୍ମ ଆମ ମରଣ ।୧।

ଆମେ ହିମାଳୟ ପଥର ଯାତ୍ରୀ
ଦେବୀ ଭାରତୀ ଆମର ଧାତ୍ରୀ,
ଭାରତ ଦୁର୍ଗ ମୁକ୍ତ କରିବୁ
ଏ ଜୀବନ କରିଛୁ ଅର୍ପଣ ।୨।

ଆମେ ଖୋଜୁଛୁ ଜଗତ ସ୍ୱାର୍ଥ
ଆମ ଲକ୍ଷ୍ୟ ନୋହିବ ବ୍ୟର୍ଥ,
(ଗତ) ବଉଦ ବାତ୍ୟା ଝଞ୍ଜା ବହିଲେ
ଆମ ଶକ୍ତି ନୋହିବ ନିର୍ବାଣ ।୩।

## ଯେତେ ପର କର ପଛେ

ଭାଇ, ଯେତେ ପର କର ପଛେ ଆମେ ତୁମ୍ଭରି,
ପେନସିଲେ ଟିପ ଅବା ବନ୍ଧୁକରେ ଟିପ
ତୁମ ଲାଗି କରିଛୁ ଏ ପ୍ରାଣ ବିକିରି । ପଦ ।

ତମର ଯେ ଜନ୍ମସ୍ଥାନ ଆମ୍ଭର ସେ ମାତା ଜାଣ,
ତୁମେ ଆମ ରକ୍ତ ଏକା, ଧୋକା ହେଲେ ଦେଖ ସଫା
ଧମନୀ ଚିରି ।୧।

ତୁମେ ଯେ ଖୋଜୁଛ ଦୋଷ ଆମ ମନେ ନାହିଁ ରୋଷ,
ଜାଣୁ ତୁମେ ପରବଶ ପରହାତେ ଉଠ ବସ
ପିତୁଳା ପରି ।୨।

ନିଜର ମୁକତି ଲାଗି ଯୋଗ କରେ ବସି ଯୋଗୀ,
ପରଲାଗି ଦୁଃଖ ଭୋଗ ଅସହଯୋଗୀର ଯୋଗ
(କେହି ତା'ର) ନାହିଁ ବଇରୀ ।୩।

ପଡ଼ୁ ପଛେ ନରକରେ ନ ମାରି ସେ ନିଜେ ମରେ
ଯୁଝେ ସଦା ସତ୍ୟ ପାଇଁ ନରହନ୍ତା ହୁଏ ନାହିଁ
ଖେଳି ଚାତୁରୀ ।୪।

ଦେଖି ଧରା ଚଉପିଠି ଅବିଶ୍ୱାସ ଅଛି ଘୋଟି,
ତୁଟି ନାହିଁ ରଣ ଭୀତି ଆସି ନାହିଁ ସତ୍ୟ ଶାନ୍ତି,
ମନେ କାହାରି ।୫।

ଦେଖି ଧରା ଉନମତ ସରଗୁଁ ଆସିଛି ଦୂତ
ନବ ତେଜେ ନବ ପଥେ ଚାଳି ଏହି ନରଲୋକେ
ନେବ ଉଦ୍ଧାରି ।୬।

●

## ନିଜେ ବୀଣାପାଣି

ନିଜେ ବୀଣାପାଣ ବୀଣାଖଣ୍ଡି ଧରି
ଡାକନ୍ତି ତତେ ଗୋ ଭଉଣୀ ।
କଳି ଅମାନିଶା ପାହି ଆସିଲାଣି
ଦିଶେ ନବଯୁଗ ସରଣୀ । ପଦ ।

ସଜ ଫୁଲ ପରି ସଜ ହୋଇ ନାଶ,
ଯେତେ ଅଛି ତୋର ଅଳସ ବିଳାସ,
ବିଶ୍ୱ ଦରବାରେ ଆସନ ଲଭିବୁ
ତୁହି ଜଗତର ମଥାମଣି । ୧ ।

ଜଣା ଅଛି ତୋତେ ଜନକ ଦୁଲାଳି,
ଜଳନ୍ତା ଅନଳେ ଦେହ ଦେଲା ଢାଳି,
ଚମକି ପଡ଼ିଲେ ରବି ଶଶୀ ତାରା
ଚମକିଲା ସାରା ଧରଣୀ । ୨ ।

ଶୁଣିଥିବୁ ତୋର ସାବିତ୍ରୀର କଥା,
ଯମ ଆଗେ ନେଇ ଦେଖାଇଲା ମଥା,
ତା ହୃଦଦେବତା ଫେରି ତ ପାଇଲା
ପାଷାଣକୁ କଲା ସେ ପାଣି । ୩

ଜାଣୁ ଦୁର୍ଗାବତୀ ପଦ୍ମିନୀ ସାହସ,
ବଳି ଦେଲେ ମଥା ହୋଇ ହସ ହସ,
ସେହି ଦେଶ ମାଟି ଗଢ଼ିଛି ଲୋ ତୋତେ
ସେହି ଦେଶ ତୋର ଜନନୀ । ୪ ।

ଆଜ ତୋର ଦେଶ ରଖିବା ସକାଶେ,
ଗାନ୍ଧି ନୀତି ଧରି ଗଲେ କାରବାସେ—
କେତେ ତୋ ଭଉଣୀ ପଥ ଭିକାରୁଣୀ
ଅରି ବୁଦ୍ଧି ଗଲ ଭରମି । ୫ ।

ଯୁଗ ଅବତାର ଆସିଛି ସେ ଗାନ୍ଧି,
ପ୍ରେମ—ଡୋରେ ଦେବ ଜଗତକୁ ବାନ୍ଧି
ଦେବ ଦାନବଙ୍କ କଳି ସେ ଭାଙ୍ଗିବ
ଭାଙ୍ଗିଥିଲେ ଯଥା ମୋହିନୀ । ୬ ।

ଶ୍ରୀଚରଣେ ଆଜି ମାଗୁଣି ଏତିକି—
ଆଉ ନ ଯାଅ ସେ ବିଦେଶୀ କତିକି:
ଦେଶର ଦରବ ଆଦର କର ଗୋ
ଚଳା ଭାରତର ସଇନି । ୭ ।

●

## ହାତରେ ନ ଥିଲା ତରବାରୀ

(ନ ଯିବି ପାଣିକି ତୋହ ଦୁଲେ—ବୁଲେ)

(ଆମ) ହାତରେ ନ ଥିଲା ତରବାରୀ
(ଅବା) ହୋଇ ତ ନଥିଲୁ ଦରବାରୀ
ଭାରତ ମାତାର ନାମକୁ ସ୍ମରି
ବଢ଼ିଲା ନଇକୁ ହେଲୁ ପାରି । ପଦ ।

ହାତରେ ନଥିଲା ଖଣ୍ଡେ ତ ବନ୍ଧୁକ,
ଅବା ପ୍ରାଣନାଶୀ ଜହର କନ୍ଦୁକ
ତରୁଣ ବନ୍ଧୁଙ୍କ ଅରୁଣ ହୃଦକୁ
ଗୁର୍ଣ୍ଣିଥିଲୁ ପୂଜା ଫୁଲ କରି । ୧ ।

ନଥିଲା ଟର୍ପେଡୋ ନଥିଲା ଜାହାଜ,
କେତେ କୁଳବଧୂ ହୋଇ ଆସି ସଜ,
ସମର-ତରଙ୍ଗେ ପ୍ରାଣ ଢାଳି ଦେଲେ
ପାଷାଣକୁ ଦେଲେ ଚୂନା କରି । ୨ ।

ନଥିଲା ମଥାରେ କୂଟ ବୁଦ୍ଧି ବଳ,
ପ୍ରେମ ଥିଲା ଏକା ହୃଦୟ ସମ୍ବଳ,
ସେ ପରଶ ମଣି ଆଲୋକିତ କରି
ଆମ ବାଟ ଆମେ ନେଲୁ ବାରି । ୩ ।

ନ ଥିଲା ସିନ୍ଦୁକ ନ ଥିଲା ତ ଟଙ୍କା,
ସାହା ଥିଲା ଶୁଭ ଜାତୀୟ ପତାକା,
ଭିକ ମାଗୁଥିଲୁ ସଙ୍ଗେ ନେଇ ତାରେ
ଆମେ ବାର ଦ୍ୱାର ବୁଲି ବୁଲି । ୪ ।

(ଆମ) ବ୍ୟୋମରେ ନଥିଲା ବ୍ୟୋମଯାନ,
ଚଳାଇ ଆମର (ନିଜ) ଦେହ ଯାନ
ମରଣ ଦୁଆରେ ଉଭା ହୋଇଥିଲୁ
ବରଣ ମାଳାକୁ ହାତେ ଧରି । ୫ ।

ମନେ ଅଛି ସବୁ ସେ ଝଡ଼ି ବତାସ,
ଯାଇନାହିଁ ଭଇ ମାଡ଼ର ପରଶ,
ସବୁ ସହିଗଲୁ ପଥର ପରି ତ
ଜଣଙ୍କ ମୁହଁକୁ ଗୁହିଁ କରି । ୬ ।

ଗଜ ଅଶ୍ୱାରୋହୀ ନ ଥିଲେ ପଦାତି,
ତଥାପି ତ ଥରି ଉଠିଲା ଜଗତି,
ତେଜିଲେ ବିଦେଶୀ କେତେ ଦେଶ ଭଇ
ସେହି ଗାନ୍ଧିନାମ ହୃଦେ ଧରି । ୭ ।

ନ ଥିଲେ ପ୍ରତାପ ନ ଥିଲେ ଶିବାଜୀ
ଅବା କାଶ୍ମୀଜୟୀ ବୀର ସୈନ୍ୟରାଜି,
ପାଞ୍ଚ ହାତ ଖଦି— ପିନ୍ଧା ସେ ନାଗରୀ
(ଆମ) ଡଙ୍ଗାକୁ ଆଣିଲା କାତମାରି । ୮ ।

## ମାନ ମହତକୁ ଡର ଥିଲେ ଭାଇ

(ଖେମଟା–ଗଜଲ୍)

ମାନ ମହତକୁ ଡର ଥିଲେ ଭାଇ
ଛାଡ଼ ଏ ଇଲତ ନିଶାକୁ
ନିଶା ନିତି ନିତି ଚମୁକୁ ଖାଉଛି
ଦେଖୁ ନାହିଁ ନିଜ ଦଶାକୁ । ୧ ।

ନିଶା ଦାଉରେ କି ବସି ଭାବୁଅଛ
ଠକିଦେବ ତମେ ଯମକୁ,
ଭିତରେ ସେ ତମ କଲିଜା କାଟୁଛି
ଧୋକଡ଼ା କରଇ ଚମକୁ । ୨ ।

ହକ ଦେଇ ହାତୁ ପଇସା କଉଡ଼ି
କିଣୁଅଛ ଲୋକହସାକୁ,
ସିଂହ ହୋଇ ତୁମେ ଠେକୁଆ ହେଉଛ
ହାତୀ ହୋଇ ଡର ମଶାକୁ । ୩ ।

ନିଜ ଭାଇଙ୍କି ତ ଭଗାରି କରୁଛ
ଭାବୁ ନାହିଁ ଆଗ ପଛକୁ,
ନିଜର କୋକେଇ ନିଜେ ବାନ୍ଧୁଅଛ
ବଢ଼ାଉଛ ବିଷ ଗଛକୁ । ୪ ।

ହାଣ କୁରାଢ଼ିକି ଡାକି ହାକି ଆପେ
ଆଣୁଅଛ ନିଜ ବେକକୁ,
ମହାତ୍ମା ବଚନ ନିନ୍ଦା କରୁଅଛ
ତଳ କରି ଦେଶ ଟେକକୁ । ୫ ।

ପୁଅ ଝିଅମାନଙ୍କ ମୁହଁକୁ ନ ଚାହିଁ
ପିଉଛ ପୁତନା କ୍ଷୀରକୁ,
ବେପାରୀ ହାତକୁ ନିଜ ଚୁଟି ଦିଅ
ଜାଣି ଶୁଣି ନୋଇଁ ଶିରକୁ । ୬ ।

ମାଲି ମକଦମା ଘେରି ଡକାୟତି
(ଅଧେ) ନିଶା ଲାଗି ଆସେ ଦେଶକୁ,
କେତେ କେତେ ଲୋକ ପଡ଼ି ତା ପାଲରେ
ଖାଇ ଖାଇଗଲେ ଶେଷକୁ । ୭ ।

ସେହି ପଇସାରେ ଘିଅ ଦୁଧ ଖାଇ
ଦମ୍ଭ ରଖ ନିଜ ବାହାକୁ,
କିଣି ପଢ଼ ଭଲ ଖବର କାଗଜ
ଲାଗନାହିଁ ସାନ କୁହାକୁ । ୮ ।

●

## ଦେଶ ଲାଗି ଯାର ଦେହ କାନ୍ଦି ଉଠେ

ଦେଶ ଲାଗି ଯାର ଦେହ କାନ୍ଦି ଉଠେ ଜାତି ଲାଗି କାନ୍ଦେ ପ୍ରାଣ
ଲୋଡ଼ା ନାହିଁ ତାର ଯୋଡ଼ି ଘୋଡ଼ା ଗାଡ଼ି
କୁଆଁର ପୁନେଇ ଜହ୍ନ । ୦ ।

ଉଆଁସ ଅନ୍ଧାର ତାର ବିଦୁବତୀ
ଜଗ ହୃଦେ ଭଗ ଭୀମର ଶକତି,
ହାତକଡ଼ି ତାର ମଲ୍ଲିଫୁଲ ହାର
ସୁଧାସମ ଅନଶନ । ୧ ।

ନିଜ ନାମକୁ ସେ ନକରେ ବିକିରି
ଅହମିକା ତାକୁ ଲାଗେ ବିଷପରି,
ଦ୍ୱୀପାନ୍ତର ତାର ଦିଲ୍ଲୀ ସିଂହାସନ
ଫାଶି ବଇକୁଣ୍ଠ ଧାମ । ୨ ।

ଦେହକୁ ଭାବେ ସେ ଦେବତା ମନ୍ଦିର,
ଜୀବନକୁ ଭାବେ ଦେଶବାସୀଙ୍କର,
ଶତ ଅବିଶ୍ୱାସ ବାଧାରେ ସେ ଦେଖେ
ବିଶ୍ୱମୟ ଭଗବାନ । ୩ ।

●

## ସଜାଇ ରଖ ତୋ ଶିବିର ସୈନ୍ୟ

ସଜାଇ ରଖ ତୋ ଶିବିର ସୈନ୍ୟ
ବଜାଇ ବିଜୟ ବାଦ୍ୟ,
ମଜାଇ ରଖ ତୋ ସମର ଅସ୍ତ୍ର,
ଖୋଜାଇ ଶକତି ସାଧ୍ୟ ।

ଉଡ଼ାଇ ରଖ ତୋ ଜାତୀୟ କେତନ
ପଢ଼ାଇ ଅହିଂସା ମନ୍ତ୍ର,
ଝଡ଼ାଇ ଜାତୀୟ ଭେଦାଭେଦ ବିଷ
ଲଗାଇ ତୋ ତ୍ୟାଗ ଯନ୍ତ୍ର ।
ଜଳାଇ ରଖ ଏ ଯଜ୍ଞ ଅନଳ
ତରଳାଇ ଦେଶ ଭକ୍ତି,
ଟଳାଇ ସକଳ ବିଘ୍ନ ବିପଦ
ଖେଳାଇ ଅମର ଶକ୍ତି ।
ହଟାଇ ସରବ ବିଦେଶୀ ବସନ
ଟୁଟାଇ ବିଳାସ ଭିତ୍ତି,
ଫିଟାଇ ସ୍ୱଦେଶ ଶିଳ୍ପ ବିପଣୀ
ଉଠାଅ ସ୍ୱଦେଶ କୀର୍ତ୍ତି ।
ଜୀବନ ଯୌବନ ସମରପି କର
ନିଶା ନିଶାଚରେ ହତ୍ୟା,
ଘୁଞ୍ଚାଅ ମାନବ ପ୍ରାଣର ଅଶାନ୍ତି
ଦୁଃଖ ଅନ୍ଧକାର ବାତ୍ୟା ।
ରଷ୍ଟ ସଭର ଆଦେଶ ପାଇଲେ
ଶିରି ପର୍ବତ ଲଙ୍ଘ,
ବନ୍ଧୁକ ଆଗେ କନ୍ଦୁକ ପରି
ମସ୍ତକ ଦିଅ ଡିଙ୍ଗି ।
ଚମକି ଉଠୁ ଏ ବିଶ୍ୱ ଜଗତ
ଚମକୁ ସେ ସୁର ଇନ୍ଦ୍ର,
ମାନବ ଦାନବ ଦେବତା ଜାଣନ୍ତୁ
ଭାରତ ସୃଷ୍ଟି କେନ୍ଦ୍ର ।

●

## ତରୁଣ ତୋହରି କରମ ଫଳେ

ତରୁଣ ! ତୋହରି କରମ ଫଳେ
ଭାରତ ମୋର ଭାଗ୍ୟବାନ
ରହୁଁ ନା ତୁ ଫୁଲ, ରହୁଁ ନା ତୁ ମୂଳ
ଦେଶ ଲାଗି ଦେଉ ନିଜର ଜାନ୍ । ପଦ ।
ଯୋଗିବର ଯୋଗ ପାରିଲୁ ବୁଝି,
କରମ ସାଗର ଧରମେ ମଜି,
ମଗିରି ହ୍ରଦ ତରଳାଇ ଦେଲୁ
(ହୋଇ) ତରଙ୍ଗ ତୁଲେ ଧାବମାନ୍ । ୧ ।
ଜନକ ଜନନୀ ସେନେହ ଏଡ଼ାଇ,
ଭାଇ ଭଉଣୀଙ୍କି ନ ରହିଁଲୁ ତୁହି,
(ମୋ) ଶବ ଜାଗିକି ଶିବ କରିଦେଲୁ
ଆଲୋକିତ କଲୁ ହିନ୍ଦୁସ୍ଥାନ । ୨ ।
ଆଗ ପଛ କିଛି ଭାବିଲୁ ନାହିଁ,
ଆଖି ବୁଜି ଝମ୍ପ ପଡ଼ିଲୁ ଡେଇଁ,
ନିଜ ନାମ ଆଶା ନ ଖୋଜିଲୁ ଦିନେ
(ତୁ) ସ୍ୱାର୍ଥକୁ କଲୁ କୋରବାନ୍ । ୩ ।

## ନୟନେ ନାଚେ ତୋ ରୂପ ଛବି

(ମାଗୋ) ଶୟନେ ସ୍ୱପନେ କିବା ଜାଗରଣେ
ନୟନେ ନାଚେ ତୋ' ରୂପଛବି,
ଯେବେ ଭୁଲାଇଲେ ନଭୁଲେ ମୋ' ମନ
ଭୟରେ ନଯାଏ ତିଳେ ଦବି । ପଦ ।
କେତେ ନିନ୍ଦା ଅପବାଦ ଭୋଗି ଭୋଗି,
ତୋ'ର ସ୍ନେହ ଲାଗି ସିନା ହେଲି ଯୋଗୀ,
ସଭାଶେଷେ ଆଜି ଫାଶି କାଠେ ଯାଏଁ
କାଲି ଆଉ ତୋତେ ନ ଦେଖିବି । ୧ ।
ମାଗୋ ନ ଶିଖିଲି ତୋର ବେକ କାଟି,
ମୁଣ୍ଡ ବିକି ବୁଜି ନ ପାରିଲି ପାଟି,
ଭାଇ ଭଉଣୀକି ପର ନ କରିଲି
ଭାବିଲି ରହିବି ତାକୁ ସେବି । ୨ ।
ଚିକଣା କୁହାକୁ ଚିହ୍ନାଇ ମୁଁ ଦେଲି
ସତ କହି ଆଜି ସବୁ ହରାଇଲି,
ବଡ଼ ପାପୀ ବୋଲି ପ୍ରମାଣିତ ହେଲି
ମାଗିଲ ଯେଣୁ ମୋ' ଘର ଛବି । ୩ ।
ଆଜି ତୋର ପାଶେ ଏଇ ଅଳି,
ତୋ' ସନ୍ତାନ ଜଣେ ଦେଉ ମୋତେ ଶକ୍ତି
(ମୋ) ମଥା ଛିଡ଼ି ଯାଉ ଆତ୍ମା ଉଡ଼ିଯାଉ
ଧ୍ୟାୟୀ ତୋର' ପାଦପଦ୍ମ ଛବି । ୪ ।
ଜନମେ ଜନମେ ତୋ' ପରି ଜନନୀ
ଲଭି ଦେଖେ ମୁହିଁ ଏ ସ୍ୱର୍ଣ୍ଣ ଅବନୀ,
ଲୋଡ଼ା ନାହିଁ ଆନ ଦେଶ ଇନ୍ଦ୍ରପଦ
(ମୋ) ବାସନା ତୋ' କୋଳେ ଦୁବ ହେବି । ୫ ।

# ଉତ୍ସର୍ଗ ପତ୍ର

ଆଜି ସେହି ଅତି ମାନବ ମୋହନ ଦାସ କର୍ମଚାନ୍ଦଙ୍କର ଜନ୍ମ ତିଥି, ଆଜି ଦିନଟି ବିଶ୍ୱ ଇତିହାସରେ ଚିର ସ୍ମରଣୀୟ ଓ ଅତି ପବିତ୍ର; ଏହି ପୁଣ୍ୟାହର ସ୍ମୃତିରକ୍ଷା ପୂର୍ବକ ଉତ୍କଳରେ ମହାତ୍ମାଜୀଙ୍କ ପ୍ରଥମ ଶିଷ୍ୟ 'ଗାନ୍ଧି ସେବାଶ୍ରମ'ର ସ୍ଥାପୟିତା ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ କରକମଳରେ ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡି ରଚୟିତାଙ୍କ ଅନୁମତି ନେଇ ଭକ୍ତିଭରେ ଅର୍ପଣ କଲି ।

ପ୍ରକାଶକ

ଆଶ୍ୱିନ, କଟକ, ୧ । ୧ । ୬୩ ଗାନ୍ଧି ଜନ୍ମାବ୍ଦ

---

## ବନ୍ଧୁ ସରିଗଲି ମୁଁ ତ ସରିଗଲି

କାର୍ତ୍ତିକ ପୂର୍ଣ୍ଣିମା, କଟକ ଜେଲ
ଗାନ୍ଧ୍ୟାବ୍ଦ ୬୨

ବନ୍ଧୁ !
ସରିଗଲି
ମୁଁ ତ ସରିଗଲି ;
ଧରମ କରମ ଯାହା ଥିଲା ମୋର
ତା ଲଗି ସବୁ ତ ଛାଡ଼ିଦେଲି । ପଦ ।

(୧)

ବେଦ ବାଇବେଲ    କୋରାନ ସଂହିତା,
ଗୀତା ଗୀତାଞ୍ଜଳି    'କାଜି'ର କବିତା,
ସବୁ ଲାଗେ ପିତା,
ତାର ଗୁଣ ଗୀତା
ଜୀବନର ଜପାମାଳା କଲି ।

(୨)

ଦେବ ପୂଜା ଲାଗି    ତୋଳିଲି କୁସୁମ
କେ ଜାଣେ କି ପାଇଁ    ହେଲା ମତି ଭ୍ରମ,
ମାଳି ଗୁନ୍ଥି ତାର
ଛବି ସଜାଇଲି,
ପାପ ପୁଣ୍ୟ କଥା ଭୁଲିଗଲି ।

(୩)

ଅଶନ ସମୟେ    ନଇବିଦ୍ୟ ପାଇ
ଉଚାରିଲି ମନ୍ତ୍ର    ଆସିଲା ତ ନାହିଁ,
ତାହାରି ନାମରେ
ପାଣି ଛଡ଼ାଇଲି,
ଆଉ ଫାନ୍ଦରେ ମୁଁ ପଡ଼ିଗଲି ।

(୪)

ପାର୍ଶ୍ୱଥିଲି ଦେବୀ ଦରଶନ ଲଗି
ଲକ୍ଷେ ମହାଜୀବ ଦେବୀ ପାଣିଲଗି
କି କୁହୁକ କଲ
ସବୁ ଜୀବରେ ମୁଁ
ଶିବ ରୂପ ଦେଖି ଜାବା ହେଲି ।

'ସ୍ୱାଧୀନ' 'ସ୍ୱାଧୀନ' କହି ରତିଦିନ
ଲକ୍ଷ୍ୟ ରଖିଥିଲି ଦିଲ୍ଲୀ ସିଂହାସନ,
ପରାଧୀନ ଆଜି
ତା ପ୍ରେମ କାରାରେ
ଜାଣୁଜାଣୁ ହାତକଡ଼ି ନେଲି ।

●

## ଛୁଅଁନା ଛୁଅଁନା ବିଦେଶୀ ବସନ

ବୈଶାଖ, କଟକ ଆଶ୍ରମ
ଗାନ୍ଧ୍ୟାବ୍ଦ ୬୨

ଛୁଅଁନା ଛୁଅଁନା ବିଦେଶୀ ବସନ
ଭାଇ ମୁଣ୍ଡା ନାହିଁ ସେହି ପାପକୁ
ଅମୃତ ହାଣ୍ଡିରେ ବିଷ ମିଶା ନାହିଁ
ଦୁଧ ପିଆ ନାହିଁ ନାଗ ସାପକୁ । ପଦ ।
ଦେଶରେ ଆସିଛି ନବ ଜାଗରଣ
ଆଉ ହଟା ନାହିଁ ଦେଶ ପଛକୁ,
ସ୍ୱାଧୀନତା ବଟ ପଲ୍ଲବି ଉଠୁଛି
ବଂଧୁ ହାଣ ନାହିଁ ସେହି ଗଛକୁ । ୧ ।
ଆପଣା ଭାଇଙ୍କି ଭଗାରି କରିଣ
କେଭେ ପୋଷ ତାହି ଦୂର ଠକକୁ,
ଜାତି ମହାସଭା ଛାତି ରକ୍ତ ପିଇ
ଆଜି ଜାଟ ନାହିଁ ନିଜ ବେକକୁ । ୨ ।
ପଇସା ତୁମର ଭସିଯାଏ କାହିଁ
ଟିକେ ଦେଖବେଳେ ଭାବ ମନକୁ,
ଝିଙ୍କିଜାକୁ ମାରି ବଣି ପୋଷ ନାହିଁ
ଦେଇ ବଡ଼ ଲୋକେ ଦୁଃଖୀ ଧନକୁ । ୩ ।
ବେଳ ପଡ଼ିଅଛି ମେଳ ବାନ୍ଧି ଆଜି
ଭଙ୍ଗ ପୁତନାର ଜାଳ ଜଞ୍ଜକୁ,
ମହାତ୍ମା ବଚନ ଶିରୋଧାର୍ଯ୍ୟ କର
ଯଶ ରହିଯିବ ଜାଜ କାଳକୁ । ୪ ।

●

## ଏ ଯେ ଯୁଗ ଅବତାର ଆସିଛି

ଆଶ୍ୱିନ, ବ୍ରହ୍ମପୁର
ଗାନ୍ଧ୍ୟାବ୍ଦ ୫୨

ଏ ଯେ ଯୁଗ ଅବତାର ଆସୁଛି
ବିଶ୍ୱ ଜଗତର କଳଙ୍କ ପୋଛିବ
ତାକୁ ବୁଝିବାର ଲୋକ ବୁଝୁଛି ! ପଦ ।
ଅସହ୍ୟ ଧରାରେ ଧନୀ ଅତ୍ୟାଚାର
ଅନାସେ ବିଳାସେ ଦେଶ ହାହାକାର
କେତେ ମ୍ଳେଚ୍ଛ ବୃଦ୍ଧି ଗର୍ଜି ଉଠୁଛି । ୧ ।
କୃଷକ ଶୋଷିତ, ଶ୍ରମଜୀବୀ ଝାଳ
ଅଳପ ବେତନ ଦାସ ଅଶ୍ରୁଜଳ
ସବୁ ହୁତାଶନ ପରି ଜଳୁଛି । ୨ ।
ଭୀରୁ ନିନ୍ଦେ ବସି ନିଜର କପାଳ
(କିନ୍ତୁ) କପାଳରେ ଲେଖା ସମସ୍ତେ ଭୂପାଳ
ମା'ଟି ସମାନ ସଭିଙ୍କି ଧରିଛି । ୩ ।
ପ୍ରଜା ଧନେ ଥିଲ ବଳି କେତେ ରଜା
ଅତି ଦାନେ ପୁଣି ପାଉଥିଲ ପୂଜା
ସେହୁ ବିଶ୍ୱଶାନ୍ତି ଲାଗି ମରିଛି । ୪ ।
ବେଶି ଦିନ ନାହିଁ ତୁଟିବ ଏ କଳି
ସବୁ ଭେଦା ଭେଦ ପାଇବେ ତ ବଳି
ଧୀରେ ଅହିଂସା ଶକତି ଖେଳୁଛି । ୫ ।

## ଘୃତକନୀ ପରି ଘୂର୍ହିବ ଗଗନେ

(ଦୁଃଖିନୀ କନିକା ସ୍ବର)

ଆଷାଢ଼, କାଳୀଗଳି
ଗାନ୍ଧ୍ୟାବ୍ଦ ୬୧

ସ୍ବତକିନୀ ପରି ଘୂର୍ହିବୁ ଗଗନେ
ନୀରବିନ୍ଦୁ କେବେ ଝରିବ
ଘନକଳା ଘନ ତଳେ ଲେଟି ଆସେ
ସତେ ଆମ ଆଶା ପୂରିବ । ପଦ ।

ନବ ଭବେ ମଜି ନବ ତେଜେ ସାଜି
ଭାରତ ରମଣୀ ଜାଗରିଚା ଆଜି
ବୁଝି ଆମ କଥା ପୋଛିବ କେ ବଥା
ଅବୁଝା ଆମରି ଦଇବ । । ୧ ।

ଅଲୋଡ଼ା ଆମେ ତ ପଡ଼ିଥାଉଁ କଣେ
ଭବେ କେ ଜଗତେ ଆମ ଲଗି କଣେ,
ଯେତେ ଧନ ଥିଲେ ଧନୀ ନୋହୁ ଆମେ
ଗରିବବୁ ବର୍କ ଗରିବ । । ୨ ।

ରୂପ ବଜାରରେ ରୂପାର ଖଡ଼ଗେ
ହଣା ହେଉ ଆମେ ନିତି ଆଖି ଆଗେ
ସରଗ ସୁଷମା ପାଦେ ଠେଲି ଗଲୁ
ନରକକୁ କରି ସୁଇଭ । । ୩ ।

ନାରୀ ମଥାମଣି ନାରୀର ସତୀତ୍ୱ
ଯା' ପ୍ରେମ କିରଣେ ବିଶ୍ୱ ଆଲୋକିତ,
ସେ ମଥାମଣି କେ ଛଡ଼ାଇ ନେଇଛି
ଝୁରିଲେ କି ଆଉ ଆସିବ ? । ୪ ।

ଶିଶୁ ଗଣ୍ଡେ ମାତ ଦେଇଣ ଚୁମ୍ବନ
ପିତା କୋଳେ ଯେବେ କରେ ଅରପଣ,
ଦେଖିଦେଲେ ତାକୁ ଜଳିଉଠେ ବୁକୁ
ସେ ଜାଳା କିଏ ସେ ଶମିବ ? । ୫ ।

ଭବୁ କେବେ କେବେ ଲଭନ୍ତୁ ସୁଗତି
ମୁକତି–ଯାଗରେ ନିଜକୁ ଆହୁତି.
ଭବ ଆଡ଼ସ ପୁଣି ବିଷ କଣିକାକୁ
ସୁଧା ସଂଗେ କିଏ ଗୋଳିବ ? । ୬ ।

ଜନମୁଁ ଜନନୀ ଦେଇଥିଲେ ବିଷ
ଦୁଶୋଚନା ସେଥିକି ନ ଥାନ୍ତା ତ ଲେଶ,
ଦେବୀ ବେଶରେ ଯା' ଦାନବୀ ସାଜିଲୁଁ
(ଥାମ) କଳଙ୍କ କାହାକୁ ଲଗିବ ? । ୭ ।

ପଥର ଭଠିଲା ପାଦ ବାଜି ଯେଉଁ
ପତିତ ପାବନ ବାନା ଭଢ଼େ ଯହିଁ,
ସେ ଦେଶେ ପଡ଼ିଛୁ ଭରସା ଏତିକି
ଦିନେ ଆମ ଦଶା ଫେରିବ । ୮ ।

●

## ସେ ମହାମାନବ ଚରଣେ ଘୂର୍ହି

ଉତ୍ସବ, ପୁରୀ ଧର୍ମଶାଳା
ଗାନ୍ଧ୍ୟାବ୍ଦ ୬୨

ସେ ମହାମାନବ ଚରଣେ ଘୂର୍ହି
କୋଟି ଓଡ଼ିଶାଙ୍କ ହୃଦ ପ୍ରତିନିଧି
ଗଲ ମୋ ଭଉଣୀ, ଗଲ ମୋ ଭଇ । ପଦ ।
ବାଧା ବିପଦକୁ ପୟରେ ଦଳି
ପଞ୍ଚ ଭୂତ ପରି ସରବେ ମିଳି
ମାତୃ ପୂଜା ବେଦି, ମଣ୍ଡପ ଚୋଳିବା
ସବୁ ପଛ କଥା ପଛେ ପକାଇ । ୧ ।
ଯୁଗ ଅବତାର ଜଗତ ଶଶୀ
କାଳିନ୍ଦି ଗଳଣି କୋଇତେ ବସି,
ନଦିଆ ଚନ୍ଦ୍ରମା ଯାଇଥିଲେ ଯଥା
ଜଗାଇ ମାଧାଇ ମୁକତି ପାଇଁ । ୨ ।
ତା ପ୍ରିୟ ଭାରତ ଭବେ ସେ ଚିରେ
ଉଚ୍ଛଳର ଛବି ନାଚେ ତା ନେତ୍ରେ,

ଅହିଂସା ନୀତିର ଅକ୍ଷୟ ଶକତି
ଲହରୀ ପରି ତା ହୃଦେ ଖେଳଇ । ୩ ।

ତାହାରି ତପରେ ଆମେ ତପସ୍ୱୀ
ତାହାରି ଯଶରେ ଆମେ ଯଶସ୍ୱୀ
ତା ପ୍ରେମେ ବାନ୍ଧିବା ଜଗତ ବାସୀଙ୍କି
ବିଜୟ କେତନ ନଭରେ ଉଡ଼ାଇ । ୪ ।

ଓଁ

## ଛାତିକି ପଥର କରି

ଛାତିକି ପଥର କରି ସବୁ ଦୁଃଖ ସହିଛି
ସହିବି । ପଦ ।

( ୧ )

ଆସୁ ଝଡ଼—ବତାସ
ହେବି ନାହିଁ ହତାଶ,
ତୁମରି ପତାକା ଧରି ଦାଣ୍ଡେ ଦାଣ୍ଡେ ବୁଲିବି,
ବୁଲିବି ।

( ୨ )

ଖେଳିଉଠୁ ବିଦ୍ୟୁତ
ହେବି ନାହିଁ ଶଙ୍କିତ,
ଘଡ଼ ଘଡ଼ି ଚଡ଼ ଚଡ଼ି ଛାତି ପାତି ବହିବି,
ବହିବି ।

( ୩ )

ଲୋଡ଼େଁନା ମୁଁ ସମ୍ମାନ
ଅହମିକା ସ୍ୟନ୍ଦନ
ମୋ ଛାତି ରୁକ୍ଷ୍ଣରଥ ଚକ ହୋଇ ଘୂରିବି
ଘୂରିବି ।

( ୪ )

ହେବି ନାହିଁ ଚନ୍ଦନ;
କାଟି ମୋର ବନ୍ଧନ,
ମୁଁ ଇନ୍ଧନ ହୋଇ ଭବେ ଘରେ ଘରେ ଜଳିବି
ଜଳିବି ।

( ୫ )

ଲୋଡ଼େଁନା ମୁଁ ମୁକତି
ନିଜ ଲାଗି ଭକତି
ହାତକଡ଼ି ପାଏ ପଛେ ପୂଜା ଫୁଲ ତୋଳିବି
ତୋଳିବି ।

( ୬ )

ଲୋଡ଼ା ନାହିଁ ସରଗ
ଭୋଗେଁ ପଛେ ନରକ
ମୋ ଦେଶ ଉଦ୍ଧାର ଲାଗି ମାଟିତଳେ ମିଶିବି
ମିଶିବି ।

●

## କଳ ଘର ନୁହେଁ କଳିଘର

କଳଘର ନୁହେଁ,
କଳିଘର ଭାଇ !
କଳଲାଗି ସିନା ଯାବତ କଳି । ପଦ ।

( ୧ )

କଳି ଯୁଗେ କଳ— ଦାନବ ରୂପୀ
ବ୍ୟାପି ରହି ଅଛି ମାନବ ପୃଥ୍ୱୀ,
ମଧ୍ୟବିତ୍ତଙ୍କର
ରକତ ଶୋଷଇ,
ମୂଲିଆକୁ ଦିଏ ଚରଣେ ଦଳି,

( ୨ )

ଲକ୍ଷପତିଙ୍କି ସେ ଲୋଭ ଦେଖାଇ
ବିଳାସ ପଙ୍କରେ ଦିଏ ବୁଡ଼ାଇ,
ଝିଙ୍ଗିକା ମାରି ସେ
ବଣି ପୋଷେ ନିତି,
କାରିଗର ପଛେ ପକାଏ ଧୂଳି ।

( ୩ )

ଚାଷ ଲାଗି ବଡ଼ ଆମ ଭାରତ,
ଚାଷୀ ରକ୍ଷା କରେ ପୃଥ୍ୱୀ ମହତ,
ଉଧାଇ ନ ପାରେ
ଚାଷ ତା' ଦାଉରେ,
ଦିନୁ ଦିନ ଦେଖେ ଯାଏ ମଉଳି ।

( ୪ )

ଧାନ ବୁଣି ସୁତା ଅରଟେ କାଟି
ଚଳୁଥିଲେ କେତେ ନିକମା ଦୁଃଖୀ,
ସଭିଙ୍କ ଜୀବିକା
ବୁଡ଼ାଇ ଦେଇଛି,
ଭୋଗନ୍ତି ସେମାନେ ଜୀଅନ୍ତା ଶୂଳି ।

(୫)

ତା'ଲାଗି ବଢ଼ଇ ବଡ଼ ସହର
ରୋଗର ଗୋଦାମ ନରକ ଘର;
ସରଗ ଶୋଭର
ହାଟ ଭାଙ୍ଗିଯାଏ
ପଲ୍ଲୀ ଶମଶାନ ଉଠଇ ଜଳି ।

(୬)

ଦଳିତ ଦୁଃଖିଙ୍କି ରଖିବା ପାଇଁ
ଯୁଗ ଅବତାର ଆସିଛି ଭାଇ
କଳ ଅତ୍ୟାଚାର
ଚାପିବ ମୁକର,
ବାମନ ଯେସନ ଚାପିଲେ ବଳି ।

●

## ଅହିଂସା ନୀତିର ଅସଲ ଭିତ୍ତି

ଜୀବ-ସେବା ଭାଇ !
ଅହିଂସା ନୀତିର ଅସଲ ଭିତ୍ତି;
ଜୀବ-ସେବାରେ ଯେ ଜୀବନ ସମର୍ପିଛି
ସବୁଠାରେ ପାରେ ସଭିଙ୍କି ଜିତି । ପଦ।

( ୧ )

ପଢ଼ୁ ପଛେ ବେଦ
ପଢ଼ୁ ଭାଗବତ,
ସେବା ଧର୍ମ କରେ ଜଗତ ଆୟତ
ତରଳାଇ ଦିଏ
ପାଷାଣ ହୃଦୟ,
ବଦଳାଇ ଦିଏ କପଟ ମତି ।

( ୨ )

ସେବକର ଅରି
ନାହିଁ ତିନି ପୁରେ,
ସଭିଙ୍କି ଦେଖେ ସେ ସମାନ ଚକ୍ଷୁରେ,
ହିଂସା ଦ୍ୱେଷ ତାର
ଚିତ୍ତୁ ଲିଭିଯାଏ
(ହୃଦେ)ଜଳିଉଠେ ପ୍ରେମ ବିଜୁଳିବତୀ ।

( ୩ )

ପରଲାଗି ନିଜ
ଦେହକୁ ନ ଚାହିଁ
ମରଣ ପାଖରେ ଉଭା ହୁଏ ଯାଇଁ
ବରଣ କରେ ସେ
ନରକ ଯାତନା,
ବାରେ ନାହିଁ ଜମା ଜାତି ଅଜାତି ।

( ୪ )

ଯୋଗ ଯାଗ କିଛି
ଲୋଡ଼ା ନାହିଁ ତାର,
ଜୀବରେ ଦେଖେ ସେ ଶିବଙ୍କ ଆକାର;
ବନ୍ଧନେ ତାହାକୁ
ରଖିବ କିଏ ସେ ?
ହାତ ମୁଠାରେ ତା' ଗତି ମୁକତି ।

## ମରଣକୁ ଯେବେ ବରଣ କରିବା

ଜ୍ୟୋସ୍ନ, କାଳୀଗଳି
ଗନ୍ଧ୍ୟାଦ ୬୨

ମରଣକୁ ଯେବେ ବରଣ କରିବା
ଡର ଆଉ ତେବେ କାହାକୁ ।ପଦ।
ଆସୁ ଯେତେ ଝଡ଼ ବିପଦ ବତାସ,
ତୁଟାଇବା ନାହିଁ ମନରୁ ସାହସ,
ନିଜ ପଦେ ନିଜେ ଉଭା ହେବା ଆମେ
ସାହା କରି ନିଜ ବାହାକୁ ।୧।
କେତେ କେତେ ତରୀ ଢିଏ ଚୂନା କରି,
ଭଉଁରୀ ପାଖରୁ ଦୂରେ ନ ରହିଲେ
ଭଜିବା ପାତାଳ ପୁରକୁ ।୨।
କୋଟୀ ନର ନାରୀ ନାବର ପୂଝାରୀ
ଦେବୀ ଦରଶନେ ଅଛନ୍ତି ବାହାରି
ନିଜ ମୁଣ୍ଡ ନିଜେ ବଳି ଯାଚିଛନ୍ତି
ଆପଣାର କରି ପରକୁ ।୩।
ମୁକତି ମନ୍ଦିର କନକ ପତାକା
ବଉଦ ଉଡ଼ାରୁ ଦେଖଣି ତ ଦେଖା
ବୁଡ଼ି ମରିବା କି ମଝି ଦରିଆରେ
ଛାଡ଼ି ଦେଇ ଆଶା ନାହାକୁ ।୪।

ଡ

## ଉଦ୍‌ବୋଧନ

ଉଠ ଉଠ ହେ
ଉତ୍କଳବାସୀ !
ଶୁଣ୍ଡିଛ ବସି କାହିଁକି ?
ଶୁଭିଲଣି ଭେରୀ ଆସିବେ ତ ଘେରି
ଲକ୍ଷ ଲକ୍ଷ ଭକତ
ଦେବୀ ପୂଜା ପାଇଁକି ।ପଦ।

( ୧ )
ଜମ୍ବୁ ଦ୍ୱୀପ କମ୍ବୁ ଉଠିଲଣି ବାଜି,
ଶମ୍ଭୁ ସମ ଦେବ ତେଜେ ଉଠ ସାଜି,
ଡମ୍ବୁ ପାତ ଯାଇ
ଅମ୍ବୁ ନିଧି କୂଳେ
ମୁକ୍ତ ଗଗନେ ଗୁହିଁକି ।
( ୨ )
ତରଙ୍ଗେ ତରଙ୍ଗେ ସ୍ୱାଧୀନତା ଗୀତି
ପଇକେ ପୂଇକେ ଫେନପୁଞ୍ଜ ପ୍ରୀତି
ମୁଗ୍ଧ– ଦିବା– ନିଧି
ସ୍ନିଗ୍ଧ କରେ ଗିରି,
କାନନ ଉଠେ ମହକି ।
( ୩ )
ସପ୍ତ ସିଂହ ଦେଶ ଉଠି ଅଛ ଜାଗି
ମୁକ୍ତ ହେବ ଯୁଗ ଯୁଗାନ୍ତର ଲଗି
ଲୁପ୍ତ– ତପ– ତେଜ
ଦୀପ୍ତ ଋଷି ଖଲେ;
ଇନ୍ଦ୍ର ପଡ଼ଇ ଚମକି ।
( ୪ )
ବିଶ୍ୱ ସାର ଆଜି ଦୃଷ୍ଟି ରଖି ପରେ,
ବୃଷ୍ଟି ହେବ ସ୍ୱସ୍ଥ ଶାନ୍ତି ଘରେ ଘରେ,
ବିଷ୍ଟି ଯୋଗ ଯିବ
ସୃଷ୍ଟି ଉଲ୍ଲସିବ;
ସତ୍ୟ ବିଜୟ ବିଲୋକି ।

(ଏହି ସଂଗୀତଟି କଂଗ୍ରେସ ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକରେ ବୋଲା ହୋଇଥିଲା ।)

## ଅଚ୍ଛବ ଯାତ୍ରୀ

ଜ୍ୟୋସ୍ନ, କାଳୀଗଳି
ଗନ୍ଧ୍ୟାଦ ୬୨

ଗୁଲ ଦିନେ ଘର ବିସରି ଉଚାରି
ସଫା ପସୁରି ତାହାକୁ ଆସିବା ।ପଦ।

ଜଗନ୍ନାଥ ନାମ ମହକେ ଜଗତେ
ଜଗତର ନାଥ ବୋଲନ୍ତି ସମସ୍ତେ
ଆମ ଘର କି ଏ ଜଗତୁ ବାହାର
ଆମେ ଅନାଥ କାହିଁକି ରହିବା ।୧।

ଥକା ନୋହେ କେବେ ଚକାଡୋଳା ତାର,
ଅଣୁ ପରମାଣୁ ଦେଖଇ ବିଶ୍ୱର,
ପତିତପାବନ ବାନା ଉଡାଏ ସେ
ଆମେ ଏତେ ଦୁଃଖ କିଆଁ ସହିବା ? ।୨।

ଯାହାଙ୍କ ସେବାରେ ଖଟି ଦିବା ରତି
ଜଳାଇ ଦେଉଛୁ ଏ ଜୀବନ ବତୀ
ଆମ ଛାଇ ଦେଖି ତାଙ୍କ ନାହି ତିଏଁ
ଏହା କେଉଁ ବେଦ ନୀତି ବୁଝିବା ।୩।

ଆମକୁ ଛୁଇଁଲେ ହୁଅନ୍ତି ସେ ଛୁଆଁ
ବାସନ୍ଦ ଆମକୁ ଜାଗା ପାଣି ନିଆଁ,
ନିଜେ ପରାଧୀନ ଇଚ୍ଛନ୍ତି ଆମକୁ
କଷି ଦୋହରି ଫାଶରେ ବାନ୍ଧିବା ।୪।

ଆମ ଦୁଃଖ ସୁଖେ ନାହିଁ କାର ଲକ୍ଷ୍ୟ
ପେଟ ବିକଳରେ ଭକ୍ଷୁଛୁ ଅଭକ୍ଷ
ଲୁଚାଇବା କିଆଁ ଦୀନବନ୍ଧୁ ଆଗେ
ସଫା ସତ କଥା ଖୋଲି କହିବା ।୫।

ଲକ୍ଷ୍ମୀ ଠାକୁରାଣୀ ତାହାର ଘରଣୀ,
ଜାଣନ୍ତି ସେ ଆମ ଦୁଃଖର କାହାଣୀ
ଶୁଚିବନ୍ତ ହୋଇ ସାଙ୍ଗେ ନେବା ତାଙ୍କୁ
ଆମ ସାକ୍ଷୀ ସୁଦ୍ଧା ତାଙ୍କୁ ମାନିବା ।୬।

ଶ୍ରୀବତ୍ସ ବ୍ରାହ୍ମଣ ମାଇଲା ଗୋଇଠା,
ବିଣିଆ ଶବର ଖୋଇଲା ଅଇଁଠା,
ହରିଆ ଯବନ ଦାଣ୍ଡେ ନଚାଇଲା
ତାଙ୍କୁ ଆମେ କିଆଁ ଭୀରୁ ହୋଇବା ? ।୭।

ଆମ ଠାରେ ଯେବେ ନାହିଁ ତାର ଲୋଭ
ଦେହ ଧରି କିଆଁ ରହିବା ଅଛବ ?
କୃପାନିଧି ନାମ ହସାଇ ବୁଡ଼ାଇ
ନିଶ୍ଚେ ବାରିନିଧି ଜଳେ ଝାସିବା ।୮

କହୁଛନ୍ତି ଲୋକେ ଗାନ୍ଧି ତାର ଲୋକ,
ଆସିଛି ଟାଳିବ ସାରା ପୃଥ୍ୱୀ ଦୁଃଖ,
କଥା ଯେବେ ସତ, ନେଇ ଗାନ୍ଧି ମତ
ଘର ମୁକତି ମଣ୍ଡପେ ବସିବା ।୯।

## ଆହା ! କେଡ଼େ ସୁନ୍ଦର ଜହ୍ନ ପଡ଼ିଛି

ଆହା ! କେଡ଼େ ସୁନ୍ଦର ଜହ୍ନ ପଡ଼ିଛି,
ଧଗ ବୋଇତ କି ଧଳା ପାଲ ଟୋଳି
ଏ ପାରିରୁ ସେ ପାରିକି
ଭାସି ଯାଉଛି ।ପଦ।

(୧)

ମନ ଯା' ଲୋଡ଼ଇ ଉନମାଦେ ଆଜି
ଯୋଛନା ଢେଉରେ ଯାଆନ୍ତି ମୁଁ ମଜ୍ଜି,
(ଭରା) ମଧୁକୁମ୍ଭେ ଯେହ୍ନେ
ମଜନ୍ତି ମାଛି ।

(୨)

ପ୍ରେମିକ ପ୍ରେମିକା ହୃଦୟ ଆଉଟି
ବଂଶୀ ସ୍ୱନ ପରି ନୀଳ ନଭେ ଉଠି,
(ନିତି) ପ୍ରକୃତି ପ୍ରାଙ୍ଗଣେ
ଖେଳନ୍ତି ପୁଚି ।

(୩)

ମଧୁଶଯ୍ୟା ଘର ମଲ୍ଲି ମାଳ ହୋଇ
ଯବକ ଯୁବତୀ ଶ୍ରୀ ଅଙ୍ଗେ ଶୋହି,
(ପୂର୍ଣ୍ଣ) ସଭରରେ ତାଙ୍କୁ
ଦିଅନ୍ତି ବିଞ୍ଚି

( ୪ )

ଝରଣା ତଳେ ମୋ ମନକଥା କହି
ମହା ସିନ୍ଧୁ କୋଳେ ଯାଆନ୍ତି ମୁଁ ବହି
(ସୁଖେ) ବାଟେ ଘାଟେ ମୋର
ଜୀବନ ସିର୍ଜି ।

( ୫ )

କଳ୍ପନା କୁଞ୍ଜରେ ସେବି ସରସ୍ଵତୀ,
ହୃଦୟ ସଙ୍ଗତେ ହୃଦୟ ମିଳାନ୍ତି
(ବିଶ୍ଵ) କବିବର ପରି
କବିତା ରଚି ।

( ୬ )

କମାଣ ଗୁଳିକି ଶିର ଦେଇ ବଳି
ମହାତ୍ମା ଆଦେଶେ ପଡ଼ନ୍ତି ମୁଁ ଟଳି
(ମୋର) ଜନମ ବର୍ଦ୍ଧନ,
ଯାଆନ୍ତା ଘୁଞ୍ଚି ।

●

## ରାଜ୍ୟ ନାହିଁ ଯା'ର

ଭଦ୍ରକ, ଜାଜୀପଲି
ଗାନ୍ଧ୍ୟାବ୍ଦ ୫୭

'ରାଜ୍ୟ' ନାହିଁ ଯାର 'ସ୍ଵରାଜ୍ୟ' କି ହେବ
'ଭାଷା' ନାହିଁ ଯାର ଆଶା କି ରହିବ ?
ଭବରେ କେ ଅଛି ସ୍ଵଦେଶ ଭକତ
କେତେ ଜାତି ତୋର ହେଉଛି ଲୁପତ । ପଦ

( ୧ )

ଦେଖ କଲିକତା ଟାଟା କାରଖାନା
ଜାତି ମେରୁହାଡ଼ ନିତି ହୁଏ ଚୂନା,
ଭଗବତ ଟୁଙ୍ଗି ନେଲଣି ସମାଧି
ଗ୍ରାମେ ଗ୍ରାମେ ଗପ 'ବାଦୀ' 'ପ୍ରତିବାଦୀ

ପଲ୍ଲୀ ଶମଶାନ ଜଳେ ରାତିଦିନ
କରିବ କେ ଆଉ ପଲ୍ଲୀ ସଂଗଠନ ?

( ୨ )

ଜର ବିସୂଚିକା ବାନ୍ଧିଲଣି ବସା,
ବର୍ଷି ମଲୁଡ଼ିରେ ଉଡ଼ିଯାଏ ହଂସା।
ପଞ୍ଜାବୀର ଦାନେ ଗୁଜୁରାଟୀ ଧନେ
ଜୋକେ ପିଇ ଦଣ୍ଡେ ବଞ୍ଚାଇ ଜୀବନେ
କରୁଥିବା କେତେ କହ ପ୍ରତିକାର ।
ଦିନୁ ଦିନୁ ହେଲ ଅଚଳ ସଂସାର ।

(୩)

ଓଡ଼ିଶାର ଭାଷା 'ରେଙ୍ଗାମ'ର ଜୁଲି
କରିବ କେ ଆଉ କହ ବରଦୋଲି,
ଭାବିଛ କି ମନେ କି ଅବା ସ୍ଵପନେ
ଚରଟରେ ସୂତା କାଟି 'ବାବୁ' ମାନେ
ଘରତେ ବଢ଼ାଇ ସ୍ଵଦେଶୀ ପ୍ରଗ୍ରର
ଯୋକ ମୁଖେ ଦେବେ ଲବଣ ଆହାର ?

( ୪ )

ସହଜେ ଲଭିଛେଁ ଦାସତ୍ଵର ଦଣ୍ଡ,
ତାପରେ ଜନନୀ ଅଙ୍ଗ ଖଣ୍ଡ ଖଣ୍ଡ,
(କେବେ)ଗଙ୍ଗାରେ ପଡ଼ଇ (କେବେ)ଗୟାରେ ତା ପିଣ୍ଡ
ଚୁଟିଲଣି ଷିରୀ ଫିଟୁ ନାହିଁ ତୁଣ୍ଡ
ମୁକୁଳିତ ତାର ଚିକୁରର ଭାର
ଲୁହ ରକତେ ସେ ଆଜି ଏକାକାର ।

( ୫ )

ମାତା ପଦଚିହ୍ନ ଚିହ୍ନିଲେ ବଙ୍ଗାଳୀ,
ଜାତି ଲାଗି ଛାତି ପାତିଲେ ଅକାଳୀ,
ଭାଇ ଲାଗି ଭାଇ ଭେଇଲେ ବର୍ଦ୍ଦୋଳି,
କୋଟି ଶିବ ଦେଶେ କୋଟିଏ ଭକତି

ଲଗିବେ ନାହିଁ କି ମନ ପ୍ରାଣ ଶୋଷି
ଡାକିବେ ନାହିଁ କି ମାଆ ମାଆ ବୋଲି ?

●

## ପ୍ରେମିକ କିଏ ?

ମାର୍ଗଶିର, ଗନ୍ଧବାହନ ରୋଡ୍
ଗାନ୍ଧ୍ୟାବ୍ଦ ୫୯

( ଆଜ କେଳିକଉତୁକୀ–ବୃନ୍ଦେ )

କହ ଗୋ,
କିଏ ସେ ପ୍ରେମର ନାଗର
ପ୍ରେମର ମରଣ ଜାଣେ ? । ପଦ ।

(ଯେ) ଦେଶ ପରାଧୀନ
ବେଶ ପର ଦାନ,
(ଯେ) ବିଳାସକୁ ଭଜି,
ଅଳସରେ ମଜି,
ଯୌବନ ମୋହନେ
ମାତି ଅହଂକାରେ
ରୂପ ପିପାସାରେ
ଭୋଗ ଲାଳସାରେ
ରୂପା ଧନୁଶରେ ନାରୀ ମନ ହାଣେ ? । ୧ ।

(ଯେ) ସବୁ ସ୍ୱାର୍ଥ ତେଜି
ଦେଶ ମୁକ୍ତି ହେଜି,
ତରୁଣୀ ସତୀତ୍ୱ
ତରୁଣର ବ୍ରତ
ବଞ୍ଚାଇବା ଲାଗି,
ଅସି ଗଣ୍ଡ ଚୁମ୍ବି
ମରଣ ଶଯ୍ୟାର
ଦେଇ ଫୁଲହାର
ରଚେ ମଧୁଶଯ୍ୟା ସମର ପ୍ରାଙ୍ଗଣେ ? । ୨ ।

(ଯା) ଘରେ ନାହିଁ ଅନ୍ନ
ମଳିନ ବସନ,
କୁଟୁମ୍ବ ପୋଷଣ
ଚିନ୍ତା ଅନୁକ୍ଷଣ
(ସେ)କଳ୍ପନା ସୁନ୍ଦରୀ
ସାଥୀରେ ବିହରି,
ମନ-ତୂଳି ଧରି
ବନ ଛବି ଭରି
କୋଟି କୋଟି ପ୍ରାଣେ ସୁଖ ଶାନ୍ତି ଆଣେ ? । ୩ ।

(ଯେ) ବିଶ୍ୱ ଜଗତର
ପାଞ୍ଚ ଉପକାର,
ଗୁଳି ଖଡ୍‌ଗଧାରେ
ଅହିଂସା ନୀତିରେ
ଯୀଶୁଙ୍କ ସମାନ
ସହିଣ କଷଣ,
ଚଇତନ ସମ
ଟାଳି ଅରି ମନ
ଶାନ୍ତି ବଳେ ଦାନବ ମାନବ ଜିଣେ । ୪ ।

●

## ଜୟନ୍ତୀ ସ୍ମୃତି

ଆଷାଢ଼, କାଳୀଗଳି
ଗାନ୍ଧ୍ୟାବ୍ଦ-୬୨

ଦେବ !

ଅମର ପୁରରୁ ଗଗନ ଉଡ଼ାଇ ଚାହୁଁଅଛି
କାରେ ନିରେଖି;
ବିଜୟ ପତାକା ଚହଟି ଉଠୁଛି ତବ ଶ୍ରୀ ଚରଣେ
(ଥାଇ) ଗୁହିଁକି । ପଦ ।

(୧)

ଟୁଟିଛି ସ୍ୱପନ ଫିଟିଛି ନୟନ,
ଫିଟି ନାହିଁ ଦେଶ ଦାସତ୍ୱ ବନ୍ଧନ
ଛାତି ରକ୍ତ ଢାଳି
କରିଥିଲ ଯାହା,
ଜୟ ଗୌରବ ସେତିକି ।

( ୨ )

ପଡ଼ି ନାହିଁ ଶେଷ ଯଜ୍ଞର ଆହୁତି,
ସନ୍ଧି ଲାଗି ସିନା ଛଡା ବନ୍ଧା ଶାନ୍ତି
ଢଳି ନାହିଁ ସତ
ଢଳି ହେଉ ନାହିଁ
ଦେଶ ଭବିଷ୍ୟ ଗତିକି ।

(୩)

ଶେଷ ଧର୍ମ ଡାକ ଦେବା ଲାଗି ବାରେ
ସେନାପତି ଗଲେ ନୀଳ ସିନ୍ଧୁ ପାରେ
ସତ୍ୟ ଅହିଂସାର
ନୀତି ପ୍ରଚ୍ଚରିବେ
ଟଳାଇ ଜଗତ ମତିକି ।

(୪)

ଘନ ଅନ୍ଧକାର ପୂରପଲ୍ଲୀ ବନ
ଘୁଲେଇ ଜନ୍ଧ ବା ସେ ଝଞ୍ଜା ପବନ
ଯାହା ଲାଗେ୍ୟ ଭେଟୁ
ତୋପ ବଂଧୁକକୁ
ଛାତି ରଖିଅଛୁ ସଜାଣି ।

(୫)

ଚାଲୁଛି ପଥରେ ଆମେ ତ ପଥିକ
ଲୋଡ଼ୁ ନାହିଁ ହାର ପଦବୀ ପଦକ,
ସ୍ୱାଧୀନ ଭାରତ
ଦେଖି ପ୍ରାଣ ଯାଉ
ଆଶାଷ ଆମକୁ ଏତିକି ।

* * *

# ଫୁଲ ଚନ୍ଦନ

## ଉତ୍ସର୍ଗ ପତ୍ର

ଉତ୍କଳର ଯେଉଁ ତ୍ୟାଗୀ ସନ୍ତାନବୃନ୍ଦ ପ୍ରକୃତ ଉତ୍କଳର ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ମାତୃପୂଜା ବେଦୀ ମଣ୍ଡପରେ ନିଜର ଅମୂଲ୍ୟ ଜୀବନକୁ ଆହୁତି ଦେଇଅଛନ୍ତି, ସେହିମାନଙ୍କର ପବିତ୍ର କରପଲ୍ଲବରେ ମୋର ଏହି ଫୁଲ ଚନ୍ଦନ ଅର୍ପିତ ହେଲା ।

ତୁଳା ଦି ୨୮, ସନ ୧୯୩୦
କାଳିଗଳି, କଟକ

ବୀରକିଶୋର ଦାସ

---

**ପ୍ରତିଜ୍ଞା**

ମୃତ୍ୟୁ ପଛକେ ବରଣ କରିବୁ ଶରଣ ଲୋଡ଼ିବୁ
ସିଂହବିବରେ,
ଏକୋଟି ଉତ୍କଳୀ ଗୋଟିଏ ସନ୍ତାନ ଶୁଣାଇବୁ ନର
କର୍ଣ୍ଣକୁହରେ
ବଂଶାଗତ ଦାବି ପୂର୍ଣ୍ଣ କରିବୁ ସାରା ଉତ୍କଳେ
କରି ସ୍ୱତନ୍ତ୍ର,
ଭାରତ-ଲକ୍ଷ୍ୟ ସାଧନ କରିବୁ ସୂଚନା ରଖାଇ
ସ୍ୱାଧୀନତାତନ୍ତ୍ର । (କୋରସ୍)

( ୧ )

ଲୋଡ଼୍ ନାହୁଁ ଆମେ ସପ୍ତସାଗର ଅଧିକାର ଲଭେ
କୁବେର ବିତ୍ତ,
ପୂର୍ଣ୍ଣ ଉତ୍କଳ ଛବି ଦର୍ଶନେ ଉନ୍ମାଦ ଆମ
ତରୁଣ ଚିତ୍ତ,
ଇନ୍ଦ୍ରପଦବୀ ତୁଚ୍ଛ ଆମର ଦଳିହେବୁ ପଛେ
ପାତାଳ ଗର୍ଭେ,
ସପ୍ତପୁରୁଷ ମୁକ୍ତ କରିବୁ ଆହୁତି ଦେଇ
ମିଳନପର୍ବେ

( ୧ )

ଧନଲୋଡ଼ା ହେଲେ ହରିଶ୍ଚନ୍ଦ୍ର ପରି ମଶାଣେ ରଚିବୁ
କୁଟୀରପର୍ଣ୍ଣ,
ମନଲୋଡ଼ା ହେଲେ ପୁତ୍ର ବଳିଦେବୁ ହସିହସି ଆମେ
ସାଜିବୁ କର୍ଣ୍ଣ,
ଗଙ୍ଗାତଟରୁ ଗୋଦାବରୀ ବ୍ୟାପୀ ଜନ୍ମଭୂମିର
ଶିରୀବିଭଙ୍ଗ,
ଧ୍ୱଂସ କରିବୁ ଜଡ଼ତା ତାହାର ଖେଳାଇବୁ ଚେତା
ବିଦ୍ୟୁ ତରଙ୍ଗ ।

( ୩ )

ଚିଆରି ନଜାଣୁ ବୋମା ବନ୍ଧୁକ ହୋଇ ନାହୁଁ କେବେଁ
ମାନବହନ୍ତା,
ସିମିଳିପାହାଡ଼ ହୃଦୟ ଟାଳିଛୁ ଧରି ସେ ଲଙ୍ଗୁଳି
ଫକୀରପନ୍ଥା
ଭଗୀରଥପରି ଧୈର୍ଯ୍ୟ ରଖିଛୁ; ଦେବତାଙ୍କପରି
ସାଗରମନ୍ଥି,
ସବୁ ଭେଦାଭେଦ ଫିଙ୍ଗି ଦେଇଅଛୁ ସନ୍ତାନ ଆମେ
ଗୋଟିଏ ପନ୍ଥୀ ।
ଉତ୍କଳ ଚିତ୍ର-ପଟ ଆଙ୍କୁ ଆଙ୍କୁ ରଙ୍ଗପାତ୍ର ଯେବେ
ହୋଇବ ଶୂନ୍ୟ,
ବକ୍ଷ ରକତ ବିଦାରି ସ୍ୱହସ୍ତେ ମସୀଧାର ହସି
କରିବୁ ପୂର୍ଣ୍ଣ ।

## ଭାରତ ଜନନୀ ସମୀପେ ଉତ୍କଳର ନିବେଦନ

କେତେ ଓଳିତଳ ବୁଲିବି ଜନନୀ
କେବେ ମୋର ଦଶା ଫେରିବ,
ଯହିଁ ଯାଏ ତହିଁ ହତାଦର ପାଏ,
ଗଳଗଣ୍ଡ ହୋଇ ଗରିବ । ପଦ ।

କଣ୍ଠ ହାର ମୋର ଯାଇଅଛି ଖେରି
ବଦଳେ ପଡ଼ିଛି ଦାସତ୍ୱର ଡୋରି
ହାତଗୋଡ଼ ମୋର ବଧିର ହୋଇଛି
ଏତେ ଦୁଃଖ କିଏ ସହିବ ?

ଗଡ଼ଜାତ ମୋର ଭୂତପିଣ୍ଡପରି
ଝରିପଡ଼ୁଚି ସେ ଭୟେ ଥରିଥରି
ଦିନ ଦି'ପହରେ ଘୋର ଅନ୍ଧକାର
କେବେ ସେଠି ସୂର୍ଯ୍ୟ ଉଇଁବ ?

ବକ୍ଷେ ଲଦା ମୋର କରଭର-ଶିଳା
ଗଡ଼ି ମରନ୍ତି ମୋ କାରିଗର ପିଲା
ବର୍ଦ୍ଧି ମନ୍ଦୁଡ଼ିରେ ହଂସାଉଛେ ନିତି
କିଏ ମୋ ଯାତନା ବୁଝିବ ?

ମୋ ପିଣ୍ଡ କାଟରଣୀ ମୋ ଦେଶର ଚାଷୀ
ପେଟ ଲାଗି ଆଜି ଦୂର ପରବାସୀ
ମାଡ଼ ଗାଳି ଖାଇ ହାଡ଼ ଚୂର୍ଣ୍ଣକଲି
ସତେ ତାଙ୍କ ଦୁଃଖ ହରିବ ?

ଯେ ବା କେତେଜଣ ମୋ ସୁତ ଶିକ୍ଷିତ
ସ୍ୱାର୍ଥ-ଅନ୍ଧକୂପେ ସରବେ ପତିତ
ଆଉର ଶିରୀ ତ ଗଲା ନ ଦେଖଇ
ମୋ ଦଉ କାହାକୁ ଲାଗିବ
ପରସାଦ ମଣି ବିଦେଶୀ ଅଇଁଠା

ଘର ବେଳେ ଘର ମାରଇ ଗୋଇଠା
ଏହି ସବୁ ଦୃଶ୍ୟ ନୟନେ ଦେଖି ଜେ
ଦେହ ଧରି ଏଠି ରହିବ ?
ବଙ୍ଗ ତଇଲଙ୍ଗ ଆଦି ମୋ ଭଗିନୀ
ଲଜ୍ଜି ମୋତେ ସେ ଆଜି ସପତଣୀ
ଅତୀତ ସ୍ନେହକୁ ଭୁଲିଗଲେ ପିତା
ମୋ କର୍ମ କିଏ ସେ ଭୁଞ୍ଜିବ ?
କେଜାଣି କି ପାପ କରିଥିଲି ମୁହିଁ
ଜନମ ଦେଇ ତ ନ ଖୋଜିଲୁ ତୁହି
ପରଙ୍କ କଥା ବା କିବା ବାହୁନିବି
ନିଦାରୁଣ ମୋରେ ଦଇବ ।
ମାଆ ହୋଇ ଯେବେ ନାହିଁ ତୋର ମାୟା
କିଆଁ ମୁଁ ଧରିବି ଏ ଅସାର କାୟା
ସାଗର-କୋଳରେ ଝାସିବି ମୁକର
ତୋ କୋଳେ କଳଙ୍କ ଲାଗିବ ?

●

## ଭାରତ ଜନନୀଙ୍କର ସାନ୍ତ୍ୱନା

ଦୋଷାନା ଦୋଷାନା ମୋତେ ଗୋ
ମୋର ଗଜ ଦୁହିତା ।
ମାନ ଅଭିମାନ ଛାଡ଼ି ଦେଇ ଆଜି,
ଭୁଲିଯା ଭୁଲିଯା ଅତୀତ କଥା । ପଦ ।
ତୋ ଦଶାକୁ ବଳି ମୋ ଦଶା ପଡ଼ିଲା
ଆୟୁଷ ଥିଲାରୁ ଏ ପିଣ୍ଡ ରହିଲା
ଶହେ ବରଷତ ଶହେ ଯୁଗ ହେଲା
ଘାଣ୍ଟି ଦେଲା ମୋତେ ଶନିସପତା
ଗଲା ସ୍ୱାଧୀନତା ଗଲା ସେ ସମ୍ମାନ
ଗଲା କୋହିନୁର କେଳି–ସିଂହାସନ
ଲକ୍ଷୀର ସଂସାର ଚୂନା ହେଲା ମୋର
ପେଷି ଦେଲା ଆସି ବିଦେଶୀ ଯନ୍ତା ।
କେତେ ଅତ୍ୟାଚାର କେତେ ଅନାହାର
ଶୁଣି ଗୁଣି କେତେ ଲଟିର ପାଖାର

ଅଙ୍ଗେ ଭିଡ଼ିଲି ବିଷ ଲତୁ ଶାଳ
ଭୀମ ପରି ମଲେ ଥିଲି ଅଚେତା ।
ସାତ ସମୁଦ୍ରର ତେର ନଈ ପାରେ
କେଶ ଛନ୍ଦା ଶ୍ୱେତ କେଶରୀ ମୟରେ
ହାତ ଗୋଡ଼ ମୋର ନିଗଡ଼ ବନ୍ଧନେ
ଜଳୁଥିଲା ହୃଦେ ପଞ୍ଜାବ ଚିତା ।
କିଏ ସେ ତପସ୍ୱୀ କି ଯୋଗରେ ଆସି
ଫୁଲପାଣି ଛିଞ୍ଚି ବଜାଇଲା ବଂଶୀ
ନୟନ ମେଲିଲି ଜଗତ ଦେଖିଲି,
ଦୟାକଲେ ସିନା ବିଶ୍ୱକରତା ।
ଦିନ କେତୁଟାରେ ମୋ କୋଟି ସନ୍ତାନ
ମୋ ଲଗି ଢାଳିଲେ ଅମୂଲ୍ୟ ପରାଣ
ସବୁ ବନ୍ଧନତ ଫିଟିଲାଣି ବାକି
ଏକର ଶୃଙ୍ଖଳ ଦେଉଛି ବ୍ୟଥା ।
କେମାନଣି ମୋର ହୃଦୟ କାରେଣୀ
ସଭିଙ୍କର ତୁହି ସ୍ନେହର ଭଉଣୀ
ସଭିଏ ଲେ ତୋତେ ଭକତି କରନ୍ତି,
ତୋ ପାଶେ ନୁଅନ୍ତି ହରଷେ ମଥା
ଆସିଛି ଲେ ଆଜି ତୋତେ ମୁଁ ଶଙ୍ଖୁଳି
ତୋ ହାତେ ଫିଟିବ ମୋ କର ଶାଙ୍କୁଳ
ଯୁଗ ବଦଳିବ ତୋହରି ଦୁଆରେ,
ତୋ ଲଗି ଭଜନ୍ତି ନର-ଦେବତା ।
ସହସ୍ର ଭୁଜା ତୁ ଦେଖିଲୁଣି ମୋତେ
ବାନ୍ଧି ରଖିବ କେ ତୋତେ ଏ ଜଗତେ
ମୋହିନୀ ପରି ତୁ ମୋହିବୁ ସଭିଙ୍କୁ
ଅନ୍ୟଥା ନୋହିବ ମୋହରି କଥା ।

●

## ଆହ୍ୱାନ

( ୧ )

ମାତା ପାଦଧୂଳି ଚିହ୍ନିଲେ ବଙ୍ଗାଳି
ଜାତିଲଗି ଛାତି ପାତିଲେ ପଞ୍ଜାବି
ଭାଇ ଲଗି ଗଳ ଭେଟିଲେ ବର୍ଦ୍ଧୋଳି,
ଦେଶଲଗି ଗୁଳି ଖାଇଲେ ପେଶ୍ୱାରୀ
ଏଠି ଓଡ଼ିଆ କି କେହି ନାହିଁରେ ?
ଲୁହ ଢଳଢଳରେ ମାତା ଲେଟୁଛନ୍ତି
(ଥରେ) ଆଡ଼ ନୟନରେ ଚାହିଁରେ ।

( ୨ )

ବିଦେଶୀ ଖଡଗେ ଦେହ ଖଣ୍ଡ ଖଣ୍ଡ
ବିନା ଦୋଷେ ଭୋଗେ ମାତା ଗଳଦଣ୍ଡ
ବାର ଓଳିତଳ ହେଲାଣି ତା ପିଣ୍ଡ
ହଟିଲାଣି ବଳ ଫିଟୁ ନାହିଁ ତୁଣ୍ଡ
ଏଠି ମଣିଷ କି କେହି ନାହିଁରେ ?
ପଛଘୁଞ୍ଚା ଦେଇ ମୁହଁ ଲୁଗ୍ୱ ନାହିଁ
(ଦେଶ) ଜନନୀ ଆଡ଼କୁ ଚାହିଁରେ ।

( ୩ )

ଲେଟେ ଜା ପଣତ ଚିଲିକାକୁ ଅନା
ଝଙ୍କା ଆମ୍ରମୂଳେ ପଡ଼ିଛି ଗହଣା,
ତପତ କୁଣ୍ଡରେ ତପତ ଝରଣା
ଝରଣା କି ତୁମ୍ଭ ମାତାର କାନ୍ଦଣା
ଦେଖିଚ କି କେବେ କୁହରେ ?
ଦେଖିତା ନୟନେ ରହୁଚ ମଉନେ
(ଏତେ) ନିଷ୍ଠୁର କାହିଁକି ହୁଅରେ ।

( ୪ )

ଚିର ଶ୍ୟାମ ତୁମ୍ଭ ଜନନୀର ଅଙ୍କ
ଭରା ଶସ୍ୟକ୍ଷେତ୍ର ବନଗିରିଟଙ୍କ,
କେତେ ଯୋଗୀ ଋଷୀ ହୋଇ ଯୋଗରଙ୍କ
ବଜାଇଲେ ଏଠି ମୁକତିର ଶଙ୍ଖ
ସେ ଦିନର କଥା ଚେତରେ
ଜଳିଆ ଚନ୍ଦ୍ରମା ଦେଖି ତା ସୁଷମା
ପ୍ରେମେ ହେଲ ବିମୋହିତରେ ।

( ୫ )

ପତିତପାବନ-ବାନା ତ ମାତାର
ଭୀମ ଭୋଇର କଲା ଧରମ ପ୍ରଚାର,
ପଞ୍ଚ ସଖା ଦେଲେ ବେଦାନ୍ତର ସାର,
ସାମନ୍ତ ଗୁନ୍ଥିଲେ ଗ୍ରହତାରା-ହାର
ଦୂର ଆମେରିକା ସହରେ,
ଜ୍ୟୋତିଷେ ଘୋଷନ୍ତି ସିଦ୍ଧାନ୍ତ-ଦର୍ପଣ
ଶିକ୍ଷିତ କି ସେହି ନୁହଁରେ ।

( ୬ )

ଯୁଗେ ଯୁଗେ ତୁମ୍ଭ ସାହିତ୍ୟ ଉନ୍ନତ
ଜଗନ୍ନାଥ ଦାସ କଲେ ଭାଗବତ,
ଉପେନ୍ଦ୍ର ଅଭିମନ୍ୟୁ ଛାନ୍ଦ ଗୀତ,
ଦୀନ ବଳରାମ କବିସୂର୍ଯ୍ୟ ଗ୍ରନ୍ଥ,
ମଲ୍ଲୀ ଫୁଲ ହେଲ ବନରେ
ଦାର୍ଢ୍ୟତା ଭକତି ପୁରାତନ ପୋଥି
ଚିହ୍ନା ଏ ଜାତିର ମନରେ ।

( ୭ )

ପଢ଼ ସ୍ୱାଧୀନତା ହିନ୍ଦୁ ଇତିହାସ
ସହଜେ ଏ ଜାତି ନୋହିଥିଲା ଦାସ
ଭାରତ ବିଦିତ ଖାରବେଳ ଯଶ
କାଞ୍ଚି ଯୁଦ୍ଧ ଘୋଷେ ତୁମରି ସାହାସ,
ଓଡ଼ିଆର ବାହୁ ବଳରେ
ବଙ୍ଗ ଥାଟପର ଥାଣ୍ଟ ହେଉଥିଲ
ଦିଲ୍ଲୀପତିଙ୍କର ଡରରେ ।

( ୮ )

ଗଡ଼ଜାତ ମାତା ମୁଦ୍ରା-ଗନ୍ତାଘର
ଗ୍ରବି ନାହିଁ, ଧନ ରହିଛି ଅପାର,
କୋଟିକା କମଳା ଗୁଣ୍ଡି ଲକ୍ଷଭାର
ଭରିଦିଏ ଦେଶ ବିଦେଶୀ ବଜାର
କିଆଁ ପର ଘରେ ପଶରେ,
ହାତୀ ଧରି ଭାବେ ସ୍ୱର୍ଣ୍ଣ କଳସ
ସ୍ୱାଧୀନ ଓଡ଼ିଆ ଆସରେ ।

( ୯ )

ତାଳଚେରରେ ଭରା କୋଇଲା ଖଦାନ
ହଟକେଶ୍ୱରରେ ଫୁଟିଛି ଗନ୍ଧକ,
ମୟୂରଭଞ୍ଜ ତ ଲୁହାର ସିନ୍ଦୁକ
କୋଟିପତି ଟାଟା ହୃଦୟ ପଦକ,
( ଆମେ ) ଆକ୍ଷି ଥାଇଁ ଥାଇଁ ଅନ୍ଧରେ
ମୀନମଗର ତ ଭସି ଯାଉଛନ୍ତି
ଦେଖ ଯା ଚିଲିକା ବକ୍ଷରେ ।

( ୧୦ )

କାମ ଦେଇ ଶୁଣ କମଳା-ପିଅର
ଦିନରାତି ଡାକ ଛାଡ଼ିଛି ସାଗର—
ମୋ ପରି ତୁମରେ ହୁଅ ଏକାକାର
ସଜାଇ ରଖିଛି ଅକ୍ଷୟ ଭଣ୍ଡାର
ଘରେ ନେଇ ତାକୁ ଥୁଅରେ,
ଖାଇ ବେକେ ଭଲ ମାର ନାହିଁ ଛୁରି
ଲକ୍ଷ୍ମୀଛଡ଼ା ଆଉ ନୁହଁରେ ।

( ୧୧ )

କୁଳବୃଦ୍ଧଙ୍କର ମଥାରୁ ବାହାରି
ଜଗତ ବିଖ୍ୟାତ ଭଞ୍ଜ ଟାଣେରୀ,
କଟକର ସୁନା ରୂପା କାରୀଗରୀ
ବିଶ୍ୱ-ବଜାରରେ ହେଉଛି ବିକ୍ରିରି,
ସ୍ପୃହା ତୋ ବାଉଁଶ ବଣରେ
ସାଗ ଘରତକୁ କାଗଜ ଯୋଗାଇ
( ଦିନେ ) ତୁମ୍ଭେ ତ ଭସିବ ଧନରେ ।
ନଥିଲେ କି କେହି ତୁମ୍ଭ ଦେଶବନ୍ଧୁ
ଜୀବନ-ପ୍ରଦୀପ ଜାଳି ଗୋପବନ୍ଧୁ
ଦେଶ ଲାଗି ଦେଲ ପ୍ରତି ରକ୍ତବିନ୍ଦୁ

"ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ"
କହିଗଲ ଆଜି ଚେତରେ
ଭାରତ ମୁକତି ଗଙ୍ଗା ଅନୁସରି
ଥିଲ ସେ ତ ଲଗାତଥରେ ।

( ୧୩ )

ମହିମା ତୁମର ଭାରତ ଗୌରବ
ଜଗତେ ବିଞ୍ଚିଲ ଜାତୀୟ ସୌରଭ
ସ୍ୱାଧୀନତା ବେଦୀ ତଳେ ଦେଲ ଶୁଭ
ହାତକଡ଼ି ପିନ୍ଧି ପକାଇଲ ଦୃଢ଼—
( ଧରି ) ନବଜାତ ଶିଶୁ କୋଳରେ
ଭାରତ—ଜନନୀ ଶ୍ରୀପଦ—ପଙ୍କଜ
ବନ୍ଦାଇଲ ବନ୍ଦୀଶାଳେରେ ।

( ୧୪ )

ବର୍ଷବରଷର ବାତୁଳ କୁମର
ଖାଇ ବେତମାଡ଼ ଲଠିର ପାହାର
ପ୍ରହଲ୍ଲାଦ ପରି ରହିଲ ଅଟଳ
ଅନନ୍ତ ଶୟନ କରି ଟଳମଳ
ଦରିଆ ଦଖଲ ନେଲଲେ,
ତୁମରି ଭକତ ନୁହେଁ କିରେ ସେହି
ତୁମ୍ଭ ଲାଗି ପ୍ରାଣ ଦେଲରେ ।

( ୧୫ )

କଳିଯୁଗ ତଥା କଳିଯୁଗ ଏହି
ସଭ୍ୟତା ଯୋଗାନ୍ତି କୁଳି ଦୁଃଖ ସହି
ପେଟ ଲାଗି ତୁମ ଲକ୍ଷ ଲକ୍ଷ ଭାଇ
ସଢ଼ୁଛନ୍ତି ଦେଖ ଗଙ୍ଗାକୂଳେ ଯାଇ
( ଦିନେ ) ବାନ୍ଧିବେ ଯେବେ ସେ ମେଳରେ
ଦିନ ଦିପହରେ ଉଆଁସ ଘୋଟିବ
ଲାଗିବ କୋକୁଆ ଗୋଳରେ ।

( ୧୬ )

ଜାଳ ବସାରେ କି ବଢ଼ୁନାହିଁ ପିକ
ପିକ ଅଛ କିଏ ଦିଅ ଭାଇ ଡାକ,
କାହାର ସନ୍ତାନ ଭବି ମନେରଖ
ତୁଟି ନାହିଁ ତୁମ୍ଭ ଦୁର୍ଗ କୋଣାରକ,
( ଥରେ ) ଦେଖ ଦେଉଳକୁ ଗୁହଁରେ
ଉଡ଼ୁଛି ତୁମ୍ଭରି ଜାତୀୟ ପତାକା
(ଆସ) କୋଳେ କରି ନିଅରେ ।

***

# ଉତ୍ସର୍ଗ ପତ୍ର

ଯେଉଁମାନେ ଅସ୍ପୃଶ୍ୟତାକୁ କେବଳ ହିନ୍ଦୁ ଜାତିର ନୁହେଁ, ଭରତର ନୁହେଁ, ସମଗ୍ର ଜଗତର ଗୋଟିଏ କଳଙ୍କ ବୋଲି ବିଶ୍ୱାସ କରି ତାକୁ ମନୁଷ୍ୟ ସମାଜରୁ ତଥା ସ୍ମୃତି ପଟରୁ ପୋଛି ଦେବା ଲାଗି ବଦ୍ଧପରିକର, ସେହି ଭାଇଭଉଣୀମାନଙ୍କ କର କମଳରେ ଏହି ପୁସ୍ତିକା ଖଣ୍ଡି ସଭକ୍ତିରେ ଅର୍ପଣ କଲି ।

ହଜାରିବାଗ
୩ । ୭ । ୩୩

ବୀରକିଶୋର ଦାସ

# ଭୂମିକା

ବହି ଖଣ୍ଡିକ ଛାପିବାକୁ ପଠାଇବା ପୂର୍ବରୁ ପାଠକପାଠିକାମାନଙ୍କ ନିକଟରେ ମୋର କେତେ ଜଣ ସହବନ୍ଦୀଙ୍କର ନାମ ଉଲ୍ଲେଖ କରିବାକୁ ମୋର କର୍ତ୍ତବ୍ୟବୋଧ ମୋତେ ବାଧ୍ୟ କରୁଛି । ସେମାନଙ୍କର ନାମ ଛପାଇ ରଖି ପାଣ୍ଡୁଲିପି ଖଣ୍ଡ ଛାପାଖାନାକୁ ପଠାଇଲେ, କେବଳ ଯେ ଶିଷ୍ଟାଚାରର ବିରୁଦ୍ଧ ହେବ, ତାହା ନୁହେଁ ବିବେକ ବୁଦ୍ଧିର ବେକ ମଧ୍ୟ ମୋଡ଼ି ଦିଆଯିବ ।

ଯେଉଁ ସମୟରେ ବିଶ୍ୱବନ୍ଧୁ ମହାମାନବ ମହାତ୍ମା ଗାନ୍ଧି ହରିଜନଙ୍କ ସେବା ଲାଗି ୟାର୍ବାଦା କାରାମନ୍ଦିରରେ ଅନଶନ ବ୍ରତ ଗ୍ରହଣ କଲେ, ସେତିକିବେଳେ ଜେଲ୍ ଭିତରେ ରୋଗଶଯ୍ୟାଗତ ଥାଇ ମୋର ଏହି 'ସବୁଜ ସାଥିଟି'ର କଥା ମନେ ପଡ଼ିଲା; ମାତ୍ର କାଗଜ କଲମରେ ସାଥିଟିର ମୂର୍ତ୍ତିଚିତ୍ର ନିଖୁଣ ଭାବରେ ଅଙ୍କନ କରିବା ଧୈର୍ଯ୍ୟ ଓ ଶକ୍ତି ମୋର ନ ଥିଲା । ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗନିବାସୀ ଶ୍ରୀଯୁକ୍ତ ଗୌରିମୋହନ ଦାସ ମହୋଦୟ ପ୍ରତିଦିନ ପରିଶ୍ରମ କରି ବହିଖଣ୍ଡିର ଅଧିକାଂଶ ଭାଗ ଶୁଣି ଲେଖି ରଖିଥିଲେ , ତା'ପରେ ସମ୍ବଲପୁରର ପଣ୍ଡିତ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ମିଶ୍ର ପାଣ୍ଡୁଲିପି ଖଣ୍ଡି ପୂର୍ଣ୍ଣଭାବରେ ସାଫକରି ଓ କେତେକ ସ୍ଥାନରେ ସଂଶୋଧନ କରିଦେଇ ଛାପାଖାନା ଉପଯୋଗୀ କରି ଦେଇଥିଲେ ।

ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ ଓ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ମହୋଦୟମାନେ ମଧ୍ୟ ଜେଲ୍ ଭିତରେ ବିଷୟଟି ପାଠ କରି ଉତ୍ସାହ ପ୍ରଦାନ କରିଥିଲେ ଏବଂ କେତେକ ସ୍ଥାନରେ ପରିବର୍ତ୍ତନ ଲାଗି ମତ ଦେଇଥିଲେ । ମୋ ପରି ସହବନ୍ଦୀକୁ ସାହାଯ୍ୟ କରିବା ଏ ବନ୍ଧୁମାନଙ୍କର କର୍ତ୍ତବ୍ୟ ହେଲେ ମଧ୍ୟ ମୋର ବିଶ୍ୱାସ ଯେଉଁ ପାଠକପାଠିକାମାନଙ୍କର ମନକୁ ଏ ବିଷୟଟି ସୁଖ ଲାଗିବ, ଉପରୋକ୍ତ ବନ୍ଦିମାନେ ସେମାନଙ୍କର ନିଶ୍ଚୟ ଧନ୍ୟବାଦାର୍ହ ହେବେ । କାରଣ ଏମାନଙ୍କର ସାହାଯ୍ୟ ନ ପାଇଥିଲେ ମୋର ମନର ଭାବଟି ବନର ମାଳତି ପରି ମନେ ମନେ ଫୁଟି ମଉଳି ପଡ଼ିଥାନ୍ତା ।

ତା ୪ । ୩ । ୩୪
ହଜାରିବାଗ

ବୀରକିଶୋର ଦାସ

ନବରଙ୍ଗ ଦେଖି ହସମାଡ଼େ ମୋତେ
ଦିଏ ଢେଙ୍କେମା' ବହୁତ ଗାଳି,
ଏ କାନର କଥା ସେ କାନେ କାଢ଼ି ମୁଁ
ଯାଏ ଖଞ୍ଜରେ ସେଠଁ ଗଳି ।୩୨।

ଥରେ ଥରେ ମୋର ଜଳି ଯାଏ ହାଡ଼
କରେ ବୁଢ଼ୀ ସଙ୍ଗେ ଘରି ଯୁକ୍ତି
ମୋ କଥା ଜବାବ ନ ଦେଇ ପାରି ସେ
କହେ ଧରି ପରଚଣ୍ଡ ମୂର୍ତ୍ତି ।୩୩।

ଆସୁ ସେ ନାହାକ ପଗ୍ଭରିବି ତାକୁ
ଆଜି କି ପାଠ ପଢ଼ାଏ ତୋତେ
ଦିନୁ ଦିନ ତୋର ମୁହଁ ଉପୁରୁକୁ
ବଢ଼ି ଜବାବ ଦେଉଛୁ ମୋତେ ।୩୪।

ମାନଥାନ ସିନା ଶିଖନ୍ତୁ କେଉଁଠି
ଆମୁ କୁହାରେ ବୋଲରେ ଚଳି,
ପାଠ ପଢ଼ିଲୁ ଓଇଟି ଗୋଡ଼ରେ
ଆମ କଥାକୁ ଦେଉଛୁ ଦଳି ।୩୫।

କରଣ ଘରର ପୁଅଟିଏ ତୁହି
ଛୁଇଁ ବାଉରୀ କଣ୍ଡଗ ହାଡ଼ି,
ଜାଣିଶୁଣି କରି ଘରେ ପଶୁଅଛୁ
ଲକ୍ଷ୍ମୀ ପଳେଇବେ ସିନା ଛାଡ଼ି ।୩୬।

ଆମ ଦାନା କନା ମିଳିବ ଆଉକି
ଆମ କୁଳଧର୍ମ ହେବ ନଷ୍ଟ
ବାହ୍ମଣ ଦେବତା ନ ପାଇବେ ପାଣି
ବଡ଼ ବଡ଼ୁଆ ପାଇବେ କଷ୍ଟ ।୩୭।

ଯେତେ ଖାଇଲେ ତୋ ଦିହେ ନ ଲଗିବ
ଶୁଖି ହୋଇଯିବୁ ପତ ପତ,
ଦିହରେ ମୁଣ୍ଡରେ ଭୋଗିଲେ ଜାଣିବୁ
ବୁଢ଼ୀ ଯାହା କହୁଥିଲା ସତ ।୩୮।

କାନିରେ ଆଜି ମୁଁ ଗଣ୍ଠି ପକାଉଛି
ନିତ୍ୟେ ଦେଖିବି ତୋହର ନାଟ,
ଛାଟ ନ ବସିଲେ ମୁହଁ ବଢ଼ାରେ କି
କେବେ ପିଲାଏ ପଢ଼ନ୍ତି ପାଠ ।'' ।୩୯।

ଛାଟ କଥା ଶୁଣି ଛାନିଆଁ ହୁଏ ମୁଁ
ଆସେ ବେଗା ବେଗି ସେଠୁ ଗ୍ଭଲି,
ବୋଉଙ୍କ ପାଖରେ ଗୁହାରି କରଇ
କାନ୍ଦେ ଆଖିରୁ ଲୋତକ ଢ଼ାଳି ।୪୦।

ହୃଦୟ ତାଙ୍କର ପତଇ ତରଳି
ଆଗେ ଦେଖି ମୋ କାନ୍ଦଣା ଦୁଃଖ,
ସାଙ୍ଗେ ସାଙ୍ଗେ ମତେ ଟାଣି ନେଇ ବୋଉ
କୋଳେ ବସାଇ ଚୁମନ୍ତି ମୁଖ ।୪୧।

କହନ୍ତି ବିକଳେ "ଜୀଇ ଥାଉ ଥାଉ
କେବେ ନ ଦେଖେ ତୋହର ଦୁଃଖ;
ଷଠି ଦୃଷ୍ଟୀ ତୋତେ ବଞ୍ଚାଇ ରଖନ୍ତୁ
ହୁଅ ପଛେ ତୁ ମୂଲିଆ ମୂର୍ଖ ।୪୨।

ଏକୋଇର ବଳା ବିଶିକେସନ ତୁ
ଭିଖ ମାଗି ଆଣି ଦେବୁ ମୋତେ,
କେତେ ଦିଅଁ ଦେବୀ ଡାକି ଡାକି କରି
ବାପ ପାଇଛି ପରା ମୁଁ ତୋତେ ।୪୩।

ସାତ ରଜା ଧନ ଖାଇ ସତେ ତୁହି
କେବେ ଦାଣ୍ଡରେ ମଣିଷ ହେବୁ
ସାତ ପୁରୁଷଙ୍କ ନାଆଁ ତୁ ରଖିବୁ
ଦୁଃଖ ହରି ଯିବ ମୋର ସବୁ ।" ।୪୪।

ଏତିକିରେ ମୁହିଁ ଭୁଲି ଯାଏ ସବୁ
ଛାତି ହୋଇ ଯାଏ କୁଣ୍ଢେ ମୋଟ,
ସୁସାର ବଚନ ବାହାର କରଇ
ଥାଏ କଳିଜାରେ ବୁଢ଼ୀ ଗ୍ଭେଟ । ।୪୫।

ଛୁଆଁ ଅଛୁଆଁର କଥା ପଗ୍ଭରି ମୁଁ
ପୁଣି ମୂଳରୁ ପକାଏ କଥା,
ବନ୍ଧୁକୁ ଛୁଇଁଲେ ଛୁଆଁ ହୁଏ ମୁହିଁ
ବେଶି ଏଇଟି ମରମ ବଥା । ।୪୬।

"ମାଟିକି ତ ମାଟି ରହିଅଛି ଲାଗି
ବୋଉ ! ନଈରେ ତ ଏକା ପାଣି,
ଘୁରିଆଡ଼େ ଏକା ପବନ ବହୁଛି
ମାଆ ରଖୁ ନାହିଁ ତାକୁ ଟାଣି ? ।୪୭।

ବାଉରି ସାଇରେ ପଡ଼େ ଯେଉଁ ଖରା
ସେ ତ ପଡ଼େ ଆସି ଆମ ଘରେ,
ଘୁଲଣ୍ଟୁ ତାଙ୍କର କାଉ ଉଡ଼ି ଆସି
ବସେ ଆମରି ପାଚେରୀ ପରେ ।୪୮।

ସିଏତ ଯେମିତି ଆମେ ତ ସେମିତି
ଦେଖ ଏକା ପରି ହାତ ଗୋଡ଼,
ତାଙ୍କଠେଇଁ ଛୁଆଁ ଲାଗିଛି କେଉଁଠି
ମାଆ ମିଛରେ ଦେଖାଏ ତୋଡ଼ ! ।୪୯।

ମାଧିଆ କେମିତି ବିଲୁଁ କାଟି ଆଣି
ଦିଏ ବେଙ୍ଗଳା ପକାଇ ଧାନ,
ସଜନା ଗଛରୁ ପାରି ଦିଏ ଛୁଇଁ
ଆଣେ ଦୋକାନରୁ ଗୁଆ ପାନ । ।୫୦।

ପାଟ ଗାଈଠଉଁ ଦୁହିଁ ଦିଏ ଦୁଧ
ଆଣେ ଗଉଡ଼ ଘରୁ ସେ ଘିଅ,
ଜାଳ ଚିରିଦିଏ ଭାତ ରନ୍ଧା ହୁଏ
ଏହା ସହୁଛି କେମିତି ଦିହ । ।୫୧।

ଜେଜେଙ୍କ ପାଇଁ କି ଧୂଆଁ ପତ୍ର ଆଣେ
ହାତେ ବଳି ଦିଏ ତାକୁ ପିକା,
ବରିଆକୁ ଛୁଇଁ ଆଣି ଦିଏ ନିଆଁ
ଘୁଳେ ଖୋସିଛି ବାଉଁଶ ଶିକା । ।୫୨।

ଠାକୁର ମଣ୍ଡପ ତୋଳା ହେବା ଲାଗି
ଇଟା ଚୂନ ଆଣୁଥିଲା ବୋହି,
ଏତେ ଟିକ ତାକୁ ଛୁଆଁ ଉଛ ଯେବେ
କିଆଁ ରଖୁ ନାହିଁ ସବୁ ଧୋଇ ? ।୫୩।

ଗୋରୁଙ୍କ ଦିହରେ ରଖିଛନ୍ତି ପରା
କୁହ ତେତିଶି କୋଟିଏ ଦିଅଁ,
ମାଧିଆ ବାଉରି ହାତରେ କେମିତି
ନିତି ଖାଇବାକୁ ତାକୁ ଦିଅ ?" ।୫୪।

କଥା ଶୁଣି ମୋର ବୁଦ୍ଧି ହୁଏ ବଣା
ଆଉ ବୋଉକୁ ନ ଫୁଟେ ପଦ,
କହନ୍ତି "ସେମାନେ ଛୋଟ ଜାତି ପରା,
ଘରେ ଖାଆନ୍ତି ଅଖାଦ୍ୟ ମଦ ।" ।୫୫।

ସଙ୍ଗେ ସଙ୍ଗେ ତାକୁ ପଘରି ବସେଁ ମୁଁ
"ଯିଏ ନ ଖାଏ ସେ ସବୁ କଥା,
ତାକୁ ଛୁଇଁଲେ କି ଛୁଆଁ ହୁଏଁ ମୁହିଁ
ଏବେ ସତ କଥା ମୋତେ ବତା । ।୫୬।

ବାପ ଧନ ମୋର ପାଞ୍ଚ ଆଙ୍ଗୁଳିକି
ତେଣୁ ପ୍ରଭୁ କଲେ ବଡ଼ ସାନ,
ପୋଥି ଶାସତର ପଢ଼ିଲେ ଜାଣିବୁ
ତୋର ବଡ଼ ହେଲେ ହେବ ଜ୍ଞାନ ।" ।୫୭।

"ଜାଣି ଆଙ୍ଗୁଠି ତ ମିଳି ମିଶି ବୋଉ
ଥାଏ ସବୁ ଆଙ୍ଗୁଠିଙ୍କ ସଙ୍ଗେ,
ଆମ ପରି ତାଙ୍କ ଛୁଆଁ ଅଛୁଆଁର
କେବେ ଦେଖିଛୁ କି କଳି ଲାଗେ ? ।୫୮।

ଦାଦା ଘରେ ଯୋଉ କୁକୁର ବେଇଛି
କେତେ ଦେଖିଛ ଖାଏ ସେ ମାଡ଼,
ଛୁଆଙ୍କ ପାଖରେ ଦିଏ ବୋଲି ଆଣି
ଗୋରୁ ମଲା ମଣିଷଙ୍କ ହାଡ଼ । ।୫୯।

ଲଇ ତାକୁ ଛୁଇଁ ଘରେ ପଶେ ଯାଇ
ଟିକ ଛୁଆଙ୍କ ଦିହରୁ ବାଛେ,
ଦିନେ ହେଲେ ସିଏ ଗାଳି ଖାଇଛି କି
କେବେ ଛୁଆଁ ବୋଲି ଲୁଗା କାଚେ ?" ।୬୦।

ଏତେ ଚେଣ୍ଟାଟାଏ କିଏ ଚେଣ୍ଟେଇବ
ବସି ତୋହ ସାଙ୍ଗେ ହରଘଡ଼ି,
ଏଇଥି ଲାଗି ତ ମାଆ ଚିଡୁଥିଲା
ବୁଦ୍ଧି ହେଲା ନାହିଁ ଏତେ ପଢ଼ି । ୬୧ ।

ଦୁନିଆଁରେ ଯେତେ ପତ୍ରୁବନ୍ତି ଘଟ
ଲୁଗା ଛାଡ଼ନ୍ତି ସଭିଏଁ ଆସି,
ଗୋବିନ୍ଦ ମୁକୁନ୍ଦ ତାଙ୍କ ସାହି ସାଧୁ
ଆମ ପୁରୋହିତ ପୂଅ କାଶି । ୬୨ ।
ଚଗଲ ପଣିଆ ଛାଡ଼ିଦେ ଏଣିକି
ବାପା ଆଣି ଦେବେ ନୂଆଯୋତା'
ଅରିଲେ ମେଲଣ ଯିବୁ ଦେଖିବାକୁ
ପିନ୍ଧି ନୂଆ ଜାମା ଜରି ଓଟା । ୬୩ ।
ମବର ଯାତରୁ ମାମୁଁକୁ କହିଛି
ଗୋଟେ ଆଣିବେ ନେଉଳ ଛୁଆ,
ମଙ୍ଗଳ ପୁରିଆ କେଳାକୁ କହିଛି
ଦେବେ ପାଆଟ ଭଲିଆ ଶୁଆ । ୬୪ ।
ଆଜି ଠାଁ ଆଉ ଗୋଳା ନାହିଁ ଛୁଆଁ
କର ବାପ ମୋର ଭଲ ବୁଦ୍ଧି,
ମୋ ମୁହେଁ ପଗ ତୁ ନିଆଁ ଟିକେ ଦବୁ
ମଲେ ମୋ ପିଣ୍ଡ ହୋଇବ ଶୁଦ୍ଧି । ୬୫ ।
ବୋଉଙ୍କର ଶେଷ ଦାରୁଣ କଥାରେ
ଉଠେ ମୋ ଛାତି ଭିତରେ ଜଳି,
ମନରେ ମୋହର ଉପୁଜଇ କୋହ
ଲୁହ ଆଖିରୁ ପଡ଼ଇ ଢଳି । ୬୬ ।
ତାଙ୍କ ବୋଧ ଶୋଧ କଥା ଶୁଣି ମୁହିଁ
କହେ ଆଉ ଗୋଳାଇବି ନାହିଁ,
ଘୁହାଳି ଯାଉ ତ ଭୁଲି ଯାଏଁ ସବୁ
ସାର୍ଗି ବଂଧୁଆ ମୁହଁକୁ ଚାହିଁ । ୬୭ ।
କଣ୍ଟେଇ ଗଡ଼ାରେ ଚଢ଼େଇ ଧରରେ
ଆମ ବନ୍ଧୁ ଖେଳ ଭରି ଘରୀ,
ଏଇ କାମ ଯେବେ ମିଳିଯାଏ ତାକୁ
ଜମା ଭୋକ ଶୋଷ ଲାଗେ ନାହିଁ । ୬୮ ।
ମନେ ଅଛି ଥରେ ବଇଶାଖ ମାସ
ଝଦୁଭଦିଆ ଖରାରେ ଯାଇ
ଆମେ ପଂଝାଟାଏ ବନ୍ଧୁଆ ବୁଦ୍ଧିରେ
ହେଲୁ ବଣି ଛୁଆ ଲଗି ବାଇ । ୬୯ ।
ମଶାଣି ମୁଣ୍ଡରେ ବୁଢ଼ା ବରଗଛ
ତାର କୋରଡ଼େ ବଣିଙ୍କ ବସା,
ଦି' ଖେପାରେ ବନ୍ଧୁ ଚଢ଼ିଗଲା ତହିଁ
ଦେଖି ବୁଡ଼ିଗଲା ମୋର ହଂସା । ୭୦ ।
ଚେଏଁ ଚେଏଁ କରି ବୋବଉ ଥାଆନ୍ତି
କାଢ଼ି ଆଣିଲା ତିନିଟା ଛୁଆ,
ବୁଢା ବଣି ଯାକ ଡକା ପାରୁଥାନ୍ତି
ବନ୍ଧୁ ମୁଣ୍ଡକୁ ଖୁମ୍ପନ୍ତି କୁଆ । ୭୧ ।
ତଳେ ପିଲାଯାକ କୁରୁଳୁ ଥାଆନ୍ତି
ଦେହ ଖୁସିରେ ଶୀତେଇ ଉଠେ
ବନ୍ଧୁ କାଳେ ମୋର ପଡ଼ି ଯିବ ତଳେ
ଏଇ ଭାବନା ମନରେ ଫୁଟେ । ୭୨ ।
କାଲ ତୁଣ୍ଡା କଥା କହି ପକାଏ ମୁଁ
ଖାଏଁ ସଭିଙ୍କ ପାଖରୁ ଗାଳି,
ଅଣ୍ଟିରେ ବସାଇ ଗଛ କୁଣିଆଙ୍କୁ
ହସି ମୋ ବନ୍ଧୁ ଆସଇ ଚାଲି । ୭୩ ।
ଛୁଆଙ୍କୁ ଚାହିଁ ମୁଁ ଚାହିଁ ବନ୍ଧୁଆକୁ
ପ୍ରାଣ ଭିତରେ ଉଠଇ ଭରି,
ଇଚ୍ଛା ହୁଏ ହୃଦ ପିଞ୍ଜରା ଫିଟାଇ
ତାଙ୍କୁ ରଖନ୍ତି ନିବୁଜ କରି । ୭୪ ।
ବଣି ଛୁଆ ନେଇ ବନ୍ଧୁଆ ସାଙ୍ଗରେ
ସାରା ଜୀବନ ଦିଅନ୍ତି କାଟି,
ଏକାଠି ଖେଳନ୍ତୁ ଏକାଠି ବୁଲନ୍ତୁ
କାଳ ନ ଥାନ୍ତା କି ବୁଢ଼ୀ ମା'ଟି ! । ୭୫ ।
କେତେ ଯେ ବିଘ୍ନର ପଡ଼ଇ ଆମର
ଏଇ ଚଢ଼େଇ ଛୁଆଁଙ୍କ ଲାଗି
ପିଞ୍ଜରା ଯେବେ କି ମିଳନ୍ତା କୋଉଁଠୁଁ
ରଖି ନଗିରେ ଦିଅନ୍ତୁ ଟାଙ୍ଗି । ୭୬ ।

ତାଙ୍କ ମାଆ ବାପା ଦିଅନ୍ତେ ଆଧାର
ଆମେ ଖୁଆନ୍ତୁ ଡିଡ଼ାଇ ଖୁଦ,
ବଡ଼ ହୋଇ ଗଲେ ଭେଦା କରି ସବୁ
ନିତି ଲଗୁଆ କରନ୍ତୁ ଦୁଧ । ୭୭ ।
ଖଗଟିଆ ବଣି ବଞ୍ଚିବେ ମୁକର
ଯାନ୍ତି ଅଷାଢ଼ୁଆ ଛୁଆ ମରି,
ଦେଖ ଗୁହୁ ଡ଼ିମ ଭର୍ଗିଛି ସବୁରି
କେହି କହଇ ମାଇନା କରି । ୭୮ ।
ହଳଦୀ ପାଣିରେ ଗାଧୋଇବା ଯାକୁ
ପୋକ ଡେଣାକୁ କାଟିବେ ନାହିଁ ।
କଇଞ୍ଚିରେ ପର କତୁରି ରଖିଲେ
ଉଡ଼ି ଯାଇ ନ ପାରିବେ କାହିଁ । ୭୯ ।
ଅଫିମ ଟିକିଏ ଖୋଇ ଶିଖେଇଲେ
ଆପେ ଆସିବେ ସେ ବୁଲି ଚରି,
ଭର୍ଗି କେହି କହେ ବିଷଟି ଅଫିମ
ଥରେ ଖାଇଲେ ଯିବେ ଏ ମରି । ୮୦ ।
ଆମେ ସିନା ଏଣେ ଏତେ ପାଞ୍ଚ ପାଞ୍ଚୁ
ତେଣେ ଦଇବର ପାଞ୍ଚ ଆନ,
ଦଇବ ପାଖରେ ହାରନ୍ତି ସଭିଏଁ
ବିଦ୍ୟା ବଳ ବୁଦ୍ଧି ଧନ ଜ୍ଞାନ । ୮୧ ।
ଦଇବ ସାଙ୍ଗରେ ପକାଏ ଯେ ତାଳ
କରେ ଦଇବ ତା' ସଙ୍ଗେ ପ୍ରୀତି,
ଡରିଲେ ଦଇବ ଡଗଡ ଥାଏ ଟି
ଏହା ଦଇବର ଚିର ନୀତି । ୮୨ ।

ରଜା ହେବେ ରାମ ରାତିଏ ପ୍ରଜାଏ
କେତେ ଆଶା ବାନ୍ଧୁଛନ୍ତି ମନେ,
ପାହାନ୍ତାରେ ଭଇ ଭରିଯାଙ୍କୁ ନେଇ
ଗଲେ ଶ୍ରୀରାମ ଠାକୁର ବନେ । ୮୩ ।
କେତେ କଳ କେତେ କରି କଉଶଳ
ଯୁଦ୍ଧ ଭିଆଇଲ ଜର୍ମାନୀ ରଜା,
ରାଇଜ ବାହାର ହୋଇ ବୁଲେ ଆଜି
ପାଇ ଦଇବ ହାତରୁ ସଜା । ୮୪ ।
ପ୍ରଜା ପୁଅଙ୍କର ହିତ କରୁଁ କରୁଁ
ଦେଖ, କାବୁଲ ଅମୀର ଯାଇ,
ଛାଡ଼ିଲେ ଗଦ୍ଦିଟି ଘର ବିଘରର
କେତେ ନିନ୍ଦା ଅପମାନ ପାଇ । ୮୫ ।
ଦଇବୀ ମାୟାରେ ଗତିକ ମାନିଯା
ମୁହିଁ ଖଡ଼ିକାରେ ଛନ୍ଦି ଦେଇ,
ଚାଳ ପାଛିଆରେ ଟାଙ୍ଗିଲୁଁ ଛୁଆଙ୍କୁ
ଆମ ଗୁହାଳ ସଙ୍ଗାରେ ନେଇ । ୮୬ ।
କଥା ହେଲା କାଲି ପଠାଣ ସାଇରୁ
ବନ୍ଧୁ ପିଞ୍ଜରା ଆଣିବ ଯାଇ,
ଚିଣା ଗିନାଟିଏ ଆଣିବ ମଧୁଆ
ବଣି ଛୁଆଙ୍କୁ ଖୋଇବା ପାଇଁ । ୮୭ ।
ବୋଉ ଯେବେ ମୋତେ ନ ଦବ ପଇସା
ଭାତ ଖାଇବି ନାହିଁ ମୁଁ ରୁଷି,
କାଲିକା କଥା ମୁଁ ଆଜି ଠାରୁ ପାଞ୍ଚି
ହୁଏ ମନେ ମନେ ଭାରି ଖୁସି । ୮୮ ।
ମୁହିଁ ଅନ୍ଧାରରୁ ଉଠି ବିଛଣାରୁ
ସିଧା ଗ୍ଭଲିଲି ଗୁହାଳ ଆଡ଼େ,
ସେ ଦିନର କଥା ଭାବିଲା ବେଳକୁ
ମୋତେ ଆଜି ସୁଦ୍ଧା କାନ୍ଦ ମାଡ଼େ । ୮୯ ।

ଗୁହାଳ ସଙ୍ଗାରେ ଟାଙ୍ଗିଲୁ କାହିଁକି
ଗଲୁ ଆମେ ସିନା ବୁଦ୍ଧି ହୁଡ଼ି
ଦୁବ ଘାସୁଁ ମାଇ କାକର ସମାନ
ସବୁ ସୁଖ ଆଶା ଗଲା ଉଡ଼ି ! ୯୦ ।
କଳିଙ୍କା ଭିତର ହୋଇଗଲା କାଟ
ଥରି ଉଠିଲା ମୋହର ଛାତି,
ଦେଖିଲି ଖାଲେଇ ଗଡ଼ି ଅଛି ତଳେ
ତହିଁ ଲାଗିଛି ଡ଼ମଣା କାଟି । ୯୧ ।

ଫାଟିଗଲା ମୋର ବୁଢ଼ା ବୋଉତ କି
ଭଡ଼ା ଜାହାଜ ପଡ଼ିଲା ଖର୍ଚ୍ଚ,
ଛାଡ଼ିଗଲେ ମୋତେ ଛୁଆ ଯାକ କାହିଁ
ଏଡ଼େ ଭଲ ଯାହାଙ୍କ ଲାଗି ! ।୯୨।

ଅଣିଆ ଅପିଆ ଯାଇ ଗୁହାଳିକି
ସାଙ୍ଗ ପିଲଙ୍କୁ କହି ଏ କଥା,
ଲୁହ ଗଡ଼େଇଲି ବନ୍ଧୁଆ ସାଥିରେ
ମନ ଘୁଞ୍ଚିଗଲେ ସବୁ କଥା । ୯୩।

କାନ ନାକ ମୋଡ଼ି ହୋଇଲୁ ସେ ଦିନୁଁ
ଆଉ ନ ଧରିବୁ କାହା ଛୁଆ,
ଯେବେ କି ଧରିବୁଁ ଦି' ଦିନ ଆଗରୁ
କିଣି ରଖିବୁଁ ପଞ୍ଜୁରୀ ନୂଆ । ।୯୪।

ଏହି ପରି ମୋର ବନ୍ଧୁଆର ଭାବ
ବଢ଼ି ଦିନୁଁ ଦିନ ହେଲା ଘନ,
ଓଳିଏ ଯେବେ ସେ ନ ଆସେ ଗୁହାଳି
ମୋର ପାଠରେ ନ ଲାଗେ ମନ । ।୯୫।

ପୁନେଇ ପରବ ହେଲେ ଆମ ଘରେ
ହୁଏ ଦୁଇ ରକମର ପିଠା,
ଖୁଦ ବିରିକଣି ଅଗୁଡ଼ିଆ ପୁଣି
ପଡ଼ି କେଉ ନଡ଼ିଆର ସିଠା । ।୯୬।

ଦେଏ ଦେଉଣୀଙ୍କ ମଣ୍ଡା ଗଡ଼ା ହୁଏ
ଟଙ୍କା ଆଠଣି ପରି ତା ସାନ,
ସେବା ସେବାଇତ ଦୁଃଖୀ ଗରିବଙ୍କୁ
ଏହା ମିଳେ ବଡ଼ଘର ଦାନ । ।୯୭।

କର୍ପୂର ମରିଚ- ଦିଆ ପୁର ପିଠା
ଘର ପିରିୟା ପୀରତି ଲାଗି,
ଦିଏ ମୁଁ ସେଥିରୁ ବନ୍ଧୁ ପାଇଁ ମୋର
ନେଇ ବୋଉଙ୍କ ପାଖରୁ ମାଗି ।।୯୮।

ଲେମ୍ବୁ କିସିମିସି ଚିନିର କୁଣ୍ଡେଇ
ବାପା କଟକୁ ଆଣନ୍ତି ଯାହା,
ଗୁହାଳିକି ନେଇ ଲୁଚେଇ ପିଲଙ୍କୁ
ଦିଏ ବନ୍ଧୁଆକୁ ଏକା ତାହା । ।୯୯।

ଥରେ ଥରେ ବଂଧୁ ବଂଧୁଆର କଥା
ମୋର ମନକୁ ବହୁତ କାଟେ,
କୋଳି କି ପିଜୁଳି ଯାହା ଆଣେ ସିଏ
ସବୁ ପିଲଙ୍କୁ ସମାନ ବାଣ୍ଟେ ! ।୧୦୦।

ସବୁବେଳେ ସାଥୀ ପିଲଙ୍କୁ ଶିଖାଏ
'ଛାଡ଼ ଗୋରି ଲୁଗ୍ର ଛପା କଥା,'
ସତ କହିବାକୁ ନ ଡରଇ କେବେ
ତାର କଟି ଯାଉ ପଛେ ମଥା !! ।୧୦୧।

ଦିନେ ପିଲଯାକ ଧଇଲୁଁ ତାହାକୁ
"କହ ସତ କରି ଆମ ଆଗେ,
ଖଜୁରୀ ମଦ ଯେ ପିଅ ତମେମାନେ
ତାହା ପାଟିକି କେମିତି ଲାଗେ ?" । ୧୦୨ ।

"ବିଦ୍ୟାଗଣ ମତେ ଛୁଉଁଛି ଦିଆଖି
କେବେ ପିଇ ନାହିଁ ମଦ ଦିନେ,
କାହାରି ସାଙ୍ଗରେ ଖାଏ ନାହିଁ କେବେ
ଖାଏ ସବୁବେଳେ ବସି ଭିନେ । ୧୦୩ ।

ମଦ ଘଡ଼ା ଟାଏ ଦେଖେ ମୁଁ ଯେଉଁଠି
ଦିଏ ଟେକା ମାରି ତାକୁ ଭାଙ୍ଗି,
ସାଧୁଆ ଖାଇଲ- ଠଉଁ ଗାଳି ଖାଏ
ବାପା ମାରେ ମୋତେ ସେଥି ଲାଗି ।୧୦୪।

ପାଠ ପଢ଼ିବାକୁ ଗୁହାଳି ଆସୁଛି
ନିତି ଖେଳେ ବୁଲେ ତମ ସାଙ୍ଗେ,
ମଦ ପିଇଲେ ତ ଚିଡ଼େଇବ ମୋତେ
କହି ବୁଲିବ ସବୁରି ଆଗେ ! ।୧୦୫।

ଆଖିରେ ଦେଖିଛି ପିଇକରି ମଦ
ଲୋକେ ହୁଅନ୍ତି ବାତୁଳ ପରି,
ଅସନା ଥଣ୍ଟି ମାରେ ନେଇ କାଉ
ମଦ ଆସୁଥାଏ ଯେବେ ଝରି ।" । ୧୦୬ ।

କାଲ ଅଣ କଥା ଶୁଣି ଆମେ ସବୁ
କରି ଥୁ ଥୁ ପକଉ ଛାପ,
କୁହଇ ବଂଧୁଆ ଆପଣେ କହନ୍ତି
'ନିଶା ଖାଇବାଟା ଭରି ପାପ ।' ୧୦୭।
ହେଲ ଧରକର ଗଣେଶ ବଉଠି
ଓଷା ଖୁଦୁରୁଣୀ ଏକାଦିନେ,
ଫୁଲପାଇଁ ଯେଉଁ ଓଟଗ ଓଟରି
ଫୁଅ ଝିଅ ବୁଲୁଥାଇଁ ଭିନେ । ।୧୦୮।
ବଂଧୁଆ ସାଥିରେ ଆମେ ଜଣ କେତେ
ମିଳିଗଲୁ କଇଁ ଫୁଲ ଆଣି,
ଆମ ଗାଆଁ ମୁଣ୍ଡେ ମଇଁଷି ପୋଖରୀ
କାତ ଅକାତ ସେଥିରେ ପାଣି ।୧୦୯।
ନାଲି ନୀଳ କଇଁ ଅସୁମାରୀ ତହିଁ
ଆଖି ଦେଲେ ରହିବ ଲାଖି,
କହନ୍ତି ସେଥିରୁ ଯାହା ଥିଲ ମାଛ
ସବୁ ଥର୍ଣ୍ଣିଆ ଖାଇଗଲ ଛାଁକି ।୧୧୦।
ଭରସି ଭିତରେ ନ ପଶିଲୁ କେହି
ତୁଠେ ହୋଇଲୁ ସଭିଏଁ ଠିଆ,
ତୁଣ୍ଡାକେ ପାଣିକି ପଶି ଯାଇ ବନ୍ଧୁ
ତୋଳି ବାନ୍ଧିଲ ଶକତ ବିଡ଼ା । ।୧୧୧।
ଫୁଲ ଯେ ଦେଖନ୍ତି ଗାଁରେ ଖୁଣନ୍ତି
"ତମ ଜୀବନକୁ ନାହିଁ ଡର"
ଥର୍ଣ୍ଣିଆ ମୁହଁରେ ପଡ଼ିଥାନ୍ତ ଯେବେ
ତେବେ ଦେଖିଥାନ୍ତ ଯମ ଘର ।" ୧୧୨।
କଥା ଶୁଣି ବନ୍ଧୁ କହେ ଆମ ଆଗେ
'ଯାହା କପାଳରେ ଥିବ ହବ,
ମରିବାର ଯୋଗ ଆସି ପହୁଞ୍ଚିଲେ
କେବେ କିଏ ତାକୁ ହାତ ଦବ ।' ୧୧୩।
ସ୍ନାହାଳି କି ଆସି ସାଙ୍ଗ ସାଥି ହୋଇ
ଦେଲୁଁ ସଜାଇ ସେ ଦିନ ଘର,
ନାଲି ନୀଳ କଇଁ ଫୁଲେ ବୁଡ଼ି ଗଲ
ଆମ ଆସ୍ଥାନ ଗଣେଶଙ୍କର । ୧୧୪ ।
ପୂଜା ଦେଖିବାକୁ ରୁଣ୍ଡ ହେଲେ ଲୋକ
ଆମେ ଗଲୁ ଆଣି ଭୋଗ ଗଗ,
ନ ଆସୁଣୁ କେହି ଗାଧୋଇ ପାଧୋଇ
ବନ୍ଧୁ ବସିଗଲଣି ଆସି ଆଗ । ୧୧୫ ।
ହେବ ବୋଲି ତାର ଗଣେଶଙ୍କ ପୂଜା
ଆଜି ଗୋଡ଼ ଲଗୁ ନାହିଁ ତଳେ,
ଥରେ ଥରେ କିଆଁ ଖୁଣି ଯାଏ ମୁହିଁ
ମନ ଭିତରେ କି ନିଆଁ ଜଳେ ? ।୧୧୬।
ପେଡ଼ି ଲୁଗା ପିନ୍ଧି ଭୋଗ ଡାଲ ହାତେ
ଆମେ ଗଢ଼ିଲୁଁ ଗୋଟିକି ଗୋଟି
ପୂଜା ହେବ ବୋଲି ନାହିଁ ଲେକ ଶୋଷ
ପାଗ ପରି ଯାଉଥାଇଁ ଲୋଟି । ୧୧୭ ।
ଗଜାନନଙ୍କର ବଦନକୁ ଗ୍ଚହିଁ
ପାଣ ଉଠଇ ସବୁରି ଭରି,
ବନ୍ଧୁ ନ ଥିଲେ କେ ଗଢ଼ିଥାନ୍ତା ଯାକୁ
ଏଡ଼େ ସୁନ୍ଦର ଡ଼ଉଲ କରି । ୧୧୮ ।
ହରି ଡାକିକାକୁ ଚିନ୍ତ ନଡ଼ିଆଟି
ପୂଜା ହେଉଥିଲ ପ୍ରତି ସନ,
ଏ ସାଲେ ବନ୍ଧୁଆ ଗଢ଼ିଛି ଗଣେଶ
ନିତି ଲଗାଇ ପରଣ ମନ । ୧୧୯ ।
ପରୋହିତ ଆସି ଧୋଇ ଗୋଡ଼ ହାତ
ପଢ଼ି ଗୁଣୁ ଗୁଣୁ ସ୍ୱରେ ପଦ;
ଆଳତି ବଢ଼ାଇ ଲଗାଇଲେ ଭୋଗ
ଆମେ ଭକତିରେ ଗଦ ଗଦ । ୧୨୦ ।
ଶଙ୍ଖ ଘଣ୍ଟ ଘଣ୍ଟି ବାଜିଲ ବେଳକୁ
ଦିହ ଲୁମ ଉଠୁଥାଏ ଟାଙ୍କି;
ଝୁଣା ଗୁଗୁଳର ବାସରେ ଆବୁଜ
ବନ୍ଧୁ ଗ୍ଚହେଁ ଓଳି ତଳେ ଝାଙ୍କି । ୧୨୧ ।

ଭିତରେ ବାହାରେ ଭରିଛନ୍ତି ଯେତ
ନାହିଁ ମୁଣ୍ଡ ଗୁଣ୍ଡିବାକୁ ଗହା,
ଆଡ଼ ଲହାଡ଼ରେ ଦିଅନ୍ତୁ ଦେଖିଲେ
କେତେ ଖୁସି ସେ ହୁଅନ୍ତା ଆହା ! ୧୨୨ ।

ଦି' ମାସ ଆଗରୁ ଯେଉଁ ପୂଜା ଲାଗି
ବନ୍ଧୁ ସମର୍ପିଥିଲା ପ୍ରାଣ ମନ,
ସେହି ପୂଜା ଆଜି ଯାଉଅଛି ବର୍ତ୍ତି
ତାକୁ ନ ମିଳଇ ଦରଶନ !! ୧୨୩ ।

ବିଧି ଆଗେ ବସି ନଡ଼ିଆ ପିଟିବା
ତାକୁ ବହୁତ ଗହନ କଥା,
ନାହିଁ ତା କ୍ଷମତା ପିଣ୍ଡା ଉପରକୁ
ଯାଇ ଟେକିବା ପାଇଁକି ମଥା । ୧୨୪ ।

କନ୍ଦୁ ଦେଲେ ପ୍ରଭୁ ( ଛୋଟ ଘରେ କିଆଁ
ଏହି ଦୁଃଖ ଦିଏ ହୃଦ ଘାରି
ଚିତ୍ର ପଟ ପରି ରହାଳି ଓଳିରେ
ଅଛି ଛିଡ଼ା ସେ ମନକୁ ମାରି । ୧୨୫ ।

ପିଲାଯାକ ଆମେ ଧାଡ଼ି ହୋଇ ଭଲା
ଉଠେ ଖୁସିରେ ଉଲ୍ଲସି ଚିତ୍ତ,
ପୁଷ୍ପାଞ୍ଜଳି ଲାଗି ପଢ଼ାଇଲେ ମନ୍ତ୍ର
ଫୁଲ ହାତେ ଦେଇ ପୁରୋହିତ । ୧୨୬ ।

ଗଣେଶ ଅଷ୍ଟକ ବୋଲନ୍ତି ପିଲାଏ
ପଢ଼େ ଉଚ୍ଛୁଳି ରହାଳି ଘର;
ସାଙ୍ଗ ପିଲାଙ୍କର ପାଟି ଶୁଣି ବନ୍ଧୁ
ଦିହ ଗଲା ହୋଇ ଥର ଥର । ୧୨୭ ।

'ନମେ ବିଘନେଶ ବନ୍ଧୁଆ ଗଣେଶ'
ମୋର ବାହାରି ପଡ଼ିଲା ତୁଣ୍ଡ,
ଗଣେଷ ଶୁଣି ତା' ହେଲେ ପର ଖୁସି
ଫୁଲ ଖସାଇଲେ ତାଙ୍କ ମୁଣ୍ଡୁ । ୧୨୮ ।

ବନ୍ଧୁଆ ସକାଶେ ବିଦ୍ୟାଦାତାଙ୍କୁ ମୁଁ
ଆଜି ମାଗି ବିଦ୍ୟାଦାନ ବର,
ପିଲାଙ୍କ ସାଥିରେ ଗୁହାରି ହୋଇଲି
ଯୋଡ଼ି ଭକତିରେ ଦୁଇ କର । ୧୨୯ ।

ସରିଗଲା ପୂଜା ଲାଗି ଗଲା ଡେଇଁ
ଆମ୍ଭେ ଗଲିଲୁଁ ଚନ୍ଦନ ନାଇ,
ରୋଗୀ ହସ ପରି ହସ ହସେ ବନ୍ଧୁ
ଦୂରେ ରହଇ ଆମକୁ ଚାହିଁ । ୧୩୦ ।

ବନ୍ଧୁଆକୁ ଚାହିଁ ବୁଦ୍ଧି ସ୍ଥୂରେ ନାହିଁ
ହୁଏ ମୋ ମନ ଗୋଳେଇ ଘାଣ୍ଟି,
ଭବେ ପକ୍ଷପାତ କଲେ କିଆଁ ପ୍ରଭୁ
ଏତେ ଜାତିରେ ଆମକୁ ବାଣ୍ଟି !!! ୧୩୧ ।

ପ୍ରଭୁଙ୍କ ସାଙ୍ଗରେ ଦେ । ହୋ'ଗଲା ଯେବେ
ତାଙ୍କୁ କହନ୍ତି ମୁକୁର ଆଗ,
ଆଉ ବର ମୋର ଲୋଡ଼ା ନାହିଁ କିଛି
ଛୁଆଁ ଅଛୁଆଁ କଥାକୁ ଭଗ । ୧୩୨ ।

ସହି ନ ପାରିଲି ରହି ନ ପାରିଲି
ଲୁଚି ଏଣିକି ତେଣିକି ଚାହିଁ,
ବନ୍ଧୁଆ ପାଟିରେ ଦେଲି ବେଲ ପତ୍ର
ମୁଣ୍ଡେ ଚନ୍ଦନ ଦେଲି ମୁଁ ନାଇ । ୧୩୩ ।

ବନ୍ଧୁଆର ମନେ ଆସିଲା କି ଭାବ
ଲୁହ ଆଖିରୁ ପଡ଼ିଲା ଗଡ଼ି,
ଦେଲି ଆର ଦିନ ମନେଅଛି ତାକୁ
ପୂଜା ଖଡ଼ିରୁ ଖଣ୍ଡିଏ ଖଡ଼ି । ୧୩୪ ।

ଏତେ ଭାବ ଥାଇ ବନ୍ଧୁଆ ସାଙ୍ଗରେ
ମୋର ପଡ଼ିଲା ଅଭାବ ବେଳ,
ଅ'ଲୁଅ ଅନ୍ଧାର ସୃଜନା ଯାହାର
ସିନା ତାହାରି ଏସବୁ ଖେଳ । ୧୩୫ ।

ଆଜି କାଲି ଆମ ଗୋବରୀ ନଈରେ
ଛିଣ୍ଡି ରହଇ ଆଣ୍ଠୁଏ ପାଣି,
ଆଗେ ଥିଲା ଗଣ୍ଡ ଗାଧୋଉ ଗାଧୋଉ
ତୁଠୁଁ କିମ୍ଭୀର ନିଅନ୍ତି ଟାଣି । ୧୩୬ ।

ପାଣି ଲାଗି ବଢ଼େ ଲାଗେ ଟଣାଟଣି
ଜ୍ୟେଷ୍ଠ ବଇଶାଖ ଦୁଇମାସ,
ପହର ବେଳକୁ ତାତି ଉଠେ ବାଲି
ମାରେ ନିଆଁ ପରି ଖରା ଧାସ ।୧୩୭।

ବଡ଼ି ଅନ୍ଧାରରୁ ବୋହୂ ଝିଅମାନେ
ଆସି ଗାଧୋଇ ଯାଆନ୍ତି ଚାଲି,
ଖରା ଲାଗି ଗଲେ ମିଣିପ ପିଲଙ୍କ
ପଡ଼େ ଗାଧୁଆ ପାଧୁଆ ପାଳି ।୧୩୮।

ଘୁଷୁରି ମଇଁଷି ପଲ ଥରେ ଥରେ
ପାଣି ଦିଅନ୍ତି ଖଗରେ ଗାଣ୍ଡି,
ଗୋଳି ହେଲେ ବେଣି ବଢ଼ନ୍ତି ଭସି
ମାଛ ପାକୁ ପାକୁ କରି ପାଟି ।୧୩୯।

ଚୁଠ ବୋଲି ଆମ ଗାଁରେ ଗୋଟିଏ
ଆଉ ଅଚୁଠ ଅସନା ବଣ,
ଗାଧୋଇବା ଲାଗି ପହଞ୍ଚିଥିଲୁ ଆସି
ଆମେ ପିଲା ପାଞ୍ଚ ସାତ ଜଣ ।୧୪୦।

ଯୋଗକୁ ସେଦିନ ଘାଟଟି ନିଶୂନ
ଆଉ ନ ରହିଲା କିଛି ଡର,
ଏଣୁ କା ସମାନ ପହଁରିଲୁ ଆମେ
ମଝି ପାଣିର ଉପର ତଳ ! ।୧୪୧।

କିଏ ଦିଏ କେହି ପହଁରି ଶିଖଇ
କେହି ମାରୁଥାଏ ଶିର୍ଣ୍ଣ ବୁଡ଼ା,
ପହୁଞ୍ଚିଲେ ଆସି ଏତିକି ବେଳକୁ
ଆମ ଗାଆଁ ଶତପଥୀ ବୁଢ଼ା । ।୧୪୨।

ଏକେ ଗୋଳିପାଣି ଦୁଜେ ମାଧିଆର
ପୁଅ ବାଉରି ଟୋକାକୁ ଦେଖି,
ଅପାଠ ଭଷାରେ ବରଷିଲେ ଗାଳି
ତାହା ହେବ ନାହିଁ ଏଠି ଲେଖି ।୧୪୩।

ବିରି ମାଢ଼ ଦେଖି କୋଇଥ ଚେପଟା,
ବନ୍ଧୁ ଗାଳି ଶୁଣି ଆମେମାନେ,
ତଳ ମୁହଁ କରି ଅତି ସାଧୁ ପରି
ଘରେ ବାହୁଡ଼ିଲୁ ମାନେ ମାନେ ।୧୪୪।

କାନ୍ଦ କାନ୍ଦ ହୋଇ କହିଲା ବିକଳେ
ବାଟେ ବନ୍ଧୁ, ମୋ ଆଡ଼କୁ ଚାହିଁ,
"ମୋତେ ଆଣି କିଆଁ ଶୁଣାଇଲ ଗାଳି
ମୁଁ ତ ମୂଳରୁ କରୁଛି ନାହିଁ । ୧୪୫ ।

ଏ ଘାଟରେ କେବେ ନ ଗାଧୋଉଁ ଆମେ
ଛୋଟ ଜାତିଙ୍କି ନୁହେଁ ଏ ଛାଡ଼,
ବାପା ଆଗେ ଯାଇଁ କହିବେ ଗୋସେଇଁ
ମୋତେ ଖେଇବେ ଭଣ୍ଡୁଣି ମାଡ଼ ।୧୪୬।

ବନ୍ଧୁଆର ଦୁଃଖ ଭାବି ମନେ ମନେ
ଘରେ ଗଲି କୋହ ମୋହ ହୋଇ,
ଶୁଖିଲା ଲୁଗା ମୁଁ ପାଇଟି ପିନ୍ଧୁଛି
ଓଦା ଅଲଗୁଣି ପରେ ଥୋଇ ।୧୪୭।

ବୋଉଙ୍କର ଆଖି ପଡ଼ିଲା ମୋ ଉପରେ
ମୋତେ ଚମକି ପଡ଼ିଲେ ଚାହିଁ,
କହିଲେ, 'ବେଳ ତୋ ଇଙ୍ଗଳା ହୋଇଛି
କିରେ ! ସୁତା ପକେଇଲୁ କାହିଁ । ।୧୪୮।

ବଇଶାଖ ମାସ ବାର ଗୁରୁବାର
ପୁଣି ଅକ୍ଷୟ ତୃତୀୟା ଆଜି,
ପୁଅ ଦିହବ୍ରତ ହଜି ଅଛି ପୁନା
ମୁଣ୍ଡେ ଆକାଶ ପଡ଼ିଲା ଭାଜି । ୧୪୯ ।

ହଜିଲା ହାରକୁ ଖୋଜିବା ପାଇଁକି
ଆମ ଘରରେ ଲାଗିଲା ଲେଡ଼ା,
ସତ୍ୟ ନାରାୟଣ ପୂଜା ମନାସିଲେ
ବୋଉ ମାନିଲେ ଝିନାଥ ମେଢ଼ା ।୧୫୦।

ସାଉଜାକ କଥା ଖେଡ଼ି ଗଲା ବେଗେ
ଆମ ଗାଁ ଆଯାକ ଗଲା ବାଜି,
ବୁଢ଼ାମା' ଆମର କମାଏ ଥଧଣା
ଘରେ ମୋହ ପରେ ଗଳା ଘାଞ୍ଜି ।୧୫୧।

(କହେ) ହେଲଣି କଅଣ ଆହୁରି ତ ହେବ
ଏଠି ଦେଖିବ ମୋ ବଞ୍ଚିଥିବ,
ବାର ଅନାଚାର ଛୁଆଁ ଗୋଳଭଛ
କ'ଣ ସହଜେ ଏ ପାଇ ଯିବ ? ।୧୫୨।
ବୁଢ଼ୀ କଥା ଶୁଣି ହୁଏ ମୁହିଁ ଗୁଣି
ମନେ ଧୋକା ଆସେ ମୋର ସ୍ପଷ୍ଟ,
ବନ୍ଧୁଆକୁ ଛୁଇଁ ଘରେ ପଶିବାକୁ
ସତେ ପଡ଼ିଲା କି ଏହି କଷ୍ଟ । ୧୫୩ ।
ମୋତେ କିଏ କେତେ କରୁଥାଏ ଜେର
ତଳେ ବସିଥାଏ ହୋଇ ତୁନି,
ଆବା କାବା ହୋଇ ଯାଉଥାଏ ମୁହିଁ
ତାଙ୍କ କଥା ଭଷା ସବୁ ଶୁଣି । ୧୫୪ ।
ଏଇ ସମୟରେ ଶତପଥୀ କ'ଣ
ଗଲେ ଜେଜେଙ୍କ ଆଗରେ କହି,
ମହା ରାଗେ ଜେଜେ ଫୁଟିଲେ ଯେମିତି
ଫୁଟେ ଉଛାଉଛି ହାଣ୍ଡି ଖଇ । ୧୫୫ ।
ଦି ଘଡ଼ି ଭିତରେ ଆମରି ଦାଣ୍ଡରେ
ଗୋଟେ ଲଗିଗଲା ଦରବାର,
ସେ ଦିନର କଥା ଯିବ କି ମନରୁ
ଅଛି ଛୁଦେ ହୋଇ ତିନି ଘାର । ୧୫୬ ।
ଗହୁଁ ଗହୁଁ ଗାଆଁ ଗରି ପଣ ଲୋକ
ଗଲେ ମାଛ ପରି ଆସି ଜୁଟି,
ବଂଧୁଆର ଗୁଣ ଦୁଆର୍ଜିଲେ ସବୁ
ବସି ବାଦକୁ ଗୋଟିକି ଗୋଟି । ୧୫୭ ।
କେହି କେହି କୁହନ୍ତି ମଗର ଟୋକା ସେ
ଚାଲେ ଉପରକୁ ମୁହଁ କରି,
ମଣଷ ଏଣିକି ମାନୁ କି ଆଉ
ପାଠ ପଢ଼ଲକୁ ବହି ଧରି ? । ୧୫୮ ।
କହିଲେ ତମେ ତ ଯିବ ନାହିଁ ସତ
ନିଜ ଆଖିରେ ଦେଖିଛି ଥରେ,
ସରିପଟ ହୋଇ ଡିହିଙ୍କ ସାଙ୍ଗରେ
ବସିଥିଲା ସେ ଚହାଙ୍କି ଘରେ । ୧୫୯ ।
ବେଙ୍ଗାର ହେଲି ମୁଁ ଚେର ପରି ତହୁ
ଓଳି ତଳକୁ ପଡ଼ିଲା ଖସି,
ମୋତେ ଦେଖେ ଯହିଁ ଆପସର ମାରି
ଚାହେଁ ମୁରୁକି ମୁରୁକି ହସି । ୧୬୦ ।
ଆଉ କେହି କହେ "ଘୋର କଳିକାଳ
ଛୋଟ ଜାତି ହେଲେ ରଘ
ଆମ ପିଲା ଦିନେ ସିଧା ହୋଇ କେବେ
ମାଡ଼ି ଯାଆନ୍ତି ଆମର ଆଗ ? । ୧୬୧ ।
ମନେ ଅଛି ଏଇ ଦିନା ହାଡ଼ି ଆସି
ରଖି କଲିକଲି ଗାଳ ମୁଛା,
ଦାଣ୍ଡରେ ଚଲିଲା ବୋଲି କିଣା ହାତୁଁ
ବିଧା ମାଡ଼ ଖାଇ ହେଲା ମୁର୍ଚ୍ଛା । ୧୬୨ ।
(ଆରେ) ଇସ୍କୁଲ ଯେଦିନୁ ହେଲା ସରକାରୀ
ସବୁ ସାଇଲା ଏ ଅବଧାନ,
ପଇସା ଲୋଭରେ ନ ରହିଲା ତାର
କିଛି ବାଉରି କଣ୍ଡରା ଜ୍ଞାନ । ୧୬୩ ।
ମାଧିଆ ଯାବଣ କରୁଥିଲେ ତାକୁ
ତା'ର ହୁଅନ୍ତା କି ଏଡ଼େ ରଙ୍ଗ,
ମାଧିଆ ତାହାର ବଢ଼େଇଛି ମୁହଁ
ମାଆ ମରିଗଲା ଦିନ ଠଉଁ । ୧୬୪ ।
(ଆରେ) ଏକା ଦିନେ ସିଏ ଠିକଣା ହୁଅନ୍ତା
ଏତେ ବହପ ରହନ୍ତା କାହିଁ,
ବାହା କାମୁଡ଼ି କି ଯାଉଅଛୁ ରହି
ଖାଲି ଦାସଙ୍କ ମୁହଁକୁ ଚାହିଁ । ୧୬୫ ।
କହିଲେ କହିବେ କହୁଛି ଏମିତି
ତାର ମୁହଁ ବଢ଼ାଇଲା କିଏ,
ଯାଙ୍କରି ହିମତ ପାଇବା ଦିନରୁ
କା'କୁ ଖାତିର ନ କରେ ସିଏ । ୧୬୬ ।

ଦାସଙ୍କ ଘରର ଅଇଁଠା ଖାଇ ସେ
ଆଜି ଏଡ଼େଟିକୁ ହେଲ ଏଡ଼େ,
ଦିନ ଦି' ପହରେ କାଟି ନେଲ ବେକୁଁ
ଟୋକା ମଗଜ ଦେଖୁଛ କେଡ଼େ । ୧୭୭ ।

ସବୁ ଖାଇ ହାତ ପାଣିରେ ଧୋଇବା
ପାଣି ଖାଇଲେ ଧୋଇବା କାହିଁ,
ନିମକ ହାରମ ଏଡ଼େ ସେ ବାଉରି
ତାର ଟିକିଏ ବିଗ୍ରର ନାହିଁ ? । ୧୬୮ ।

ତିନିଦିନ ହେଲ ମାଧିଆକୁ ଜର
ଦିହେ ଆଡ଼ି ନାହିଁ ଜମା ତାର ।
ଘୋଡ଼ି ହୋଇ ବିଲି ପଡ଼ି ମାଠ ଖଣ୍ଡେ
ଗଡ଼େ, ଛୁଉଁ ନାହିଁ ଖୀର ଖାର । ୧୬୯ ।

କିଣେଇ ମଲ୍ଲିକ ତନା ଘନା ଡାକେ
ଡରେ ଥରି ହରି ବସେ ଉଠି,
ଦାସଙ୍କ ହୁକୁମ "ନ ଆସିବ ଯେବେ
ଧରି ଘୋଷାରି ଆଣିବୁ ଚୁଟି" । ୧୭୦ ।

କିଣା ଠାରୁ ଶୁଣି ବୁରୁଡାନ୍ତ ସବୁ
ଖସି ପଡ଼ିଲ ବଜର ମୁଣ୍ଡେ,
ବାଂଧୁଆର ନାଆଁ ଧରି ଡାକିବାକୁ
କଥା ନ ସ୍ଫୁରେ ମାଧିଆ ତୁଣ୍ଡେ । ୧୭୧ ।

ହାଣ ଛେଳି ପରି ଆସି ଥରି ଥରି
ମାଧ ସାଷ୍ଟାଙ୍ଗ ଓଳଗି ହୋଇ
ଭେଓ ଭେଓ କାନ୍ଦି, 'ଦୋହି ସାଆନ୍ତଙ୍କ'
କହି, ଦାଣ୍ଡରେ ପଡ଼ିଲ ଶୋଇ । ୧୭୨ ।

ମାମଲତକାର ଭଲ ଲୋକମାନ
ବସି ମୁନୀ ପରିଥାନ୍ତି ତୁନି,
କେବେ ବା ଆମର ବୟାନ ଗାଇଲେ
କାଳି ଧୂଆଁ ପଡର ଧୁନି । ୧୭୩ ।

"ମାଧ ଭେଇ ଆମେ କରିଛୁ କି ଦୋଷ
କିଆଁ ଅହଡା ଆମଠି ତୋର,
କହିଦେ ଆମକୁ ମୁଣ୍ଡିଲ ଗାଆଁକୁ
ଆମେ ଉର୍ଗି ଯାଉ ଘର । ୧୭୪ ।

ତମ ବାପ ପୁଅ ଦାଉରେ ଏଣିକି
ଆଉ ରହି ନ ପାରିବେ କେହି,
ଜଗିବ କିଏ ସେ ତମକୁ କିମତେ
ଯିବ ଆଖିକୁ କଜଳ ଦେଇ । ୧୭୫ ।

ଆମ ଗାଆଁରେ ଯେତେ ହୁଏ ଚୋରି
ସବୁ ତୁମରି ଫିକର ଆଜି,
ଧଗ ପଡ଼ିଗଲ ଉପରକୁ ସାଧୁ
ତମେ ଭିତରେ ଅସଲ ପାଜି । ୧୭୬ ।

ଚୋର ଘରେ ନାହିଁ ନିତି ଆଲୁଅରେ
ସଫା ଦେଖାଇ ଦେଲେ ତା' ପଭୁ,
ଯାହା ପଡ଼ୁ ପଛେ ତମ ଦି' ଜଣକୁ
ଆଜି ଥାନାକୁ ପଠେଇ ଦବୁଁ । ୧୭୭ ।

ମୋ ଶିରୀ ଅଙ୍ଗରେ ମାରିଛ ନାହୁଡ଼
ମୋତେ ସଂସାରରୁ ଦେଇଛ ସାରି,
ଆଉ କେତେ ମାତ୍ର ଥିଲ ଛୁଆଟାକୁ
ତମେ ପକାଇବାପାଇଁ ମାରି ? । ୧୭୮ ।

ଖାଇ ପିଇ ମୋର ଶୁଳ ହେଲ ମୋତେ
ପିଲ ବେକୁ କାଟି ନେଇ ହାର,
ଦିନ ଦି' ପହରେ ସାହସ ତମର
ତମେ କଅଣ ନ କରି ପାର ! । ୧୭୯ ।

ରଘୁଆ କକେଇ ନ ଥିଲେ ତ ଦେଖି
ଆମେ ଜାଣନ୍ତୁ କୋଉଠୁ ଥାଇ
ଏହା ତା ଉପରେ ସ୍ଫୁବେ କରି ଖାଲି
ଘରେ ହେଉଥାନ୍ତୁ ହାଉ ହାଉ !" । ୧୮୦ ।

"ହଜୁର ମଣିମା କିଛି ଜାଣି ନାହିଁ
ମୋତେ ତିନି ଦିନ ହେଲ ଜର,
ଏକା କର ମାଡ଼ି ପଡ଼ିଛି ମୁଁ ତଳେ
କାହିଁ ଯାଇ ନାହିଁ ଛାଡ଼ି ଘର । ୧୮୧ ।

ଯାହା ଦଣ୍ଡ ମୋତେ ଦବାର ଦିଅନ୍ତୁ
ମୋର ଆପଣ ତ ଦାନାଦାର,
ବଂଧୁଆ ଯେବେକି କରିଥିବ ଏହା
ନିଶ୍ଚେ ଜୀବନ ନେବି ମୁଁ ତା'ର ।୧୮୨।
ଫାଶି ଲଗେଇବି ନଇ ପୋଖରୀକି
ଆଜି ପଡ଼ିବି ମୂକର ଡେ଼ଇଁ,
ଆପଣଙ୍କ ମାଲ ଘେରି କରି ଦାଣ୍ଡେ
କାହିଁ ମୁହଁ ଦେଖେଇବି ନେଇ ।" ।୧୮୩।
କହେ ଚଉକିଅ "ମାଧିଆ ଚୋର ସେ
ଫଟା ବାହାପିଆ କଥା ଛାଡ଼,
ଭଲ ଗତି ଯେବେ ଅଛି ତୋ' କପାଳେ
ମାଲ କେଉଠି ରଖିଛୁ କାଢ଼ ।" ।୧୮୪।
'ମୂର୍ଚ୍ଛନା ମୋହର ଫାଟି ଯିବ କିଣ୍ଣୁ
ମୋର ଦୁଇ ଚକ୍ଷୁ ଯିବ ଫୁଟି,
ଧରମ ଦାଣ୍ଡରୁ ଘର ଯାଏ ମୁହିଁ
ଆଉ ଯାଇ ନ ପାରିବି ଉଠି ।୧୮୫।
କର୍ପୂରା ବାଛୁରୀ ତମ୍ବା କି ତୁଳସୀ
ଯାହା ଦବ ଦିଅ ମୋତେ ଆଣି,
ପୁଅ ମୁଣ୍ଡ ଛୁଇଁ କହିବି ଏ କଥା
ମୁଁ ତ ନାହିଁ ମୁସୁଲୁମ ଜାଣି ।୧୮୬।
ତମରି ପାଖରୁ ଶୁଣିଛି ପହିଲେ
ସିଧା ଆସିଲି ତମରି ସାଙ୍ଗେ,
ଛାଡ଼ି ଦିଅ ମୋତେ ଖୋଜି ବଂଧୁଆକୁ
ଯାଇ ପଗ୍ରରିବି ମୁଁ ଆଗେ ।୧୮୭।
ନେଇଥିବ ଯଦି ଦେହି ସାଆନ୍ତଙ୍କ
ଆଣି ଚରଣରେ ଦେବି ଥୋଇ,
ସେ ଭଳି ପୁଅକୁ ହାଣି ଦେଇ ଥ.ଙ୍କି
ଯିବି ଗାଆଁରୁ ବିଦାୟ ହୋଇ ।୧୮୮।
ଭଲ ଲୋକ ଯାକ ଖିଙ୍କାରି କହିଲେ
"ଆରେ ଚଇଖିଆ ପଣ ଛାଡ଼,
ପୁଅକୁ ଯାଇଚୁ ଶିଖେଇବୁ ବୁଦ୍ଧି
ପୁଣ ବଦମାସଙ୍କର ହାଡ଼ ।୧୮୯।
ପାଠ ପଢ଼ାଇଚୁ ମୁହଁ ବଢ଼େଇଛୁ
ତାକୁ ଶିଖେଇଛୁ ଚୋରୀ ବିଦ୍ୟା,
ତୋହରି ଯୋଗରୁ ଦୁନିଆଁ ମୋହର
ଆମ ଗାଆଁ ଯାକ ହେବ ନିନ୍ଦା ।୧୯୦।
ବାଉରି କଣ୍ଡରା ପାଠ ପଢ଼ିବେତ
ଯିବେ ବ୍ରାହ୍ମଣ କରଣ କାହିଁ ? ।
ଛେଳି ଗୋଡ଼େ ଯେବେ ଧାନ ମଳା ଯାନ୍ତା ।
ଲୋକେ ବଳଦ ଖୋଜନ୍ତେ ନାହିଁ ।୧୯୧।
ଇନ୍ଦ୍ର ଚନ୍ଦ୍ର ଆଉ ମାନୁନୁ କି ତୁହି
ପୁଅ ହବ ଜଜ କିଇଟର,
ଏହି ପରି ଘେରି ବାଟ ମରି କରି
ଘରେ ବାନ୍ଧିଛୁ ଗୋଟିଏ ହଜ ।" ।୧୯୨।
ଫୁଙ୍କିଲେ କୁହୁକି କୁହୁକି ଯେମିତି
ନିଆଁ ହାଉ କିନା ଉଠେ ଜଳି,
ଭଲ ଲୋକଙ୍କର କଥା ଶୁଣି ଶୁଣି
ଆମ କେଳେ ହେଲେ ସେହି ଭଳି ।୧୯୩।
କହିଲେ "କିଣା ତୁ ବାଇଆ କି କାହିଁ
ଆମେ ସିଧା ଆଗୁଠିରେ ଘିଅ,
ବାନ୍ଧି ନେଇ ଯାକୁ ଥାନାରେ ପୁରେଇ
ଆଗେ ଆଜ୍ଞା ଗୋଟାକତେ ଦିଅ ।୧୯୪।
ନକ ମାରିଚର ପାଣି ତେଣ୍ଟେଇଲେ
ବଳେ ବାହାରି ପଡ଼ିବ ମାଲ,
ଯୋଡ଼ା ମାଡ଼ ଖାଇ ଉଠିବ ଥାନାରେ
ବାପ ପୁଅଙ୍କ ପିଠିରୁ ଛାଲ ।୧୯୫।
କଥା ଦେଖି ଶୁଣି ସତ କି ସପନ
ଭବୁଥାଏଁ ମୁଁ ପିଣ୍ଡାରେ ବସି,
ଭଲ କଥା ହେଉ କି ବୁଦ୍ଧ କରିବି
ଷୁତା ପଡ଼ିଲା କେଉଠି ଖସି ।୧୯୬।

ସତେ କଣ ବନ୍ଧୁ ବେକରୁ ମୋହର
ହାର ନେଇଗଲା ଖଣ୍ଡେ କାଢ଼ି,
ଯିହେ ମୋର ହାତ ଦିଏ ନାହିଁ କେବେ
ହୁଏ ଛଡ଼ା ଖଣ୍ଡେ ଦୂର ଛାଡ଼ି ।୧୯୭।

ପାଖେଇଲେ ମୁହିଁ ଘୁଞ୍ଚ ଯାଏ ସିଏ
ଥାଏ ସବୁବେଳେ ସାବଧାନ,
ଖାଧୁଆ ତୁଣ୍ଡକୁ ଡାକିଲି କାହିଁକି
ତାର ମୋହ ଲାଗି ଯିବ ପ୍ରାଣ ।୧୯୮।

ଏତିକି ବେଳକୁ ପଞ୍ଝାଟାଏ ପିଲା
ହୋଇ ନଈ ଆଡ଼ୁ ଧାଇଁ ସଇଁ,
ପହଞ୍ଚିଲେ ଆମ ଦାଣ୍ଡେ ଆସି ତାଙ୍କ
ମନ କୁଆଁର ପୁନେଇଁ କଇଁ ।୧୯୯।

ନନ୍ଦିଆ ଆମର ଗାଈ ରଖା ଟୋକା
ମୋର ବେକର ହାରଟି ଆଣି,
ଜେଜେଙ୍କ ପାଖରେ ଥୋଇ ଦେଲା ହସି
ଦିହ ଯାକ ତା' କାଦୁଅ ପାଣି ।୨୦୦।

ଏ ସଭିଏଁ ଏକାଠି ଉଠିଲେ ପଚାରି
'କିରେ କୋଉଠୁ ପାଇଲୁ କହ'
କହିଲା ନନ୍ଦିଆ "କୁହନା ସାଆନ୍ତେ
ଆମେ ଘାଣ୍ଟି ଘାଣ୍ଟି ନଇ ଦିହ ।୨୦୧।

ପାଞ୍ଚୁଟା ମଣିଷ ଅଛ ତ ଗଲୁଣି
ଆଜି ଛାଇ ଲେଉଟିବ ଆସି,
ବଂଧୁଆ ଦେଖିଲା ପଡ଼ିଥିଲା ଯାଇ
ତୁଠ ଆର ପାଖ ଯେଉଁ ନାସି ।" ୨୦୨।

ସାବାସି ପାଇବ ବୋଲି ବଂଧୁ ତାଙ୍କ
ପିଛା ଧରି ଆସିଥିଲା ଧାଇଁ,
ଏଣେ ଏତେ କଥା ଲାଗିଲଣି ବୋଲି
ତାକୁ ଜମାରୁ ମାଲୁମ ନାହିଁ ।୨୦୩।

ଇହୁ ନଟ ହୋଇ ଅଡ଼ୁଅଛ ବାପ
ପାଖେ ବସିଅଛି ଚଢ଼କିଆ,
ନିଶାପ ଲାଗିବା କଥା ଦେଖି ଶୁଣି
ରହେ ଆବା କାବା ହୋଇ ଠିଆ ।୨୦୪।

ତହୁଁ ଶତପଥୀ କହିଲେ ଗର୍ଜିରେ
"ଏବେ ଜାଣିଲୁ ତ ବାପା ଦାସ,
ବଡ଼ ଚଲାକିଆ ବାଉରି ଟୋକାଏ
ବଳି ବାପଠଉଁ ବଦମାସ ! ।୨୦୫।

ଆଜ୍ଞେ ଧରାଧରି ଲାଗିଲା ଯହିଁଠୁ
ସାଢ଼େ ନଈ ଆଢ଼େ ଖସି–ଯାଇ,
ଥୋଇ ଦେଇକରି ଆସିଛି ଏଠିକି
ଦାଣ୍ଡେ ଭଲେଇ ହବାର ପାଇଁ ।୨୦୬।

ଆମ ମୁଣ୍ଡ ବାଳ ପାଟିଲଣି ଆସି
ଏଡ଼େ ଓଲୁ ହେଲୁ ଆମେ ସବୁ
କାଲି ସକାଳର ପିଲା ବକଟେ ତୁ
ଆମ ଆଖିରେ ଚୁଲ୍କି ଦବୁ ।" ।୨୦୭।

ଏହି କଥା ଭଷା ଲାଗିଛି ସଭାରେ
ମାଧ ତନୁ ଭୂତ ପରି ଉଠି,
ଗୋବ୍ର ପରି ଟାଙ୍କେ ଦେଇଗଲା ଛେଚି
ଗଚ୍ଛେ ଧରି ବଂଧୁଆର ଚୁଟି ।୨୦୮।

ମାଡ଼ ଦେଖି ଆଖି ହୋଇଗଲା ବୁଜି
ମୋର ଦିହଯାକ ଗଲା ଥରି,
ଛଡ଼େଇ ନ ଥିଲେ କିଶେଇ ମଳିକ
ବନ୍ଧୁ ଯାଇଥାନ୍ତା ନିଶ୍ଚେ ମରି ।୨୦୯।

ଏତେ ଲୋକ ସେଠି ଥାଆନ୍ତି ସଭାରେ
ସବୁ ଦେଖୁଥାନ୍ତି ବସି ହାଟ,
ବଂଧୁଆ ହୁରିରେ ଲୋକ ହେଲେ ଜମା
ଆସି ଆମ ଦାଣ୍ଡ ଚଉପଟ ।୨୧୦।

ଏଇ ଗୋଲମାଲେ ଅତି ଭଲଲୋକ
ବେଗେ ଜଣ କେତେ ଉଠି ଆସି,
ଜେଜେଙ୍କ ପାଖରେ ଫୁସୁ ଫୁସୁ ହେଲେ
କା'ଣ ଭାରି ଆନନ୍ଦରେ ଭାଷି ।୨୧୧।

ନିକଟି ନିକଟି ଦେଖି ହାର ଟିକି
ହାତ ବଟୁଆରେ ତାକୁ ଥୋଇ,
କେଜେ ବା ଆମର ଶୁଣାଇଲେ ଗୟ
ବଡ଼ ଦୟାଳୁ ପୁରୁଷ ହୋଇ । ।୨୧୨।
"ମାଧ ଭେଇ ଆଜି ଛାଡ଼ିଦେଲୁଁ ତୋତେ
ତମ ଦୋଷ ଦିଆଗଲା ମାଫ,
ଶୁଣି ସାଥେ ସାଥେ କହଇ ମାଧିଆ
"ମୋର ହଜୁର ତ ମାଆ ବାପ । । ୨୧୩ ।
ଆଉ ଗୋଳ ଘାଣ୍ଟ କର ନାହିଁ ବେଶୀ
ପରେ ଘର ନିଆଁ ଲିଭିଯାଉ;
ଥାନାବାଲାଙ୍କର କାନକୁ ଗଲେ ତ
କଥା ସମ୍ଭାଳି ନୋହିବ ଆଉ ।୨୧୪।
କିଣେଇ ମଳିକ ବଡ଼ ଭଲଲୋକ
ଖାଲି ମୁହଁ ଉପରୋଧ କରି,
ରଖିଛି ତମକୁ ଆଉ ଯେ ହୁଅନ୍ତା
କେବୁ ଯାଆନ୍ତାଣି ନେଇ ଧରି ।୨୧୫।
ଗରିବ ଲୋକ ତୁ ପାଇବୁ କଅଣ
ତାକୁ ଦି ଟଙ୍କା ମିଆଦି ଦେବୁ,
ଭାଗବତ ଗାଦିକି ଦବୁ ପାଞ୍ଚ ଟଙ୍କା
ମାତ୍ର ଆମେ ତିନିଟଙ୍କା ଦେବୁ ।।୨୧୬।
ପାଞ୍ଚ ଜଣ ଯାହା କଲେ ଫଇସଲା
ସବୁ ମୁହଁକୁ ଚାହିଁଲେ ତୋର,
ହେଲା ଗାଏ ମୋଟ ଦଶଟଙ୍କା କାଲି
ଆଣି ଜିମାଦେଇ ଯିବୁ ମୋର ।" ।୨୧୭।
ତୋଟା ଗୁଧା ହୋଇ ମାଧିଆର କିଣୁ
କହେ ଛିଡ଼ା ହୋଇ ଯୋଡ଼ି ହାତ,
କାଲି ସେ କଉଠୁଁ ପାଇବ ସାଅନ୍ତେ
ଦିଅ ମହଲତ ଦିନ ସାତ ।" ।୨୧୮।
କିଣା କଥାରେ କି ହଁଅ ଭରି ସବୁ
ଗଲେ ଫେରି ଯେ ଯାହାର ଘରେ
କାର ପକ୍ଷ ମାସ କାର ବଂଶ ନାଶ
ଭାଗ୍ୟ ଯାହାକୁ ଯେପରି କରେ ।୨୧୯।
ମାଧବ ଭେଇର ଗଲା ଛାଡ଼ି ଜର
ପୁଣି ଛାଡ଼ିଗଲା ଯମ ଡର,
ଯମଠଉଁ ବଳି ପଡ଼ିଲା ଯନ୍ତ୍ରଣା
ଏଯେ ବିଗ୍ରହ ଖାଉଁଦଙ୍କର । ।୨୨୦।
ଦଶ ଟଙ୍କା କାହୁଁ ପାଇବ ଦବ ସେ
ମଥା ଭାବନାରେ ଗଲା ଘୂରି,
ନରକର ଡର ନ ଥିଲେ ମାଧିଆ
ବେକେ ମାରି ହୋଇଥାନ୍ତା ଛୁରୀ ।।୨୨୧।
କି ଘରକରଣା ଅଛି ବା ତାହାର
କିସ ବିକି ଭାଙ୍ଗି ଦେବ ବନ୍ଧା,
ଡହ ଗ୍ରରି ବିଶ୍ୱା ଖାଉନ୍ଦ ନାଆଁରେ
ଏତ ଅମିନଙ୍କ କୂଟ ଫନ୍ଦା । ।୨୨୨।
ନଡ଼ିଆ ପଣସ ଅଛି ଦୁଇ ଗଛ
ଖାଲି ମାଙ୍କଡ଼ ଜଗି ସେ ଥାଏ,
ହେତୁ ହେଲା ଦିନୁ କେବେ ମାଧ ଭେଇ
ଫଳ ସେଥିରୁ ଗୋଟାଏ ପାଏ ? ।୨୨୩।
ମାଙ୍କଡ଼ଙ୍କ ଦାନା ଆଣି ମାରି
ସବୁ ନିଜ ଜମିଦାର ଘରେ,
ମାଟି କୁଢ଼ିଆକୁ ଆଠଣା ଖଜଣା
ପୁଣି ଗୁହିଆ ଦଶର କରେ । ।୨୨୪।
ବେଠି ଦେଗାରୀ ତ ରହିଛି ଏପଟେ
ଆସି ମାଗଣା ବଜାଏ ଶଂଖ,
ଡେରି ହେଲେ ଟିକେ ଗାଳିରେ ଉଛୁଳେ
ଆମ ମାଧଆର ଅଙ୍କ ପଙ୍କେ । ।୨୨୫।
ସମ୍ପତ୍ତି ଭିତରେ ଆଶା କରି କେତେ
ଥିଲା ଅଣ୍ଡିରା ଗୋଟିଏ ପାଳି,
କପାଳକୁ ହେଲା ଖୁଣ୍ଟ ଖଳିଯା ସେ
ଖୁଣ୍ଟୁ ଫିଟିଲେ ନପାରେ ଗ୍ରଳି । ।୨୨୬।

ହଡ଼ାଟାଏ କିଣି ବର୍ଷ ତୁଳ ହେବ
ଆଣି ବାନ୍ଧିଛି ଆପଣା ଘରେ,
ଖୁଆଇ ପିଆଇ ଯତନ କରନ୍ତି
କରେ ହଳ କାମ ଓରେ ଓରେ । । ୨୨୭ ।

କୋଠିଆ ପଣରୁ ଗଲା ଦିନୁ ମାଧ
ବଳ ବହପ ଗଲାଣି କମି,
ଇଆ ତା' ପାଖରୁ ଗତ ବର୍ଷଗରେ
ଏବେ ଧରି ଅଛି କିଛି କମି । । ୨୨୮ ।

ଥିଲା କଂସା ଖଣ୍ଡେ ଟିକସ ସକାଶେ
କାହିଁ ବନ୍ଧା ପକେଇଛି ନେଇ,
ହେଲାଣି ବରଷେ ପଟୁ ନାହିଁ ସଜ
ତାକୁ ଆଣିବାକୁ ମୁକୁଳେଇ । ୨୨୯ ।

ଦୁଆର ମଝିରେ ଖୋଳୁଛନ୍ତି ଗାଡ଼ି
ତହିଁ ପତର ବିଛେଇ କରି
ବାପ ପୁଅ ଦିହେଁ ପିଅନ୍ତି ତୋରାଣି
ସଫା ଆଣ୍ଠେଇ ଛେଳିଙ୍କ ପରି । । ୨୩୦ ।

ଏପରି ନାନାଦି ଶୋଚ ବିଶ୍ୱାରେ ବି
ମାଧ ରଖି ଥାଏ ମନେ ଆଶା,
ବଂଧୁଆ ଗାଇବ ଶୁଣିବ ସେ ଦିନେ
'କଳା କଳେବର' 'ଗୋପୀ ଭଷା ।' । ୨୩୧ ।

ତୁଟି ଗଲା ଆଶା ଭରସା ତାହାର
କଲା ମନେ ମନେ ଏହା ଥୟ,
ପୁଅକୁ ନେଇ ସେ ଯିବ କଲିକତା
ରଖି ଗଙ୍ଗା କାଳୀ ପାଦେ ଲୟ । ୨୩୨ ।

ବଂଧୁଆର ପାଠ ହେଲା ଇତିଶିରୀ
ନେଲା ଚାହାଳିରୁ ଚିର ଛୁଟି,
ଘେର ଘେର ତାକୁ ବୋଲନ୍ତି ସଭିଏଁ
କାହିଁ ନ ପାରିଲା ବସି ଉଠି । ୨୩୩ ।

ମନେ ମନେ ଯେତେ ଖୋଜଇ ମୁଁ ତାକୁ
କାହିଁ ନ ପାଇଲି ତାର ଦେଖା,
ଗାଆଁ ଗଣ୍ଡା କାହିଁ ବୁଲି ଆସେ ନାହିଁ
ଘରେ ମହତ ଜଗି ସେ ଏକା । ୨୩୪ ।

ଆଠ ଦିନ ମତେ ଲାଗେ ଆଠ ବର୍ଷ
ହୁଏଁ ଚାହାଳିକି ଯାଇ ଫେରି,
ଆଜ୍ଞା ହାର ମୁହିଁ ହଜାଇ ବସିଲି
ବଂଧୁ ଛାତିରେ ମାଇଲି ଛୁରୀ ! । ୨୩୫ ।

ମୁଣ୍ଡିଲ ଗାଆଁରେ ଭାଗବତ ଘର
ବଡ଼ ପରସିଦ୍ଧ ସେହି ଗାଡ଼ି,
କହନ୍ତି ସଭିଏଁ ଥିଲା ପାଞ୍ଚ ମାଣ
ପାଞ୍ଚ ବାଟି ଜମି ତାଙ୍କ ଆଧି । ୨୩୬ ।

ନିତି ପ୍ରତି ତହିଁ ଅଧିଆଏ ହେଲେ
ଆଗେ ହେଉଥିଲା ପୋଥି ବୋଲି,
ଅତିଥି ଅଭିଯା ଗତଙ୍କ ପାଇଁକି
ଥାଏ ଭଣ୍ଡାର ସେଜିନା ଖୋଲି । ୨୩୭ ।

ବାଡ଼ି ଗୋବରେ ବି ଗୋବେ ନାହିଁ ଏବେ
ତାଙ୍କ ସେବକ ମାନଙ୍କ ଲାଗି,
ମାଲି ମକଦମା ବାହା ବରତରେ
ସବୁ ଉଡ଼େଇଲେ ବିକି ଭାଙ୍ଗି । ୨୩୮ ।

ଜଦା ମିଶା ଖଇ ଉଖୁଡ଼ା ଗଣ୍ଡିଏ
ଏବେ ଭାଗବତଙ୍କ ଭାଗ୍ୟେ ପଡ଼ି,
ଦୋଳ ପୁନେଇ କି ଖଜା ଚଣା ଖାଇ
ଦାଣ୍ଡେ ବୁଲନ୍ତି ବିମାନ ଚଢ଼ି । ୨୩୯ ।

ଗାଆଁ ଭେଦା ହୋଇ କଉଣସି ମତେ
ତଳେ ଛାଆଣି ବର୍ଷକେ ଥରେ,
ମାଙ୍କଡ଼ ମାରନ୍ତି କଣା ଘରେ ଉଙ୍କି
ଖର ବରଷା ପଡ଼ଇ ଘରେ । ୨୪୦ ।

ଗୋଲ୍ଲୁ ଚର୍ବି ବୋଳା ବିଲତି ଛିଟର
ଖଣ୍ଡେ ଚାନ୍ଦୁଆ ଉପରେ ଟଙ୍ଗା,
ଅସିଆ କାଳର ମସିଆ ବିମାନ
ତଳେ ଗୋଡ଼ ପୁଣି ଦରଭଙ୍ଗା । ୨୪୧ ।

ପୋଥି ଶହ ଶହ ଲଢ଼ିଛି ଗାଦିରେ
ଯେବେ ଲାଗଇ ହରକା ଗୋଳ,
କୁର୍ଦ୍ଦିଆଣୀ ଢାଲ ଫଡ଼ା ହୋଇ ପିଟେ
ଖାଳି ଏକାଦଶ କାହ ଢୋଲ ।୨୪୨।

ନଦିୟା କୀର୍ତ୍ତନ କରୁଥିଲେ ଆସରେ
ବସି ସଞ୍ଜବେଳେ କେତେ ଜଣ,
ଫଟା ମୃଦଙ୍ଗ ଗଢ଼ୁଛି ନମୁନା
ନାହିଁ ଆଜି କାଲି ତହିଁ ମନ ।୨୪୩।

ନୂଆ ହୋଇ ଏବେ ନାଟ ପଞ୍ଚାଟିଏ
ଆମ ଗାଆଁରେ ହୋଇଛି ଗଢ଼ା,
ରଚି ଅଧ୍ୟାଏ ଭଗବତ ଘରେ
ଘୁଲେ ହରକିସମର ପଢ଼ା ।୨୪୪।

ଓସ୍ତାଦ ଜଣେ ହୋଇଛନ୍ତି ଅଣା
ନେଇ ମାସକୁ ପନ୍ଦର ଟଙ୍କା,
ଥାଆନ୍ତି ମଲ୍ଲଙ୍କ ଆଖଡ଼ା ପିଲଙ୍କ
ଗୋଡ଼ ହାତ କରି ସିଧା ବଙ୍କା । ।୨୪୫।

କେତେ ଯେ 'ହରଣ' କେତେ ଯେ 'ସୁଆଙ୍ଗ'
ସବୁ ଆମ ଆଖଡ଼ାର ପାଠ,
ଛପା ହୁଏ ଯେତେ ବିକା ହୁଏ ସେତେ
ଆମ ଓଡ଼ିଆ ସୁଆଙ୍ଗ ନାଟ । ।୨୪୬।

ରଜାଙ୍କ ଆଗରେ ଓଟାରି ରାଣୀଙ୍କି
କରେ ଦୁଆରୀ କିମିତି ରଙ୍ଗ,
ଆଖିଠାର କଣ୍ଠ– ସ୍ୱର ଶିକ୍ଷା ମିଳେ
ଯେତେ ହସିବା ବାସିବା ଢଙ୍ଗ । ।୨୪୭।

ଭଲ ବୋଲି ମିଳେ ପରଶଂସା ଦାଣ୍ଡେ
ଯାଇ ସାଜିଲେ ବେହିପା ହଦ,
ପୁରୁଷ ପୁଅର ସିଂହ ପଣିଆକୁ
ଏଠି କରଯାଏ କାଟି ରଦ । ।୨୪୮।

କେତେ ଗୋପବଂଧୁ ପଠାଣି ସାଆନ୍ତ
ନାଟ ସୁଆଙ୍ଗେ ହୁଅନ୍ତି ହଣା,
କେବେ ଉଠିବ ଏ ନରବଳି ପ୍ରଥା
ଏକା ଜଗତନାଥକୁ ଜଣା ॥ ।୨୪୯।

ଆଜନମ ବ୍ରହ୍ମ– ଚାରୀ ଶୁକଦେବ
କେବେ ସପନେ ନ ଥିଲେ ଭାବି,
ନୀଳାଚଳ ଦେଶେ ଦେଖିବେ ବୋଲି ସେ
ନିଜ ଗାଦି ଆଗେ ଏହି ଛବି । ।୨୫୦।

ପ୍ରସାଦ ପାଇବା ଲାଗି ଅଛି ଏଠି
ଆମ ଗାଁଯାକ ଆସି ଜୁଣ୍ଡ,
ମହକି ଉଠଇ ବାସ ବୁଢ଼ା ରସା
ଗୋଲା ଗୁଳିଛି ଅମୃତ କୁଣ୍ଡ । ।୨୫୧।

ଢେଙ୍କିଶାଳଠାରୁ ଢେଙ୍କାନାଳ ଯାଏ
ଲୋକ ଅଛନ୍ତି ପକେଇ ଗପ,
ଶତପଥୀ ବସି ଦଳନ୍ତି ଗଞ୍ଜେଇ
ମାଜି ଢେଙ୍କେଙ୍କର ଟପ ଟପ । ।୨୫୨।

"ମଧୁ ବାରିଷ୍ଟର ଘରେ ବିଲାତକୁ,
ସେଠି ଶିରୀମତି ମହାରାଣୀ,
ନେଲେ ତାଙ୍କ ଜାତି ପରଷିଲେ ଅନ୍ନ
ଦିନେ ନିଜେ ସ୍ୱହସ୍ତେ ଆଣି । ।୨୫୩।

ଦିବ୍ୟସିଂହ ରଜା ଅଛନ୍ତି ଗୁପତେ
କଳି ଶେଷକୁ ବାହାର ହେବେ,
ଫିରିଙ୍ଗି ରାଜୁତି ତେର ଯେ ପୁରୁଷ
ଦେଖ ଶେଷ ଯିବ ହୋଇ ଏବେ । ।୨୫୪।

ମାଢ଼ିତ ଆସିବ ମହାନ ମୋଗଲ
ପରେ ଅନନ୍ତ କେଶରୀ ରଜା,
ମ୍ଳେଚ୍ଛଯାକ ହାଣ ଖାଇବେ ପୃଥ୍ୱୀରୁ
ସବୁ ପାପୀଏ ପାଇବେ ସଜା । ।୨୫୫।

ରଟ ସିଂହଙ୍କର କଂସାର କବାଟ
ରତି ଅଧେ ପଡ଼ୁଥିଲା ଯେବେ,
ଦଶ କୋଶ ଯାଏ ଯାଉଥିଲା ଶୁଣା
ଆଜ କାହିଁ ସେ ସମ୍ପତ୍ତି ଏବେ ? ।୨୫୬।

ଓଡ଼ ସୁନଯନ କି ମୟୂରଭଞ୍ଜ
ଲଗେ ଝଟାପଟା ଏଥିଲଗି,
'ଅଖୋଜି ବାମଡ଼ା ବଡ଼ ସବୁଠଭ'
କେହି କହି କଜି ଦିଏ ଭର୍ଙ୍ଗି । ।୨୫୭।
ଭଗବନେ ଲେଖା ଜୀବ ମାରି ମାଂସ
ଜୀବ ଖାଇଲେ ବୈକୁଣ୍ଠେ ବସେ,
ଭରି ଗର୍ଣ୍ଣ ଅର୍ଥ ପସ୍ୱରି ବସିକେ
ମୁହଁ ଛପାଇ ମୁରକି ହସେ । ।୨୫୮।
ଗପ ଅଛି ପଡ଼ି କେତେ ଏହିପରି
ମୋର ନ ଲଗଇ ମନ କାହିଁ,
ହୋଇଛତି ଜମା ଗାଆଁ ପିଲ ଯାକ
ଏକା ବଂଧୁଆର ଦେଖା ନାହିଁ । ।୨୫୯।
ଜିଣେଇ ମଳିଜ ଆସି ଏହିବେଳେ
ହୋଇ ଦଶହାତ ଦୂରେ ଛିଡ଼ା,
ସାଥିଓମାନଙ୍କୁ ଓଳଗି କହିଲ
ଥୋଇ କଦଳୀ ପତର ବିଡ଼ା । ୨୬୦।
ବାଭରୀ ସାଇରୁ ଡାକିଲି ସଭିଙ୍କି
ଏକା ମାଧିଆର ମୁଲକାତ—
ନ ପାଇ ପାରି ମୁଁ ଫେରିଲି ତା'ଘରୁ
ନିଜେ ଯାଇ ଥର ପାଞ୍ଚ ସାତ । ।୨୬୧।
ସଭିଏ ଆମର କହୁଥିଲେ ମୋତେ
ଜାଲି ଯାଇଥିଲେ ଆଣି ଡାକ,
ମାଧବ ଭେଇକି ଆସିଥିଲେ ଦେଖି
ସେକ ପାଟଣା ଥାରେ ଯେ ବାଙ୍କ । । ୨୬୨।
ବଡ଼ି ଅନ୍ଧାରରୁ ବାପ ସୁଅ ବିହେଁ
ବଡ଼ି ଜୋରରେ ଝଗଡ଼ି ଥିଲେ,
ଶୁଣିଲ ବେଳୁ ମୋ' ମନ ଡକ ଡକ
ପୁଣି କୋଉଁଠୁ କଥଣ ନେଲେ । ।୨୬୩।
ଏଥର ଯେବେ ସେ ଲଗେଇବେ ହାତ
କାହିଁ ପଡ଼ିବେ କେଉଁଠି ଧଗ,
ଗୁଳିରି ପଛକେ ଗୁଲି ଯାଉ ମୋର
ମାରି କରି ଦେବି ଦରମଗ । ।୨୬୪।
ତାଙ୍କ ହାଡ଼ ଗୋଡ଼ ଭର୍ଙ୍ଗି ଦେବି ଗୋଟେ
ଦେବି ନ ହେଲେ ଆଖିକି ତାଡ଼ି,
ଆପଣମାନଙ୍କ ହୁକୁମରୁ ସିନା
ଦେଲି ସେଦିନ ଥରକ ଛାଡ଼ି ।" ।୨୬୫।
ଜିଣେଇ ମଳିକ- ତୋଡ଼ ଦେଖି ଜରି
ବନ୍ଦ ରହିଲ ସବୁରି କଥା,
ଜଣେ କିଏ ସେଠି କହିଲ ବାଟିନି
"ସିଏ ଗଲେ ପର କଲିକତା । ।୨୬୬।
ଦଣ୍ଡିଲ ପାରିବୁ ପଞ୍ଚାଏ ବାଭରୀ
କାଲି ଗଲେ ହୋଇ ସାଙ୍ଗ ସାଥୀ
ଘନ ଅବଧାନ ଧରିଥିଲେ ଦିନେ
'ବୁଧ ପାହାନ୍ତି ମଙ୍ଗଳ ରତି' । ।୨୬୭।
କଲିକତା ଟଙ୍କା ଲଗିଛି ଯା ମୁହେଁ
ତାକୁ ଆରେଭବ କାହିଁ ଦେଶ,
କଲିକତା ଲଗି ଗୁଷୀଯାକ ଆମେ
ଜାଣ ହୋଇବା ଏଣିକି ଶେଷ । । ୨୬୮।
ବଡ଼େ ଦିନୁ ଦିନୁ ମୂଲିଆ ମଜୁରି
ଆଉ ନ ମିଳତି ଲେକେ କାହିଁ,
ହାତରେ ଏଥର ନ ଧଇଲେ ହଳ
ଆମେ ଚଳିଚ ପାରିବା ନାହିଁ ।" ।୨୬୯।
କେଳେବା କହିଲେ "କଲିକତା ଯାଇ
ଆରେ କେଉଁ ପକେଇବେ ଖାଲି,
ମେଥାଏ ନୋହିଲେ କେଥାଏ ପାଇବେ
ଯେବେ ନ ସହିବେ ଶଙ୍କାଳୀ ।୨୭୦।
କଲିକତା ପାଣି କରିବା ହଜମ
କଥା ମୁହଁରେ ପଡ଼ିଛି ଢ'ଣ,
ଥାମ ଆଖ ଆଗେ ଯେତେ ଥିଲେ ଯଉ
ଆସି ମଲେଣି ଓ କାରଓଣ । ।୨୭୧।

ମଧୁ ଶତପଥୀ ବସିଲେ ପଗ୍ଭରି
"ଟଙ୍କା ଆଣିଲ ଏତେ ସେ କାହୁଁ ?
କାହା ବେକ ପୁଣି କାଟିଲ କେଉଁଠି
ନାହିଁ ତା'ପରି ପାହୁଆ ଆଉ ।" । ୨୭୨ ।
ଛନକା ପଶିଲ ଛାତିରେ ମୋହର
ଶୁଣି ଏମାନଙ୍କ କଥା ଭଷା,
ବସିଗଲି ମୁହିଁ ଥକା ହୋଇ ତଳେ
ଭର୍ଗି ଚୂନା ହେଲ ସବୁ ଆଶ । । ୨୭୩ ।
ଜୀବନ ମୁରୁଛା ଗଲ ହୋଇ ବଂଧୁ
ସିନା ମୋହ ଯୋଗୁଁ କଲିକତା,
ସତେ ଆଉ କି ସେ ଫେରିବ ଗାଆଁକୁ
କେବେ ଶୁଣିବି ମୁଁ ତାର କଥା ? । ୨୭୪ ।
ମଦନ ସାମଇ ଘାଇ ଗଲ ଆସି
ମାଧ ଦୁଃଖ କରି ଛିନ ଭିନ,
କଟା ଘାଆରେ କି ଦେଲ ବୋଲି ଚୂନ
ମୋର ମନେ ଅଛି ସେହି ଦିନ । । ୨୭୫ ।
ମାଧିଆକୁ ଯୋଉ ଗୁଡିଆ ବଳଦ
ମୋର ବଂଧୁଆ ଜୀବନ ଧନ,
ଦଣ୍ଡେ ନ ଦେଖିଲେ କ୍ଷଣେ ହୁଏ ବଣା
ନିତି ଯା' ଲଗି ବଂଧୁଆ ମନ । । ୨୭୬ ।
କେଉଏ ହେଲେ ସେ ଘୂହାଳୀ ଫେରନ୍ତା
ନିଏ କାଟି ତାହା ଲଗି ଘାସ
ମନେ ଅଛି ଥରେ ହଜିଲ ବୋଲି ସେ
ଥିଲ ଦୁଇ ଓଳି ଉପବାସ । ୨୭୭ ।
ସେହି ବଳଦକୁ ବିକିବା ସକାଶେ
ମାଧ ଦିକଦାର ହେଲ ଭରି,
ନଜଡ଼ା ଛକଡ଼ା କହିଲେ ଗାଁରେ
ନେବେ ସୁଭାଳରେ ବୋଲି ମାରି । ୨୭୮ ।
ଛଡା ଶେଷେ ମାଧ କରି ହରଦର
ତାର ବଳଦ ଯୋଡ଼ିକ ନେଇ,
କୋଡ଼ିଏ ଟଙ୍କାରେ ବାବୁ କଂସେଇକି
ଦୁଃଖେ ଆସିଲ ଛଡ଼େଇ ଦେଇ । ୨୭୯ ।
ଗଲ ନାହିଁ ଦାନା ପେଟକୁ ତାହାର
ବସି କାନ୍ଦିଲ ଦି'ଦିନ ଯାକେ,
ହାରି ଦେଇଥାନ୍ତା ଜୀବନ ନିଜର
ଯେବେ ବନ୍ଧୁଆ ନ ଥାନ୍ତା ପାଖେ । ୨୮୦ ।
ଧନ ଦେବା କଥା ଥାଉତ ତେଣିକି
ପର କଷଣ ହାରିବା ପାଇଁ,
କାନ ଦେଇ ଦୁଃଖ କଥା ଶୁଣିବାକୁ
ଲୋକେ ସହଜେ ମିଳନ୍ତି ନାହିଁ ? । ୨୮୧ ।
ଭୁଲିଥିଲ ମାଧ ଘର ଘରଣୀକି
ଆଜି ଗଛେ ବସି ତାକୁ ସିଏ,
ବନ ପୋଡ଼ିଗଲେ ଜାଣନ୍ତି ସଭିଏଁ
ମନ ପୋଡ଼ିଲେ ଦେଖଇ କିଏ ? । ୨୮୨ ।
ଦୁଃଖୀ ଦୁଃଖ ସିନା ବୁଝନ୍ତି ଦୁଃଖିଏ
ତାହା ସୁଖିଏ ଜାଣିବେ କାହୁଁ ?
ତାର ଆପଦରେ ସୁଖୀ ହୁଏ ଯେହୁ
ପାପୀ ତାକୁ ବଳି ନାହିଁ ଆଉ । ୨୮୩ ।
ଗାଇଲ ମଦନା କାନ୍ଦ କାନ୍ଦ ହୋଇ
ଯେତେ ମାଧିଆ କାହାଣୀ ବସି,
ଶୁଣିଲେ କେହିବା ନ ଶୁଣିଲେ କେହି
କେହି ଉଡ଼େଇ ଦେଲେ ତା' ବସି । ୨୮୪ ।
କଂସେଇକି ଗୋରୁ ବିକିବାର ଜାଣି
କେହି ବରଷିଲେ ଗଗେ ଗାଳି,
ଏଣେ ଦିଅଁଙ୍କର ବଢ଼ିଗଲ ଭୋଗ
ଘରେ ଗଲ ଶୁଣା କରତାଳି । ୨୮୫ ।
ଠାକୁରେ ସେ ଭୋଗ ପାଇଲେ କି ନାହିଁ
ତାହା ଠାକୁରଙ୍କୁ ଥିବ ଜଣା,
ମତେ ଲଗିଲ ସେ ଭୋଗରେ ମିଶିଛି
ଘଦା ଗୋରୁଙ୍କ ରକତ ଫଣା । ୨୮୬ ।

ବଂଧୁଆର ଲୁହ ମାଧିଆର କୋହ
ସବୁ ନାଚିଲା ମୋ ଆଖି ଆଗେ,
ପେଟ ଭିତରଟା ହୋଇଗଲା ମନ୍ଥି
ଦିହ ଜଳିଗଲା ମହାରାଗେ । ୨୮୭ ।

ଯେତେ ମୋତେ ଲୋକ କଲେ ଭିଡ଼ା ଟଣା
ସେଠା ପ୍ରସାଦ ପାଇବା ପାଇଁ,
ଭୋକ ଉଦେଖି ମୋତେ ଲାଗୁଅଛି ବାଡି
ତାଙ୍କୁ କହିଦେଲି ନାହିଁ । ୨୮୮ ।

ଫଣ ଫଣ ହୋଇ ବୋଇଲେ ଜେଜେବା
ବଡ଼ ପାପୀ ଟୋକାଟାଏ ତୁହି,
ହେଜିଲି ମନରେ ପାପୀ ନୋହିଲେ କି
ଆଜି ବଂଧୁକୁ ହଜାଡି ମୁହିଁ । ୨୮୯ ।

ପାଶୋରି ନ ଯିବ ସେ ଦିନର ରତି
ଘରେ ଫେରିଲେ ବିକଳ ହୋଇ,
ଅଖିଆ ଅପିଆ ଭାଳି ବଂଧୁ କଥା
ଗଲି ନିଗଡ଼ ନିଦରେ ଶୋଇ । ୨୯୦ ।

ଭାଙ୍ଗି ଗଲା ନିଦ ରତି ଅଧ ଠେଇ
ଉଠି ବସିଲୁ ବଢ଼ିଶଯାକ,
ଛୁଟିଛନ୍ତି ଲୋକ ଦେଖୁଁ ସ୍ୱପ୍ନପରି
ଦାଣ୍ଡେ ଶୁଭେ ନିଆଁ ନିଆଁ ଡାକ । ୨୯୧ ।

ନଈ ବନ୍ଧ ଆଡ଼େ ଦିଶଇ ହାଲୋକ
ଧୂଆଁ ଘୋରି ଉଠେ ମେଘ ପରି,
ଠୋଓ ଠୋଓ ଫୁଟେ ଘର୍ଣ୍ଣି ବାଉଁଶର
ଶୁଣି ଦିହ ଉଠୁଥାଏ ଥରି । ୨୯୨ ।

ନାଗ ମୁଣ୍ଡ ପରି ନିଆଁ ଖଣ୍ଡମାନ
ଆସେ ସାହି ଭିତରକୁ ଉଡ଼ି,
ଜୀବନ ବିକଳେ ଛାଡୁଛନ୍ତି ଡ଼ାକ
କେତେ ଛୁଆ ପିଲା ବୁଢ଼ା ବୁଢ଼ୀ । ୨୯୩ ।

ଓଦାକରି ହେଁସ ସଉପ ମଶିଣା
ଘରର ଉପରେ ବିଛେଇ ଦେଲା,
ପଙ୍କା ପଙ୍କା ଲୋକ ବୋହୁଥାନ୍ତି ପାଣି
ହାଣ୍ଡି କୁଣ୍ଡାଇ ମାଠିଆ ନେଇ । ୨୯୪ ।

ବାସନ କୁସନ ମାଣ ବସା ପେଡ଼ି
ଘର କରଣା ଦରବ ମାନ,
ଧଇଁସଇଁ ହୋଇ କାଢ଼ନ୍ତି ପଦାକୁ
କାଳେ ହୋଇଯିବ ଲୋକସାନ । ୨୯୫ ।

ଘର ଚାଳ କିଏ ପକାଏ ଓଲାରି
କିଏ ଚାଳକୁ ପୋପାଡ଼େ ବାଲି,
ପଘା ଦେଇ କାଟି ବଳଦ ଗାଈଙ୍କ
କିଏ ଗୁହାଳ କରଇ ଖାଲି । ୨୯୬ ।

ଉଠୁଥାଏ ଖେଳି ସବୁରି ପରାଣେ
ଗାଦି ଗୋସାଇଁ ଆମକୁ ରକ୍ଷ,
ଗାଦି ଗୋସାଇଁଙ୍କ ମହିମା ଅପାର
ସହି ନ ପାରିଲେ ଆମ ଦୁଃଖ । ୨୯୭ ।

ଆମ ପାପ ପାଇଁ କଲେ ପରଚିତ
ଗଲେ ଆମ ଲାଗି ନିଜେ ଜଳି,
ଖିଏ କୁଟା କାର କଲେ ନାହିଁ ହାନି
ସେ ତ ଶୁଣିଲେ ଆମର ଅଳି । ୨୯୮ ।

ରଣ ଦେଲା ପରି ଅରାଜି ଦେବତା
ମୁହେଁ ନ ଦେଲେ କିଛି କାହାରି,
ସାତ ପୁରୁଷର ଗାଦି ଘରଟିକି
ପାଲା ଆନନ୍ଦେ ଗଲେ ବାହାରି । ୨୯୯ ।

ତିନି ଦିନେ ଯାଇଁ ଲିଭିଲା ସେ ନିଆଁ
ଦେଖି ଆସିଲି ଯାଇ ତା' ପାଖେ
ପ୍ରାଣରୁ ମୋହର ନିଆଁ ନ ଲିଭିଲା
ଗାଆଁ ଗୁହାଳୀ ଛାଡ଼ିବା ଯାକେ । ୩୦୦ ।

ବଡ ହୋଇ ସିନା କଡ଼ ହୋଇ ଗଲି
ଯାଇ କଟକ ପଢ଼ିବା ଲାଗି,
ବଂଧୁଆର ସ୍ନେହ ଭୁଲି ଗଲି ସବୁ
ପାଇ ନୂଆ ନୂଆ କେତେ ସଙ୍ଗୀ । ୩୦୧ ।

ଯାର୍ବାଦା ମନ୍ଦିରେ ଯୋଗୀ ଯେଉଁ ଦିନ
ଦେବ ବୁଦ୍ଧ ଅବତାର ପରି,
ହରିଜନଙ୍କର ଦୁଃଖ ହରିବାକୁ
ଯୋଗେ ବସିଲେ ଉପାସ କରି, ।୩୦୨।

ଥର ହର ହେଲା ଭାରତ ଆମର
ଜନେ ରହିଲେ ଜଗତ ସାରା,
ଟେମସ ଯମୁନା କୂଳ ଉଚ୍ଛୁଳିଲା
ବହି ବେଣର ବାରଣ ଧାର ।୩୦୩।

ସେହି ଦିନ କିଆଁ ବନ୍ଦିଶାଳେ ମୋର
ବନ୍ଧୁ ମୁହଁଟି ପଡ଼ିଲା ମନେ,
ନୂଆ ବୋହୂ ପରି ଲୁଚି ରହିଥିଲା
ମୋର ହୃଦୟ କବାଟ କଣେ ।୩୦୪।

● ● ●

# ସ୍ମୃତି କଣିକା

## ନାଉରୀଭାଇ

ଆରେ ମୋର ଭାଇ ନାଉରୀ
ମୁହିଁତ ଡମରି ଘାଆଁ ପସାରୀ
ନ ପାରୁ ଚିହ୍ନିକି ମୋତେ
ଗହଁ ଦେଇ ମାନ୍ଦ୍ରେ ଚିହ୍ନିଲି ମୁଁ ତୋତେ
ତୁ ତ ମୋର ଆପଣାର ମୁହିଁ ତୋହରି । ପଦ ।

ବୁଲି ବୁଲି ପଥେ ହୋଇଛି ମୁଁ ଥକ୍କା
ଖୋଜି ଖୋଜି କେତେ ପାଇନାହିଁ ଦେଖା
ବାରେ ବାରେ ଠକି ଖଟିଛି ମୁଁ ବେଠି
ପୂରି ନାହିଁ ଆଶା କାହିଁ ମେ ହରି । ୧ ।

ବେଳ ରତ ରତ ଦିନ ଗଲ ଗଡ଼ି
ଯାଏ ଖର ସ୍ରୋତେ ନାଉ ମୁଣ୍ଡ ଛିଡ଼ି
ଏତେ ବଡ଼ ନଈ ଆଖି ପାଉ ନାହିଁ
ନେଇ ପାରିବୁ କି ମୋତେ ସେପାରି । ୨ ।

କେତେ ଲେଉମାୟା ଭେଟିବୁ ଭଉଁରୀ
କ୍ଷଣକେ ଦେବେ ସେ ତରୀ ଚୂନା କରି
ମନ କରି ଟାଣ ହାତର ନିଶାଣ
ରକ୍ଷି ପାରିଲେ ତୁ ଯିବା ଉତୁରି । ୩ ।

ବୁଡ଼ି ଯିବ ଡଙ୍ଗା ହୁଡ଼ିଲେ ତୁ ବାଟ
କିନ୍ନୀରିଆ ନଈ ବହୁ ଦୂର ବାଟ
ପବୀଣ ବୟସ ଅଛି ତୋ ବହପ
ଯିବୁ ତୁ ପହଁରି ମୁଁ ଯିବି ସରି । ୪ ।

●

## ପରୀକ୍ଷା

କାନେ କାନେ ଏତେ ଶିଖାଉଛ ନିତି
ଚେଷ୍ଟା ନାହିଁ ପଣ୍ଡ ଆମରି ଶିକ୍ଷା
ମନେ ମନେ ଲୁଚି ପରୀକ୍ଷା କରୁଛ
ପଢ଼ୁ ନାହିଁ ଆମ ଶେଷ ପରୀକ୍ଷା । ପଦ ।

ହାତ ଧରି ଖାତା ଦେଉଛ ଲେଖାଇ
ବହି ଧରି ଛବି ଗୁଲିଛ ଦେଖାଇ
ବୁଦ୍ଧି ଦେଇ ଯେତେ ବୁଦ୍ଧିଆ କରୁଛ
ଭୁଲିଯାଉ ସେତେ ହେଉଛୁ ବୋକା । ୧ ।

ଅରଜିଲୁ ବ୍ୟାଧି ସୃଜିଲ ଔଷଧି
ଜଳ ନଷ୍ଟ କଲୁ ଭରିଲ ଜଳଧି
ଅନ୍ଧାର ପାଇଁକି ଦେଲ ରବି ଶଶୀ
ଆଖି ଥାଉ ଥାଉ ଅମେ ଜଳକା । ୨ ।

କଳ କେତେ ଗୋଟା ହାତରେ ତିଆରି
ଭାବିଲୁ ନିଜକୁ ସ୍ୱର୍ଗ ଅଧିକାରୀ
ତମକୁ ଭୁଲିକି ନିଜେତ ମଲୁଣି
ତମେ ପରବତ ଆମେ ତ ଟେକା । ୩ ।

ଧନ ବଳ ଠାରୁ ବଡ଼ ମନ ବଳ
କଳଠାରୁ ଆତ୍ମ ଶକତି ଅଟଳ
ଆଖି ଆଗେ ଆଜ ବୁଝାଉ ଦେଉଛ
ତୁମ ଯୋଗେ ଆମେ ପାଇବୁ ରକ୍ଷା । ୪ ।

●

## କାହୁଁ ଅଇଲ ?

କାହିଁ ଥିଲ ସେତ କାହୁଁ ଅଇଲ
ଅନ୍ଧାର ଗଡିକି, ମୋ ଅନ୍ଧ ଜାତିକି
ଚକ୍ଷୁଦାନ ଦେଇ ଚନ୍ଦ୍ରମା ହେଲ । ପଦ ।

ଖାଇଲ କି ମଂତ୍ର ବାଇଲ କି ଯଂତ୍ର
କୋଟି ହୃଦୟ ତ ଏକାଠି କଲ,
ବାଳ, ବୃଦ୍ଧ, ଯୁବା ହେଲେ ଆସି ଭଲ,
ଜାତି ମନ୍ଦା ସ୍ୱଲ୍ପ ଶୋଭା ବଢ଼ିଲ । ୧ ।

ମଧୁରୁ ମଧୁର ତା'ର ପ୍ରେମ ଗୀର
ସବୁ ଜାତିଙ୍କର ମନ ମୋହିଲା,
ଅଚିହ୍ନା ଅଜଣା ହେଲା ଜଣା ଶୁଣା
ପର ତ ଆପଣା ପରି ଲାଗିଲା ।୨।

ଜାତି, ପତି, ସ୍ଥାନ, କୁଳ ଅଭିମାନ
ତାକୁ କରି ଧ୍ୟାନ ସବୁ ଭାଙ୍ଗିଲା,
ପଲକେ ପଲକ ଡାକିଲା ମାତ୍ରକେ
ଦୂର ତ ନିକଟ ବନ୍ଧୁ ସାଜିଲା ।୩।

ଦେଖି ତା'ର ଗୁଣ ଦେଶ ଭକ୍ତ ଟାଣ
ଅରି ଦମ୍ଭ ପଣ ସବୁ ଭାଙ୍ଗିଲା,
ତା ଲାଗି ବନ୍ଧୁକ ବନ୍ଧୁକର ମୁନ
ଫାଶି କାଠ ପ୍ରାଣ ହସି କରିଲା ।୪।

ଅହିଂସା ନୀତିକି ଦେଇ ପୃଥିବୀକି
ମାନବ ଜାତିକି ବଞ୍ଚାଇ ଦେଲା,
ବୋଲେ ବନ୍ଦୀ ବୀର ତପସ୍ୟା ତାହାର,
ସ୍ୱାଧୀନ ଭରତ ଚିତ୍ର ଆଙ୍କିଲା

●

## ସ୍ୱାଧୀନତା

ସ୍ୱାଧୀନତା ଦିବସ, ୧୯୪୭ ମସିହା, ବ୍ରହ୍ମପୁର ଜେଲ)

ଆସିଲାଣି ଆସୁଛି ସେ ଆସିବ ନିଶ୍ଚୟ
ଆସିଲେ କିପରି
ଯିବ ନାହିଁ ଫେରି
ମିଳି ମିଶି ଭବ ତାହା ଚିତ୍ତ କରି ଥୟ । ପଦ ।

ଆସିଲାଣି ଦେଖ ଦୂରେ ହିମଗିରି ଶିରେ
ଭାସିଲାଣି ଛବି ଗଙ୍ଗା ସରସ୍ୱତୀ ନୀରେ
ମହାନଦୀ ପ୍ରାଣ କରି ସେ ଉଛନ୍ନ
ତାଳେ ତାଳେ ନାଚେ ସିନ୍ଧୁ ଅନ୍ତର ଅଥୟ ।୧।

ଜାଳିଲାଣି ଆସି କୋଟି ଯୁବକ ପରାଣେ
ଖେଳିଲାଣି ଲୁଚି ବସି ଯୁବତୀ ନୟନେ
କେତେ ରାଜ ବଂଶ କରେ ନିତି ଧ୍ୱଂସ
କଂପି ଶତ ଶତ ଶୋଷକ ହୃଦୟ ।୨।

ମନେ ମନେ ଖୋଜି ତାର ମନ ଚିର ଶାନ୍ତି
କେତେ କେତେ ସ୍ୱପ୍ନାଗାର ଚୂନା କରେ ନିତି
ଆଣବିକ ବୋମା ପାଶେ ନରହିବ ଆଉ
ନେବ ନାହିଁ ନରହନ୍ତା ନରଙ୍କ ଆଶ୍ରୟ ।୩।

ଶ୍ରମୀଘର ବୋହୂପାଦେ ଅଳତା ପିନ୍ଧାଇ
ମୂଲିଆଣି ଝିଅକୁ ସେ କଜାଦେବ ନାଇ
ଆମ୍ବ ବଉଳର ବାସେ ବିହରିବ
କୋଇଲି ସାଥିରେ କରି ହୃଦ ବିନିମୟ ।୪।

●

## ଅନଶନ ସମୟେ

ଭକତ ତମର ରକତ ଶୁଖାଇ
ଡାକଇ ଜଗତ ପାଇଁକି,
ଜଗତର ନାଥ ତମେ ଜଗନ୍ନାଥ
ତା ଡାକ ଶୁଣିବ ନାହିଁକି ।ପଦ।

ଯୋଗୀ ନୁହେଁ ସେତ ଅସହଯୋଗୀ
ଭୋଗୀ ନୁହେଁ ସେତ ସର୍ବସ୍ୱ ତ୍ୟାଗୀ
ଯୌବନ ପ୍ରଭୃତୁ ଯୋଗ କରଇ ସେ
ଜଗତ ମଙ୍ଗଳ ଚାହିଁକି ।୧।

ମାନବ ଜାତିକି ମାନବ ନୀତିକି
ବନ୍ଧ କରି ସଦା ମାନବ ପ୍ରୀତିକି
ଅନୁସରି ଚାଲେ ମାନବର ପନ୍ଥା
ବଦଳାଇ କାଳ ଗତିକି ।୨।

ସତ୍ୟ ଯେବେ ଧରା ରବି ଶଶୀ ତାରା
ସତ୍ୟ ଯେବେ ଶୀତ ଗ୍ରୀଷ୍ମ, ବର୍ଷା, ଧାରା
ସତ୍ୟର ମହିମା ନିଖୁଣ ରଖ ହେ
ଚରଣେ ମାଗୁଣି ଏତିକି ।୩।

●

## ନାୟକ-ଲକ୍ଷ୍ମଣ

ବ୍ରହ୍ମପୁର ଜେଲରେ ଲକ୍ଷ୍ମଣ ନାୟକ ଫାଶୀ
ପାଇବା ଦିନ ସନ୍ଧ୍ୟା ଶୋକସଭାରେ ଆବୃତ୍ତି
କରଯାଇଥିବା ଗୀତ

୨୯-୩-୪୫

ମରି ନାହିଁ କେବେ ମୁଁ ମରିବି ନାହିଁ
ମୋପାଇଁ ଭାବନା କରିବ ନାହିଁ । ପଦ ।

ମୋ ନିଜ ସ୍ମୃତିକି କରି ମୁଁ ସଞ୍ଚାଳି,
ଯାଉଛି ଯିବି ମୋ ପ୍ରାଣ-ଦୀପ ଜାଳି ।
ଗଗନ ପଥରୁ ତାରକା କୁଞ୍ଜରୁ
ଆକୁଳେ ତୁମକୁ ଥିବି ଅନାଇ । ୧ ।

ମନରେ ଏତିକି ଆଜି ମୋର ଖୁସି
ବିନା ଦୋଷେ ଗଲି ପିନ୍ଧିଲି ମୁଁ ଫାଶ
ପୁନା ସହରକୁ ପ୍ରଣାମ କରି ମୁଁ
ଦେଲି ପ୍ରାଣ ପୃଥିବୀପାଇଁ । ୨ ।

ନାସିକାରେ ଥିବ ଯାବତ ନିଃଶ୍ୱାସ
ଶୋଷକ ଜାତିକି ନ କର ବିଶ୍ୱାସ
ଶୋଷଣ ନୀତିକି ବିଧ୍ୱଂସ ନ କରି
ଘରକୁ ତୁମର ଫେରିବ ନାହିଁ । ୩ ।

ଈଶ୍ୱର କଳଙ୍କ କରି ବିଧଉତ
ମାଡ଼ି ଆସୁଅଛି ଭୀମ କାଳସ୍ରୋତ
ଓଲଟ ପାଲଟ ହୋଇଯିବ ସବୁ
ଦେଖି ନ[illegible]ବ ଉଚି[illegible] ।

ଶେଷ କଥା [illegible] ମୁଁ [illegible] ତୁମର
ଶୁଣି ମୁଲି[illegible] ଦେ[illegible] [illegible]
ଗଣ୍ଡେ ଖାଇ ଖଣ୍ଡେ ପିନ୍ଧିବେ ସେମାନେ
ନିରଶ ତାହାଙ୍କୁ କରିବ ନାହିଁ । ୪ ।

●

## ମହାପ୍ରୟାଣ

ଭବେ ଯେତେ ଯେତେ ନ ହୁଏ ପରତେ
ଗୁଳି ଗ୍ରେଟେ ତମେ ପଡ଼ିଛ ଢଳି,
ଯମୁନା ପୁଳିନେ ଅନ୍ତିମ ଶୟନେ
ହୋମାନଳେ ଜଳି ହୋଇଛି ଧୂଳି ।ପଦ।

ଶୁଣି ତମ କଥା ହରୁଥିଲ ବଥା
ନୋଇଁ ଯାଉଥିଲ କୋଟି କୋଟି ମଥା
ନ ଥିଲେ ତମର ଜଣେ କେହି ପର
ନିହତ କଲ କେ ବଂଧୁକ ଧରି । ୧ ।

ପ୍ରଳୟ ପୟୋଧି ଜଳେ ଏହି ମହୀ
ବୁଡ଼ି ଯାଉଥିଲ ନର ରକ୍ତ ପିଇ
ସତ୍ୟ ନଉକାରେ ଉଦ୍ଧାରିଲ ତାକୁ
ଅହିଂସା ଆହୁଲ ସରାଗେ ଘୁଳି । ୨ ।

ତମେ ବ୍ରହ୍ମଋଷି ସଦା ବ୍ରହ୍ମଦର୍ଶୀ
ପ୍ରତି ଘଟେ ବ୍ରହ୍ମ ଦେଖୁଥିଲ ହସି
ଗଛରୁ ପତର ଛିଣ୍ଡା'ଉ ନ ଥିଲ
ତୋଳ ନାହିଁ ଫୁଲ କାଟିବ ବୋଲି । ୩ ।

ଦେଖି ତୁମ ତପ ବିଷଧର ସାପ
ପାଶୁଁ ଫେରିଗଲ ନ ଦେଖାଇ କୋପ
ଭବିଲ ନିଜର ତମେ ତ ତାହାର
ନ ପାରିଲ ଥରେ ଫଣାଟି ତୋଳି । ୪ ।

ଗୁରୁଦେବଙ୍କର କଥା ମନେପଡ଼ି
ଆମ[illegible]ରୁ ଆତ୍ମା ଗଲ କି ହେ ଛାଡ଼ି
ଚିର ଶାନ୍ତି ଭରା ଶାନ୍ତି–ନିକେତନ
ପା[illegible]ା ହେଲ ତମେ ଆମକୁ ଭୁଲି । ୫ ।

ନଡ଼ି ନ ପାରିଲେ ସହି ନ ପାରିଲେ
ଦେବତା ଏ ଅବା ଏତେ କୂଟ କଲେ
ନାଥୁରାମ ହାତେ ଶମନ ପେଷିଲେ
ନଥି ଥୋଇ ଦେଇ ଗଲ ହେ ଗୁଳି । ୬ ।

●

## ଆମ ଦେଉଳ ପଡ଼ିଲା ଭାଜି

**ଭାଇ !**

କି ଗୀତ ଗାଇବି ବୁଝ ଆଜି
ଆମ ଦେଉଳ ପଡ଼ିଲା ତଳେ ଭାଜି
ଉଚ୍ଚ ବୋଉଚଟି ଚୂନା ହେଲା ଯେଣି
ଉଗ ଜାହାଜଟି ଗଲା ହଜି । ପଦ ।

ନନ୍ଦନ-ବନରୁ ଆସିଥିଲା ପକ୍ଷୀ
ନ ପାରିଲୁ ତାକୁ ଆମେ ଆଉ ରଖି
କେତେ ଦୁଃଖ ସହି ରାମନାମ କହି
ଗଲି ଗଲେ ଆଖି ଦେଲା ବୁଜି । ୧ ।

ବିନା ଯୁଦ୍ଧେ ଆଣି ଦେଲା ସ୍ୱାଧୀନତା
ମାନବ ଜାତିକି ଦେଇ ନୂଆ ପନ୍ଥା
ସତ୍ୟ ଅହିଂସାର ପୂଜାରୀ ଥିଲା ସେ
ଆମ ହାତେ ପ୍ରାଣ ଗଲା ତେଜି । ୨ ।

ସମଜାଇ ଗଲା ଆମକୁ ସେ ଗୀତା
ବାଇ ହେଲୁ ଆମେ ଘେନି ତାର ଚିତା
ଗଗନ ପବନ ଗାଉଛି ତା ସ୍ତୁତି
ବୁଝି ନ ପାରିଲୁ ତାକୁ ବୁଝି

●

## ଦକ୍ଷିଣା ପବନ

ଆସିଥିଲୁ, ଚାଲିଗଲୁ, ଆରେ ମୋ ଦକ୍ଷିଣା ପବନ,
ନେଇଥିଲୁ ଘେନିଗଲୁ କୁଞ୍ଜବନୁ କୋକିଳ କୂଜନ । ପଦ ।

ବନେ ବନେ କେତେ ବୁଲି, ଫୁଟାଇଲି ବନମଲ୍ଲି
ଲିମ୍ବକାଠେ ଛୁଟାଇଲୁ, ସୁବାସ ଚନ୍ଦନ । ୧ ।

ଚକୋରକୁ ଚେତାଇଲୁ, ଚାନ୍ଦ ସାଥେ ମିଳାଇଲୁ
ରବିକରେ ପରଶିଲୁ, ନଳିନୀ ନୟନ । ୨ ।

ପଲ୍ଲବ ଦୋଳାରେ ଦୋଳି, ପକ୍ଷୀବାଳା ସାଥେ ମିଶି
ମହକରେ ମଣ୍ଡିଲୁ ତା ପ୍ରଣୟ ବ୍ୟଞ୍ଜନ । ୩ ।

କେତକୀ କେଶର ବୋଳି, ଅଳି ସଙ୍ଗେ ଫଗୁ ଖେଳି
ବଂଶୀ ସ୍ୱରେ ମିଳାଇଲୁ ତରଙ୍ଗିଣୀ ତାନ । ୪ ।

ଫୁଲ ମଧୁ ଚଖାଇଲୁ, ସ୍ୱାଧୀନତା ଶିଖାଇଲୁ
ନରକର କାରାଗାରେ ରଚିଲୁ ନନ୍ଦନ । ୫ ।

ଭୁଲି ତୁହି ଗଲୁ ଚାଲି, ନ ଯାଏ ମୁଁ ତୋତେ ଭୁଲି
ଯୁଗେ ଯୁଗେ ଭେଟେ ତୋତେ ସୁନ୍ଦର ମୋହନ । ୬ ।

●

## କହଲୋ ଯମୁନା

କହଲେ ଯମୁନା କହ ତୁ କିପରି
ସହିଲୁ ଏ ଭଳି ଯାତନା,
ଦେଖିଲୁ କିପରି ଏ କରୁଣ ଛବି
ବୁକୁ ଫଟା ହୃଦ ବେଦନା । ପଦ ।

ବାପୁଜିକି ମୋର ତୋ କୋଳେ ଶୁଆଇ
ଜଳନ୍ତା ଅନଳେ ଦେଲେ ଗୋ ଜଳାଇ
କୋଟି କୋଟି ନେତ୍ରୁ ବହିଗଲା ଅଶ୍ରୁ
ନୋହିଲା ତୋ ହୃଦେ କରୁଣା । ୧ ।

ପାଷାଣୀ ତନୟା ହେଲୁ ତୁ ପାଷାଣୀ
ଲିଭାଇଲୁ ନାହିଁ ପକାଇ ତୋ ପାଣି
ତା ଚିତା ପାବନ ବୋଲି ନିଜ ଦେହେ
ପୂର୍ଣ୍ଣ କଲୁ ପ୍ରାଣ ବାସନା । ୨ ।

ଦେଢ଼ଶ ବରଷ ହେବ ଗୋ ଉପର
ତୋ ଦିଲ୍ଲୀ ନଗରୀ ଥିବି ଗନ୍ତାଘର
ହଜିଥିଲା ଖୋଜି ଆଣି ଦେଲା କିଏ
ସମୁଦ୍ର ସେ ପାଖୁ ମାଗଣା । ୩ ।

ନିଜ ମୁକ୍ତି ଲାଗି ନ ଥିଲା ସେ ଯୋଗୀ
ବିଶ୍ୱ ମୁକ୍ତି ଲାଗି ହେଲା ବଇରାଗୀ
ଦେଶ ଲୋକ ହାତେ ଶେଷ ନିଃଶ୍ୱାସକି
ଛାଡ଼ଇ କଲା ଶେଷ ପ୍ରାର୍ଥନା । ୪ ।

●

## ତମେ ଯେବେ ଆଜି ଆସନ୍ତ ଫେରି

ତମେ ଯେବେ ଆଜି ଆସନ୍ତ ଫେରି
କୋଟି କୋଟି ଲୋକ ପାଗଳ ହୋଇ କି
ତମ ଗ୍ଭରିପାଖ ଯାଆନ୍ତେ ଘେରି । ପଦ ।

ଯମୁନାର ପାଣି
ବହନ୍ତା ଉଜାଣି
ହିମାଳୟ ଗିରି
ଉଠନ୍ତା ଶିହରି

ଯୋଗୀ ଅରବିନ୍ଦ
କରି ଯୋଗ–ଭଙ୍ଗ
ବଜାଇ ନିଅନ୍ତେ
ଶ୍ରୀ କର ଧରି । ୧ ।

ହସି ନୂଆଖାଲି
ଦେଖନ୍ତା ସେ ଗ୍ଭଲି
କାଠଯୋଡ଼ୀ ମୋର
ଯୋଡ଼ି ବେନି କର

ତବ ପଦ ଧୂଳି
ଭକତିରେ ଗୋଳି
ମହାନଦୀ ଅଙ୍ଗେ
ଦିଅନ୍ତା ବୋଳି । ୨ ।

ଏତେ ବଡ଼ ପୃଥ୍ୱୀ
ଏତେ କୋଟିପତି
ଏତେ ତ ବିଜ୍ଞାନୀ
ରସାୟନ ଜ୍ଞାନୀ

ପରମାଣୁ ତତ୍ତ୍ୱ
କାଢ଼ୁଛନ୍ତି ନିତ୍ୟ
ରଖି ନ ପାରିଲେ
ନିମିଷେ ଧରି । ୩

ନାହାଁନ୍ତି ବଇଦ
ଦେବାକୁ ଔଷଧ
ଏତେ ଶକ୍ତି ଭେଦ
କଲେ ଯେ ଆରୋଗ୍ୟ

ନାହାନ୍ତି କି ଋଷି
ଘରତେ ସନ୍ନ୍ୟାସୀ
ଚିତରେ ଚେତନା
ଦେବାକୁ ଭରି । ୪ ।

ସହି ଶତ ଧକ୍କା
ଉଡ଼ୁଛି ପତାକା
ଝୁଲୁଛି ଚରଖା
ତମ ପ୍ରାଣ–ସଖା

ସ୍ୱତନ୍ତ୍ର ପବନେ
ସ୍ୱର୍ଗରୁ ଗଗନେ
କୁହ କେବେ ଆଉ
ଆସିବ ଫେରି । ୫ ।

●

## କାହାର ସନ୍ଧାନେ ଯାଉଛ ଯାତ୍ରୀ

କାହାର ସନ୍ଧାନେ ଯାଉଛ ହେ ଯାତ୍ରୀ
କେଉଁ ମହାସିନ୍ଧୁ କୂଳେ,
କେବେ ସେ ତପସ୍ୟା, ପୂର୍ଣ୍ଣ ହେବ ଆଶା
କେଉଁ କଳ୍ପବଟ ମୂଳେ ? ।ପଦ।

ଗ୍ଭଲି ଗ୍ଭଲି ପାଦ ନ ଯାଏ କି ଥକି
ଠକ ଦୁନିଆଁରେ ନିତି ଠକି ଠକି
ରଖିଛ ବିଶ୍ୱାସ ଯାବତା ନିଃଶ୍ୱାସ

× × × ×

କାଠର ଚରଣା କହେ କିହେ କଥା
ହରି ନିଏ ସବୁ ତମ ମନ କଥା
କାହା ପଦ ଚିହ୍ନ ଖୋଜ ନିଶି ଦିନ
(ଏ) ହଣା-ମରା-ଧରା ଚଳେ । ୨ ।

କିଏ ସେ ତୁମକୁ ଦେଲା ଏହି ଦୀକ୍ଷା
କଳ କଉଶଳ ଜଳ ନାହିଁ ଶିକ୍ଷା
ବିଜ୍ଞାନ ଯୁଗରେ ଅଜ୍ଞାନ ହୋଇଲ
ବାଟ ଚାଲି କ୍ଷୁର ଧାରେ । ୩ ।

ମଣିଷ ଜାତିକି ଏତେ ଭଲ ପାଇ
ଯୀଶୁ, ଚଇତନ ଗଲେ ମାଡ ଖାଇ
ହେ ଭଲ ଭଉଣୀ ସବୁ ଜାଣି ଶୁଣି
ପଡ଼ିଲ ତା ମାୟା ଜାଲେ । ୪ ।

ପ୍ରଳୟ ମୁଖରୁ ସୃଷ୍ଟିକି ଉଦ୍ଧରି
ଆସି ଯୁଗେ ଯୁଗେ ଯାଏ ସେ ଏପରି
ଅନନ୍ତ ଶୟନେ, ଅନନ୍ତ ନୟନେ
ଚାହିଁଥାଏ ସିନ୍ଧୁ କୋଳେ । ୫ ।

(ଆଜି) ଫିଙ୍ଗି ଦେବା ଲାଗି ହତ୍ୟା ଅସ୍ତ୍ର ଯାକ
ହତ୍ୟାବାଦୀ ବିଶ୍ୱ ଛାଡ଼େ ଶାନ୍ତି ଡାକ
ତମ ଗୁରୁଜୀଙ୍କ ପନ୍ଥା ନ ଧରିଲେ
ନ ଆସିବ ଶାନ୍ତି ତିଳେ । ୬ ।

●

## ଯାତ୍ରୀ

ଚାଲିଛୁ ଚାଲିବୁ ବଜାଇ ଭେରୀ
ହଲ କେତେଦିନ ହେଉଛି ଡେରି
ହିମାଳୟ ପଥ
ଯାତ୍ରୀ ଆମେ ତ
ନ ଚାହିଁବୁ କେବେ ପଛକୁ ଫେରି । ପଦ ।

ଅନୀତି ପୟୋଧି ଜଳେ ଯେବେ ସୃଷ୍ଟି
ବୁଡ଼ିବାକୁ ବସେ କରି ହୀନ ଦୃଷ୍ଟି
ଚଳାଇ ନଉକା କରୁ ଆମେ ରକ୍ଷା
ଯୁଗେ ଯୁଗେ ପର ଆସି ଏପରି । ୧ ।

ହୋଇ ଅନୁଚର ଯୁଗ ଅବତାର
ଜଗତ ସନ୍ଦେହ କରୁ ଆମେ ଦୂର
ମରଣ ସାଜଇ ଚରଣ ସେବକ
ଚାଲେ ଆମ ଆଗେ ମସାଲ ଧରି । ୨ ।

ବିଶ୍ୱ ଲାଗି କାନ୍ଦେ ଆମର ମରମ
ନିଃସ୍ୱ ସେବା ଆମ ଜାତିର ଧରମ
ଶୋଷିତ ଶୋଷକ ଶାସିତ ଶାସକ
ତରଳାଇ ଦେବୁ ହୃଦ ସବୁରି । ୩ ।

ଘେନି ପୁରତନ ଗଢ଼ିବୁ ନୂତନ
ଜଡ଼ ଧାତୁ ରକ୍ଷା କରିବୁ ଚେତନ
ପରମାଣୁ ବୋମା ସୀମା ଟପି ଆମେ
ସହଜଦ ପରି ଯିବୁ ଉତୁରି । ୪ ।

●

## ବିଦାୟ ମାଗୁଣୀ ଏତିକି

ବିଦାୟ ମାଗୁଣି ଏତିକି
ବଞ୍ଚାଇ ରଖ ତା' ନୀତିକି ।ପଦ।

ମରି ନାହିଁ ସେ ତ ଗୁଳିରେ
ବସେ କି ପବନ ଶୂଳିରେ

ଦୋଳେ ତୁମ୍ଭ ହୃଦ ଦୋଳିରେ
ବିଜୁଳି ପଗଯେ ଖେଳିରେ
ନ ଭୁଲେ ତାହାର ପ୍ରୀତିକି । ୧ ।

ଗଗନେ ପବନ ଭସଇ
ଦେଖିଲେ ନୟନେ ଦିଶଇ
ସବୁରି ସାଥିରେ ମିଶଇ
ଲୁହ ଲୁହ ଦେଖି ହସଇ
ମୁହଁକୁ ତୁମର ଗୁହିଁକି । ୨ ।

ବରେ ବାରେ ପଗ କହିରେ
ଲେଖି ଦେଲ ସଫା ବହିରେ
ନ ମରେ ମନୁଷ୍ୟ ମହୀରେ
ପୁରୁଣା ପୋଷାକ ଉତାରେ
ନୂଆକୁ ପିନ୍ଧିବା ପାଇଁକି । ୩ ।

ଖଟାଇଲେ ନିଜ ଗତର
ସମଜି ତା ମୂଳ ମତର
ଟରକି ପଡ଼ିବ ପଥର
ମଉଳିବ ବିଷ ମତର
ଉଧାରିବା ଆମ ମହୀକି । ୪ ।

● ● ●

# ବକୁଳ ବନର ସ୍ମୃତି

ଆଚାର୍ଯ୍ୟ ହରିହର ମୋର କୈଶୋର–ଗୁରୁ । କଟକ ପିଆରୀମୋହନ ଏକାଡେମିରେ ପଢ଼ୁଥିଲାବେଳେ ମୁଁ ତାଙ୍କର ଶିଷ୍ୟ ଥିଲି ।

ପଣ୍ଡିତ ନୀଳକଣ୍ଠ ମୋର ଶିକ୍ଷକ । କାରାଗାରଠାରୁ ଦରବାରଯାଏ ମୁଁ ଯେତେବେଳେ ତାଙ୍କ ସମ୍ପର୍କରେ ଆସିଛି, ଅଧିକାଂଶ ସମୟରେ ଆମ ଭାଷା-ସାହିତ୍ୟ ବିଷୟରେ ଆଲୋଚନା କରିଛି ଏବଂ ତାଙ୍କଠାରୁ ଯାହା ଶିଖିବାର କଥା ଶିଖିଛି ।

ଗୁଡ଼ିଏ ପାନ ଖାଇବା ପଣ୍ଡିତଜୀଙ୍କର ଗୋଟାଏ ନିଶା ଥିଲା; ତା'ଠାରୁ ବଳି ଆଉ ଯୋଡ଼ାଏ ବଡ଼ ନିଶା ଥିଲା ପଢ଼ିବା, ଲେଖିବା ।

ପ୍ରଥମ ବିଷୟଟି ମୁଁ ଅଙ୍ଗେ ଲିଭେଇଛି ହଜାରିବାଗ ଜେଲରେ । ରୋଗ ଶଯ୍ୟାରେ ପଡ଼ି ସୁଦ୍ଧା ସେ ରାତି ଦଇଟା ବେଳଯାଏ ବହି ଧରି ବସି ପଢ଼ୁଥାନ୍ତି । ଡାକ୍ତର ଆସି ଯେତେ ବାରଣ କଲେ ମଧ୍ୟ ସେଥିରୁ କ୍ଷାନ୍ତ ହୁଅନ୍ତି ନାହିଁ । ଡାକ୍ତର ଥରେ ବିରକ୍ତ ହେବାରୁ ସେ ତାଙ୍କୁ କହିଲେ–"ମୋର ଯାହା ପଥ୍ୟ ମିଳୁଛି ଆପଣ ତାକୁ କାଟି ଦିଅନ୍ତୁ ପଛକେ, ମୁଁ ପଢ଼ାପଢ଼ି ଛାଡ଼ି ପାରିବି ନାହିଁ ।"

କବି, ପଣ୍ଡିତ, ଐତିହାସିକ ନୀଳକଣ୍ଠଙ୍କର ସାହିତ୍ୟ ସେବା ତଥା ପ୍ରତିଭା ବିଷୟ ସମସ୍ତେ ଜାଣନ୍ତି । ସେ କ୍ଷମତା-ରାଜନୀତି ହେମହରିଣୀ ପଛରେ ଧାଇଁ ଧାଇଁ ବନ୍ଧୁ ବାନ୍ଧବ ଆତ୍ମୀୟସ୍ୱଜନଙ୍କ ଆଦରର ଶୈଥିଲ୍ୟ ଅନୁଭବ କଲେ ସୁଦ୍ଧା ବାଗଦେବୀଙ୍କ ଆଦରରୁ ବଞ୍ଚିତ ହୋଇ ନାହାନ୍ତି । ସେ ବିଧାନସଭା ବାଚସ୍ପତି ପଦରୁ ବିଦାୟ ନେବା ଦିନଠାରୁ ସେପାରିକି ଯିବେ ବୋଲି ସଜ ହେଉଥିଲେ ।

ଯଥା ସମୟରେ ଅଦୃଷ୍ଟର ଉଡ଼ାଜାହାଜ ଆସି ପହଞ୍ଚିଗଲା । ସେ ଉଡ଼ି ଚାଲିଗଲେ ।

ତାଙ୍କର ବିୟୋଗ ବାର୍ତ୍ତା ପାଇବା ଦିନ ଗୋଟିଏ ଶୋକ ସଙ୍ଗୀତ ଲେଖି ପକାଇଥିଲି ।

ପରେ ମୋର ବନ୍ଧୁ 'ଶିଶୁ ସମ୍ପଦ'ର ସମ୍ପାଦକ ତଥା 'ଜ୍ଞାନମଣ୍ଡଳ'ର ପ୍ରଣେତା ଶ୍ରୀଯୁକ୍ତ ବିନୋଦ କାନୁନଗୋ ମୋତେ ପଣ୍ଡିତ ନୀଳକଣ୍ଠଙ୍କ ବିଷୟ କିଶୋରମାନଙ୍କୁ ଜଣାଇବା ଲାଗି ଗୋଟିଏ କବିତା ଲେଖିବାକୁ ପ୍ରବର୍ତ୍ତାଇ ଥିଲେ- ଲେଖୁ ଲେଖୁ କବିତାଟି ବଡ଼ ହୋଇ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକାର ଆକାର ଧାରଣ କଲା ।

ଏ ପୁସ୍ତିକା ଖଣ୍ଡି ଲେଖିଲା ବେଳେ ମୋର ସାଥୀ ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ଦାସ ଆବଶ୍ୟକମତେ ସାହାଯ୍ୟ ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଡାକ୍ତର ମାଧବାନନ୍ଦ ଷଡ଼ଙ୍ଗୀ, 'ନବଜୀବନ' ସମ୍ପାଦକ ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ର ଏବଂ ତରୁଣ ଶବ୍ଦ କୋଷର ପ୍ରଣେତା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ଏ କବିତାଟି ଶୁଣି ଏହାର ଆଶୁ ପ୍ରକାଶନପାଇଁ ଉତ୍ସାହ ଦେଇଥିବାରୁ ମୁଁ ସେମାନଙ୍କ ନିକଟରେ ଋଣୀ ।

ସର୍ବଶେଷରେ 'ଅରୁନ୍ଧତୀ' ଚଳଚ୍ଚିତ୍ରର ପ୍ରଯୋଜକ ଶ୍ରୀମାନ୍ ଧୀରେନ୍ ପଟ୍ଟନାୟକ ସ୍ୱତଃପ୍ରବୃତ୍ତ ହୋଇ ଏହାର ପ୍ରକାଶନର ଦାୟିତ୍ୱ ବହନ କରିବାରୁ ଏବଂ ବିକ୍ରୟ ଲବ୍ଧ ଅର୍ଥରୁ ଦୁଇଶହ ଟଙ୍କା ବାତ୍ୟା ପୀଡ଼ିତ ପାଣ୍ଠିକୁ ଦେବାଲାଗି ରାଜି ହୋଇଥିବାରୁ ମୁଁ ତାଙ୍କୁ ଅନ୍ତରର ଆଶୀର୍ବାଦ ପ୍ରଦାନ କରୁଛି ।

ଚାଳିଶଛି, କଟକ–୨
ବସନ୍ତ ପଞ୍ଚମୀ
୩–୨–୬୮

ବୀରକିଶୋର

## ନୀଳକଣ୍ଠ

ପଗ୍ୱରନ୍ତି ପିଲ୍ଲ
ସମସ୍ତେ ଛୁଟି—
କାଲି କିଆଁ ସାର୍ !
ହୋଇଲା ଛୁଟି ? ।୧।

ନଥିଲା ପୁନିଅ—
ପରବ କିଛି,
ଫେରିଗଲୁଁ ଦେଖି
ତାଲା ପଡ଼ିଛି । ।୨।

ଶୁଣିଲୁଁ ଗାଆଁରେ
ପଡ଼ିଛି କଥା—
କେତେ ପଣ୍ଡିତ ସେ
କେତେ ତା ମଥା !" ।୩।

କହିଲେ ଗୁରୁଜୀ
ମୁହଁ ଶୁଖାଇ—
"ଆମ ପତାକାକୁ
ଦିଅ ଅନାଇ । ।୪।

ନୁଆଁଣିଆ ହୋଇ
ଉଡ଼େ ପବନେ
କେତେ ଗଳ୍ପ—କଥା
ପଡ଼େ ତା ମନେ ।୫।

ଖବର କାଗଜୁଁ
ପଢ଼ିଛି ଯାହା
ମନ ଦେଇ ଶୁଣ
କହୁଛି ତାହା ।୬।

ଆଜ ଯେତେ କଥା
ପଡ଼ିଛି ଜାନେ
କହିବି ସବୁ ତା
ରଖିବ ମନେ ।୭।

"କାଲି ସଅଁବାର
ଉପର ଓଳି
ପଡ଼ିଲା କଟକେ
କାହ ବୋବାଳି ।୮।

ଟେଲିଫୋନ ଦେଲା
ଖବର ବାର୍ତ୍ତା
'ଗଲେ ନୀଳକଣ୍ଠ
ଆମକୁ ଛାଡ଼ି ।' ।୯।

ପାଠିକା ପାଠକ,
କବି, ଲେଖକ,
ସୁଧୀ, ସାମ୍ବାଦିକ,
ଲୋକ ସେବକ ।୧୦।

ସାନ ବଡ଼ ପିଲ୍ଲ,
ବୁଢ଼ା, ଭେଣ୍ଡିଆ
ଶେଷ ପାଖେ ଆସି
ହୋଇଲେ ଠିଆ । ।୧୧।

ଶେଷଥର ପାଇଁ
ତାହାଙ୍କୁ ଦେଖି
ମୁହଁ ଗଲା ସେଠି
ଝୁରି ଶୁଖି । ।୧୨।

ରାଜଧାନୀ କାନେ
ଗଲା ଖବର,
ଚମକି ପଡ଼ିଲା
ଭୁବନେଶ୍ୱର ।୧୩।

ସରକାରୀ ଅବା
ବେସରକାରୀ
ଝୁରୁଁରି ମୁହଁରୁ
ଗଲା କାହାରି— ।୧୪।

'କେତେ ବଡ଼ ଲୋକ
ପଢ଼ିଲେ ଟକି
କେ ଅଛି ପଣ୍ଡିତ
ତାଙ୍କରି ଭଳି !' ।୧୫।

ଦେଶ ଲାଗି ସାରା
ଜୀବନ ଦେଲେ,
'ପଦ୍ମଭୂଷଣ' ସେ
ପଦ ପାଇଲେ ।୧୬।

ଟଙ୍କା ପଇସାର
ଲୋଭ ପାସୋରି
ମୁକତି ଆସିଲେ
ବଡ଼ ଚାକିରି । ।୧୭।

ଆମ ପୂଜ୍ୟ ନେତା
'ଉତ୍କଳମଣି'
ଦେଶକୁ ଦେବତା
ପରାୟେ ମଣି ।୧୮।

ବୁଲି ବାର ଦ୍ୱାର
ଘର ଡଗରେ
ଲାଗି ରହିଥିଲେ
ଲୋକ ସେବାରେ ।୧୯।

ଯୁବକ 'କଣ୍ଠ'କୁ
ଦେଖିଲେଣି
କୋଟି ନିଧି କରି
ରଖିଲେ ଆଣି । ।୨୦।

ସୁଧୀ 'କୃପାସିନ୍ଧୁ',
'ଗୋଦାବରୀଶ,'
ଗୁରୁ 'ହରିହର'
କରି ସାହସ ।୨୧।

ମିଳାଇ ତାହାଙ୍କ
ସାଥିରେ ହାତ
ଉତ୍କଳା ନଭରେ
ମାରିଲେ ଡାକ । ।୨୨।

ପଢୁଆ ନ କରି
ଚଳୁଆ ଯୁଗେ
ଲାଗିଲେ ପିଲାଙ୍କୁ
ଗଢ଼ିବେ ଆଗେ ।୨୩।

ପିଲାଏ ଦେଶର
ଅମୂଲ୍ୟ ଧନ,
ପିଲାଏ ଜାତିର
ବଳା ବିହନ । ।୨୪।

ପାରିଲେ ପିଲାଙ୍କୁ
ମଣିଷ କରି
ଲେଉଟି ଆସିବ
ଦେଶର ଶିରୀ ।୨୫।

ପାଠ ଭଳି ପାଠ
ପାରିଲେ ପଢ଼ି
ପିଲାଏ ଦେଶକୁ
ଲଗିବେ ଗଢ଼ି ।୨୬।

ପାଠ ପଢ଼ି ପିଲା
ହେଲେ ପାଠୁଆ
ନ ରହିବେ ଏଠି
ଗୋରା ହାଟୁଆ । ।୨୭।

ହାଟ ଛାଡ଼ି ନିବେ
ନିଜ ଗାଆଁକୁ,
ଆଉ ନ ଡରିବେ
କେହି ତାହାଙ୍କୁ । ।୨୮

ଭାଙ୍ଗିଗଲେ ତାଙ୍କ
ବେପାର-କଳ
ଦେଶ ଛାଡ଼ି ଯିବେ
ଧୋବଲି ଦଳ ।୨୯।

ବିଦେଶୀ ଶାସନ
ରହିବ ନାହିଁ,
ସ୍ୱାଧୀନ ହୋଇବ
ଭାରତ ଭୂଇଁ ।୩୦।
ସ୍ୱାଧୀନତା ବିନା
ମଣିଷ ପଶୁ
ପିଲଙ୍କ ମନେ ଏ
ଚେତନା ଆସୁ— ।୩୧।
ଏଭଳି ଯୋଜନା
ଆଖିରେ ରଖି
ସାକ୍ଷିଗୋପାଳକୁ
ରଖାଇ ସାକ୍ଷୀ ।୩୨।
ମନଲାଖି ଗୋଟେ
ବାଛିଲେ ଥାନ
'ସତ୍ୟବାଦୀ' ଠାରେ
ବଉଳ ବଣ । ।୩୩।
ବୁଢ଼ିଆ ଜଗଇ
ରଖିଲେ ସ୍ୱଟ
ଗଛ ମୂଳେ ପିଲେ
ପଢ଼ିଲେ ପାଠ ।୩୪।
ପଞ୍ଚସଖାଙ୍କର
ଏ ବିଦ୍ୟାପୀଠ
ହେଲା ଆମ ଜାତି
କଳପ ବଟ ।୩୫।
ସାରା ଭାରତରେ
ପଢ଼ିବା ପାଇଁ
ଏଭଳି ଇସ୍କୁଲ
ନଥିଲା କାହିଁ । ।୩୬।
'ବନ ବିଦ୍ୟାଳୟ'
ଉଠିଲା ଚେଇଁ,
ଜାଣି ବିଜାଣିଲ
ଓଡ଼ିଶା ଭୂଇଁ । ।୩୭।
'ନୀଳକଣ୍ଠ' ହେଲେ
ପ୍ରଧାନ ଗୁରୁ
କେତେ ଛାତ୍ର ଛାତ୍ରୀ
ଆସିଲେ ଦୂରୁ । ।୩୮।
ଚିହ୍ନଗ ପାଠୁଆ
ବିଦେଶୁ ଆସି
ଶିକ୍ଷା ଦୀକ୍ଷା ଦେଖି
ହୋଇଲେ ଖୁସି ।୩୯।
ଦେଶ ବିଦେଶରେ
ହେଲା ଖବର—
କୋଣାର୍କ ଦେଉଳ
ଯେଉଁ ଜାତିର ।୪୦।
ଯେ ଜାତି ଗଢ଼ିଛି
ପୁରୀ ମନ୍ଦିର,
ସାଗର ଯା ପାଦେ
ନୁଆଁଏ ଶିର ।୪୧।
ସେହି ରାଜ୍ୟ ସେହି
ଜାତି ଯୁବକ
ଭାରତକୁ ଦେଇ
ନୂଆ ଆଲୋକ ।୪୨।
ଦେଖାନ୍ତି ପୃଥ୍ୱୀକି
ନୂତନ ବାଟ,
ନୂଆ ଢଙ୍ଗେ ପିଲେ
ପଢ଼ନ୍ତି ପାଠ ।୪୩।
ଖୋରାକି ପୋଷାକି
ନେଇ ଶିକ୍ଷକ
ତାଲିମ କରନ୍ତି
ଦେଶ ସେବକ ।୪୪।

ଆମ ଦେଶ ଟେକ
'କାଗଜ୍' ପର୍ଦ୍ଦି
ବିଦେଶୀଙ୍କ ମଥା
ଗଲ ବିଗିଡ଼ି ।୪୫।

ଭିତରେ ଭିତରେ
କଲେ ସନ୍ଦେହ,'
ଚଢ଼ିବାକୁ ଟାଙ୍କୁ
ରଚିଲେ ବ୍ୟୂହ ।୪୬।

ଦିଲ୍ଲୀରୁ ଆସିଲ
ଦିଅ ରିପୋଟ
ପିଲଏ ପଢ଼ନ୍ତି
କିଭଳି ପାଠ ।୪୭।

ଏଡ଼େ ଏଡ଼େ ବଡ଼
ଉପାଧିଧାରୀ
ପଇସା ଲୋଭକୁ
ମନ୍ ପାସୋରି ।୪୮।

ବାନ୍ଧିଛନ୍ତି ସେଠି
ମେଳ କାହିଁକି ?
ଚଳ ଅଫିସର
ଥିଲେ ଶୋଇକି ? ।୪୯

ଛାମୁରେ କାହିଁକି
ନ ଜଲେ ଜଣା ?'
ଜିଲପତି–ବୁଦ୍ଧି
ହୋଇଲ ବଣା ।୫୦।

ଦଳ ଦଳ ହୋଇ
ଗ୍ରେଗ ପୁଲିସି
ଅଜାଣତେ ଆମ
ଓଡ଼ିଶା ଆସି ।୫୧।

ଚିଜି ନିଖି ସବୁ
ନେଲେ ଖବର ;
'ପଞ୍ଚସଖା'ଙ୍କର
ନ ଥିଲ ଡର ।୫୨।

ଚିଥାରି ଥିଲେ ସେ
ଆଗରୁ ଛାଞ୍ଚ,
ପୂରଣ କରିଲେ
ମନର ପାଞ୍ଚ ।୫୩।

ବର୍ଦ୍ଧି ମରୁଡିରେ
ପିଲକୁ ନେଇ
ପୀଡ଼ିତ ଲୋକଙ୍କୁ
ସାହାଯ୍ୟ ଦେଇ ।୫୪।

ଗାଆଁ ଗଣ୍ଡା ଘର
ଛବି ଦେଖାଇ
ଲୋକଙ୍କ ଅବସ୍ଥା
ଦେଲେ ବୁଝାଇ ।୫୫।

ଶିକ୍ଷା ସଙ୍ଗେ ଗ୍ଧଟ
ଘେନିଲେ ଦୀକ୍ଷା,
ବୁଲି ଦେଶ ଲଗି
ମାଗିଲେ ଭିକ୍ଷା ।୫୬।

ଆଖିରେ ଦେଖିଲେ
ଲୋକରେ ପଡ଼ି
ଗ୍ରଷୀ କାରିଗର
ମରନ୍ତି ଗଡ଼ି ।୫୭।

ଶାସକ ଦଳର
ନାହିଁ ତ ଚିନ୍ତା
ସତକଥା ତାଙ୍କୁ
ଲଗଇ ପିତା ।୫୮।

ଦିନ ଦିପହରେ
ଗ୍ଲଲିଛି ଲୁଟି,
ଚୋରା ହାକିମଙ୍କ
ହାତରେ ଛୁଟି ।୫୯।

ବଢ଼ାଇବା ଲାଗି
ଦେହେ ଶକତି
ଫୁଟାଇବା ଲାଗି
ମନେ ଭକତି ।୬୦।
କେତେ ଜାତି ବହି
ପିଲଙ୍କ ପାଇଁ
ଲେଖି ଗୁରୁମାନେ
ଦେଲେ ଛପାଇ ।୬୧।
'ସତ୍ୟବାଦୀ' ନାମେ
ମାସିକ ପତ୍ର
ପଢ଼ି ଖୁସି ହେଲେ
ଦେଶର ଛାତ୍ର ।୬୨।
ଆମ ଭଲ-ମନ୍ଦ
କରି ପ୍ରଚାର
'ସମାଜ' କାଗଜ
ହେଲା ବାହାର ।୬୩।
ଗୁରୁ-ଶିଷ୍ୟଙ୍କର
ଏକ ହିଁ ଲକ୍ଷ୍ୟ-
ଦେଶରୁ କିପରି
ଘୁଞ୍ଚିବ ଦୁଃଖ ।୬୪।
ଟାଣ କଲେ ଆମ
ଜାତିର ଅଣ୍ଟା
ଦେଶୁ ହୁଗୁଳିବ
ବିଦେଶୀ କଣ୍ଟା ।୬୫।
ଖୁସିବାସୀ ହୋଇ
ରହିବେ ଲୋକେ,
ନ ପଡ଼ିବେ ଅନ୍ନ
ଉପାସ ଶୋକେ ।୬୬।
ଅକାଳ ମରଣ
ଦେଶରୁ ଯିବ,
ଆମ ଦେଶ ଟିଙ୍କ
ଦେଶେ ରହିବ ।୬୭।
ବିଦେଶୀ ଶାସନ
ନ ନେବ ଶୋଷି,
ଚାଷୀ କାରିଗର
ହୋଇବେ ପୋଷି ।୬୮।
ମନ ଦେଇ ଲୋକ
ଖୋଜଇ ଯାହା
'ଦିନେ ହେଲେ ତାକୁ
ମିଳଇ ତାହା' ।୬୯।
'ଭଗବତ'ର ଏ
ନିଗଢ଼ ବାଣୀ
ପହଞ୍ଚାଇ ଦେଇ
ଦରବ ଆଣି ।୭୦।
ଯୁଗ ଅବତାର
ମହାତ୍ମା ଗାନ୍ଧୀ
ସାରା ଭାରତକୁ
ପ୍ରୀତିରେ ବାନ୍ଧି ।୭୧।
ଅଣିବାକୁ ଆମ
ଦେଶର ଛବି
ବିଦେଶୀଙ୍କ ପାଖେ
କରିଲେ ଦାବୀ ।୭୨।
ତାଙ୍କ କଥା କିଛି
ନୋହିଲା ଶୁଣା,
ଗର୍ଜିଲେ ବିଦେଶୀ
ଉଠାଇ ଫଣା ।୭୩।
ତୋପ ବନ୍ଧୁକର
ଭୟ ଦେଖାଇ
ଭାବିଲେ ଲୋକଙ୍କୁ
ଦେବେ ଚପାଇ ।୭୪।

ଚିନ୍ତେ ହେଲେ ସେତେ
ନଗଲେ ଡରି,
ମରିବାପାଇଁକି
ହେଲେ ତିଆରି । ୭୫ ।

ଦୁନିଆ ଆଗରେ
କଲେ ଶପଥ-
'ସ୍ୱାଧୀନ କରିବୁଁ
ଆମେ ଭାରତ, । ୭୬ ।

ସ୍ୱାଧୀନତା ଯୁଦ୍ଧ
ଆରମ୍ଭ ହେଲା,
ଛବିଶ ବରଷ
କାଳ ଲାଗିଲା । ୭୭ ।

ଉଦ୍‌ଯୋଗ ପରବେ
'ଅସହଯୋଗ'
ଦେଲେ ଗୁରୁ-ଶିଷ୍ୟ
ତହିଁରେ ଯୋଗ । ୭୮ ।

ଲେଖି 'ନୀଳକଣ୍ଠ'
ଦେଲେ ଡାକର
ଚହଳ ପଡ଼ିଲା
ଓଡ଼ିଶା ସାର । ୭୯ ।

'ଜୀବନ ପଛକେ
ନ ଖାଉ ଯାଉ,
ଗୋଲମ ଖାନାରେ
ନରହ ଆଉ । ୮୦ ।

ସ୍ୱରାଜ ଆମର
ହେବ ମୁକଉ
ଗୋଲାମି କି ଛାଡ଼ି
କର ସମର । ୮୧ ।

ଗର୍ଜି ସରକାର
ଉଠିଲେ ଚିଡ଼ି,
ପିନ୍ଧାଇଲେ ତାଙ୍କୁ
ହାତରେ କଡ଼ି । ୮୨ ।

ଜେଲ, ଜୋରିମାନା,
ଲାଠି ପାହାର
ଭୋଗି ଜୀବନେ ସେ
ଥରକୁ ଥର । ୮୩ ।

ନ ଗଲେ ପଛକୁ
ଟିକେ ଲେଉଟି,
ଶେଷକୁ ବିଦେଶୀ
ଯୁଦ୍ଧରେ ହଟି । ୮୪ ।

ଆମ ଦେଶ ଚାବି
ଆମକୁ ଦେଇ
ଗଲେ ଏ ମାଟିରୁ
ବିଦାୟ ନେଇ । ୮୫ ।

ଆମ ସରକାର
ଗଢ଼ିଲେଁ ଆମେ
ଦରକାର ବେଳେ
ଲାଗଇ କାମେ । ୮୬ ।

ନୀ ଳ କ ଣ୍ଠ ଙ୍କ ର
ଯିବା ଖବର
ଶୁଣି ଆମ ରାଜ୍ୟ
ମନ୍ତ୍ରୀ ପ୍ରବର । ୮୭ ।

ଶେଷ ଦରଶନ
ପାଇବା ପାଇଁ
କାମଦାମ ଛାଡ଼ି
ଆସିଲେ ଧାଇଁ । ୮୮ ।

ଆଉ ଯେତେ ଥିଲେ
ସଚିବ କୁଳ
ଦରଶନ ଲାଗି
ହୋଇଲେ ଠୁଳ । ୮୯ ।

ରାଷ୍ଟ୍ରୀୟ ସମ୍ମାନ
ଦେବାପାଇଁ କି
ସଙ୍ଗେ ସଙ୍ଗେ ଦେଲେ
ଆଦେଶ ଲେଖି । ୯୦ ।
'ସୁଧୀ, ବାଚସ୍ପତି
କବି, ସୈନିକ,
ସ୍ୱାଧୀନତା ଯୁଦ୍ଧ
ସେନା ନାୟକ । ୯୧ ।
ପଦ୍ମଭୂଷଣ ସେ
ନୀଳକଣ୍ଠଙ୍କ
ଲିଭିଯାଇଅଛି
ଜୀବନ-ଦୀପ । ୯୨ ।
ତାଙ୍କ ଶେଷ କୃତ୍ୟ
କାମ ଦେଶର
ଯାହା ବିଧି ତାହା
କର ସତ୍ୱର । ୯୩ ।
ଜାତି ସରକାର
ଦେଲେ ଆହ୍ୱାନ,
ଘଡ଼ିକ ଭିତରେ
ଆସିଲା ଯାନ । ୯୪ ।
ନାନା ଜାତି ଫୁଲ-
ମାଳା ପିନ୍ଧାଇ
ଶବ ଶିବିକାରେ
ନେଲେ ଉଠାଇ । ୯୫ ।
ଶେଷ ଥରପାଇଁ
କରି ଦର୍ଶନ
ଲୁହ ଗଡ଼ାଇଲେ
ବନ୍ଧୁ ସ୍ୱଜନ । ୯୬
ଜାତି ସରକାର-
ଆଦେଶ ପାଇ
ଆସିଥିଲେ ଆଗୁଁ
ସୈନିକ ଭଇ । ୯୭ ।
ବନ୍ଧୁକ ମୁହଁକୁ
ତଳକୁ ଦେଇ
ଚାଲିଲେ ନୀରବେ
ପାଦ ମିଳେଇ । ୯୮ ।
ବିଷାଦ - ସ୍ୱରରେ
ବାଜିଲା ବାଜା,
ଏଭଳି ସମ୍ମାନ
ନ ପାଏ ରଜା । ୯୯ ।
ଗଡ଼ି ଗଡ଼ି ଚାଲେ
ମଟର ଚକ,
କହି କହି ଯାଏ-
ଦେଖରେ ଦେଖ । ୧୦୦ ।
ବିଚିତ୍ର ଅଟଇ
ବିଧି-ବିଧାନ,
ଅଘଟନ କଥା
କରେ ଘଟନ । ୧୦୧ ।
ହାତ କଡ଼ି ଦେଇ
ପୁଲିସି ଯାରେ
ନେଉଥିଲେ ଦିନେ
ଏଇ ବାଟରେ । ୧୦୨ ।
ପଳାଇବ ଦାଗୀ
ଆଶଙ୍କା କରି
ଚାରିପଟେ ତାର
ହୋଇ ପ୍ରହରୀ । ୧୦୩ ।
ଗର୍ବେ ଚାଲୁଥିଲେ
ବନ୍ଧୁକଧାରୀ,
ଶର୍ଙ୍କ ଯାଉଥିଲେ
ଦେଖଣାହାରି । ୧୦୪ ।

ସେହିମାନେ ଅଛି
ତାହାଙ୍କୁ ପୁଣି
ବଢ଼ାଇ ନିଅନ୍ତି
ଦେବତା ମଣି । ୧୦୫ ।
କଟକ ନଗର
ସଙ୍କେ ଘୂରି;
ଘୂରିଅଛୁ ଖବା-
ଅଞ୍ଜଳି ଧରି । ୧୦୬ ।
ଘୁଞ୍ଚିଗଲ ଯାନ
ଭୁବନେଶ୍ୱର;
ଶହ ଶହ ଲୋକ
ହୋଇ ଆତୁର । ୧୦୭ ।
ଦରଶନ କଲେ
ଜାତି-ନିର୍ବିଶି
ଜାତିପାଇଁ ପ୍ରାଣ
ଥିଲେ ଯେ ବିକି । ୧୦୮ ।
'ବିଧାନସଭା'ର
ତୁଙ୍ଗ ମନ୍ଦିର
ଉପରିରେ ଦେଇ
ନୁଆଁଇ ଶିର । ୧୦୯ ।
ବକୁଳ ବନକୁ
ଘୁଞ୍ଚିଲ ଯାନ,
ଯେଉଁ ବନ ଥିଲ
ସାଧନା-ସ୍ଥାନ । ୧୧୦ ।
ବୋହୂ, ଝିଅ, ବୁଢ଼ୀ
ଭେଣ୍ଡିଆ ବୁଢ଼ା
ହୋଇଥିଲେ ଅସି
ଆଗକୁ ଛିଡ଼ା । ୧୧୧ ।
ମୁଣ୍ଡଗୋଡ଼ ବିଶୁ-
ଥିଲ ତ ଖାଲି,
ଥାଳି ମାରିଦେଲେ
ଯାଆନ୍ତା ଚଳି । ୧୧୨ ।
'ରାମ ନାମ ସତ୍ୟ'
ଦୂରରୁ ଶୁଣି
ସହସ୍ର ଆଖିରୁ
ବୋହିଲ ପାଣି । ୧୧୩ ।
ଗାଆଁ ଘର ବନ
ଗଲ ଭାଙ୍ଗି,
ଶୋକିଲ ସବୁରି
ଦେହେ ବିଜୁଳି । ୧୧୪ ।
ସଜା ହୋଇଥିଲ
ଆଗରୁ ବେଦୀ
ଘଟିଲ ତହିଁ ଯା
ମରମଭେଦୀ । ୧୧୫ ।
ପଢ଼ି ଶୁଣ ମୁହିଁ
ବୁଝିଛି ଯାହା
ଏପରି ଖବର
କହିଲି ତାହା । ୧୧୬ ।
ସେପାରି ସମ୍ବାଦ
ଶୁଣ ଏଥର-
ନୀଳକଣ୍ଠଙ୍କର
ଯିବା ଖବର । ୧୧୭ ।
ପଡ଼ିଥିଲ ତହିଁ
ଆଗରୁ ଜଣା,
ହୋଇଥିଲ ବଡ଼
ଘଣ୍ଟାଏ ଟଣା । ୧୧୮ ।
ବସିବା ପାଇଁକି
ବନ୍ଧୁ ସ୍ୱଜନ
ସଜା ହୋଇଥିଲ
ଦିବ୍ୟ ଆସନ । ୧୧୯ ।

ଫାଟକରେ ଲେଖା
ଥିଲା 'ସ୍ୱାଗତ',
ଉଡୁଥିଲା ଜାତି–
ପତାକା ଶତ ।୧୨୦।

ଦଳ ଦଳ ହୋଇ
ସ୍ୱେଚ୍ଛାସେବକ
ଘୁଞ୍ଚି ବସିଥିଲେ
ବୀଣା ବାଦକ ।୧୨୧।

ଏପାରି ସଜାକୁ
ଶୋଭରେ ବଳି
ଉଡୁଥିଲା ଚନ୍ଦ୍ର–
ଉଡିଆ ଢଳି ।୧୨୨।

ନନ୍ଦନ କାନନୁ
କୁସୁମ ତୋଳି
ରଖିଥିଲେ ବାସ୍ନେ
ଚନ୍ଦନ ଗୋଳି ।୧୨୩।

ପହଞ୍ଚିଲା ଯାଇ
'କଣ୍ଠୁ'ଙ୍କ ରଥ,
ଆସି ଗୋପବନ୍ଧୁ
ଧରିଲେ ହାତ ।୧୨୪

ଗୋପ ଚଉଧୁରୀ
ଜନତା–ମିତ
ଉଗ୍ର ଲିଙ୍ଗରାଜ
ତାଙ୍କ ସହିତ ।୧୨୫।

ମଙ୍ଗରାଜ ଦେଲେ
ହାର ପିନ୍ଧାଇ,
କୃତଜ୍ଞ ଅର୍ପଣ
ନେଲେ ବନ୍ଧାଇ ।୧୨୬।

କବି ବାଞ୍ଛାନିଧି-
ଲଭିଲେ ଶାନ୍ତି
ଗାଇ ନିରଞ୍ଜନ
ହରିଲେ ଚିନ୍ତ ।୧୨୭।

କୃପାସିନ୍ଧୁ ସାଥେ
ଗୋଦାବରୀଶ
ପୁଛନ୍ତି ସଭିଏ
ହୋଇ ହରଷ ।୧୨୮।

ପୁଛିଛି 'କିପରି
ଶାସନ କଳ ?
କମିଛି ନା ବଢ଼ି-
ଯାଇଛି ଦଳ !' ।୧୨୯।

ପଢ଼ନ୍ତି ପିଲାଏ
କିଭଳି ପାଠ ?
ବଦଳି ଯିବଣି
ପଢ଼ାର ବାଟ ।୧୩୦।

ନିଶା କାରବାର
ଯିବଣି କମି,
ପଡ଼ିଆ ନଥିବ
ବିଶ୍ୱାଏ ଜମି ।୧୩୧।

ଛୁଆଁଛୁତ ଭେଦ
ନଥିବ ଆଉ !
ହଟିବ ଯିବଣି
ରୋଗର ଦାଉ ।୧୩୨।

ବହୁ ଶସ୍ୟ ପାଇ–
ଥିବେ କୃଷକ,
କାରିଗରଙ୍କର
ନଥିବ ଦୁଃଖ ।୧୩୩

ବିନୋବାଙ୍କ କାମ
ନଥିବ ବାକି,
ଆଉ ଦେଶ ଲୋକେ
ନେବେଣି ଜାଗି ।୧୩୪।

ନ ଥିବେ କେହି ତ
ଶୋଷଣହାରୀ,
ବର୍ଦ୍ଧିଥିବେ ଦେଶ-
ପୋଷଣହାରି ।୧୩୫।

ପାଳୁ ଥିବେ ଲୋକେ
ଗାନ୍ଧିଙ୍କ ନୀତି,
ଯେ ନୀତିରେ ନେଲେ
ଦେଶକୁ ଜିତି !' ।୧୩୬।

ତହୁଁ ନୀଳକଣ୍ଠ
ଈଷତ ହସି
ଡେଜି ଦୀର୍ଘଶ୍ୱାସ
କହିଲେ ବସି- ।୧୩୭।

"ପଗ୍ଭରିଲ ଯାହା
କହିବି ପରେ,
ଟିପିରଖିଛି ମୁଁ
ପ୍ରାଣ ଭିତରେ ।୧୩୮।

ଆଣିଛି ଗୋଟାଏ
ବଡ଼ ବାରତା
ହରି ଭଇନାଙ୍କ
ମନର କଥା- ।୧୩୯।

ନ କରିବ ତାକୁ
କେବେ ଅଲଗା,
ତମ ପାଖେ ଖଣ୍ଡେ
ରଖିବ ଜାଗା "।୧୪୦।

# ଅନୁଗ୍ରହ କରି ଥରେ ପଢ଼ନ୍ତୁ

ସ୍ୱାଧୀନତା–ପୂର୍ବ ଛବିଶ ବର୍ଷ କାଳ ଲଗିଲ–ଏକୋଇଶ ମସିହାରୁ ସତଚାଳିଶ ଯାଏ । ଏ ଦୀର୍ଘକାଳ ମଧ୍ୟରେ ଜନତାଙ୍କ ପ୍ରାଣରେ ଉନ୍ମାଦନା ଆଣିବା ଲଗି ତଥା ମୁକ୍ତି ଯୁଦ୍ଧର ସୈନିକମାନଙ୍କୁ ଉତ୍ସାହ ଦେବା ସକାଶେ ଯେଉଁ ସାହିତ୍ୟର ସୃଷ୍ଟି ହୋଇଥିଲା, ତାକୁ ଲୋକଲୋଚନକୁ ଆଣିବାନିମନ୍ତେ ଆମ୍ଭେମାନେ ଉଦ୍ୟମ କରୁଛୁ । ଅହିଂସା ନୀତିକୁ ଭିତ୍ତିକରି ଯେଉଁସବୁ କବିତା, ସଙ୍ଗୀତ ପ୍ରଭୃତି ପ୍ରକାଶିତ ହୋଇ ବ୍ରିଟିଶ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା ଏବଂ ଯେଉଁସବୁ ଅପ୍ରକାଶିତ ଲେଖା ସୈନ୍ୟବାହିନୀ ମୌଖିକ ପ୍ରଚାର କରୁଥିଲେ, ସେଗୁଡ଼ିକ ସଂଗ୍ରହ କରୁଛୁ ।

ସ୍ୱାଧୀନତା–ସମରର ପ୍ରଥମ ରାଜଦ୍ରୋହ କବିତା ସ୍ତବକ 'ମୋହନ ବଂଶୀ' ବହି ଖଣ୍ଡି ପ୍ରକାଶିତ ହୋଇଥିଲା ୪୬ ବର୍ଷ ତଳେ । ସେ ଯୁଗର ଅପ୍ରତିଦ୍ୱନ୍ଦୀ ନେତା, ବିହାର–ଓଡ଼ିଶାର ମନ୍ତ୍ରୀ ୯ ମଧୁସୂଦନଙ୍କ କର କମଳରେ ଅର୍ପିତ ସେହି ପୁସ୍ତକରେ ଯେଉଁ ଦୀର୍ଘ ଉତ୍ସର୍ଗପତ୍ର ଲେଖା ହୋଇଛି, ତାହା ବାସ୍ତବରେ ପଠନୋପଯୋଗୀ । ଦିନେ ସେହି ମୋହନ ବଂଶୀର ସ୍ୱନ ସମଗ୍ର ଉତ୍କଳବାସୀ ତଥା ଉତ୍କଳଭାଷୀଙ୍କ ମନରେ ଜାତୀୟ ବିପ୍ଳବର ଉନ୍ମାଦନା ଆଣି ବିଦେଶୀ ଶାସନର ନଗ୍ନ ଚିତ୍ର ପୃଥିବୀର ଆଖି ଆଗରେ ଆଙ୍କି ଦେଇଥିଲା ।

ସ୍ୱାଧୀନତା ସଂଗ୍ରାମର ସୈନିକ ବିପ୍ଳବୀ ବୀରକିଶୋରଙ୍କର ଅନୁମତି ନେଇ 'ମୋହନ ବଂଶୀ' ପୁସ୍ତିକା ଖଣ୍ଡି ପ୍ରକାଶ କରୁଛୁ ।

ପ୍ରକାଶକ

## ନିଜ କଥା

ମନୁଷ୍ୟର ଚେଷ୍ଟା ଥିଲେ ଅନ୍ତରର ବାସନା ଦିନେ ନା ଦିନେ ଆତ୍ମପ୍ରକାଶ କରେ ଏଥିରେ ସନ୍ଦେହ ନାହିଁ ।

ଛାତ୍ର ସମୟରେ ଲେଖିଥିବା କେତେକ କବିତା ଓ ଖଡ଼ିଆଳ ଗଡ଼ଜାତ ପ୍ରଜାମଣ୍ଡଳ ସମୟରେ ଲିଖିତ ଖଡ଼ିଆଳ ସାହିତ୍ୟ ସମିତିରେ ପଠିତ ଓ ପୁରସ୍କୃତ କବିତାଗୁଡ଼ିକର ସମ୍ମିଶ୍ରଣରେ ଏହି କବିତା ଲତାଟି ଆତ୍ମପ୍ରକାଶ କରିଅଛି । ପାଠକବର୍ଗ ଏଥିରୁ ସାମାନ୍ୟ ଆନନ୍ଦ ଅନୁଭବ କରିପାରିଲେ ଶ୍ରମ ସାର୍ଥକ ମନେ କରିବି ।

ଶ୍ରୀଯୁକ୍ତ ସୁଧାଂଶୁ ଶେଖର ରାୟ, ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, ଆଉ ଯେଉଁ ସହୃଦୟ ବନ୍ଧୁମାନେ ମୋତେ ଏ ଦିଗରେ ସାହାଯ୍ୟ କରିଅଛନ୍ତି ସେମାନଙ୍କ ନିକଟରେ ମୁଁ ଆଜୀବନ ଋଣୀ ରହିଲି ।

। ଇତି ।

ଅକ୍ଷୟ ତୃତୀୟା
୧୯୮୫

ବିନୀତ
ଲେଖକ

---

# ସମର ଯୁଗର ଅମର ସଂଗୀତ
## ଉତ୍ସର୍ଗ ପତ୍ର

ମୁଁ କବିତାକୁ ଭଲପାଏ । କବିତା ମତେ ଭଲପାଏ । ଋଷ୍ୟଶୃଙ୍ଗ ମୁନିଙ୍କୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତା ମତେ ଭୁଲାଇ ଆଣିଥିଲା । ମୁଁ ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତାର ପବିତ୍ର ବହ୍ନିରେ ଝାସ ଦେଇଥିଲି । ଏଇ କବିତା ଲାଗି ଥରକୁ ଥର ଜେଲ ଗଲି । ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସଂପର୍କ ତାହା ତୁଟିଲା ନାହିଁ ବରଂ ଅଧିକ ଶକ୍ତ ହୋଇଛି । ଏବେ ପଚିଶ ବର୍ଷପରେ ସ୍ୱାଧୀନତାର ରୌପ୍ୟ ଜୟନ୍ତୀ ।

ଆମ ସ୍ୱାଧୀନତା ସଂଗ୍ରାମର ବିରାଟ ଇତିହାସକୁ ଟିକେ ଟିକେ କବିତାରେ ଫୁଟାଇ ଛୋଟ ବହିଟିଏ ଲେଖିବାକୁ ବହୁ ଦିନରୁ ଇଚ୍ଛା ଥିଲା । ସେ ଇଚ୍ଛା ଏବେ ପୂରଣ ହୋଇଛି । ଯେଉଁମାନେ ସ୍ୱାଧୀନତା ଯୁଦ୍ଧରେ ଲଢ଼ୁ ଲଢ଼ୁ ସମର ଭୂମିରେ ଟଳି ପଡ଼ିଛନ୍ତି ଏବଂ ଜେଲରେ ସଢ଼ି ସଢ଼ି କଠୋର ଦୁଃଖ ଭୋଗିଛନ୍ତି, ସେମାନଙ୍କ ପୂଜା-ବେଦୀରେ ମୋର ଏହି ବହିଟି ଗୋଟିଏ ଛୋଟ ଫୁଲ ପାଖଡ଼ା ହେଉ ।

'ମୋ ଦେଶ' ପ୍ରକାଶନୀ ଏହାକୁ ଛପାଇଥିବାରୁ ତାଙ୍କୁ ମୋର ଆଶୀର୍ବାଦ ।

ବୀର କିଶୋର ଦାସ

ପତାକା ତୋ କଥା କହୁଛି ମୁଁ ବସି
ଭବନାରେ ହୃଦ ଉଠଇ ଉଲ୍ଲସି ।୧।

ଆସିବେ ସୁରୁଯ କେତେବେଳେ ଉଠି
ହସିବ ସଗରେ ମୋ ଜନମ ଭୁଇଁ ।୨।

କନକ କିରଣ ପଡ଼ିବ ଉଛୁଳି
ଖେଳିବ ମୋ ଅଙ୍ଗେ ଅଲିଙ୍ଗ ବିଜୁଳି ।୩।

ମୋ ଘର ଭଉଣୀ ସାଥେ ଗୀତ ଗାଇ
ନେବିରେ ପତାକା ତୋତେ ମୁଁ ବନ୍ଦାଇ ।୪।

ସାଲ ସତାବନ ଅଗଷ୍ଟ ପନ୍ଦର
ପଡ଼ିବନି ଆଉ ଜୀବନେ ମୋହର ।୫।

ମିଳିବ କି ଆଉ ଏ ଭଳି ସୁଯୋଗ
ଲିଭା ବିଲିଭା ମୁଁ କରି ଉପଭୋଗ ।୬।

ତୋହ ସଙ୍ଗେ ସଖା ହେବି କଥା ଭଷା
ମେଣ୍ଟାଇବି ମୋର ପ୍ରାଣର ପିପାସା ।୭।

ଶହେ ବରଷର ଜାତି ଇତିହାସ
କହି ପାରିବି କି ଭଷାରେ ପ୍ରକାଶ ।୮।

ଗଣିବ କିଏ ସେ ଆକାଶର ତାରା
ହାତରେ ମାପିବ ସସାଗର ଧରା ।୯।

ପଢ଼ିଛି, ଶୁଣିଛି ଗୁଣିଛି ମୁଁ ଯାହା
ଠିକେ ଠିକେ ବନ୍ଧୁ କହିବି ମୁଁ ତାହା ।୧୦।

ଜଳପଥ ଯହୁଁ ହେଇ ଆବିଷ୍କାର
ଚଳାଇବା ଲଗି ଏ ଦେଶେ ବେପାର ।୧୧।

ବଳାଇଲେ ମତି ସୁଦୂର ବିଦେଶୀ
ୟୁରୋପ ଖଣ୍ଡରୁ ପ୍ରବେଶିଲେ ବେଶୀ ।୧୨।

ଦେଖିଲେ ଭରତ ସରଗଠୁଁ ବଳି
ଭୂ-ମଣ୍ଡଳେ ଦେଶ ନାହିଁ ତ ଏ ଭଳି ।୧୩।

ପ୍ରତି ଧୂଳିକଣା ଏହାର ଦାମିକା
ଏ ରାଇଜ ଲୋକେ ବୁଦ୍ଧିଆ କାମିକା ।୧୪।

ପ୍ରଜାଏ ଅଟନ୍ତି ସରଳ ବିଶ୍ୱାସୀ
ଜାତି ମେରୁଦଣ୍ଡ କାରିଗର, ଚାଷୀ ।୧୫।

ରଜା ମହାରଜ ମନ୍ତ୍ରୀ କଟୁଆଳ
ଅଳସେ ବିଳାସେ ସଦା ମତୁଆଳ ।୧୬।

ଅଖଣ୍ଡ ଭାରତ ସବୁ ଖଣ୍ଡ ଖଣ୍ଡ
ନାହିଁ ତ ଜଣଙ୍କ ହାତେ ରାଜଦଣ୍ଡ ।୧୭।

ରଜା ରଜଡ଼ାଙ୍କ ହୋଇ କୃପା-ପାତ୍ର
ଦିଲ୍ଲୀରେ ସମ୍ରାଟ୍ ଗାଦି ନାମ ମାତ୍ର ।୧୮।

ପାଇ ବିଦେଶୀଏ ଏ ଭଳି ସୁଯୋଗ
ରାଜ୍ୟ ଲଭ ପାଇଁ କଲେ, ତ ଉଯୋଗ ।୧୯।

ଯେତେ ଆସିଥିଲେ ବାହାରୁ ବଣିକ
ଟପିଲେ ସଭିଙ୍କି ଶ୍ୱେତ ଦ୍ୱୀପ ଲୋକ ।୨୦।

ବିଲାତ ବଣିକେ କଲେ କରଗତ
ବଳ କଉଶଳେ ମୋ ସୁନା ଭାରତ ।୨୧।

ବହୁ ଲଭ ପାଇ ବଢ଼ିଗଲା ଲୋଭ
ନ ରଖି ପାରିଲେ ମନେ ନ୍ୟାୟ ଭାବ ।୨୨।

ମଦମତ୍ତ ହୋଇ ନିଜର ବେପାର
ଚଳାଇବା ଲଗି କଲେ ଅତ୍ୟାଚାର ।୨୩।

ନିଜ ଦେଶୁ ଆଣି ଧର୍ମ ପ୍ରଚାରକ
ସ୍ୱଧର୍ମେ ଦୀକ୍ଷିତ କଲେ ବହୁ ଲୋକ ।୨୪।

ଆମ ଦରିଆକୁ ଆଇନରେ ରୋକି
ତାଙ୍କ ଲୁଣ ଆଣି ଲଭ କଲେ ବିକି ।୨୫।

କଥାରେ ତାଙ୍କର ନ ପଡ଼ିଲେ ଯିଏ
ବୃତ୍ତି ଜାଯଗିରି ହରାଇଲେ ସିଏ ।୨୬।

ଆମ ଲୁଗା ବୁଣା କରିବାକୁ ମାଟି
ତନ୍ତୀଙ୍କ ଆଙ୍ଗୁଠି ପକାଇଲେ କାଟି ।୨୭।

ଅପୁତ୍ରିକ ହେଲେ ଯେତେ ରାଜରାଣୀ
ତାଙ୍କ ରାଇଜକୁ ଦଖଲକୁ ଆଣି ।୨୮।

ଦେଲେ ଏ ଭାରତେ ପକାଇ ଚହଳ
ଉଡ଼ିଲେ ଧୋବଲି- ପଙ୍ଗପାଳ ଦଳ ।୨୯।

ଦିଲ୍ଲୀ ସମ୍ରାଟଙ୍କୁ କଲେ ଦ୍ୱୀପାନ୍ତର
ଗୁଳି ଲୋଟେମାରି ତାଙ୍କର କୁମର ।୩୦।

କାରାଗାରରୁ ହୀରା ସବୁ କଲେ ଲୁଟି
ପଡ଼ିଲ ପଦାରେ ତାଙ୍କ ଗୁଣ ଫୁଟି । ୩୧ ।
ମୋଗଲ, ମରାଠ ରାଜପୁତ ସୈନ୍ୟ
ଦେଖି ସବୁ କଥା ହେଲେ ମହାକ୍ଷୁଣ୍ଣ । ୩୨ ।
ତାନ୍ତିଆ ଟୋପିଙ୍କ ଛାତିର ରକତ
ତାତିଲ, ଉଠିଲେ ମାଟି ଦେଶ ଭକ୍ତ । ୩୩ ।
କଲମ ଛାଡ଼ି ସେ ଧରିଲେ ବଲମ
ସହି ନ ପାରିଲେ ଜାତୀୟ ସରମ । ୩୪ ।
ସେନାପତି ହୋଇ ଖେଳିଲେ ସମର
ବଣିକ ଶାସନ ହେଲ ଥରହର । ୩୫ ।
ତାନ୍ତିଆଙ୍କ ଯଶ ବିକ୍ରମ ସାହସ
ବିଦେଶୀଙ୍କି ସ୍ତବ୍ଧ କରିଥିଲ ବଶ । ୩୬ ।
ବନ୍ଦୀ ହୋଇ ବୀର ଇଙ୍ଗି ସତ୍ୟ କଥା
ନୁଆଁଇଲେ ନାହି ଶତ୍ରୁ ପାଶେ ମଥା । ୩୭ ।
ଶ୍ୱେତାଙ୍ଗ ମହିଳା ଦଳେ ଦଳେ ଆସି
ତାନ୍ତିଆ ଟୋପିଙ୍କି ଦିଅ ନାହିଁ ଫାଶୀ । ୩୮ ।
କଲେ ଆବେଦନ କରି ଅନୁନୟ
ତଥାପି ଟଳିଲ ନାହିଁ କା' ହୃଦୟ । ୩୯ ।
ଫାଶି ଗୟ ଦେଲେ ଅ-ବିଗ୍ନର ପତି
ବଣିକ ଶାସନ ମନ ହେଲ ଶାନ୍ତି । ୪୦ ।
ବିପ୍ଳବ ଯୁବକ ଯୁବତୀର ଧର୍ମ
ଶୃଙ୍ଖଳ ଚୂରିବା ଯୌବନର କର୍ମ । ୪୧ ।
ନିଜ ଧର୍ମ ପାଳି ରାଣୀ ଲକ୍ଷ୍ମୀବାଈ
ବିଦ୍ରୋହ ପତାକା ଗଗନେ ଉଡ଼ାଇ । ୪୨ ।
ଗବିଲେ ଉହଲେ ଛନ୍ତି ମହାବୀର
ଏକାଧାରେ ଧୀର ପାଇକ ପ୍ରବର । ୪୩ ।
ଭେଟିବାକୁ ତାଙ୍କୁ ପଠାଇ ଖବର
ସମର ଲୁଗିକି ହେଲେ ଆଗଭର । ୪୪ ।
ଜାଣିଥିଲେ ରାଣୀ ଇଂରେଜର କଳା
ଭୀରୁ ନୁହଁନ୍ତି ଏ ଇଂରେଜର ବଳା । ୪୫ ।

ଭାରତ ବିଜୟୀ ଇଂରେଜର ଥାଟ
ବୀର ଝାରବେଳେ ଉଲ୍ଲଟ ସମ୍ରାଟ । ୪୬ ।
ପଢ଼ିଲେ ଇଢ଼ିଲେ ଓଡ଼ିଆ ପାଇକ
ବଳିଦେଲେ ବେକ ନ ଦେଲେ ବିବେକ । ୪୭ ।
ସ୍ୱାଧୀନତା ଲାଗି କଲେ ସେ ସମର
ଯୁଗେ ଯୁଗେ ହେଲେ ପୃଥ୍ୱୀରେ ଅମର । ୪୮ ।
ବକ୍‌ସି ଜଗବନ୍ଧୁ ବୀର ବିଦ୍ୟାଧର
ବିଲାତ ବାସୀଙ୍କି କଲେ ଥରହର । ୪୯ ।
ସେ ଭକ୍ତଙ୍କ ସ୍ମୃତ ଚନ୍ଦନ ହଜୁରୀ
ଜନମ ଭୂଇଁର ଦୁର୍ଦ୍ଦଶା ସୁମରି । ୫୦ ।
ଝାନ୍‌ସୀ ରାଣୀଙ୍କି ହେଲେ ଯାଇ ସହା
ବୁଦ୍ଧି ବଳ ଦେଇ ଦେଖାଇଲେ ରାହା । ୫୧ ।
ସେନାପତି ହୋଇ କଲେ ମହାଯୁଦ୍ଧ
ଯୁଦ୍ଧ ଦେଖି ଥରି ଉଠିଲେ ବିବୁଧ । ୫୨ ।
କଲେ ନାହିଁ ସନ୍ଧି ହେଲେ ନାହିଁ ବନ୍ଦୀ
ବେପାରୀଙ୍କ ଜାଲେ ନିଜକୁ ନ ଛନ୍ଦି । ୫୩ ।
ସନ୍ମୁଖ ସମରେ ପ୍ରାଣ ଦେଲ ଢ଼ାଳି
ରାଣୀ ଲକ୍ଷ୍ମୀବାଈ ପଡ଼ିଲେ ତ ଟଳି । ୫୪ ।
ଅମର କୁମର ସିଂହ ଆଦି ଯେତେ
ନାନା ସାହେବଙ୍କ ଫଉଜ ସହିତେ । ୫୫ ।
ହାରି ଇଢ଼େଇରେ ଭିନ୍ନ ଭିନ୍ନ ପ୍ରାନ୍ତେ
ଛିନ୍ନ ଭିନ୍ନ ହୋଇ ପଡ଼ିଲେ ସମସ୍ତେ । ୫୬ ।
ବିଦ୍ରୋହ ଅନଳ ରାଗ ସିନା ଲିଭି
ସହଜେ ଉହଳୁ ନ ଲିଭିଲ ଛବି । ୫୭ ।
ଭୁଲି ସ୍ୱାଧୀନତା ଓଡ଼ିଆ ରକତ
ନୋହିଲ ବିଦେଶୀ ଫିରିଙ୍ଗୀ ଭକତ । ୫୮ ।
ହୀରଖଣ୍ଡ ହୀରା ସୁରେନ୍ଦ୍ର ସାଏ
ଶାସିଲେ ଗଳଜ ବହୁ କାଳ ଯାଏ । ୫୯ ।
ଆଦିବାସୀ ଦଳେ ସିପାହୀ ସଜାଇ
ବିଦେଶୀଙ୍କ ବୁଦ୍ଧି ଦେଲେ ତ ହଜାଇ । ୬୦

ଗୋରା କମ୍ପାନୀଙ୍କ ବୁଦ୍ଧି ହେଲା ବଣା
ଶିଖିଲେ ଗ୍ରେବାର ଏଠି ଲୁହା ଚଣା ।୬୧।
ଶେଷରେ ସୁରେନ୍ଦ୍ର ବରିନେଲେ ଫାଶୀ
ସେ ଦିନୁ ଉତ୍କଳ ମାଆ ହେଲା ସିନା ଦାସୀ ।୬୨।
ଉଡ଼ିଲା କମ୍ପାନୀ ବିଜୟ ପତାକା
ବାଜିଲା ଚୌଦିଗେ ତାଙ୍କ ଜୟ ଢକା ।୬୩।
ଉନ୍ନତ ସଜ୍ଜିତ ଗୋରା ସୈନ୍ୟ ଦଳ
ଘେରିଗଲେ ଆସି ଦେଶ ଜଳ, ସ୍ଥଳ ।୬୪।
ଦଶ ଗୁଣ କରି ନେଲେ ପ୍ରତିଶୋଧ
ଭାରତେ ବହିଲା ରକ୍ତ ନଦୀ ନଦ ।୬୫।
ବେପାର ବଣିଜ ଦବି ଯିବା ଦେଖି
ବଣିକ ଦଳଙ୍କ ମନ ଗଲା ଶୁଖି ।୬୬।
ସୁଚତୁର ତାଙ୍କ ଦେଶ ମନ୍ତ୍ରୀ ଦଳ
ଆମ ମନ ଭାବ କରି ଅଟକଳ ।୬୭।
କମ୍ପାନୀ ହାତରୁ ଭାରତ ଶାସନ
କାଢ଼ି ନେଇ ଦେଲେ ସ୍ୱରୂପ ନୂତନ ।୬୮।
ଭାରତ ବାସୀଙ୍କି ମନଭୁଲା ବାଣୀ
ଘୋଷି ଶୁଣାଇଲେ ତାଙ୍କ ମହାରାଣୀ ।୬୯।
ସିପାହୀ ବିଦ୍ରୋହ ରଙ୍ଗା ମେଘ ତଳେ
ଆମ ଭାଗ୍ୟ ରବି ବୁଡ଼ି ଗଲେ ହେଲେ ।୭୦।
ଦାରୁଣ ଦୁଃଖରେ ଆଖି କରି ନାଲି
ଭାଗ୍ୟ ରବି ଗଲେ ପଶ୍ଚିମକୁ ଚାଲି ।୭୧।
ଯାଉଁବେଳେ ଗଲେ କହି ସେ ଏତିକି
"ଭୁଲି ନ ପାରିବି ତୁମ ଏ ପୃଥୀକି ।୭୨।
ସତୁରି ବରଷ ପରେ ଦେବି ଦେଖା
ପଞ୍ଚ ନଦୀ କୂଳେ ମୋ କିରଣ ରେଖା ।୭୩।
ଫୁଟିବ, ପଡ଼ିବ ... ଆଲୋକ
ଚମକି ପଡ଼ିବେ ସାରା ବିଶ୍ୱ ଲୋକ ।୭୪।
କଥା କହୁଁ କହୁଁ ଘୋଟିଲା ଅନ୍ଧାର
ଭଣ୍ଡୁଳି ପଡ଼ିଲା ନୀଳ ପାରାବାର ।୭୫।

ହିମଗିରି ସରି ଉଠିଲା ଲହରୀ
ସିପାହୀ ବିଦ୍ରୋହ ଗଲା ଏଠୁଁ ସରି ।୭୬।

× × × × × × × ×

ଆମ ସ୍ୱାଧୀନତା ଗଲା ଯହୁଁ ଚାଲି
ଦେଶ ମାନଚିତ୍ର ପଡ଼ିଗଲା ନାଲି ।୭୭।
ସିଂହ ରଣଜିତ ବାଣୀ ଭବିଷ୍ୟତ
ଅକ୍ଷରେ ଅକ୍ଷରେ ହେଲା ସବୁ ସତ ।୭୮।
ଭାରତର ନାଆଁ ବ୍ରିଟିଶ୍ ଭାରତ
ହେଲା ପ୍ରଚାରିତ, ଜାଣିଲେ ଜଗତ ।୭୯।
ବ୍ରିଟିଶ ଦ୍ୱୀପର ଯେତେ ନାରୀ ନର
ଏବେ ଧରଣୀର ହେଲେ ଅଧୀଶ୍ୱର ।୮୦।
ବିଲାତ ବାସୀଏ ଆସି ଦଳେ ଦଳେ
ଚଳିଲେ ଶାସନ ବଳ କଉଶଳେ ।୮୧।
ଲାଟପତି ଠାରୁ ଦିଲ୍ଲୀପତି ଯାକେ
ନିଯୋଜିଲେ ବାଛି ବାଛି ନିଜ ଲୋକେ ।୮୨।
ବଦଳାଇ ଦେଇ ମୋ ଦେଶର ବେଶ
ଭେଦ ନୀତି ବଳେ ଶାସିଲେ ଏ ଦେଶ ।୮୩।
ଇସ୍କୁଲ କଚେରୀ ଥାନା ମାଳମାଳ
ଖୋଲି ମେଲି ଦେଲେ ବେପାର ଜାଲ ।୮୪।
ଶିକ୍ଷା ବିଭାଗକୁ ଭିକ୍ଷା ବିଭାଗରେ
ପରିଣତ କଲେ ଅତି ଆନନ୍ଦରେ ।୮୫।
କୋଟି କୋଟି ଲୋକ ହେଲେ ନିରକ୍ଷର
ଗୁରୁମନ୍ତ୍ର ହେଲା ଇଂରେଜୀ ଆମର ।୮୬।
ଇଂରେଜୀ ଦୀକ୍ଷିତ ଇଂରେଜୀ ଶିକ୍ଷିତ
ସମାଜରେ ସଦା ହେଲେ ସମ୍ମାନିତ ।୮୭।
ଆମ ଦେବ ଭାଷା ଅମର ସଂସ୍କୃତ
ଯୁଗ ପାଠୁଆଙ୍କ ପାଖେ ହେଲା ମୃତ ।୮୮।
ମାତୃଭାଷା ସବୁ ପଡ଼ିଲା ମଉଳି
ଆମ ଜାତି ଆଶା ସବୁ ହେଲା ଧୂଳି ।୮୯।
କୋରାନ, ପୁରାଣ, ଗୀତା, ଭାଗବତ
ଗପ ବହି ବୋଲି ହେଲା ଅନାଦୃତ ।୯୦।

ନୀତି ଶିକ୍ଷା ଲାଗି ଇଷପ କାହାଣୀ
ଘୋଷି ଦିନ ରାତି ରକ୍ତ କଲୁ ପାଣି । ୯୧ ।
ମାତାଠାରୁ ପରା ମାତୃଭାଷା ବଡ଼
ଭୁଲଇ ତାକୁ ଯେ ଜଡ଼ରୁ ସେ ଜଡ଼ । ୯୨ ।
ଇଷ୍ଟଦେବୀ ମାତୃ- ଭାଷା, ମାତୃ ଜାତି
ତାଙ୍କ ହତାଦରେ ଦେଶ ଆତ୍ମଘାତୀ । ୯୩ ।
ଶତ୍ରୁ ଆସ୍ତ୍ର ପଛେ ଜିଭ ଦିଅ କାଟି
ମାତୃ ଭାଷା ତାର କର ନାହିଁ ମାଟି । ୯୪ ।
ପଶୁ ପକ୍ଷୀଙ୍କର ଅଛି ନିଜ ଭାଷା
ଭାଷା ହିଁ ଫୁଟାଏ ଜୀବନର ଆଶା । ୯୫ ।

++ ++ ++

ନିଜ ଭାଷା କଥା କହିବି ମୁଁ କିସ
ଭାବିଲେ ଅତୀତ ଘାରେ ମୋତେ ବିଷ । ୯୬ ।
ଜୀବନ୍ୟାସ ମନ୍ତ୍ର ଯାହାଠାରୁ ପାଇ
ମନ ବୀଣା ଖଣ୍ଡି ଶିଖିଲି ବଜାଇ । ୯୭ ।
ଯା ପ୍ରେମେ ଚିଲିକା ହୋଇ ବିମୋହିତ
ଅବିରତ ଗାଏ ଅମୀୟ ସଙ୍ଗୀତ । ୯୮ ।
ବେଳି ହେବା ଲାଗି ଯା' ଚରଣ ଧୂଳି
ପଡ଼େ ମହାସିନ୍ଧୁ ଭକ୍ତିରେ ଉଛୁଳି । ୯୯ ।
କେତେ ଗିରି ନଦୀ ଗହନ କାନନ
ଛବି ଦେଖି ଯାର ଧ୍ୟାନ ନିମଗନ । ୧୦୦ ।
ଦି କୋଟି ମାନ ଗିରିକୋଟି ହାତେ
ପୂଜୁଛନ୍ତି ଯାକୁ ନିତି ସନ୍ଧ୍ୟା, ପ୍ରାତେ । ୧୦୧ ।
ସେ ଉତ୍କଳ ଭାଷୀ କବି ପ୍ରେମୀଙ୍କର
ହୋଇ ନ ପାରିଲି ଚରଣ କିଙ୍କର । ୧୦୨ ।
ତାଙ୍କ ମନ କଥା ନ ପାରିଲି ବୁଝି
ଜାତୀୟ ଋଣ ମୁଁ ନ ପାରିଲି ସୁଝି । ୧୦୩ ।
ଶଶୀ ସାଥେ ଯେହ୍ନେ ଜଡ଼ିତ ସବିତା
ଛବି ସାଥେ ଯଥା କବିର କବିତା । ୧୦୪ ।
ଫୁଲ ସାଥେ ଯଥା ଫୁଲର ସୁଗନ୍ଧ
ଜୀବ ସାଥେ ଯଥା ଶରୀର ସମ୍ବନ୍ଧ । ୧୦୫ ।
ପ୍ରଜା କର ତଥା ଦେଶ ରାଜନୀତି
ଦୁଃଖ ସୁଖ ଧର୍ମ କର୍ମ ମୂଳ ଭିତ୍ତି । ୧୦୬ ।
ସେହି ରାଜନୀତି ମୋତେ ଦେଲା ସାରି
ଆଶା ଲତିକାକୁ ମୂଳୁ ଦେଇ ମାରି । ୧୦୭ ।
ଅର୍ଥାଭାବ ଦୁଃଖ ସବୁ ଦୁଃଖୁ ବଡ଼
ମଉଳାଇ ଦିଏ ପ୍ରତିଭାର ଜଡ଼ । ୧୦୮ ।
ରୁଚି ଅନୁକୂଳ ନ କରେ ଯେ କାମ
ଭାଗ୍ୟ ଦେବୀ ହୋନ୍ତି ତାହା ଭାଗ୍ୟେ ବାମ । ୧୦୯ ।
ବିଶ୍ୱ ବିଦ୍ୟାଳୟ କୈଳାସ କନ୍ଦରୁ
ବାଇ ବାହାରିଲେ ସ୍ୱାର୍ଥର ଡମରୁ । ୧୧୦ ।
ଶୋଷଣ ବଳରେ ହେବାପାଇଁ ଅଣ୍ଡା
ସାଜିଲି ଗୋଟିଏ କ୍ଷୁଦ୍ର ପେଚକଣ୍ଠା । ୧୧୧ ।
ଝିଙ୍କିକାକୁ ମାରି ପୋଷିବାକୁ ବଣି
ଗରିବଙ୍କୁ ଶୋଷି ତୋଷିବାକୁ ଧନୀ । ୧୧୨ ।
ମର୍ତ୍ତ୍ୟେ ହେଲି ମୁହିଁ ବାବୁ ଅବତାର
ଗଳାରେ ଲମ୍ବାଇ ଦାସତ୍ୱର ହାର । ୧୧୩ ।
ବ୍ରିଟିଶ୍ ପତାକା ହାତରେ ଉଡ଼ାଇ
ଅଜାତୁକେ ମୁହେଁ କଲି ମୁଁ ବଡ଼ାଇ । ୧୧୪ ।
ଦେଖିଲି ଜାଗ୍ରତ ସୁନେଲି ସପନ
ବିଗତ ଆମର ନନ୍ଦନ କାନନ । ୧୧୫ ।
ବିଗତ ମାଟିକି ଆସନ୍ତି ଯେ ଛୁଇଁ
ମୂର୍ଖ ଦ,ତା ବୋଲି ଭାବେ ତାଙ୍କୁ ମୁହିଁ । ୧୧୬ ।
କି ଲୋଡ଼ା ଆଉ ସେ ଗତ କଥା ଭାଳି
ତୁ 'ତ ଆଜି ମୋର ଜୀବନ ସଙ୍ଗାଳି । ୧୧୮ ।
ମହା ଦମ୍ଭ ଭରେ ବ୍ରିଟିଶ୍ ଶାସନ
ଚକ ଗଡ଼ି ଗଲେ ଏଠି ନିଶି ଦିନ । ୧୧୯ ।
ସି.ଆଇ.ଡି. ଲେଖା ଅମଳ ଲେଖନୀ
ପୁଲିସଙ୍କ ଉଠି କମାଣ ବାହିନୀ । ୧୨୦ ।

ଏହି ଚନ୍ଦ୍ରପଦୀ ସିଂହାସନ ପରେ
ଶାସନ୍ତି ବିଦେଶୀ ଦେଶ ନିର୍ଭରେ । ୧୨୦ ।
ଆସନ୍ତି ଏ ଦେଶେ ଯେତେ ବଡ଼ଲାଟ
ସଭିଏଁ ମୁକୁଟ ବିହୀନ ସମ୍ରାଟ । ୧୨୧ ।
ଜଣେ ଯେବେ ଆସେ ନିଆଁ ହୁକା ଧରି
ଆଉ ଜଣେ ଆସେ ନେଇ ପୁଷ୍ପ ଝରି । ୧୨୨ ।
ଚତୁର ଶାସକ ଲର୍ଡ଼ କରଜନ
ଆସି ଏ ଭାରତେ ପାଇଲେ ସମ୍ମାନ । ୧୨୩ ।
ଶିକ୍ଷିତ ବଙ୍ଗାଳୀ ବର୍ଗ ରାଜ-ଭକ୍ତି
ବଢ଼ାନ୍ତି ଗୁପ୍ତେ ନିଜ ଦେଶ ପ୍ରୀତି । ୧୨୪ ।
ସାଥେ ସାଥେ ତାଙ୍କୁ ଦେଲେ ରାଜଦଣ୍ଡ
ବଙ୍ଗ ପ୍ରଦେଶକୁ କରି ଦୁଇଖଣ୍ଡ । ୧୨୫ ।
ଜାଗିଲା ବିପ୍ଳବ ଗଙ୍ଗା ନଦୀ ତୀରେ
ପ୍ରାଣ ଢାଳି ଦେଲେ କେତେ ବଙ୍ଗବୀରେ । ୧୨୬ ।
ବିଦେଶୀ ବର୍ଜନ ଚଳାଇ ସର୍ବଥା
ହତ୍ୟାବାଦ ନୀତି ଧରିଲେ ଅଗତ୍ୟା । ୧୨୭ ।
ବିଷମ ସଙ୍କଟ ଦେଖି ପରିସ୍ଥିତି
ବିଲାତ ମନ୍ତ୍ରୀଏ ବଦଳାଇ ନୀତି । ୧୨୮ ।
ବଙ୍ଗ ଗଢ଼ନକୁ ରଖି ଆଗ ପରି
ତାଙ୍କ ଅସନ୍ତୋଷ ନେଲେ ବେଗେ ହରି । ୧୨୯ ।
ବିଶ୍ୱ ମହାଯୁଦ୍ଧ ପଡ଼ିଲା ଆସି
ଭୟରେ କମ୍ପିଲେ ସାରା ବିଶ୍ୱବାସୀ । ୧୩୦ ।
ଜର୍ମାନୀ ଜାତିର ବୈଷୟିକ ବିଜ୍ଞାନ
ସମଗ୍ର ଧରାକୁ କଲା ସରା ଜ୍ଞାନ । ୧୩୧ ।
କାଇଜର ନାମେ ଥରିଲା ଜଗତ
ରଖିବା ପାଇଁକି ବ୍ରିଟିଶ୍ ଇଜ୍ଜତ । ୧୩୨ ।
ବିଲାତ ସର୍କାର ଆକୁଳ ଅନ୍ତରେ
ଲୋଡ଼ିଲେ ସାହାଯ୍ୟ ଡାକି ଘରେ ଘରେ । ୧୩୩ ।
ଘୋଷଣା ଶୁଣାଇ ଦେଲେ ପୃଥିବୀକି
ମୁକ୍ତି ଦେବୁ ଆମେ ମାନବ ଜାତିକି । ୧୩୪ ।
ଏକାଙ୍ଗୀ ଶାସନ ରହୁଁ ନାହୁଁ ଆମେ
ମୁହେଁ ଯା କହୁଛୁ କରିବୁ ତାଁ କାମେ । ୧୩୫ ।
ଗାନ୍ଧୀ ଗୋଖେଲବି ଭାରତୀୟ ନେତା
ସଭିଙ୍କ ମନରେ ସାମ୍ରାଜ୍ୟ ମମତା । ୧୩୬ ।
ଖେଳିଲା, ଯେ ଭାଇ ଦେଲେ ଧନ ଜନ
କଲେ ଯେ ଯାହାର କର୍ତ୍ତବ୍ୟ ପାଳନ । ୧୩୭ ।
ଜର୍ମାନୀ ଜାତିକି ଦେଇ ପୂରା ମାରି
ଗଲେ ମହାଯୁଦ୍ଧେ କାଇଜର ହାରି । ୧୩୮ ।
ମିତ୍ର ପକ୍ଷ ବନା ଉଡ଼ିଲା ଆକାଶେ
ବିଜୟ ଉତ୍ସବ ପାଳିଲେ ଉଲ୍ଲାସେ । ୧୩୯ ।
ନବ ଉନ୍ମାଦନା ଅଟଳ ବିଶ୍ୱାସ
ଭାରତ ବାସୀଙ୍କି ଦେଲା ତ ସାହାସ । ୧୪୦ ।
ଭାବିଲେ ଆମର ପୂର୍ଣ୍ଣ ହେଲା ଆଶା
ବଦଳିବ ଆମ ଶାସନର ଦଶା । ୧୪୧ ।
ବଦଳିବା କଥା ଆଉ ତ ତେଣିକି
ଅବିଶ୍ୱାସ କରି ଭାରତ ବାସୀଙ୍କି । ୧୪୨ ।
କଥା ଦେଇ ସେତ ସବୁ ଗଲେ ଭୁଲି
ଭାବିଲେ ଆମକୁ ଆମେ ଦଳେ କୁଲି । ୧୪୩ ।
ଦୋହରି ଫାଶରେ ରଖିବାକୁ ବାନ୍ଧି
ରାଓଲେଟ୍ ଆକ୍ଟ ବେଳେ ଦେଲେ ଛନ୍ଦି । ୧୪୪ ।
ଆଇନରେ ଲେଖା ବସି ପାଠ ମଥା
ପକାଇବେ ନାହିଁ କାହିଁ ଯୁଦ୍ଧ କଥା । ୧୪୫ ।
ମକାଇବେ ଯେବେ ଆମ ଜଳା ପ୍ରଜା
ପାଇବେ ମୁକର ସୁକଠିନ ସଜା । ୧୪୬ ।
ଏଭଳି ଆଇନ ପୃଥିବୀରେ କାହିଁ
ଚଳିନ ନଥିଲା ଚଳିବତ ନାହିଁ । ୧୪୭ ।
ସାରା ଭାରତକୁ ଦେଲେ ଅପମାନ
ଲଢ଼ରେ ଜଳିଲା ଭାରତୀୟ ପ୍ରାଣ । ୧୪୮ ।
ଶାସକ ନେଶାର ଦେଖି ବ୍ୟବହାର
ଦୁନିଆରେ ଲୋକ କଲେ ଛି ଛି କାର । ୧୪୯ ।

ଯେତେ ଯହିଁ ଥିଲେ ଭାରତୀୟ ନେତା
ସବୁରି ମନ ତ ହୋଇଗଲା ଫିକା । ୧୫୦ ।
ଢୁର ଆଇନର ପ୍ରତିବାଦ କରି
ସଭା କଲେ ଲୋକ ଆମ ଦେଶ ଭରି । ୧୫୧ ।
ଜାତୀୟ କଂଗ୍ରେସ ଦେଲେ ଏହି ରାଏ
ନ ମାନିବା ଏହା ଜୀବ ଥିବା ଯାଏ । ୧୫୨ ।
ଅମୃତ ସହର ଜାଲିଆନା ବାଗ
କଳିଜାରେ ପୁଣି ଦେଲା ବଡ଼ ଦାଗ । ୧୫୩ ।
କହିଲା ବେଳକୁ ଥରି ଉଠେ ଛାତି
ପ୍ରତି ରକ୍ତ ବିନ୍ଦୁ ଉଠେ ମୋର ତାତି । ୧୫୪ ।
ବିରାଟ ବାଟକୁ ରହିଅଛି ଘେରି
ଅଧ ମାଇଲରୁ ବେଶୀ ସେ ପାଚେରୀ । ୧୫୫ ।
ବିଷୁବ ସଂକ୍ରାନ୍ତି ଦିନ ପ୍ରତି ସନ
ମେଳା ସେଠି ବସେ ହୁଏ ଜନ ପୂର୍ଣ୍ଣ । ୧୫୬ ।
ହିନ୍ଦୁ, ଶିଖ, ଜୈନ ଈଶାଇ, ପଠାଣ
ଜାଲିଆନା ବାଗେ ବସାନ୍ତି ଦୋକାନ । ୧୫୭ ।
କୋଡ଼ିଏ ମସିହା ସଂକରାନ୍ତି ଦିନ
ଦୟାର ସାହେବ କଲେ ମହାପୁଣ୍ୟ । ୧୫୮ ।
ବାଗକୁ ଯିବାକୁ ଗୋଟିଏ ଫାଟକ
ଫାଟକ ପଡ଼ିଲେ ସଭିଏଁ ଅଟକ । ୧୫୯ ।
ଏହି ଫାଟକର ମୁହଁ ପାଖେ ଥୋଇ
ଦାଗିଲେ କମାଣ ଗୋରା ସୈନ୍ୟ ରହି । ୧୬୦ ।
ବିସ୍‌ମାର୍କ—ଜୟୀ ବ୍ରିଟିଶ ଲକତ
ପଞ୍ଜାବ ବାସୀଙ୍କ ସତେଜ ରକତ । ୧୬୧ ।
ପଞ୍ଚ ନଦୀ କୂଳେ ପଡ଼ିଲା ଉଛୁଳି
ନ ଆସିଲେ ଜଣେ କେହି ତ ଉବୁରି । ୧୬୨ ।
କେତେ ମଲେ ସେଠି ନାହିଁ ତ ଇୟତା
ଶୀତ ମାସ ଯାଏ ଥିଲା ରକ୍ତ ଚିତା । ୧୬୩ ।
ସାତ ଦିନ ଧରି ସୈନିକ ଶାସନ
ଅମୃତ ସହରେ ଚାଲିଲା ଭୀଷଣ । ୧ ୪ ।

ଦିନ ଦି' ପହରେ ଟଟଲା ବାଲିରେ
ଇସୁଲ ପିଲାଙ୍କୁ ନେଇ ବାରେ ବାରେ । ୧୬୬ ।
ଦଉଡ଼ାଇ ନିତି ପାଉଥିଲେ ଶାନ୍ତି
ଖୁସି ହେଉଥିଲେ ଦେଖି ରକ୍ତ ବାନ୍ତି । ୧୬୭ ।
ଗର୍ଭିଣୀ ନାରୀଙ୍କୁ କରି ଉଲଗ୍ନ
ଲୌହ ଦଣ୍ଡେ ଚିରି ତାଙ୍କ ମର୍ମ ସ୍ଥାନ । ୧୬୮ ।
କେତେ ମହିଳାଙ୍କ କଲେ ଗର୍ଭପାତ
ମାନବ ସଭ୍ୟତା କଲେ ଧୂଳିସାତ । ୧୬୯ ।
ଅମୃତ ସହରେ ଘଟିଗଲା ଯାହା
ଜାଣିଲେ ବାହାରେ ବହୁ ଦିନେ ତାହା । ୧୭୦ ।
କରନ୍ତେ ଦୁନିଆ ଲୋକେ ଛି ଛି' କାର
କଲେ ସରକାର ଦୋଷ ତ ସ୍ୱୀକାର । ୧୭୧ ।
ଆସିଲେ ଗଢ଼ାଙ୍କ କକା ଏଠି ବୁଲି
କହି ଗଲେ କ୍ଷମା ଦିଅ ସବୁ ଭୁଲି । ୧୭୨ ।
ଏ ଘଟଣା କେବେ ନ ଯିବତ ମନୁ
ଆମ ଜାତୀୟତା ଜାଗିଲା ଏ ଦିନୁ । ୧୭୩ ।
ଅପ୍ରେଲ ଛଅରୁ ଅପ୍ରେଲ ତେର
ଜାତୀୟ ସପ୍ତାହ ଆମ ଭାରତର । ୧୭୪ ।
ଜାଲିୟାନା ବାଗ କରୁଣ କାହାଣୀ
ଘୋର ଦୁଃଖ ହେଲା ସାରା ଦେଶେ ଆଣି । ୧୭୫ ।
ରାଜଭକ୍ତ ଦଳ ହୋଇଲେ ହତାଶ
ବ୍ରିଟିଶ ଉପରୁ ଟଳିଲା ବିଶ୍ୱାସ । ୧୭୬ ।
ସମଗ୍ର ଭାରତୁ ପ୍ରତିନିଧି ଆସି
ଜାତି ମହାସଭା ମଣ୍ଡପରେ ବସି । ୧୭୭ ।
ସନ୍ତପ୍ତ ପରାଣେ ଦେଲେ ଯେ ଭାଷଣ
ଶୁଣିଲେ ପତିତ ରକ୍ତ ହୀନ ପ୍ରାଣ । ୧୭୮
ପାଞ୍ଚହାତି ଖଦୀ ପିନ୍ଧା ଗାନ୍ଧୀବୀର
ଘଷିଲେ ପଥର କାଟେ ପାଣିଧାର । ୧୭୯
ନିର୍ଲିପ୍ତ ଜାତିର ନାହିଁ କେହି ସାହା
ଦେଖାଇବେ ପ୍ରଭୁ ନିଶ୍ଚେ ଆମ ରାହା । ୧୮୦ ।

କରିବାକୁ ହେବ ଅହିଂସା ସମର
ଅହିଂସାରେ ହେବ ଭରତ ଉଦ୍ଧାର । ୧୮୦ ।
ହିଂସା କଲେ ଆମେ ହୋଇଯିବା କ୍ଷୟ
ଅହିଂସା ନୀତିଟି ଜଗତେ ଅଜେୟ । ୧୮୧ ।
ଅହିଂସା ଯୋଦ୍ଧାର ନାହିଁ ପରାଭବ
ଜୀବନେ କରିଛି ସଦା ଅନୁଭବ । ୧୮୨ ।
କର୍ମଗୁରୁ ଗାନ୍ଧୀ ମୋହନଙ୍କ ବାଣୀ
ସବୁରି ମନକୁ ନେଲା ଯେଉଁ ଟାଣି । ୧୮୩ ।
ଅନ୍ତରେ ଜାଗିଲା ଅତୁଳ ସାହସ
ତାଙ୍କରି କଥାରେ ସବୁରି ବିଶ୍ୱାସ । ୧୮୪ ।
ଶାସକ ବିପକ୍ଷେ ଘୋଷିଲେ ସମର
ସେନାପତି ହେଲେ ଗାନ୍ଧୀ କର୍ମବୀର । ୧୮୫ ।
ବାଜିଲା ଅସହଯୋଗ ଯୁଗ ଭେରୀ
ମଉଳି ପଡ଼ିଲା ଇସ୍କୁଲ କଚେରୀ । ୧୮୬ ।
ଏକ କୋଟି ଟଙ୍କା କୋଟିଏ ମେମ୍ବର
ଏହି ହେଲା ଲକ୍ଷ୍ୟ ସେ ନା ପ ତି ଙ୍କ ର । ୧୮୭ ।
ହିମାଳୟ ଠାରୁ କୁମାରିକା ଯାକେ
ପାଗଳ ସଭିଏଁ କର୍ମ ଗୁରୁ ଡାକେ । ୧୮୮ ।
ସିଂହ ଭୂମିଠାରେ ଦେଇ ସିଂହ ଡାକ
ଅମର ଉତ୍କଳ ବୀର ପୁତ୍ର ଯାକ । ୧୮୯ ।
କଂଗ୍ରେସ ଆଦେଶ ଶିରୋଧାର୍ଯ୍ୟ କରି
ମହାତମା ଗାନ୍ଧୀଙ୍କ ହୃଦେ ନେଲେ ବରି । ୧୯୦ ।
ନୀଳ ସିଂଧୁ ତଟ ପଡ଼ିଲା ଉଛୁଳି
ଛୁରାଥନା କୁଞ୍ଜେ ଖେଳିଲା ବିଜୁଳି । ୧୯୧ ।
ହୀରଖଣ୍ଡ ହୀର ଛାତ୍ର—ଛାତ୍ରୀ ଦଳ
ପହିଲେ ଏ ପ୍ରାନ୍ତେ ପକାଇ ଚହଳ । ୧୯୨ ।
ଦୂରେ ଫିଙ୍ଗି ଦେଇ ଦାସ ଇତିହାସ
କହିଲେ ନୋହିବୁ ଆମେ କ୍ରୀତଦାସ । ୧୯୩ ।
ଅମୃତ ସହର କରୁଣ ଖବର
ଶୁଣି ମୋ କଟକ ହେଲା ଥରହର । ୧୯୪ ।

ଇସ୍କୁଲ କଲେଜ ସବୁ କରି ଶୂନ୍ୟ
ଯୁବା ଦଳ କଲେ ରଣ ପଥ ପୂର୍ଣ୍ଣ । ୧୯୫ ।
ଧୂଳି ଛୁଇଁ ସର୍ବେ କଲେତ ଶପଥ
ଯାବତ ଏ ଦେହେ ବିନ୍ଦୁଏ ରକତ । ୧୯୬ ।
ଜାଲିଯାନା ବାଗ ନେବୁ ପ୍ରତିଶୋଧ
ଶାସନ କଳକୁ କରି ପ୍ରତିରୋଧ । ୧୯୭ ।
ସମଗ୍ର ଉତ୍କଳୁ ଶତ ଶତ ବୀର
ଜାଠ ଯୋଡ଼ି ତୀରେ ପକାଇ ଶିବିର । ୧୯୮ ।
ଜାତି ଲାଗି ଜାଳି ଛାତିର ରୁଧିର
ଲଢ଼ିବା ପାଇଁକି ହୋଇଲେ ଅଧୀର । ୧୯୯ ।
ରଣିକୁଲ୍ୟା ମନ ହୋଇଲା ଅଥୟ
ଶତ ଯୁବା ଜନ ଅନ୍ତର ନିର୍ଭୟ । ୨୦୦ ।
ଯୋଗ ଦେଲେ ଆସି ସମର ଶିବିରେ
ନ ହଟିଲେ କେହି ଶାସକଙ୍କ ଡରେ । ୨୦୧ ।
ସାଳନ୍ଦୀ ହୃଦୟ ଉଠିଲା ତ କାନ୍ଦି
ଦେଶ ମୁକ୍ତି ଲାଗି ଯୁବାଜନେ ବାନ୍ଧି । ୨୦୨ ।
ଉଠାଇବା ଲାଗି ବ୍ରିଟିଶ ଶାସନ
ଭୀଷ୍ମ ପରି କଲେ ଜୀବନକୁ ପଣ । ୨୦୩ ।
ବ୍ରାହ୍ମଣୀ ବୈତରଣୀ ତଟ ଦେଶବାସୀ
କେଶରୀ ବିକ୍ରମେ ଘର ଛାଡ଼ି ଆସି । ୨୦୪ ।
ସମର ଶିବିରେ ଦେଲେ ହର୍ଷେ ଯୋଗ
ନ ଡରିଲେ ଲାଠି କାରାଦଣ୍ଡ ଭୋଗ । ୨୦୫ ।
ଆସିବ ସ୍ୱରାଜ ବର୍ଷକ ଭିତରେ
ଗ୍ରହିଲେ ସଭିଏଁ ବ୍ରତକ ଅନ୍ତରେ । ୨୦୬ ।
ମାନବ ଜାତିକି ମାନବ ନୀତିକି
ବଡ଼ କରି ସଦା ମାନବ ପ୍ରୀତିକି । ୨୦୭ ।
ମାନବ ଉପରେ ରଖି ସେ ବିଶ୍ୱାସ
ମାଲୁଥିଲେ ଗାନ୍ଧୀ ପ୍ରତ୍ୟେକ ନିଃଶ୍ୱାସ । ୨୦୮ ।
ସତ୍ୟପରେ ସଦା ରଖି ସେ ଆଗ୍ରହ
ସଜାଡ଼ୁ ଥିଲେ ତ ଯୁଦ୍ଧ ସତ୍ୟାଗ୍ରହ । ୨୦୯ ।

ଅହିଂସା ଉପରେ ରଖି ପୂର୍ଣ୍ଣ ଆସ୍ଥା
କରୁଥିଲେ ସଦା ସମର ବ୍ୟବସ୍ଥା । ୨୧୦ ।

ବିଧିର ବିଧାନ ଅଟଇ ବିଚିତ୍ର
ଜାଳିଗଲା କାଳି ମାଗ ହେଲା ଚିତ୍ର । ୨୧୧ ।

ଚଉରି ଚଉରା ଥାନାର ଘଟଣା
ବଦଳାଇ ଦେଲା ତାଙ୍କର କଳ୍ପନା । ୨୧୨ ।

ହତ୍ୟା ବାଦ ନୀତି ପାଲେ ଯାଇ ପଡ଼ି
ସରକାରୀ ଲୋକଙ୍କୁ ଲୋକେ ଦେଲେ ପୋଡ଼ି ।୨୧୩।

ପାଇ ଏ ଖବର ହୋଇ ମର୍ମାହତ
ନିଜ ଭ୍ରମ ନିଜେ କଲେ ସେ ସାବ୍ୟସ୍ତ । ୨୧୪ ।

ସମର ପଥରେ ଆଉ ନ ଆଗେଇ
ସମର ଗତିକି ନେଲେ ସେ ପଛେଇ । ୨୧୫ ।

ଉପବାସ କରି କଲେ ପ୍ରାୟଶ୍ଚିତ
ଦେଖିଲେ ଆତ୍ମିକ ଶୁଦ୍ଧ କରି ଚିତ୍ତ । ୨୧୬ ।

ସତ୍ୟାଗ୍ରହ ଯୁଦ୍ଧ ନାହିଁ ଲୁଚ ଛପା
ସତ୍ୟାଗ୍ରହ ନୀତି ସୂର୍ଯ୍ୟପରି ସଫା । ୨୧୭ ।

ସତ୍ୟାଗ୍ରହୀ କହେ ସବୁ ବେଳେ ସତ୍ୟ
ଲୋକେ ଆଚମ୍ବିତ ଦେଖି ତାଙ୍କ ମତ । ୨୧୮ ।

ବୁଝିଲେ ଗାନ୍ଧିଜୀ ଏକ ମହାପାପ
ଖେଳୁଛି ସମାଜେ ବିଷଧର ସାପ । ୨୧୯ ।

ଏ ସାପ ଦାନ୍ତକୁ ନ ପାରିଲେ ଝାଡ଼ି
ଆଉ ନ ପାରିବି ପାଦେ ଗୋଡ଼ କାଢ଼ି । ୨୨୦ ।

ଦୁନିଆର ଲୋକେ କରନ୍ତି ବିଦ୍ରୂପ
ତମର କି ଏହା ସ୍ୱରାଜ ସ୍ୱରୂପ । ୨୨୧ ।

ଆପଣା ଘରର ପଡ଼ିଗଲେ ଛାଉ
ଦେଉଁ ଉଠେ ତମ ବଡ଼ ଜାତି ନାହିଁ । ୨୨୨ ।

ମଣିଷକୁ ଛୁଇଁ ହୁଅ ତୁମେ ଛୁଆଁ
ସ୍ୱାଧୀନତା ଲଗି ବୁଲ କିଆଁ ଲୁଆ । ୨୨୩ ।

ଅଛୁଆଁ ସେବାରେ ଦେଇ ପ୍ରାଣ ବିକି
ହରିଜନ ନାମେ ଅଛୁଆଁ ଭାଇଙ୍କି । ୨୨୪ ।

ଡାକି ବସାଇଲେ ସବୁ ଜାତି ପାଖେ
ଭେଦ ଭାବ ଗଲା ମହାତ୍ମାଙ୍କ ଡାକେ । ୨୨୫ ।

ବିଦେଶୀ ବର୍ଜନ ନିଶା ନିବାରଣ
ହାତେ ସୂତା କାଟି ଅରଟ ଗ୍ରହଣ । ୨୨୬ ।

ଗଠନ ମୂଳକ କାମ କେତେ ଦେଇ
ମୁକତି ଯଜ୍ଞକୁ ରଖିଲେ ଜଗାଇ । ୨୨୭ ।

ଶଶୀକଳା ପରି ବଢ଼ିଲା କଂଗ୍ରେସ
ଖେଳିଗଲା ଦୃଢ଼ ଜ୍ୟୋତ୍ସ୍ନା ମାଡ଼ି ସାରା ଦେଶ । ୨୨୮ ।

ପ୍ରତ୍ୟେକ ପ୍ରାନ୍ତରୁ ଆସି ପ୍ରତିନିଧି
ଲାହୋର ସଭାରେ ବସି ଯଥାବିଧି । ୨୨୯ ।

ବିଲାତ ମନ୍ତ୍ରୀଙ୍କୁ ପଠାଇଲେ ତାର
ସନ ଅଠେଇଶ ଶେଷ ଡିସେମ୍ବର । ୨୩୦ ।

ଯୁଦ୍ଧ ନେବା କଥା ମନରେ ବିଚାର
ଦିଅ ଯା ଦେବାର ଆମ ଅଧିକାର । ୨୩୧ ।

ନୋହିଲେ କାଲିଠୁଁ ପୂର୍ଣ୍ଣ ସ୍ୱାଧୀନତା
ପାଇବାକୁ ଆମେ ଖେଳାଇବୁ ମଥା । ୨୩୨ ।

ସାମ୍ରାଜ୍ୟ ସମ୍ବନ୍ଧ ଯିବ ସବୁ ତୁଟି
ମିଛା ମିଛା ଶାସକ ଥା ନପାରିବ ଉଠି । ୨୩୩ ।

ବିଲାତ ସଚିବେ ରହିଲେ ନୀରବ
ହସି ଉଡ଼ାଇଲେ ଦେଖିଏ ପରବ । ୨୩୪ ।

ଭାବିଲେ ଏମାନେ ଲଢ଼ିବେ କିପରି
ଲଢ଼ିଲେ ତ ଯିବେ ଏକା ଦିନେ ସରି । ୨୩୫ ।

ଅହିଂସା ସମର ତାଙ୍କୁ ଅଗୋଚର
ନୂତନ ମନ୍ତ୍ରଟେ ସାରା ଧରଣୀର । ୨୩୬ ।

ପଞ୍ଚନଦୀ କୂଳେ ବାଜିଲା ବାଜଣା
ପୂର୍ଣ୍ଣ ସ୍ୱାଧୀନତା ଅମର ଘୋଷଣା । ୨୩୭ ।

ପଲ୍ଲୀ ଜନପଦ ବଜାର ସହର
ଲକ୍ଷ ଲକ୍ଷ ଲୋକ ହୋଇ ଆଗଭର । ୨୩୮ ।

ପଢ଼ିଲେ ସଭାରେ ପ୍ରତିଜ୍ଞା ପତର
ସ୍ୱାଧୀନତା ଲକ୍ଷ୍ୟ ଆମ ଏ ଦେଶର । ୨୩୯ ।

ସତ୍ୟ ଅହିଂସାରେ ଆମ ସ୍ୱାଧୀନତା
ଆଣିବୁ ଫେରାଇ ବଳି ଦେଇ ମଥା । ୨୪୦ ।

ପାଞ୍ଚହାତି ଖଦୀ ପିନ୍ଧା ସେନାପତି
ଆଶିଷେ ବର୍ଦ୍ଧିଲା କଂଗ୍ରେସ ଶକତି । ୨୪୧ ।

ବୁଝି ବେଳ କାଳ ଦେଶ ମତି ଗତି
ପ୍ରଚାରିବେ ବାଣୀ ଗାନ୍ଧୀ ମହାମତି । ୨୪୨ ।

"ହେ ଭାରତବାସୀ ମୋ ଭାଇ ଭଉଣୀ
ତୁମ୍ଭ ପାଖେ ମୁହିଁ ହେବି କିଏ ଋଣୀ । ୨୪୩ ।

ତବ ଏ ମାଟିରେ ଗଢ଼ା ମୋର ଦେହ
ବଞ୍ଚାଇ ରଖିଛି ମତେ ତମ ସ୍ନେହ । ୨୪୪ ।

ତମ ବାଇବେଲ କୋରାନ୍ ପୁରାଣ
ପଢ଼ି ମୁଁ ଗଢ଼ିଛି ମୋର ଏ ପରାଣ । ୨୪୫ ।

ତମରି ଦେଶର ରାଜପୁତ୍ର ଜଣେ
ରାତି ଅଧେ ପଳା ଗଲେ ଘୋର ବନେ । ୨୪୬ ।

ବନେ ତପକରି ପାଇଲେ ଆଲୋକ
ଆଲୋକିତ କଲେ ଏ ସାରା ଭୂ-ଲୋକ । ୨୪୭ ।

ସେହି ଦେଶେ ମୁହିଁ ହୋଇଛି ଜନମ
ଅହିଂସା ନୀତି ମୋ' ଜୀବନର ଧର୍ମ । ୨୪୮ ।

ମନୁଷ୍ୟ ଭିତରେ ଦେଖେ ମୁଁ ଦେବତା
ମନୁଷ୍ୟକୁ ଦେଖି ନଇଁ ଯାଏ ମଥା । ୨୪୯ ।

ମନୁଷ୍ୟ ସେବାରେ କାଟି ମୋ ଜୀବନ
କରିଛି, କରିବି ପୁଣ୍ୟ ଅରଜନ । ୨୫୦ ।

ମନୁଷ୍ୟ ଉପରେ ରଖିବ ବିଶ୍ୱାସ
ତେଜିବି ମୋର ଅନ୍ତିମ ନିଃଶ୍ୱାସ । ୨୫୧ ।

ତମେ କୋଟି କୋଟି ମନୁଷ୍ୟ ଦେବତା
ପଶୁଠାରୁ ହୀନ ଲଭିଛ ଅବସ୍ଥା । ୨୫୨ ।

ବିଦେଶୀ ଶାସନେ ହୋଇ ପରାଧୀନ
କାଟୁଅଛ ଦିନ ହୋଇ ଦୀନ ହୀନ । ୨୫୩ ।

ହରାଇ ବସିଛ ତମେ ମନୁଷ୍ୟତା
କଥା କହିବାକୁ ନାହିଁ ତ କ୍ଷମତା । ୨୫୪ ।

ଆଖି ଆଗେ ଦେଶ ଘେରିଛି ସାଗର
ନାହିଁ ତ ତୁମର ତହିଁ ଅଧିକାର । ୨୫୫ ।

ଆଉ ଆନ କଥା ପାଣି ଟିକେ ଆଣି
କରି ନ ପାରିବ ଶାଗ ଟିକେ ଲୁଣି । ୨୫୬ ।

ଏଭଳି ଆଇନ ହୋଇଛି ତିଆରି
ରାଜା ତ ତୁମର ବିଦେଶୀ ବେପାରୀ । ୨୫୭ ।

ଏ ଲୁଣ ଆଇନ୍ ଭାଙ୍ଗିବା ପାଇଁକି
କରିଛି ପ୍ରତିଜ୍ଞା ଦେଇଅଛି ଲେଖି । ୨୫୮ ।

ଶାସକ ମାନେତ ନୁହଁନ୍ତି ମୋ ଅରି
ଶାସନ କଳକୁ ଦେବ ଏଠି ଚୂରି । ୨୫୯ ।

ତାଙ୍କ ଦେହେ ଟିକେ ନ ଲାଗିବ ଦାଗ
ଲୁଣିଆ କରିବି ଗରିବଙ୍କ ଶାଗ । ୨୬୦ ।

କିଛି ନ ପାରିବ କରି ଗୁଳି ଗୁଳା
ଶାସନ କଳକୁ କରିବି ହୁଗୁଳା । ୨୬୧ ।

ତମ ଠାରେ ମୋର ଏତିକି ମିନତି
ହିଂସା ନ ରଖିବ ତମେ କାହା ପ୍ରତି । ୨୬୨ ।

ହିଂସା କଲେ ତମେ ହେବି ମୁହିଁ ଶେଷ
ଯୁଗ ଯୁଗ ଲାଗି ନ ଫେରିବ ଦେଶ । ୨୬୩ ।

ଯୁବକ ଯେ ଅଛ ହୁଅ ନାହିଁ ବକ
ଏ ଦେଶ କାହାର ତୁମେ ମନେରଖ । ୨୬୪ ।

ତରୁଣ ଯେ ଅଛ ରଖ ନାହିଁ ଋଣ
ଜାତୀୟ ଯୁଦ୍ଧରେ ଢାଳିଦିଅ ପ୍ରାଣ । ୨୬୫ ।

ଗଢ଼ ଇତିହାସ ଆଙ୍କି ମାନଚିତ୍ର
ମାନବ ଜାତିର ହୁଅ ତୁମ୍ଭେ ମିତ୍ର । ୨୬୬ ।

ମହାତ୍ମା ଗାନ୍ଧୀଙ୍କ ଏହି ମହାବାଣୀ
ଶୁଣି ଶାସକଙ୍କ ରକ୍ତ ହେଲା ପାଣି । ୨୬୭ ।

ଭାବିଲେ ଏ ନିଶ୍ଚେ କରିବ ସମର
ଲୁଣ ଆଇନ୍‌କୁ ଭାଙ୍ଗିବେ ଆମର । ୨୬୮ ।

ଆଇନ ବଳରେ ଗ୍ରାସିଛି ଏ ଦେଶ
[ଆଇନ୍ ଭାଙ୍ଗିଲେ ଆମେ ହେବା ଶେଷ । ୨୬୯ ।

ତୋପ ଗୁଳି ଗୁଳା ପୁଲିସ ସଜାଇ
ଶାସନ କଳକୁ ରଖିଲେ ଚେତାଇ ।୨୬୦।
ତିରିଶ ମସିହା ଜାତୀୟ ସପ୍ତାହ
ଏ ଦେଶ ଭାଗ୍ୟରେ ହେଲା ଶୁଭ ଗ୍ରହ ।୨୬୧।
ବାହାରିଲେ ଗାନ୍ଧୀ ଘେନି ତାଙ୍କ ସୈନ୍ୟ
ଆକାଶୁ ଦେବତା କଲେ ଧନ୍ୟ ଧନ୍ୟ ।୨୬୨।
ସମଗ୍ର ପୃଥିବୀ ରହିଲା ଚକାଇ
ଏଭଳି ଯୁଦ୍ଧତ କାହିଁ ଦେଖା ନାହିଁ ।୨୬୩।
ପାଖେ ଗୁଳି ଗୁଳା ବନ୍ଧୁକ କମାଣ
ପାଖେ ଅସ୍ତ୍ରହୀନ କେତୋଟି ପରାଣ ।୨୬୪।
ଡାଣ୍ଡି ଅଭିମୁଖେ ବାହାରିଲେ ଗାନ୍ଧୀ
ମାରିବାକୁ ଲୁଣ ଆଇନିକି ଭାଙ୍ଗି ।୨୬୫।
ସମଗ୍ର ଭାରତେ ପଡ଼ିଲା ଚହଳ
ଯୁଦ୍ଧକୁ ସାଜିଲା ମୋ ପ୍ରାନ୍ତ ଉତ୍କଳ ।୨୬୬।
ଆସିଲା ସମ୍ବାଦ ଆମ ନେତା ଗାନ୍ଧୀ
ଦଳ ବଳ ସଙ୍ଗେ ହୋଇଲେଣି ବନ୍ଦୀ ।୨୬୭।
ବାଲେଶ୍ୱର ବକ୍ଷେ ପଡ଼ିଲା ଚହଳ
ଯୁବକ ଯୁବତୀ ହୋଇ ଦଳ ଦଳ ।୨୬୮।
ଶୁଭ ଶଙ୍ଖ ବାଇ ବାହାରିଲେ ଘରୁ
ବଞ୍ଚୁ ଅବା ଆମେ ରଣ କ୍ଷେତ୍ରେ ମରୁ ।୨୬୯।
ସଭାବେଳେ ନେଇ ଅଟଳ ପ୍ରତିଜ୍ଞା
ପାଳିଲେ ଜାତୀୟ ମହାସଭା ଆଜ୍ଞା ।୨୭୦।
ଦରିଆ ଦଖଲ ଗୀତ ଗାଇ ଗାଇ
ଛାଜଙ୍ଗ ଚଟାଣେ ଶାନ୍ତି ସେନା ଯାଇ ।୨୭୧।
ତେଣେ ଇଞ୍ଚୁଡ଼ିରେ ହଜାର ହଜାର
ବାଳ ବୃଦ୍ଧ ଯୁବା ହୋଇଲେ ହାଜର ।୨୭୨।
ଲାଠି ଗୁଳି ଗୁଳା ବନ୍ଧୁକେ ନ ଡରି
ଲୁଣ ମାରି ଲୁଣ ଆଣୁଥିଲେ ଧରି ।୨୭୩।
ପଥେ ଶତ୍ରୁପକ୍ଷ ମହାକ୍ରୋଧ ହୋଇ
ନିରୀହ ପ୍ରଜାଙ୍କୁ ପିଟିଲେ ଶୁଆଇ ।୨୭୪।

କାହା ମୁଣ୍ଡୁ ରକ୍ତ ବହେ ଧାର ଧାର
କିଏ ମୂର୍ଚ୍ଛା ଯାଏ ପଡ଼ି ବାର ବାର ।୨୭୫।
ଲୋକ ଥାଟ ଦେଖି ହେଲେ ସେତ ଧନ୍ଦି
ହାତକଡ଼ି ଦେଇ କଲେ କେତେ ବନ୍ଦି ।୨୭୬।
କଟିବ ଶିବିରୁ ଯାଇ ଶତ ସୈନ
କୁଜଙ୍ଗ ଦଖଲ କଲେ ପରିପୂର୍ଣ୍ଣ ।୨୭୭।
ବେଦୀ ମଠ ଠାରେ ଲାଗିଲା ଲଢ଼େଇ
ଭାଙ୍ଗିଲା ଶାସନ କନ୍ଦର ବଢ଼େଇ ।୨୭୮।
ନିଶା ଦୋକାନରେ ଦେଲେ ତ ଧାରଣା
ନିଶା ଖାଇବକୁ ପିଲେ କଲେ ମନା ।୨୭୯।
ବସେ ବେତ ମାଡ଼ ତାଙ୍କୁ ପୁରସ୍କାର
ପାଗଳ ପରାଏ ହେଲେ ସରକାର ।୨୮୦।
ଆଇନ୍ କାନୁନ୍ ସବୁ ଗଲା ଭାଙ୍ଗି
ହଜାର ହଜାର ହେଲେ ଦେଶଜାଗୀ ।୨୮୧।
ଛ' ମାସରୁ ବେଶୀ ଚାଲିଲା ଏପରି
ବିଲାତ ସଚିବ ଗଲେ ସେଠି ଡରି ।୨୮୨।
ବଡ଼ଲାଟ ପଦେ ଆରୁଇନ୍ ଆସି
ସାନ୍ତ୍ୱନା ବାଣୀରେ ବୋଧି ଦେଶବାସୀ ।୨୮୩।
ନମ୍ର କରି ସେତ ଥାପିଲେ ମମତା
ଗାନ୍ଧିଜୀଙ୍କି ଡାକି ବାନ୍ଧିଲେ ବନ୍ଧୁତା ।୨୮୪।
ବନ୍ଦୀଶାଳୁଁ ତାଙ୍କୁ କରିଲେ ବରଣ
କଥା ଭାଷା କଲେ କରି ଖୋଲା ମନ ।୨୮୫।
ଗାନ୍ଧୀ ଆରୁଇନ୍ ସଂଧିପତ୍ର ଚୁକ୍ତି
ଶତ ଶତ ସୈନ୍ୟେ ଦେଲାତ ମୁକୁତି ।୨୮୬।
ଲୁଣ ମରା ନୀତି ହୋଇଲା କୋହଳ
ଯୁଦ୍ଧେ ଜୟ କଲେ ସତ୍ୟାଗ୍ରହୀ ଦଳ ।୨୮୭।
ଭାରତୀୟ ଯୁ କରିବାକୁ ବନ୍ଦ
ପାଡିଲେ ବିଦେଶୀ ନୂଆ ଗୋଟେ ଫାନ୍ଦ ।୨୮୮।
ଭାରତ ବାସୀଙ୍କ ପ୍ରତିନିଧି ଦଳେ
ବିଲାତ ସଭାକୁ ନିମନ୍ତ୍ରଣ କଲେ ।୨୮୯।

ଗୋଲ ଟେବୁଲର ହେଲା ଆୟୋଜନ
ସତେ ଭାରତର ଆଶା ହେବ ପୂର୍ଣ୍ଣ ।୩୦୦।
ତାଙ୍କ ମନମୁଖୀ ବାଛି ପ୍ରତିନିଧି
ନେଲେ କରିବାକୁ ତାଙ୍କ ଲକ୍ଷ୍ୟ ସିଦ୍ଧି ।୩୦୧।
ସବୁ ନେତା ବସି ହେଲେ ଏକମତ
ଫିଟିବ ଏ ଦେଶ ମୁକତିର ପଥ ।୩୦୨।
ଖଦୀ ପାଞ୍ଚ ହାତ କରି ପରିଧାନ
ବାହାରିଲେ ଗାନ୍ଧି ଦୀନ ଜନ ପ୍ରାଣ ।୩୦୩।
ଲୋକ ପ୍ରତିନିଧି କଂଗ୍ରେସର ମତ
ଅକପଟ ଚିତ୍ତେ କଲେ ତହିଁ ବ୍ୟକ୍ତ ।୩୦୪।
ଗାନ୍ଧିଜୀଙ୍କ ଭାବ ଗାନ୍ଧିଜୀଙ୍କ ମନ
ଦେଖି ବିଲାତିଏ କଲେ ଧନ୍ୟ ଧନ୍ୟ ।୩୦୫।
ଗୋଲ ଟେବୁଲର ଯେତେକ ଉଦ୍ୟମ
ସବୁ ହେଲା ବ୍ୟର୍ଥ ଭଣ୍ଡ ପରିଶ୍ରମ ।୩୦୬।
ଯାଇଥିଲେ ତହିଁ ଯେତେ ଆମ ଲୋକ
ନୋହିଲା ସବୁର ମନେ ଚିତ୍ତେ ଏକ ।୩୦୭।
ଭିନ୍ନ ଭିନ୍ନ ମତ ହେବାରୁ ପ୍ରକାଶ
ଫେରିଲେ ମହାତ୍ମା ହୋଇ ଯେ ହତାଶ ।୩୦୮।
ପାଦ ଦେଉଁ ଦେଉଁ ଭାରତ ଭୂଇଁରେ
ବନ୍ଦି କଲେ ତାଙ୍କୁ ଛନ୍ଦି ଆଇନରେ ।୩୦୯।
ଭାରତର ଯେତେ କଂଗ୍ରେସ ଶିବିର
ବେଆଇନ୍ କରି ଏଠା ସରକାର ।୩୧୦।
ଯହିଁ ଯେତେ ଥିଲେ କଂଗ୍ରେସର ନେତା
ବନ୍ଦି ହେଲେ ସର୍ବେ ନାହିଁ କିଛି କଥା ।୩୧୧।
ଦମନ ନୀତିର ଘନ ଗରଜନ
ବଧିର କଲାତ ମରଣର କାନ ।୩୧୨।
ବଂଧୁକ କମାଣ ଗୋଳା ଗୁଳି ଲାଠି
ଗରଜନ କଲେ ସଭିଏଁ ଏକାଠି ।୩୧୩।
କୋକୁଆ ଭୟରେ ଭୀତ କରି ଦେଶ
ଭାବିଲେ କଂଗ୍ରେସ କରି ଦେବେ ଶେଷ ।୩୧୪।

ସହଜେ ଏ ଦେଶ ଗଲା ନାହିଁ ଡରି
ଜେଲଖାନା ଯେତେ ଗଲା ସବୁ ଭରି ।୩୧୫।
କୋଳେ ଶିଶୁ ଘେନି କୁଳ ଭୁଆସୁଣୀ
ପଶିଲେ ବନ୍ଦିଶାଳେ ଧୀରେ ହୋଇ ତୁନି ।୩୧୬।
ଛାତ୍ର କାରିଗର ଦେଶର ମୂଲିଆ
ଲଢ଼ିବା ପାଇଁକି ସବୁ ହେଲେ ଠିଆ ।୩୧୭।
ଅନର୍ଥକ ଅର୍ଥ ଲୁଟିଆନ୍ତେ ବିର୍ଣ୍ଣ
ଆଇନ ଶୃଙ୍ଖଳା ନ ରହିଲା କିଛି ।୩୧୮।
ଲୋକ ପ୍ରତିନିଧି ଶାସନ ବ୍ୟବସ୍ଥା
ଦେଲେ ବଦଳାଇ ଦେଖି ଏ ଅବସ୍ଥା ।୩୧୯।
କ୍ଷମତା ମୋହରେ କେତେ ଦେଶବାସୀ
ଗ୍ରହିବାକୁ କଳ ହେଲେ ଭାରି ଖୁସି ।୩୨୦।
ଧୀରେ ଧୀରେ ନିଆଁ ଆସିବାରୁ ଲିଭି
ଭାବିଲେ ଶାସକ ଲୋକେ ଗଲେ ଦବି ।୩୨୧।
ଭାବିଲେ ନିଃଶେଷ ହେଲା ଗାନ୍ଧୀ ଶକ୍ତି
ଗାନ୍ଧିଜୀଙ୍କୁ ଦେଲେ ବନ୍ଦିଶାରୁଁ ମୁକ୍ତି ।୩୨୨।
ମିଆଦି ପୂରନ୍ତେ ଦେଶ ସୈନ୍ୟ ଦଳ
ତେଜି ବନ୍ଦିଶାଳା ଆସିଲେ ସକଳ ।୩୨୩।
ବେଦଖଲ କରିଥିଲେ ଯେତେ ଯାଗା
ଫେରାଇଲେ ତାଙ୍କୁ କରି ରୁହା ଭଙ୍ଗା ।୩୨୪।
ବଢ଼ ଥିଲେ ଦେଶେ ଜାତୀୟ ଶକତି
ବଢ଼ି ଯାଇଥିଲେ କଂଗ୍ରେସ ଉନ୍ନତି ।୩୨୫।
ବନ୍ଦିଶାଳା କଲା ମନକୁ ସବଳ
ଦ୍ୱିଗୁଣ ତେଜରେ ମୁକ୍ତ ବନ୍ଦି ଦଳ ।୩୨୬।
ଜାତି ମହାସଭା ମଣ୍ଡପରେ ବସି
ଭେଟା ଭେଟି ହେଲେ ହୋଇ ଭାରି ଖୁସି ।୩୨୭।
ସେନାପତି ପରେ ସୁଦୃଢ଼ ବିଶ୍ୱାସ
ରଖି ସୈନ୍ୟ ଦଳ ସହିଲେ ପରଶ ।୩୨୮।
କାରବାସେ କେତେ ତେଜିଲେ ପରାଣ
କ୍ଷମା ନ ମାଗିଲେ ରଖି ଜାତି ଟାଣ ।୩୨୯।

ଜନମ ଭୂଇଁକି ଦେଖାଇ ସମ୍ମାନ
ଗୁଳି ଗ୍ଲେଟେ କେତେ ହେଲେ ଅବସାନ । ୩୩୦ ।
ସବୁ ଶହୀଦଙ୍କୁ ମନରେ ସୁମରି
ଶ୍ରଦ୍ଧାଞ୍ଜଳି ଦେଲେ ମହାସଭା ଭରି । ୩୩୧ ।
ସେନାପତିଙ୍କର ଅମୂଲ୍ୟ ଭାଷଣ
ଚରଳାଇ ଦେଲା ସଭିଙ୍କର ପ୍ରାଣ । ୩୩୨ ।
ସରି ନାହିଁ ଯୁଦ୍ଧ ଫେରି ନାହିଁ ଅରି
ଯାଉଛ କି ବନ୍ଧୁ ତୁମେ ସବୁ ଡରି ? । ୩୩୩ ।
ସତ୍ୟର ଶକତି ଜଗତେ ଅଜୟ
ସତ୍ୟାଗ୍ରହୀ କେବେ କରେ ନାହିଁ ଭୟ । ୩୩୪ ।
ତା' ଜୀବନ ରବି ହେଉ ପଛେ ଅସ୍ତ
ସତ୍ୟାଗ୍ରହୀ କେବେ ନ ହୁଏ ପରସ୍ତ । ୩୩୫ ।
ବିପକ୍ଷ ପକ୍ଷରୁ ମିଳେ ତାକୁ ଯାହା
ଖୁସି ମନେ ସେତ ବାନ୍ଧି ରଖେ ତାହା । ୩୩୬ ।
ବିଜୟ ତାହାର ହୁଏ ଧୀରେ ଧୀରେ
ବିଜୟ ଟୀକା ତ ଜଳେ ତାର ଶିରେ । ୩୩୭ ।
ସତ୍ୟାଗ୍ରହ ପଥେ ଅଧୈର୍ଯ୍ୟ କଣ୍ଟକ
ସତ୍ୟାଗ୍ରହୀ ତୁମେ ସଦା ମନେ ରଖ । ୩୩୮ ।
ଜାକେ ହିମ ଚଳ ବଜାଇ ତା' ଭେରୀ
ସ୍ୱାଧୀନତା ଆଉ ନାହିଁ ବେଶି ଡେରି । ୩୩୯ ।
ମାନବ ମୁକତି ଗଙ୍ଗା ଆମ ଦେଶେ
ବିଗଯିବ ନିଶ୍ଚେ ସ୍ୱାଧୀନତା ବେଶେ । ୩୪୦ ।
ଆମ ସ୍ୱାଧୀନତା ମାନବ ଜାତିକି
ବାଟ ଦେଖାଇବ କହୁଁଛି ପୃଥୀକି । ୩୪୧ ।
ଜମ ଜୀବନରେ ନାହିଁ ତ ବିରମ
ନିଦ୍ରାରେ କେବଳ ଯେତିକି ଆରମ । ୩୪୨ ।
ଗଠନ ମୂଳକ କାମେ ଯାଅ ଲାଗି
ଶୋଷକ ଶାସନ ନିଶ୍ଚେ ଯିବ ଭାଙ୍ଗି । ୩୪୩ ।
ସେନାପତି ବାଣୀ ଶିରୋଧାର୍ଯ୍ୟ କରି
ଗଠନ ମୂଳକ କାମ ଦେଶ ଭରି । ୩୪୪ ।

ଲାଗିଲା ସର୍ବତ୍ର ଦ୍ୱିଗୁଣ ଉତ୍ସାହେ
ବିଶ୍ୱଯୁଦ୍ଧ ଆସି ପହଞ୍ଚିବା ଯାଏ । ୩୪୫ ।
ଦେଶର ପ୍ରବଳ ଅତ୍ୟାଚାର ଦଳି
ମୁକତି ଯଜ୍ଞକୁ ରଖିବାକୁ ଜାଳି । ୩୪୬ ।
ବ୍ୟକ୍ତିଗତ ଭାବେ ଆଇନ ଅମାନ୍ୟ
କରିବାକୁ ଦେଲେ ଦେଶକୁ ଆହ୍ୱାନ । ୩୪୭ ।
ସତ୍ୟାଗ୍ରହ ନୀତି ସତ୍ୟର ଶକତି
ସତ୍ୟଠାରେ ସଦା ରଖି ଥାଅ ମତି । ୩୪୮ ।
ଫାଶୀକି ନ ଡରି କେତେ ଦେଶବାସୀ
ଆଇନ୍ ଅମାନ୍ୟେ ଯୋଗ ଦେଲେ ଆସି । ୩୪୯ ।
ମହାଯୁଦ୍ଧ ପାଇଁ ଦେଲାତ ଡାକରା
ଦର୍ପୀ ହିଟଲର ଗ୍ରାସିବାକୁ ଧରା । ୩୫୦ ।
ଘୁହୁଁ ଘୁହୁଁ ତାର ସମର ହୁଙ୍କାର
ଧରାରେ ପକାଇ ଦେଲା ହାହାକାର । ୩୫୧ ।
ଦ୍ୱିତୀୟ ସମର ପ୍ରଥମକୁ ବଳି
ଦେଶେ ମହାଦେଶେ ଉଠିଲାତ ଜଳି । ୩୫୨ ।
ବ୍ରିଟିଶ ସାମ୍ରାଜ୍ୟ ହେଲା ଥରହର
ମୁହିଁ କାହିଁ ଆଉ କରିବେ ବିଚାର । ୩୫୩ ।
ଆଗ ବିଶ୍ୱଯୁଦ୍ଧେ ଦେଇଛନ୍ତି ଦାଗ
ଭାରତବାସୀଙ୍କ ମନେ ଲାଭି ଛାଗ । ୩୫୪ ।
ଅବିଚାର କରି ଭାରତକୁ ନେଇ
ଏ ମହାଯୁଦ୍ଧରେ ଦେଲେ ତ ଲଗାଇ । ୩୫୫ ।
କୋଟି କୋଟି ଟଙ୍କା ଲକ୍ଷ ଲକ୍ଷ ସୈନ୍ୟ
ଚାଲିଲା ସଂଗ୍ରହ ଦେଶେ ଦିନୁ ଦିନ । ୩୫୬ ।
ବୁହା ହେଲା ଆମ ଖାଇବା ଆହାର
ଗରିବଙ୍କ ମୁହେଁ ବସିଲା ପାହାର । ୩୫୭ ।
ଆମ ଏ ଦେଶକୁ ରଣ କ୍ଷେତ୍ର କରି
ଠାବେ, ଠାବେ, ସୈନ୍ୟ ଦଳ ଦେଲେ ଭରି । ୩୫୮ ।
ଶତ୍ରୁ ପକ୍ଷ ସେନା ଆକାଶ ବାହିନୀ
ଉଡ଼ିଲେ ଆକାଶେ ଅସ୍ତ୍ର ଶସ୍ତ୍ର ଘେନି । ୩୫୯ ।

ଠାବେ ଠାବେ ବୋମା ବନ୍ଧୁକ ବରଷି
ବସିଲେ ଦେଶକୁ ଦେବେ ବୋଲି ଧସି । ୩୬୦ ।
ଭାବିଲେ ନିରୀହ ଭାରତର ପ୍ରଜା
ବିନା ବାକ୍ୟେ ଆସି ପହଞ୍ଚିଲା ସଜା । ୩୬୧ ।
ଭୟଭୀତ ହୋଇ ହେଲେ ବିଚଳିତ
ସେ ବେଳର କଥା ଭାବନା ଅତୀତ । ୩୬୨ ।
ନିରସ୍ତ୍ର ଜନତା ଚିର ସହାୟକ
କଂଗ୍ରେସ ଜାତିର ମୁକତି ମନ୍ତ୍ର । ୩୬୩ ।
ଧୀର ସ୍ଥିର ଚିତ୍ତେ କରି ସୁବିଚାର
କହିଲା ଏ ଯୁଦ୍ଧ ନୁହଇ ଆମର । ୩୬୪ ।
ବିଦେଶୀ ଶାସକେ ଛାଡ଼ି ଯାଅ ଦେଶ
ତମ ଲାଗି ଆମେ ହେବୁ କିଆଁ ଶେଷ । ୩୬୫ ।
ପିଟାଇ କହୁଛୁ ମନ କଥା ସତ
ଯୁଦ୍ଧରେ ଆମର ନାହିଁ ତିଳେ ମତ । ୩୬୬ ।
ସତ୍ୟାଗ୍ରହୀ ଦଳେ ଦେଲା ସେ କ୍ଷମତା
ସତ୍ୟରେ ଯାହାର ରହିଛି ମମତା । ୩୬୭ ।
ଫାଶୀ କାଠ ଲାଗି ଯେ ଅଛ ତିଆର
ମୃତ୍ୟୁ ବେଳେ ଯିଏ ଦେବ ଫୁଲ ହାର । ୩୬୮ ।
ତୋପ ଗୁଳି ଗୁଳା ବନ୍ଧୁକକୁ ଦଳି
ଭକ୍ତ ହେବ ବୀର ପ୍ରହଲ୍ଲାଦ ଭଳି । ୩୬୯ ।
ସମର ବିରତି ଧ୍ୱନି ଦେଶେ ଦେଇ
ସମ୍ମୁଖ ସମରେ ପଡ଼ି ଆଜି ତେଇଁ । ୩୭୦ ।

ବ୍ୟକ୍ତ ଭବେ ଆଇନକୁ ଭାଙ୍ଗି
କୁହ ବିଦେଶୀଙ୍କୁ ଚାଲିଯିବା ଲାଗି । ୩୭୧ ।

ଏଭଳି ବିଚାର ଦେଖି ଭାରତର
ରଗରେ ସର୍କାର ହେଲେ ଜରଜର । ୩୭୨ ।

ଗାନ୍ଧିଜୀଙ୍କ ସାଥେ ନେଇ ସପ୍ତରଥୀ
ଦୁର୍ଗେ ବନ୍ଦି କଲେ ଅବିଚାର ପତି । ୩୭୩ ।

ବନ୍ଦି ହେଲା ବେଳେ ଗାନ୍ଧୀ ଗଲେ କହି
ସବୁ ଅତ୍ୟାଚାର ଯାଅ ବନ୍ଧୁ ସହି । ୩୭୪ ।

ଜଞ୍ଜିରୀ ପାଖରେ ପଡ଼ିଛି ଏ ନାହା
କେହିତ ନାହାଁନ୍ତି ହେବେ ତୁମ ସାହା । ୩୭୫ ।
ତମେ ନିଜେ ସୈନ୍ୟ ନିଜେ ସେନାପତି
ଚଳା ତମେ ଯୁଦ୍ଧ ଦେଖି କାଳ ଗତି । ୩୭୬ ।
ଶାସନ କଳକୁ କଲେତ ଅଚଳ
ଶାସକ ଦଳତ ଫେରିବେ ମୁଲକର । ୩୭୭ ।
ଅହିଂସା ନୀତିକି ଯିବ ନାହିଁ ଭୁଲି
ମାଟି ସାଥେ ମିଶି ହୁଅ ପଛେ ଧୂଳି । ୩୭୮ ।
ଛାତ୍ର କାରିଗର ଶ୍ରମଜୀବୀ, କୃଷୀ
ସତ୍ୟାଗ୍ରହୀ ତୁମେ ଯୁଦ୍ଧ ଚଳା ଆସି । ୩୭୯ ।
ଡର ନାହିଁ ତୁମେ ବେଶୀ ଡେରି ନାହିଁ
ଛାଡ଼ିବେ ବିଦେଶୀ ଏ ଭାରତ ଭୂଇଁ । ୩୮୦ ।
ଜିଣିବ ସମର ତମେ ଆତ୍ମବଳେ
ଜୟମାଲ୍ୟ ଦେବ ସତ୍ୟ ତମ ଗଳେ । ୩୮୧ ।
ଶୁଣି ଗାନ୍ଧିଜୀଙ୍କ ଗିରଫ ଖବର
ଘୂରିଗଲା ମଥା ସାରା ଭାରତର । ୩୮୨ ।
ଗାନ୍ଧିଜୀଙ୍କ ପରେ ବଡ଼ା ନେତା ଯେତେ
ଅବିଚାରେ ବନ୍ଦି ହୋଇଲେ ସମସ୍ତେ । ୩୮୩ ।
ଚାରିଆଡ଼େ ଦେଶେ ପଡ଼ିଲା ଚହଳ
ମହାକ୍ଷୁବ୍ଧ ହେଲେ ପାଠୁଆ ମହଲ । ୩୮୪ ।
ଉଠିଲେ ଜନତା ଠାବେ ଠାବେ ମାତି
ପ୍ରତି ରକ୍ତ ବିନ୍ଦୁ ଦେହେ ଗଲା ତାତି । ୩୮୫ ।

ସରକାରୀ ଘର ସର୍କାରୀ କଚେରୀ
ପୋଡ଼ି ଭସ୍ମସାତ୍ କଲେ ସବୁ ଘେରି । ୩୮୬ ।

ରକ୍ଷିତ ଜଙ୍ଗଲ, ସବୁ ଦେଇ କାଟି
ରେଳପଥ କେତେ ପୋତି କଲେ ମାଟି । ୩୮୭ ।

ସରକାର ଶବଦ ମନୁ ଦେଇ ପୋଛି
ଆଇନ୍ କାନୁନ୍ ନ ମାନିଲେ କିଛି । ୩୮୮ ।

ପୁଲିସ ଫଉଜ କଲେ ପ୍ରତିଶୋଧ
ତିନି ଗୁଣ କରି ନେଲେ ପ୍ରତିଶୋଧ । ୩୮୯ ।

ଚଳିବ କିପରି ଦେଶର ଶାସନ
ଶାସକ ଦଳଙ୍କ ହଜିଗଲା ଜ୍ଞାନ । ୩୯୦ ।

ଜଳି ତ ଉଠିଲା ମୋ ପ୍ରାନ୍ତ ଅନ୍ତର
ପଲ୍ଲୀ ଜନପଦ ବଜାର ସହର । ୩୯୧ ।

ସେ ବେଳର କଥା କି ଅବା କହିବି
କଣିକାଏ ମାତ୍ର ମୁହିଁ ଅନୁଭବି । ୩୯୨ ।

ଦେଶ-ପ୍ରୀତି ନିଶା ଘାରିଲା ସଭିଙ୍କି
ଦେଶ ଲାଗି ଦେଲେ ଜୀବନକୁ ବିକି । ୩୯୩ ।

ଜନକ ଜନନୀ ଦାରା ସୁତା ସୁତ
କେହି ନ ପାରିଲେ ରୋଷ କରି ଚିତ୍ତ । ୩୯୪ ।

ଆଖିରେ ନାଚିଲା ବନ୍ଧୁକ ସଙ୍ଗୀନ
କାନରେ ଶୁଭିଲା ସ୍ୱାଧୀନତା ଧ୍ୱନି । ୩୯୫ ।

କୋରାପୁଟ ଲକ୍ଷୀ ନାୟକ ଲକ୍ଷ୍ମଣ
ସ୍ୱାଧୀନତା ଲାଗି ବଳି ଦେଲା ପ୍ରାଣ । ୩୯୬ ।

ହସି ଫାଶୀ କାଠେ ପଡ଼ିଲା ସେ ଝୁଲି
ଜାତି ସେତୁ ବନ୍ଧେ ଦେହ ଧୂଳି କରି । ୩୯୭ ।

ଭାରତ ବାସୀଙ୍କି ଗଲା ସେତ କହି
ସବୁ ଅତ୍ୟାଚାର ଯାଅ ବନ୍ଧୁ ସହି । ୩୯୮ ।

ସହିଲେ ପାଇବ ଫେରି ଏ ଦେଶକୁ
ଏତିକି କଥା ମୁଁ କହିଲି ଶେଷକୁ । ୩୯୯ ।

ଦେଲା ଜାଇପଡ଼ା ରକତ ମନ୍ଦାର
ଜଳିବାକୁ ଚିରି ଦେଲା ମାୟାଧର । ୪୦୦।

ନିମାପଡ଼ା ଠାରେ ଗୁଳି ଖେଳେ ପଡ଼ି
ଚାଲିଗଲା ରାମ ମାଟି ଦେହ ଛାଡ଼ି । ୪୦୧ ।

ପୋଛିବା ପାଇଁକି ଜାତୀୟ ସରମ
ସଧବା ସିନ୍ଦୂର ଲିଭାଇ ଭରମ । ୪୦୨ ।

କେତେ ଗୃହିଣୀଙ୍କୁ କଲା ଭିକାରୁଣୀ
ଦେଶବାସୀ ପାଖେ ହେଲା ନାହିଁ ଋଣୀ । ୪୦୩ ।

ଉତ୍କଳ ସନ୍ତାନ ଭାରତ କେଶରୀ
"ସୁଭାଷଙ୍କୁ" ଭାଳିଥିଲେ ବନ୍ଦି କରି । ୪୦୪ ।

ଭେଦି କାରାବାସ ଖେଦି ନୀଳାକାଶ
ଚାଲିଗଲା ସେତ ସୁଦୂର ପ୍ରବାସ । ୪୦୫ ।

ଦିଲ୍ଲୀ ଚଲୋ ବୋଲି ଦେଇ ଯୁଦ୍ଧ ଧ୍ୱନି
ଗର୍ଜି ବସିଲା ସେ ଆଜାଦ୍ ବାହିନୀ । ୪୦୬ ।

ଆମ ଦେଶ ସୈନ୍ୟ ଶିବିର ଭିତରେ
ପଶିଲା ଅଶାନ୍ତି ଆସି ଧୀରେ ଧୀରେ । ୪୦୭ ।

ବିଲାତ ବଣିକ ଦଳର ବେପାର
ଦିନୁ ଦିନ କମି ହେଲା ଛାରଖାର । ୪୦୮ ।

ଅମଳ ତନ୍ତ୍ରର ଅଙ୍ଗ ଦୁର୍ବଳତା
ଧରିଲା ବିଲାତ ବାସୀଙ୍କର ଲଥା । ୪୦୯ ।

ଦେଖିଲେ ସର୍ବତ୍ର ଖେଳୁଛି ଅଶାନ୍ତି
ଭାରତେ ଘୃଣାର ପାତ୍ର ତାଙ୍କ ଜାତି । ୪୧୦ ।

ଶାସକ ଶ୍ରମିକ ବିଜ୍ଞ ପ୍ରତିନିଧି
ଦଳଙ୍କୁ ଦିଶିଲା ପରା ସଦ୍‌ବୁଦ୍ଧି । ୪୧୧ ।

ଭାବିଲେ ଏ ଦେଶ ଲୋକ କେତେ ସତ
ଶାସି ପାରିବେ କି ଅଶାନ୍ତ ଭାରତ । ୪୧୨ ।

ଭାରତ ବାସୀଙ୍କି ଦେଇ ସ୍ୱାଧୀନତା
ଯୁଗ ଯୁଗ ଲାଗି ରଖିବା ବନ୍ଧୁତା । ୪୧୩ ।

ଯୁଗ ଯୁଗ ଲାଗି ପୃଥ୍ୱୀ ଇତିହାସ
ଗାଇବ ଆମର ଦେଶ, ଜାତି ଯଶ । ୪୧୪ ।

ଅଖଣ୍ଡ ଭାରତ କରି ଦୁଇଖଣ୍ଡ
କଂଗ୍ରେସ ହାତରେ ଦେଇ ରାଜଦଣ୍ଡ । ୪୧୫ ।

ସତାଳିଶ ସାଲ ଅଗଷ୍ଟ ପନ୍ଦର
ଛାଡ଼ି ଚାଲିଗଲେ ଭାରତ ବନ୍ଦର । ୪୧୬ ।

ବିଦେଶୀ ବନ୍ଧନ ଦେଶୁ ହେଲା ଛିନ୍ନ
ଭେଟିଲି ପତାକା ତୋତେ ମୁଁ ସେଦିନ । ୪୧୭ ।

ଆଣି ଦେଲା ଯିଏ ଦେଶ ସ୍ୱାଧୀନତା
ମନୁଷ୍ୟ ବେଶରେ ଥିଲା ସେ ଦେବତା । ୪୧୮ ।

ଛାତି ହାଡ଼ ଦେଇ ଗଲା ସେ ଜାତିକି
ଭୁଲିବ କିଏ ତା ମାନବ ପ୍ରୀତିକି ? । ୪୧୯ ।

× × ×

# କାଳ କୋକିଳ

ଦୀର୍ଘ ଦି' ପହର ପାରୁ ନାହିଁ କାଟି
କଳିଜା ଭିତର ହୋଇଯାଏ କାଟି । ୧ ।
ଏସନ ସମୟେ କିଏ ପକ୍ଷୀବର
ଡାକିଲୁ ମୋ' ପ୍ରାଣେ ଆସି କୁହୁ ସ୍ୱର । ୨ ।
ସିଞ୍ଚିଲୁ ଆଣିକି ସୁଧା ସଂଜୀବନୀ
ପୁଲକି ଉଠିଲା ଶିଥିଳ ଧମନୀ । ୩ ।
ବାଲ୍ୟ ପରିଚିତ ସଖା ମୋର ତୁହି
ଦେଖା ତୋର ମୁଖ, ଦେଖେ ଆଜି ମୁହିଁ । ୪ ।
ପିଲା ଦିନ କଥା ପଡ଼େ ମୋର ମନେ
ଭେଟିଥିଲି ତୋତେ ସେ ବଉଳ ବନେ । ୫ ।
ଶ୍ରୀପଞ୍ଚମୀ ଦିନ ଘେନି ଫୁଲ ଡାଲା
ଯାଉଥିଲୁ ସବୁ ଗୁନ୍ଥିବାକୁ ମାଳା । ୬ ।
ଗଛ ଉହାଡ଼ରେ କୁଞ୍ଜ ଘରେ ବସି
ଡାକ ଦେଲୁ ହୃଦ ଉଠିଲା ଉଲସି । ୭ ।
ମନେ ହେଲା ତୋତେ ଆଣିବାକୁ ଧରି
ଗାଇଲି ତୋ' ମଧୁ କଣ୍ଠ ଅନୁକରି । ୮ ।
ଲାଗିଲା ମୋ' ଅଙ୍ଗେ ଗୁପତ ମଳୟ
ସେ ଦିନୁ ପିନ୍ଧିଲି ତୋ' ପ୍ରୀତି ବଳୟ । ୯ ।
ଯାଇଛି ସେ ଦିନ ଲାଗେ କାଲି ପରି
ମହାକାଳ ସ୍ରୋତେ ମିଶିଅଛି ଭରି । ୧୦ ।
ଦିନ ତ କାହାରି ନ ଯାଏ ସମାନ
ଉତ୍ଥାନ ପତନ ପ୍ରକୃତି ବିଧାନ । ୧୧ ।
ଅତୀତ ଝରନ୍ତ ନଦୀ ବର୍ତ୍ତମାନ
ବହିଯାଉ ରହେ ଭବିଷ୍ୟତ ପ୍ରାଣ । ୧୨ ।
ଗଣ୍ଡୀରେ । ଯେ ଦିନୁ ପଶିଲି ଶ୍ୟାମଳତା
ଭୁଲି ମୁଁ ଦେଖିଲି ପୂତ ଚପଳତା । ୧୩ ।
ପ୍ରକୃତି କୋଳରୁ ହେଇଲି ଅନ୍ତର
ଭଜିଲି ସହର ବୃଥା ଆଡ଼ମ୍ବର । ୧୪ ।

ସେହି ଦିନୁ ତୋତେ ଦେଲି ମୁଁ ପାଶୋରି
ଶିଥିଳ ହୋଇଲା ତୋ'ର ମୋର ଡୋରି । ୧୫ ।
କେତେ ତୋର ଯଶ ଘୋଷିଲି ବହିରେ
ଫଳ କିଛି ବନ୍ଧୁ ନୋହିଲା ତହିଁରେ । ୧୬ ।
ସ୍ମୃତି ଘମୁଟରେ ପିଇକଲି ବାନ୍ତି
ପରୀକ୍ଷା ସଙ୍କଟୁ ଲଭିବାକୁ ଶାନ୍ତି । ୧୭ ।
ନ ବର୍ଷି ଛିଡ଼ିଲା ତୋର ମୋର ଭାବ
ବିକୃତ ହୋଇଲା ପ୍ରକୃତ ସ୍ୱଭାବ । ୧୮ ।
ତୋ'ର ପ୍ରିୟ ସଖା କବି, ପ୍ରେମିକର
ହୋଇ ନ ପାରିଲି ଚରଣ କିଙ୍କର । ୧୯ ।
ନ ବୁଝି ପାରିଲି ତାଙ୍କ ମନ ପ୍ରାଣ
ଅର୍ଜିଲି ମାତର ଦମ୍ଭ ଅଭିମାନ । ୨୦ ।
ଶୋଷଣ କଳରେ ହେବା ପାଇଁ ଅଣ୍ଟା
ସାଜିଲି ଗୋଟିଏ କ୍ଷୁଦ୍ର ପେଚ କଣ୍ଟା । ୨୧ ।
ଝିଣ୍ଟିକାକୁ ମାରି ପୋଷିବାକୁ ବଣି
ଗରୀବକୁ ଶୋଷି ତୋଷିବାକୁ ଧନୀ । ୨୨ ।
ବିଶ୍ୱ ବିଦ୍ୟାଳୟ କୈଳାସ କନ୍ଦରୁ
ବାଇ ବାହାରିଲି ସ୍ୱାର୍ଥର ଡମ୍ବରୁ । ୨୩ ।
ଗଳାରେ ଲମ୍ବାଇ ଦାସତ୍ୱର ହାର
ମର୍ତ୍ତ୍ୟରେ ହେଲି ମୁଁ ବାବୁ ଅବତାର । ୨୪ ।
ଆଉ ନ ଗୁହିଁଲି ତୋ' ମୁହଁକୁ ଦିନେ
ଶୁଣି ନ ଶୁଣିଲି ଡାକ ହୋଇ ଭିନ୍ନେ । ୨୫ ।
ଜୀବ ସେବା ଲାଗି ମାନବ ଜନମ
ଭୁଲିଗଲି ନିତେ ନିଜର ଧରମ । ୨୬ ।
ଅବାଟରେ ପଶି ଭୁଲିଲି ମୁଁ କୁଆଁ
ଅନୁତାପ ହେଲା ଜୀବନରେ ଥୁଆ । ୨୭ ।
ବିଧିବର ଶକ୍ତି ନ କରି କର୍ଷଣ
ଲଭିଲି ବିଧାତା ହାତରୁ କଷଣ । ୨୮ ।

ରୁଚି ଅନୁକୂଳ ନ କରେ ଯେ କାମ
ଭାଗ୍ୟ ଦେବୀ ତା'ର ସଦା ଭାଗ୍ୟେ ବାମ । ୨୯ ।
ଆସ, ଦିଏଁ ତୋର ପୟର ପଖାଳି
ଭଲ ଆଉ କିବା ଗତ କଥା ଭାଳି । ୩୦ ।
ବନ୍ଦି ଜନ ବୋଲି ନ କରତୁ ଘୃଣା
ବନ୍ଧୁହୀନ ଠାରେ ଦେଖା ତୋ' କରୁଣା । ୩୧ ।
ବନ୍ଧୁ ଜାଣେ ସିନା ବନ୍ଧୁର ପୀରତି
ବନ୍ଧୁ ଲାଗି ବନ୍ଧୁ ଲଭଇ ମୁକତି । ୩୨ ।
ମିଳିବାରୁ ଦୁଇ ବନ୍ଧୁଙ୍କ ହୃଦୟ
ପୃଥିବୀରେ ଆଜି ଗୀତାର ଉଦୟ । ୩୩ ।
ଅନୁଭବୀ ତୋତେ କହିବି ମୁଁ କିସ
ତୋର ପ୍ରିୟ ସଖା ନିଜେ ଋତୁ-ଈଶ । ୩୪ ।
ତାଙ୍କ ବିହୁନରେ ହେଉ ତୁ କିପରି
ଲୁଚି ବୁଲୁଥାଉ ମୌନବ୍ରତ ଧରି । ୩୫ ।
କରତି ହୋଇ ତୁ ବିରହ କରତେ
ଜୀବନ୍ତ ମରଣ ଭୋଗୁ ଏ ଜଗତେ । ୩୬ ।
ବିରହୀ ବୁଝଇ ବିରହୀର ଦୁଃଖ
ବିରହ ଚଖାଏ ମିଳନର ସୁଖ । ୩୭ ।
କି କହିବି ପିକ ! ମୋ' ଦୁଃଖ କାହାଣୀ
ଅନୁଭବୀ ବିନା ପାରିବ କେ ଜାଣି । ୩୮ ।
ଏକେ ବନ୍ଦୀ ଦୁଜେ ରୋଗରେ ପୀଡ଼ିତ
ବନ୍ଧୁ ବାନ୍ଧବଙ୍କ ସାଥିରୁ ବଞ୍ଚିତ । ୩୯ ।
ପୁଣି ସିପାହୀଙ୍କ ଟାଣ ଟାଣ ହିନ୍ଦୀ
ଶୁଣି ଶୁଣି ମୋର ମଥା ଦିଏ ବିନ୍ଧି । ୪୦ ।
ହୋଇପାରେ ହିନ୍ଦୀ ଭାରତୀୟ ଭାଷା
ମେଣ୍ଟିବକି ତହିଁ ମୋ' ପ୍ରାଣ ପିପାସା । ୪୧ ।
ଜୀବନ୍ୟାସ ମନ୍ତ ଯାହା ଯୋଗେ ପାଇ
ମନ ବୀଣା ଖଣ୍ଡେ ଶିଖିଲି ବଜାଇ । ୪୨ ।
ଯା' ପ୍ରେମେ ଚିଲିକା ହୋଇ ବିମୋହିତ
ଅବିରତ ଗାଏ ଅମୀୟ ସଙ୍ଗୀତ । ୪୩ ।

ବୋଳି ହେବା ଲାଗି ଯା' ଚରଣ ଧୂଳି
ପଡ଼େ ନୀଳ ସିନ୍ଧୁ ଲକ୍ଷିରେ ଉଛୁଳି । ୪୪ ।
କେତେ ଗିରି-ନଦୀ-ଗହନ କାନନ
ଛବି ଦେଖି ଯାର ଧ୍ୟାନ ନିମଗନ ! ୪୫ ।
କୋଟିଏ ମାନବ ଦୁଇ କୋଟି ହାତେ
ପୂଜୁଛନ୍ତି ଯା'ଙ୍କୁ ନିତି ସନ୍ଧ୍ୟା-ପ୍ରାତେ । ୪୬ ।
ସେ ଉତ୍କଳ ଭାଷା ଶୁଣି ନାହିଁ ପଦେ
କାରା ଜୀବନରୁ କଟିଗଲା ଅଧେ । ୪୭ ।
ବୁଝିବ କିଏ ସେ ଜାଣିବ ଏ କଥା
କା' ଆଗେ କହିବି ପକ୍ଷୀରେ ମୋ ବ୍ୟଥା । ୪୮ ।
ମାତା ଠାରୁ ପର ମାତୃଭାଷା ବଡ଼
ଭୁଲଇ ତାକୁ ଯେ ଜଡ଼ରୁ ସେ ଜଡ । ୪୯ ।
ଇଷ୍ଟ ଦେବୀ ମାତୃଭାଷା, ମାତୃଜାତି
ତାଙ୍କ ଅନାଦାରେ ଦେଶ ଆତ୍ମଘାତୀ । ୫୦ ।
ଶତ୍ରୁ ଆସୁ ପଛେ ଜିଭ ଦିଅ କାଟି
ମାତୃଭାଷା ତା'ର କର ନାହିଁ ମାଟି । ୫୧ ।
ପଶୁ ପକ୍ଷୀଙ୍କର ଅଛି ନିଜ ଭାଷା
ଭାଷାତ ଫୁଟାଏ ଜୀବନର ଆଶା । ୫୨ ।
ଶୁଣି ତୋର କଥା ଆରେ ମଧୁ ମୁଖ
ଲଘୁ ହେଲା ମୋର ଅଧେ କାରାଦୁଃଖ । ୫୩ ।
ପ୍ରିୟ ସଖା ମୋତେ କହ ସତକରି
ଏତେ ବାଟ ତୁହିଁ ଆସିଲୁ କିପରି ? । ୫୪ ।
ଅଛି ଜଣା ଶହେ ଯୋଜନ ଅନ୍ତର
ପ୍ରିୟ ପଲ୍ଲୀ ମୋ'ର ଉତ୍କଳ ପ୍ରାନ୍ତର । ୫୫ ।
ବାଘ ଭାଲୁ ଭରା ମଝିରେ ବନସ୍ତ
କି ସାହସେ ତହୁଁ ଆରମ୍ଭିଲୁ ଗସ୍ତ, । ୫୬ ।
ତୋର ଶ୍ୟାମ ପଥେ କଲୁ କା'ରେ ସାଥି
କାହା ନିକୁଞ୍ଜରେ ପୁହାଇଲୁ ରାତି । ୫୭ ।
ଫୁଲ ମଧୁ ଖିଆରେ ଆମ୍ବ ବଣୁଆଁ
କେଉଁ ଲତିକାରେ ହୋଇଲୁ କୁଣିଆଁ । ୫୮ ।

କେଉଁ ନଦୀ ତଟେ କଲୁ ତୁ ସ୍ନାହାନ
କେଉଁ ଝରଣାର ଜଳ କଲୁ ପାନ । ୫୯ ।
କିଏ ତୋତେ ଦେଲା ପକ୍ୱ ବିମ୍ବଫଳ
ବିଞ୍ଚଣା ପବନେ କଲା କେ ଶୀତଳ । ୬୦ ।
କେମନ୍ତେ କା'ଠାରୁ ପାଇଲୁ ସନ୍ଧାନ
ମଗଧ ପ୍ରାନ୍ତରେ ଏ କାର ଉଦ୍ୟାନ । ୬୧ ।
ବହୁ ଆକାଙ୍କ୍ଷିତ ମଣେ ଆଜି ମୁହିଁ
ପବନ ସୁତକୁ କଳିଗଲୁ ତୁହି । ୬୨ ।
ମୋ' ସ୍ମୃତି ହୃଦରେ ରଖିଲୁ କୀରତି
ଭୁଲି ପାରିବିନି ଏ ତୋର ପୀରତି ? । ୬୩ ।

ଏତେ ତ ଭାରତ ଭୁବନ ମୋହନ
ତହିଁରେ ଅମୂଲ୍ୟ ମାନବ—ଜୀବନ । ୬୪ ।
ଜୀବନରେ ପୁଣି ଫୁଲ ଋତୁ ବେଳ
ଫୁଲ ଋତୁ କାଳେ ପ୍ରାଣବନ୍ଧୁ ମେଳ । ୬୫ ।
ସହଜ କି ଭଲ ଏ ସବୁ ସୁଯୋଗ
ବିନା ଉଦ୍‌ଯୋଗେ ପଡ଼ିଛି ଏ ଯୋଗ । ୬୬ ।

× × ×

ଗ୍ରହ ତାରା ଖଞ୍ଜା ସୁନ୍ଦର ଗଗନ
ଫୁଲ ବାସ ଘେରା ମଳୟ ପବନ । ୬୭ ।
ସ୍ନେହ—ପ୍ରୀତି—ଭକ୍ତି ଭରା ଜନମନ
ବିହଗ ସଙ୍ଗୀତ, ନଦୀ କଳସ୍ୱନ । ୬୮ ।
ଭୋଗି ନେବା ଭଲ ଥାଉଁ ଥାଉଁ ବଳ
ବେଳ ବୁଡ଼ିଗଲେ ସରିଯିବ ଖେଳ । ୬୯ ।
ହୃଦୟେ ହୃଦୟ ଗୁପତେ ମିଳାଇ
ଦିନ ଥାଉଁ ଥାଉଁ ଯିବାରେ ପଳାଇ । ୭୦ ।
ନୀଳ ଆକାଶର ନୀଳିମାରେ ବୁଡ଼ି
ନୀରବରେ ଯିବା ଦୁହେଁ ଯାକ ଉଡ଼ି । ୭୧ ।
ଦି' ମାସର ବାଟ ଲାଗିବ ଦି'ଦିନ
ଦଉ ମନ ଯେବେ ରଖିବା ଅଭିନ୍ନ । ୭୨ ।

ମନ ବଳେ କିଛି ନାହିଁ ଅସମ୍ଭବ
ସାରା ସୃଷ୍ଟି ପର ମନରୁ ସମ୍ଭବ । ୭୩ ।
ମନଗଢ଼ା ଦ୍ୱିଜ, କ୍ଷେତ୍ରୀ, ବୈଶ୍ୟ, ଶୁଦ୍ର
ମନରୁ ମରୁତ, ବ୍ରହ୍ମା, ବିଷ୍ଣୁ, ରୁଦ୍ର । ୭୪ ।
ବିଜ୍ଞାନ, ଦର୍ଶନ, କାବ୍ୟ କାରିଗରୀ
ମନ ଝରଣାରୁ ସବୁ ଆସେ ଝରି । ୭୫ ।
ପବନକୁ ମନ କରିଲେ ବାହାନ
ଯୋଗେ ଭ୍ରମିପାରେ ଚଉଦ ଭୁବନ । ୭୬ ।
ଯୌବନ ଶାଣିତ ହୁଏ ଯେବେ ମନ
ବିଶ୍ୱରେ ଅଛି କି ତା' ଲାଗି ବନ୍ଧନ । ୭୭ ।
ମନୁଷ୍ୟକି ତାକୁ କରିପାରେ ବାଧ୍ୟ
ଅସାଧ୍ୟ ସାଧନ କରେ ସେ ସୁସାଧ୍ୟ । ୭୮ ।
ଆମ ଠାରେ କିରେ ନାହିଁ ମନୋବଳ
ଯୁବକ ଆମେ କି ମହାକାଳ ଫଳ । ୭୯ ।
ବିପ୍ଳବ ଯୁବକ-ଯୁବତୀର ଧର୍ମ
ଶୃଙ୍ଖଳ ଚୂରିବା ଯୌବନର କର୍ମ । ୮୦ ।
ଯୀଶୁ, ମହମ୍ମଦ, ବୁଦ୍ଧ, ଚଇତନ
ଶଙ୍କର, ନାନକ, ଶ୍ରୀରାମ ମୋହନ । ୮୧ ।
ଶ୍ରୀ ବିବେକାନନ୍ଦ, ଶ୍ରୀମତୀ ବେଶାନ୍ତ
ବିଶ୍ୱ ଇତିହାସେ ସହସ୍ର ଦୃଷ୍ଟାନ୍ତ । ୮୨ ।
ସରବେ ଯୌବନ ପରଶେ ବିପ୍ଳବୀ
ବିପ୍ଳବୀ ଆଙ୍କଇ ବିଶ୍ୱେ ନବ ଛବି । ୮୩ ।
ସ୍ୱାଧୀନ ଇଟାଲି ସ୍ୱାଧୀନ ଜାପାନ
ଜଗଦ୍ ବ୍ୟାପୀ ଯେଉଁ ତୁରସ୍କ ସମ୍ମାନ । ୮୪ ।
ଜାଗ୍ରତ ଆଜି ଯେ ଗ୍ରଇନା ଅନ୍ତର ।
ଯୁବଗୋଷ୍ଠୀଭିଆରେ ହେଲା ଯୁଗାନ୍ତର । ୮୫ ।
ଋଷାରେ ଋଷିଆ ଅଳକା ଛଟାଇ
ସରଗ ଖିରି ଯେ ଆଣିଲା ଛଡ଼ାଇ । ୮୬ ।
ସର୍ବତ୍ର ବିଦ୍ରୋହୀ ଉଦ୍ଦାମ ଯୌବନ
ଜାଳିଛି ତ୍ୟାଗର ଜ୍ୱଳନ୍ତ ଜୀବନ । ୮୭ ।

ଫୁତ୍କାରେ ଲିଭଇ ପ୍ରଳୟ ଅନଳ
ଯାହାର ମସ୍ତକୁ କରିଛି ଶ୍ୟାମଳ । ୮୮ ।
ତେବେ ରେ ଆମର ଭାବନା କାହିଁକି
ଦେଖି ଲଠିଧାରୀ ସିପାହୀ ଗହଳି । ୮୯ ।
କେତେଜଣ ଅବା ଏଠି ଅସ୍ତ୍ରଧାରୀ
ବ୍ରିଟିଶ ସାମ୍ରାଜ୍ୟ ଯେତେକ ଶିକାରୀ । ୯୦ ।
ନିତି ପିଇ ଗୁଣ୍ଡୀ-ମୁଣ୍ଡିଆ ରକତ
ଜଗତେ ବୋଲନ୍ତି ବିଶ୍ୱାସୀ ଭକତ । ୯୧ ।
ଘେନି ତରବାରୀ, ପିସ୍ତଲ, ବନ୍ଧୁକ
ଫିରିଙ୍ଗି କମାଣ୍ଡରୁ ବିଷାକ୍ତ ଚାବୁକ । ୯୨ ।
ଚଳାଇ ସମସ୍ତ ଜଡ଼ା ବୁଡ଼ା ତରୀ
ନ ପାରିବେ ଆମ ପଥ ରୁଦ୍ଧ କରି । ୯୩ ।
ବେଶୀ ବଢ଼ ହେଲେ ଦେହକୁ ଆମର
ଜୀବାତ୍ମା ପାଖରୁ କରିବେ ଅନ୍ତର । ୯୪ ।
ଫେରିଯାଇ ଆମେ ଜନମିବା ପୁଣି
ମାତୃଭୂମି ପାଖେ ହେବା ନାହିଁ ଋଣୀ । ୯୫ ।
ଯାବତ୍ ନୋହିଛି ଯାହାର ମୁକତି
ଲଢ଼ୁଥିବା ଆମେ ଯାବତ୍ ଶକତି । ୯୬ ।
ବହୁଥିବା ଯାଏ ନାସାରେ ନିଃଶ୍ୱାସ
ନିଜ ଠାରେ ନିଜେ ରଖିବା ବିଶ୍ୱାସ । ୯୭ ।

\+ \+ \+

ନମସ୍ତେ ନମସ୍ତେ ମଧୁ ଦୂତ ବର
କହ କାହିଁ ପାଇଁ ନ ଦେଉ ଉତ୍ତର । ୯୮ ।
ମୋ' ମନ ଚନ୍ଦନ ନାଇ ଦେଲି ତୋତେ
ଅଭିମାନ ବନ୍ଧୁ କରୁ କିଆଁ ମୋତେ । ୯୯ ।
କରି ନାହିଁ ତିଳେ ତୋର ପାଖେ ଛନ୍ଦ
କେଉଁ କଥା ମୋର ନ ହେଲା ପସନ୍ଦ । ୧୦୦ ।
ଖୋଲି କହିଲି ଯା' ହୃଦୟର ଭାବ
ଦୋଷ ଥିଲେ ଦିଅ ସୁଧାରି ସ୍ୱଭାବ । ୧୦୧ ।
ଦେଶ କାଳ ପାତ୍ର ରୁଚି କରି ମୂଳ
ବାଟ ବତା ମୋତେ ମୁକ୍ତି ଅନୁକୂଳ । ୧୦୨ ।
ତାହା ପାଖେ କଲି ଆତ୍ମ ସମର୍ପଣ
ମୋ ଜୀବନ ଆଶା କର ତୁ ପୂରଣ । ୧୦୩ ।
ଗାଆନା ଗାଆନା ପିକ ବର ଆଉ
ବୁଝିଲିଣି ତୋର ହୃଦ-ଦୁଃଖ ଦାଉ । ୧୦୪ ।
ଆମ ଭବ ତୋର ନାହିଁ ଆଜିକାଲି
ରାଜନୀତି ସ୍ରୋତେ ପ୍ରାଣ ଦେଇ ଢାଳି । ୧୦୫ ।
ସ୍ୱାଧୀନତା ବ୍ରତ କରିଛୁ ଗ୍ରହଣ
ସାମ୍ୟବାଦ ତୋର ଜୀବନର ପଣ । ୧୦୬ ।
ପୋଷି ଅଛ ଆଶା ମର୍ତ୍ତେ ଦେଖିବାର
ସସାଗର ଧରା ବିଶ୍ୱ ପରିବାର । ୧୦୭ ।
ସଂଗୀତ ସୌନ୍ଦର୍ଯ୍ୟ ନ ବଳାଅ ମନ
ଦିନରାତି ଚିନ୍ତା ଅଶନ ବସନ । ୧୦୮ ।
ଦରିଦ୍ର ଉପରେ ଧନୀ ଅତ୍ୟାଚାର
ପ୍ରଜାଙ୍କ ରକତେ ରଜାଙ୍କ ଶିକାର । ୧୦୯ ।
ବଦଳାଇ ଅଛି ତୋର ମତି ଗତି
ଭ୍ରୂକ୍ଷେପ ନାହିଁ ତୋ' ଅନ୍ୟ କାର୍ଯ୍ୟ ପ୍ରତି । ୧୧୦ ।
ଶଶୀ ସାଥେ ଯେହ୍ନେ ଜଡ଼ିତ ସବିତା
କବି ସାଥେ ଯେହ୍ନେ କବିର କବିତା । ୧୧୧ ।
ଫୁଲ ସାଥେ ଯଥା ଫୁଲର ସୁଗନ୍ଧ
ଜୀବ ସାଥେ ଯଥା ଶରୀର ସମ୍ବନ୍ଧ । ୧୧୨ ।
ପ୍ରଜାଙ୍କର ଯଥା ଦେଶ ରାଜନୀତି
ଦୁଃଖ-ସୁଖ, ଧର୍ମ କର୍ମ ମୂଳଭିତ୍ତି । ୧୧୩ ।
ସେହି ରାଜନୀତି ତୋତେ ଅଛି ଘାରି
ଛାଡ଼ି ଘରଦ୍ୱାର ଆସୁଛୁ ବାହାରି । ୧୧୪ ।
ଉବୁ ଚଢ଼ିବାକୁ ରାଜପଦ ଭିଡ଼ି
କୂଟ କପଟତା ନର ହତ୍ୟା ପ୍ରୀତି । ୧୧୫ ।
ପିକବର ତୁହି ବାନ୍ଧ ପରିକର
ଜପୁ ସଦା ସତ୍ୟ ଅହିଂସା ମନ୍ତର । ୧୧୬ ।

ସେଥିଲାଗି ତୋତେ ମୋର ଏ ବିଗ୍ରହ
ଲାଗିଲା ଯେସନେ କ୍ଷୀର ସଙ୍ଗେ ଖାର । ୧୧୭ ।
ସତ୍ୟାଗ୍ରହୀ ପକ୍ଷେ ଏ ଭଳି ଭାବନା
କୋମଳ ପରାଣେ ହେଲା କି ଯାତନା । ୧୧୮ ।
ସତ୍ୟାଗ୍ରହ ଯୁଦ୍ଧେ ନାହିଁ ଲୁଚକପା
ସତ୍ୟାଗ୍ରହ ନୀତି ଦିନ ପରି ସଫା । ୧୧୯ ।
ଅଧୈର୍ଯ୍ୟ ଏ ପଥ ବିଷାକ୍ତ କଣ୍ଟକ
ଜାଣୁ ଜାଣୁ ଆଜି ଭୁଲିଲି ସେତକ । ୧୨୦ ।
ସୈନିକ ଚିତ୍ତ ମୁଁ କଲି ବିଚଳିତ
ନୀତି ପଥୁ ସଖା ହୋଇଲି ସ୍ଖଳିତ । ୧୨୧ ।
ରୂପଭେଦ ଦେଖି ଭାବୁଥା ତୁ ଯାହା
ବାସ୍ତବରେ ପକ୍ଷୀ ଅଟେ କି ମୁଁ ତାହା ? । ୧୨୨ ।
ସତ୍ୟାଗ୍ରହ ପଢ଼େ କରିଅଛି ସହି
ହେଇପାରିଛି କି କେବେ ସତ୍ୟାଗ୍ରହୀ ? । ୧୨୩ ।

●

## ସେ ଯେ ମୋର ସେ ଯେ ତୋର

କହ ମୋତେ କିଏ ତୋତେରେ
ରହିଛି ଆକୁଳେ ଚାହିଁ
ସେ ଯେ ମୋର, ସେ ଯେ ତୋର
ଜନନୀ ଜନମ ଭୂଇଁ

ତରୁ ଲତା ପତ୍ର ଘେରା
ସବୁଜ ଗାଳିଚା ପରା
ପ୍ରଣୟ ପ୍ରୀତି ପସରା
ମାଟିର କୁଟୀର ଭରା
ହସେ ଯହିଁ ସରସୀରେ
କେତେ ନାଲି ନୀଳ କଇଁ
କହ ମୋତେ କିଏ ତୋତେ.. ......।

ଯହିଁ ଜନକ ଜନନୀ
କେତେ ଦେବା ଦେବୀ ମାନି
ବଢ଼ାଇଲେ ତନୁ ତୋର
ସହିଣ କଷଣ ଘୋର
ଦେଲେ ଢ଼ୋକେ ଖଣ୍ଡ କ୍ଷୀର
ଅଇଣା ତୋରଣି ପିଇ
କହ ମୋତେ କିଏ ତୋତେ.......।

ଯହିଁ ହଳଦୀ ବସନ୍ତ
ତୋ ବିହୁନେ ହତସନ୍ତ
ଡାକ ଉହାଡ଼େ କପୋତ
କୋମଳ ସ୍ୱରେ ସତତ
ଝୁରେ ତୋତେ ବନ ପଥେ
କରୁଣ ସଙ୍ଗୀତ ଗାଇ
କହ ମୋତେ କିଏ ତୋତେ........।

ଯା'ର ଧୂଳି ହୋଇ ବୋଳି
ଖାଇଲୁ ପାରି ତା କୋଳି
ଖେଳିଲୁ ତ ଲୁଚକାଳି
ବରଗଛ ତଳେ ଦୋଳି
ସାତ ପାଞ୍ଚ ସାଥେ ହେଲୁ
ପ୍ରଜାପତି ଘେନି ବାଇ
କହ ମୋତେ କିଏ ତୋତେ........।

ଉଡ଼ାଇ ପଣତ ଜାନି
ଯାଏ ତୋ କୁଟୀର ରାଣୀ
କାଖରେ କଳସି ଘେନି
କେ ଇଙ୍ଗିତ ଡାକ ଶୁଣି
ତରଳେ ପରାଣ ତା'ର
ତୋ ଛବି ମନେ ପକାଇ
କହ ମୋତେ କିଏ ତୋତେ........।

ଘୋର ବରଷା ରାତିରେ
କେହି ତ ନାହିଁ ସାଥିରେ
ଝିପି ଝିପି ପଡ଼େ ପାଣି

ତା ଲୁହ ଝିଅର ହାଣି
ବହେ ତାର ଲୁହଧାର
ଲେଖଟ ଚିଠି ନ ପାଇ
କହ ମୋତେ କିଏ ତୋତେ.......।
ବରଷେ ଛ ମାସ ପରେ
ଫେରିବୁ ଯେବେ ତୁ ଘରେ
ତୋ ସ୍ନେହ ପିତୁଳା ଯାକ
ଦେଇ 'ବାପା ବାପା' ଡାକ
ନାଚି ନାଚି ପାଖେ ତୋର
ଆସିବେ ହରଷେ ଧାଇଁ
କହ ମୋତେ କିଏ ତୋତେ.........।
ଦେଖିବୁ ତୋ ସ୍ୱରାଜ୍ୟ
ସରଗୁ ବଳି ସେ ରାଜ୍ୟ
ତୋ ସାଇଁ ଓଡ଼ିଶା ଆସି
ଝୋଟିବେ ତୋତେ ହସି
ମୁଖ ଦେଖି ଦୁଃଖ ଯିବ
ତୋ ସୁନା ସଂସାର ପାଇ
କହ ମୋତେ କିଏ ତୋତେ.........।

ହଜାରିବାଗ ଜେଲ,
୧୯୩୨

●

## ଆମେ ହିନ୍ଦୁ, ଆମେ ମୁସଲମାନ

ଆମେ ହିନ୍ଦୁ
ଆମେ ମୁସଲମାନ
ଭାରତ ଆମର ଜନ୍ମ ମାଟି
ଜବର ଆମର ହିନ୍ଦୁସ୍ଥାନ,
ଆମେ ହିନ୍ଦୁ, ଆମେ ମୁସଲମାନ ।
ଆମେ କୋଟି କୋଟି ଭାରତବାସୀ
ଶ୍ରମ କାରିଗର ମୂଲିଆ ଚାଷୀ
ଆମେ ଅଟୁ ଶିଖ, ବୌଦ୍ଧ, ପାର୍ଶୀ
ଆମେରେ ଜଇନ, ଖିରସ୍ତାନ,
ଆମେ ହିନ୍ଦୁ, ଆମେ ମୁସଲମାନ ।
ମସ୍‌ଜିଦ୍ ଯେଉଁ ମାଟିରେ ଗଢ଼ା
ଗୀରିଜା ମନ୍ଦିର ତହିଁରେ ଛିଡ଼ା
ଏକା ପାଣି ଏକା ପବନେ ବଞ୍ଚୁ
ଏକା ରକ୍ତରେ ଗଢ଼ା ଆମରି ଜାନ୍ ।
ଆମେ ହିନ୍ଦୁ ଆମେ ମୁସଲମାନ ।
ଆମ ହିମଗିରି ଆମରି ଗଙ୍ଗା
ଯେତେ ଭାଙ୍ଗିଲେ ସେ ନୋହିବେ ଭଙ୍ଗା
ସତ୍ୟ ଅହିଂସା ଆମ ଦେବତା
(ଆମେ) ଚାରି ତେଜରେ ତେଜିୟାନ,
ଆମେ ହିନ୍ଦୁ ଆମେ ମୁସଲମାନ ।
ଆମ ଇତିହାସ ଗଢ଼ିଛୁ ଆମେ
ବିଶ୍ୱ ଚମକଇ ଆମରି ନାମେ
ଡରି ନାହୁଁ କେବେ ଡରିବୁ ନାହିଁ
ଜୀବନ କରିବୁ କୋରବାନ୍,
ଆମେ ହିନ୍ଦୁ, ଆମେ ମୁସଲମାନ ।
ଆମ ଦେଶକୁ ଯେ କରିବ ଲୋଭ
ତିଳେ ହେଲେ ତାର ନୋହିବ ଲାଭ
ଇଞ୍ଚେ ହେଲେ ଯାଗା ଛାଡ଼ିବୁ ନାହିଁ
ନୋହିବୁ କଦାପି ବେଇମାନ,
ଆମେ ହିନ୍ଦୁ, ଆମେ ମୁସଲମାନ ।

●

## ବଡ଼ ଗହନ କଥା

ଦେଶ ପୀରତି ବଡ଼ ଗହନ କଥା
ମଧୁର ମଧୁର ଆକାଶଠୁ ଦୂର
ମରଣଠୁ ବଳି ପରଣ ବ୍ୟାଥା
ଦେଶ ପୀରତି
ଯୋଗୀ ଯୋଗଠାରୁ ଯୋଗ ଜଟିଳ
ଚାଣକ୍ୟ ନୀତିରୁ ନୀତି କୁଟୀଳ

କବି ପ୍ରାଣଠାରୁ କୋମଳ ପରାଣ
ବିଜ୍ଞାନୀ ଠୁ ବଳି ସୁଜ୍ଞାନୀ ମଥା
ଦେଶ ପୀରତି........
କରତାଳି, କେବେ କୁସୁମ ହାର
କେବେ ହାତକଡ଼ି ଲଠି ପ୍ରହାର
ଦେଖିବାକୁ ହୁଏ କେବେ ଜୀବନରେ
ନିଜ ସୁତ ଦାରା ଜନନୀ ହତ୍ୟା
ଦେଶ ପୀରତି.....
କେବେ ଫୁଲ ବାସ ପୂନେଇ ଜହ୍ନ
କେବେ ଅନ୍ଧକାର ଝଡ଼ ପବନ
କେବେ ବିବେକକୁ ବଳି ଦେବା ସିନା
ଲୋକ ସେବା ପାଇଁ ପଡ଼େ ଅଗତ୍ୟା
ଦେଶ ପୀରତି.... ...
ପଦ, ଗଉରବ, କେବେ ସମ୍ମାନ
କେବେ ଅନଶନେ ଖୋଜେ ମରଣ
ଟିକି ଟିକି ହୋଇ ମରିବାକୁ ହୁଏ
ଜାଳି ଦେଇ ନିଜେ ନିଜର ଚିତା
ଦେଶ ପୀରତି.......

●

## ବୀର ସୈନିକ

ବୀର ସୈନିକ ତୁ' ରେ ଭାରତ ଯୁଗ ଯୁବକ
ଶ୍ରମିକ ତୋର ଦୀପ୍ତ ସଙ୍ଗୀନ
କୃଷକ ତୋର ବନ୍ଧୁକ ।
ଭାଇ ଯାଆନା ଭୁଲି
ରକ୍ତରେ ତୋର ରହିଛି ଭରି
ତପ୍ତ ମଧୁର ଗୁଳି ।
ଉଠାଇ ପାରିଲେ ଫୁଟାଇ ପାରିଲେ
ପୃଥୀରେ ରହିବେ ନାହିଁ ଶୋଷକ ।
ହୁଅ ତୁ ହୁସିଆର
ଦୁନିଆଁ ଆଜି ଟଳମଳ
ରାଷ୍ଟ୍ର ସବୁ ତ ଚୂରମାର
ଧନିକ ଶାସନ ଧ୍ୱଂସ ମୁଖରେ
କ୍ଷିପ୍ତ ସକଳ ରାଜ ବଣିକ ।
ହୃଦୟ ବେତାର ଯନ୍ତ୍ର ବଜାଇ
ଶୁଣନ୍ତୁ ପୃଥିବୀ ମାନବ ଯାକ ।
ପ୍ରତିଜ୍ଞା ଆଜି କର
ମହା ମାନବର ଆଦେଶ ପାଳି ତୁ
ମରିବାର ହେଲେ ମର ।
ଚାହାଁନା ଚାହଁନା ପଛକୁ ଫେରି ତୁ
ଶୁଭ ଯୋଗ ସଦା ପଡ଼େ କ୍ଷଣିକ ।

●

## ଧନ ବଳଠାରୁ ବଡ଼ ମନ ବଳ

କାନେ କାନେ ଏତେ
ଶିଖାଉଛ ନିତି
ହେଉନାହିଁ ପର ଆମରି ଶିକ୍ଷା
ମନେ ମନେ ଲୁଚି
ପରୀକ୍ଷା କରୁଛ
ପଡୁ ନାହିଁ ଆମ ଶେଷ ପରୀକ୍ଷା ।
ହାତ ଧରି ଖାତା
ଦେଉଛ ଲେଖାଇ
ବହି ଧରି ଛବି
ଖୋଲିଛ ଦେଖାଇ
ବୁଦ୍ଧି ଦେଇ ଯେତେ
ବୁଦ୍ଧିଆ କରୁଛ
ଭୁଲିଯାଇ ସେତେ ହେଉଛ ବୋକା
ହେଉ ନାହିଁ ପର ଆମରି ଶିକ୍ଷା ।
ଅରଜିଲୁ ବ୍ୟାଧି
ସୃଜିଲ ଔଷଧି
ଜଳ ନଷ୍ଟ କଲୁ
ଭରିଲ ଜଳଧି

ଅନ୍ଧାର ପାଇଁ କି
ଦେଲ ରବି ଶଶୀ
ଅକ୍ଷି ଥାଇଁ ଥାଇଁ ଆମେ କଳକା,
ହେଉ ନାହିଁ ପର ଆମରି ଶିକ୍ଷା ।
କଳ କେତେ ଗୋଟା
ହାତରେ ତିଆରି
ଭାବିଲୁ ନିଜକୁ
ସୃଷ୍ଟି ଅଧିକାରୀ
ତମକୁ ଭୁଲି କି
ନିଜେ ତ ମଲୁଣି
ତମେ ପରବତ ଆମେ ତ ଟେକା,
ହେଉ ନାହିଁ ପର ଆମରି ଶିକ୍ଷା ।
ଧନ ବଳ ଠାରୁ
ବଡ଼ ମନ ବଳ
ବଳ ଠାରୁ ଆତ୍ମ-
ଶକତି ଅଟଳ
ଆଖି ଆଗେ ଆଜି
ବୁଝାଇ ଦେଉଛ
ତୁମ ଯୋଗେ ଆମେ ପାଇବୁ ରକ୍ଷା,
ହେଉ ନାହିଁ ପର ଆମରି ଶକ୍ଷା

●

ଯବନିକା

ଗଲ,
ତମେ କେତେ ଜଣ
ଜୀବନକୁ ପାଣି
ଛଡ଼ାଇ ନ ଦେଲେ ଚଳିବ କି ?
ଦଧୀଚିର ହାଡ଼
ଉଜାଡ଼ି ନ ଦେଲେ
ଭାରତର ଭାଗ୍ୟ ଫେରିବକି ?
ଶେଷ ଯବନିକା
ହେଲଣି ପତନ

ବଦଳି ଯିବ ଏ
ବିଦେଶୀ ଶାସନ
ଶୋଷଣ ନୀତିର
ବତୀ ଲିଭି ଆସେ
ଜଳାଇଲେ ଦୀପ ଜଳିବ କି ?
ଆଖି ଆଗେ ସଫା
ଦିଶେ ଜଳ ଜଳ
ସ୍ୱାଧୀନତା ସ୍ରୋତ
ଆସଇ ପ୍ରବଳ
ପହିଲି ଆଷାଢ଼
ନଇ ବଢ଼ି ପାଣି
ତମେ ତାକୁ ଲୋଭେ ପିଇବ କି ?
ଧନୀ, ମହାଜନ,
ରଜା, ଜମିଦାର
ତ୍ୟାଗ ମାଳି ଧରି
ହୋଇବେ ବାହାର
ଗେରୁଆ ବସନ
ମଧୁର ବଚନ
ଶୁଣି ନିଜ ନୀତି ଭୁଲିବ କି ?
ଧଳା ବଦଳରେ
କଳା ହେଲେ ଯୋକ
ମେଣ୍ଟିବ କି କୋଟି
ଗରିବଙ୍କ ଦୁଃଖ
ଚାଷୀ ମୂଲିଆଙ୍କ
ଖପୁରିକି ଚୂରି
ଦିଲ୍ଲୀ ଦରବାର ଚୋଳିବ କି ?
ତମରି ରକ୍ତରେ
ଜାତୀୟ ପତାକା
ରଙ୍ଗାଇବ ଯେବେ
ଏହି ଶତଧନ୍ଦ୍କା
ମାନବ ଜାତିକି
ବଞ୍ଚାଇ ରଖିବ
ପୃଥିବୀରେ ଯିବ ନାଆଁ ରଖି ।

## ବେଶି ଡେରି ନାହିଁ

ଦେଶ ଦଶ କହି
ଦେଶରେ ବୁଲିଛି
କି କରିଛି ଅବା ଦେଶର ପାଇଁ
ଋଷିଅର ତ୍ୟାଗ
ସ୍ୱଇନାର ଧୈର୍ଯ୍ୟ
ତାଙ୍କ ଆତୁବଳୀ ଆମର କାହିଁ ?
ଖାଇ ବେତମାଡ଼
ଲଠିର ପାହାର
ଟିକଟ କାଟିଛି
ଭେଟି କାରଗାର
ସ୍ୱରଣା ଦେଇ ମୁଁ
ଷୋଳଣା ଖୋଜିଛି
ଖ୍ୟାତି ଖାତାରେ ମୋ ନାଁ ଲେଖାଇ ॥
ଗାଲି କାଉନ୍‌ସିଲ
କାଉଁରି ଦେଶକୁ
ଗଢ଼ିବାକୁ ଛାଡ଼ି
ମୁକତି ହାଡ଼କୁ
ମୁକ୍ତିତ ନୋହିଲ
ଚୁକ୍ତିତ ଭର୍ଗିଲ
ଅଫଳନ୍ତି ଗଛ ଫଳନ୍ତା କାହିଁ ?
ସତ୍ୟାଗ୍ରହ ପକ୍ଷେ
ଦେଇ ମୋର ସହି
ହୋଇ ପାରିଲି କି
କେବେ ସତ୍ୟାଗ୍ରହୀ
ମିଛ ଛପାଇଲି
ସତ ମଲାଟରେ
ସୁନେଲି ଅକ୍ଷରେ ବହି ବନ୍ଧାଇ ।
ବାଇଶି ବରଷ—
କାଳ ସେନାପତି
ଶିଖାଇଲେ ସଦା
ଅହିଂସାର ନୀତି
ସିପାହୀ ହୋଇଲି
ବନ୍ଧୁକ ଧଇଲି
ଗୁଳି ବାରୁଦ ତ ଭିତରେ ନାହିଁ ।
ସେହି ଗାନ୍ଧୀ ହାଡ଼
ଗାନ୍ଧୀର ରକତ
ଫେରାଇ ଆଣିବ
ସ୍ୱାଧୀନ ଭରତ
ବେଶୀ ଡେରି ନାହିଁ ପଳାଇ ଯିବ ସେ
ସଂସାର ପୃଥିବୀକି
ପଥ ଦେଖାଇ

● ● ●

## ସ୍ୱାଧୀନତାର ଡାକ

ଧୀରେ ଧୀରେ ତରୀ ବାହାରେ ନାଉରୀ
ଧୀରେ ଧୀରେ ବାହା ରେ ତରୀ
ଆଗକୁ ପଛକୁ କେହି ନାହିଁ ତୋର
ତୁହି ଏକା ସାହା ତୋହରି ।
ଚହୁଁ ଦିଗେ ଘୋଟି ଅଛି ମେଘ
ବଢ଼ି ଚାଲିଅଛି ପବନର ବେଗ
ବିଜୁଳି ଚମକ ଘଡ଼ ଘଡ଼ି ଡାକ
ଆତଙ୍କିତ କରେ ପ୍ରାଣ ସବୁରି ।
ତୁହି ଏକା ସାହା ତୋହରି ।
ନଦୀ ପରବତ ଏକା ଏକା ହେଲି
ଲହରୀ ଉପରେ ଆସଇ ଲହରୀ
ବତୀଘର ସୀମା ନ ଦିଶଇ ଜମା
ବୁଲୁଅଛି ତରୀ ଅନ୍ଧାରେ ଘୁରି
ତୁହି ଏକା ସାହା ତୋହରି ।
ଛାତି ଦମ୍ଭ କରି ଚଳା ତୋର ହାତ
ମୁଠା ଟାଣ କରି ପକା ତୋର ଗୋଡ଼

ଅଛି ଯେତେ ଘାଟୀ ହିବ ସବୁ କଟି
ନାଟ ଛାଡ଼ି ଦେବ କାଳ ଭଉଁରୀ
ତୁହି ଏକା ସାହା ତୋହରି ।
ନିଜ ନୀତି ପରେ ରଖ ତୁ ବିଶ୍ୱାସ
ହୋଇ ଯହୁଁ କେବେ ନ ହେବୁ ହତାଶ
ଧୀର ହେଲେ ଶୁଦ୍ଧି ଦିଶିଯିବ ବୁଦ୍ଧି
ଲକ୍ଷ୍ୟ ହେବ ସିଦ୍ଧି ଯିବା ଉତୁରି
ଧୀରେ ଧୀରେ ବାହାରେ ତରୀ ।

ସ୍ୱାଧୀନତା ଯୁଦ୍ଧ
ଆରମ୍ଭିଲେ ଯେବେ
ଶକତି ଭଣ୍ଡାର
ଦିଏ ରେଖି ପାଖେ
ପୂର୍ଣ୍ଣ ସ୍ୱାଧୀନତା
ଲଭି ଯୁଦ୍ଧ ଜିଣି
ଯୁଗେ ଯୁଗେ ତୁମେ ଅମର ହୁଅ
ଦମ୍ଭ ଧରି କେତେ...... ।

● ● ●

## ମରିବ କିଏ ସେ ?

ଜନ୍ମ ଧରି କେତେ ଯଶ ରହିବ ରୁହ
ସ୍ୱାଧୀନ ଭରତ
ଚିତ୍ରପଟ ଆଙ୍କି
(ଭଇ) ମରିବ କିଏ ସେ ଫିଟାଇ କୁହ ।
ପଞ୍ଚିଶ କୋଟୀ ଯେ
ଲୋକ ଏ ଦେଶରେ
ଲକ୍ଷେ ଲୋକ ଯେବେ
କାଟିବେ ଡୋର
ଏମିତି ଉଠିବଟି
ହିମାଳୟ ଗିରି
ଲେଉଟି ଆସିବ ଯମୁନା ସୁଅ
ଦମ୍ଭ ଧରି କେତେ...... ।
ସ୍ୱାଧୀନତା କେବେ
ରହେଁ ନାହିଁ ଚୁକ୍ତି
ଯୁକ୍ତି ବଳେ କେବେ
ମିଳେ ନାହିଁ ମୁକ୍ତି
ସ୍ୱାଧୀନତା ଦେବୀ
କିମନା ଝୁଅଛି
ଦେଖିଲେ ଆଖିରେ ଭୀରୁଙ୍କ ଲୁହ
ଦମ୍ଭ ଧରି କେତେ......

● ● ●

## ସେ ଦେବତା ପଥ ଯାତ୍ରୀ

ଆମେ ସେ ଦେବତା ପଥ ଯାତ୍ରୀ
ହିମାଚଳ ଶିଖ ଶ୍ରୀମାଚଳ ବ୍ୟାପି
ଗୁଞ୍ଜେ ଯାର ଜୟଗୀତି ।
ଗୀତାର ଧରମ ଅହିଂସାର ମର୍ମ
ଭେଦେ ଯାର ହୃଦ ତନ୍ତ୍ରୀ ।
ଭରତ ଚରିତ୍ର ଜଟ୍ କଟ୍ ହୁଙ୍କାର
ଗଗନେ ଯାଏ ଛୁରିଟି ।
ସେ ଦେବତା ସଙ୍ଗେ ତୋଳିବୁ ନିଶାଣ
ତାର ମନ୍ଦେ ଆମେ ମାତି ।
ଜଗତେ ଘୋଷିବୁ ନବୀନ ଆଦର୍ଶ
ଶତ୍ରୁ ହେବ ମଥା ପୋତି ।
ସୁତା ଶିଅଣରେ ଫେରାଇ ଆଣିବୁ
ଜନମଭୂମି ମୁକତି
ଦେଇ ପ୍ରାଣବଳୀ ଦେଖାଇବୁ ଆମେ
ଜଗତେ ନୈତିକ ଶକ୍ତି ।

● ● ●

## ଖଦୀ ତ ପ୍ରାଣ ଦେବତା

ଖଦୀ ତ ଦେଶର ପ୍ରାଣ ଦେବତା
ପାଇଛି ମୋ ଦେଶ ଖଦୀର ସନ୍ଦେଶ
ବୁଝିଛି ଖଦୀର ମରମ କଥା
ଖଦୀ ତ ଦେଶର ପ୍ରାଣ ଦେବତା ।

ଖଦୀ ମୋର ଧନ    ଖଦୀ ମୋର ଧ୍ୟାନ
ଖଦୀ ମୋର ସ୍ଥାନ    ଖଦୀଟି ବିଜ୍ଞାନ
ଖଦୀ ମୋର ବଳ    ଖଦୀ ସମ୍ବଳ
ଗର୍ଜି ଅଛି ଦେଶ ଜାତି ମମତା
ଖଦୀ ତ ଦେଶର ପ୍ରାଣ ଦେବତା ।
ହିନ୍ଦୁ    ମହମଦୀ    ଇସାଇ    ଜଇନ
ବଉଦ୍ଧ    ପାରସୀ    ଶିଖ    ଆଦି    ଜନ
ସବୁରି    ପରାଣେ    ନବ ଜୀବ    ଆଣେ
ପୂରୁଇ ମାନବ ପ୍ରୀତି ଏକତା
ଖଦୀ ତ ଦେଶର ପ୍ରାଣ ଦେବତା ।
ବିଶ୍ୱ ସେବା ବ୍ରତ    ରାଖୀ ବାନ୍ଧି ହାତେ
ଚାଲିଛି ଯେ ନିଃସ୍ୱ    ମାନବଙ୍କ ସାଥେ
ମରି ନାହିଁ କେବେ    ମରିବ ନାହିଁ ସେ
ଅଗ୍ନି ପରୀକ୍ଷାରେ ତୋଳିଛି ମଥା
ଖଦୀ ତ ଦେଶର ପ୍ରାଣ ଦେବତା ।
କଳ କଳି ଯୁଗେ    ତୁଟାଉ ବିବାଦ
ବରି ଆଣି ସେ    ବିଶ୍ୱ ସାମ୍ୟବାଦ
ଧରଣୀ ଉପରୁ    କରିବ ବିଲୋପ
ଅକାଳ ମରଣ ଅଦିନ ହତ୍ୟା
ଖଦୀ ତ ଦେଶର ପ୍ରାଣ ଦେବତା ।

• • •

## ପର ଆମପାଇଁ ଭାବିବେ ନାହିଁ

ଆମ ନିଜ କଥା ନିଜେ ନ ଭାବିଲେ
ପର ଆମ ପାଇଁ ଭାବିବେ ନାହିଁ,
ଆମ ଯୋଗ୍ୟ ପଣ-ଦେଖିଲେ ସଂସାରେ
ସମସ୍ତେ ଡାକିବେ ଆସ ହେ ଭାଇ ।
ଚାଇନା, ଜାପାନ, ଜର୍ମାନୀ, ରୁଷିଆ
ସେଠ ଆମେରିକା, ତୁର୍କୀ ଅଷ୍ଟ୍ରେଲିଆ
କେହି ଆମ ପକ୍ଷେ ହେବେ ନାହିଁ ଠିଆ
ବିନ୍ଦୁଏ ରକତ ତଳେ ପକାଇ
ପର ଆମ ପାଇଁ ଭାବିବେ ନାହିଁ ।
କିଏ କ୍ଷିତି ଲାଗି, କିଏ ନିତି ଲାଗି
କିଏ ରଖିବାକୁ ନିଜ ପୂର୍ବ ଅର୍ଥି
ପ୍ରଳୟ ଅନଳ ଜାଳନ୍ତି ପୃଥ୍ୱୀରେ
ଧନ ଜନ ମାନ ଆହୁତି ଦେଇ
ପର ଆମ ପାଇଁ ଭାବିବେ ନାହିଁ ।
କାପୁରୁଷ ଖୋଜେ ଶତ୍ରୁ ରକ୍ତ ଟିକା
କାପୁରୁଷ କରେ ବିଷ ବାଷ୍ପ ଟିକା
ବିଶ୍ୱ-ପ୍ରେମୀ ଆମ ବୀର ସେନାପତି
ନବୀନ ପନ୍ଥାଟି ଦେଲେ ଦେଖାଇ
ପର ଆମପାଇଁ ଭାବିବେ ନାହିଁ ।
ଚାଳିଶ କୋଟି ତ ଆମ ଜନଗଣ
ଲକ୍ଷେ ଲୋକ ଯେବେ ଢାଳିବେ ପରାଣ
ଅହିଂସା ନୀତିରେ ହୋଇଣ ପାଗଳ
ମାନବ ଜାତିକୁ ଦେବେ ବଞ୍ଚାଇ
ପର ଆମପାଇଁ ଭାବିବେ ନାହିଁ ।

•

## ଭାବୁଛ କି ?

ଭାବୁଛ କି ତମେ    ଭାବୁନ୍ତି ସେ ତତ୍ତ୍ୱୀ
ଲାଗି ଆମରି ଏ ଭାରତ କଥା
ଦେଖୁଛି ଏ ବିଶ୍ୱ    ହରଇ    ସର୍ବସ୍ୱ
ଭେଟିବାକୁ ଚାହେଁ ପ୍ରାଣ ଦେବତା । ପଦ ॥

(୧)

ରଚି ନାଗାସକୀ    ରଚି ହିରୋସୀମା
ଜୀବ ଜଗତକୁ    ରଖି ନିଜ ଚିହ୍ନ
ବିଜ୍ଞାନ ଜୀବନେ    ନ ଆସିଲା ଶାନ୍ତି
ଶାନ୍ତି ଲାଗି ପୁଣି ଖେଳ ଏ ମଥା

(୨)

ଚତଳ ପରଏ    ଚାହିଁଛି ଧରଣୀ
ଘାଟ କୂଳେ ଆସି ଲାଗିବ ତରଣୀ

ଉତ୍ତାଳ ପୟୋଧି ଜଳେ କାଟ ମାରି
ଜନତା ମୁକର ହେବେ ଦେବତା ।
ଯାଉଁ ଆସିଲାଣି ଅନ୍ଧାର ରଜନୀ
ଉଠ ଉଠ ବେଗେ ଡାକନ୍ତି ଜନନୀ
ଦେଶ ପ୍ରେମ ଜ୍ୟୋତି ଖେଳି ସାରା ପୃଥ୍ୱୀ
ପୂରିବ ସବୁରି ମନର କଥା ।

●

## ଆମେ ଡରୁ ନାହୁଁ

ଆମେ ଡରି ନାହୁଁ କେବେ ମରୁନା
ଆମେ ମରଣ ଭୟରେ ମରୁନା
ଆତ୍ମା ଅମର
ଅଜର ଅମର
ଦେହ ଲୁଗା ଖଣ୍ଡି ପାଇଟି ଯାଏ ସେ
ହୋଇଯାଏ ଯେବେ ପୁରୁଣା । ୧ ।
ନ ପୂରିଲେ ମନ ବାସନା
ମାନବ ମୁକତି ପାଏନା
ମରିଗଲେ ଥରେ ଆସେ ପୁଣି ଥରେ
ସାଧିବାକୁ ଥରେ ସାଧନା । ୨ ।
ଆମ ହିମାଳୟ ରହିଛି ସାକ୍ଷୀ
ମୃତ୍ୟୁ ଆଗୋଜିଲ ପାଞ୍ଚ ଭାଇଙ୍କି
ଜଣେ ଦେହଧରି ଗଲେ ସ୍ୱର୍ଗପୁରୀ
କରିବାକୁ ସତ୍ୟ ବନ୍ଦନା । ୩ ।
ଯାବତ୍ ନାଶାରେ ଥିବ ନିଃଶ୍ୱାସ
ଆମ ସଭିଙ୍କର ଦୃଢ଼ ବିଶ୍ୱାସ
ଏଣିକି ଏ ଦେଶ ହେବ ନାହିଁ ଦାସ
ଆସିଲାଣି ତାର ଚେତନା । ୪ ।

●

## ନବ ଜବାନ ହୁସିଆର

ନବ ଜବାନ୍ ହୁସିଆର
ହୁସିଆର
ଜାଗିଛି ବନ୍ଧୁ ଦଗାଦାର
ଦଗାଦାର
ପଛ ଡାହାଣ ରୁ ପଛକୁ ରଖି
ଆଗ ବାମ ରୁ ଆଗକୁ ସାର
ଆଗକୁ ସାର ।
ନିଃଶ୍ୱାସ ତୋର ସିରିବା ଯାକେ
ଲଢ଼ିବା ପାଇଁ ହୁଅ ତିଆର
ବିଦେଶୀ ସେନା ଦେଲଣି ଧାଡ଼ି
ଲହରୀ ପରି ଆସିଲେ ମାଡ଼ି
ଜନମଭୂଇଁ କି ନେବେରେ କାଢ଼ି
ଜାଳୁଛି ପଡ଼ାଅ ହତିଆର
ହତିଆର ।
ହୁଅ ତିଆର ହୁଅ ତିଆର
ରଖିବୁ ଯେବେ ମନର ବଳ
ପଳାଇ ଯିବେ ବଇରି ଦଳ
ଭୂମିର ଅଛି ଟଳମଟଳ
ନ ଭୁଲ ବସି ଖବରଦାର
ଖବରଦାର

●

## ଗ୍ରାମରକ୍ଷୀ

ଆମେ ଗ୍ରାମରକ୍ଷୀ ରଖିବୁ ଗାଁ
ସାରା ପୃଥିବୀରେ ଆଜି ଘରେ ଘରେ
ବାଜିବ ଘଣ୍ଟଣି ଆମରି ନାଆଁ । ପଦ ।
ସ୍ୱାଧୀନ ଭାରତର ଆମେ କଳିଙ୍ଗ
ଜଗିବୁ ଆମର ସିଂହ ଦରଜା
ଆମ ବାହୁବଳ ଆମ କଉଶଳ
ଦେଖାଇବ ଜିତେ ଆମର ଗହା । ୧ ।
ଆମ ସେନାପତି ଆମ ପତାକା
ନୁହେଁ କେବେ ଠକ ବଳିଦିଏ ବେକ
ଭରତ ଯୁବତୀ ନୁହଁଇ ଅସତୀ
ଜଳିପାରେ ଜାଳି ଜନତା ନିଆଁ । ୨ ।

● ● ●

## କହ ବନ୍ଧୁ କହ ସତ କରି

କହ ବନ୍ଧୁ କହ ସତ କରି
ଆମେ କ'ଣ ଗଲୁ ଯୁଦ୍ଧେ ହାରି
ଆମ ହିମାଳୟ ମନେ କରି ଭୟ
ବରି ନେଲା ତାଙ୍କ ହାତ ଧରି । ପଦ ।
ଆଖି ଆଗେ ଦେଖି ତାଙ୍କ ନବବଳ
ଆମ ମନବଳ ହେଲା କି ଅଚଳ
ବନ୍ଧୁକ ଆମର ମଥା ନୁଆଇଁଲା
ପଙ୍ଗପାଳ ପରି ଗଲେ ଘେରି । ୧ ।
ପଞ୍ଚନଦୀ ପ୍ରାଣ ଗଲଣି କି ଶୁଖି
ଜାଲିଆନା ବାଗ ଲୁହ ଲହୁ ଦେଖି
ଗରଜି ଉଠିଲା ସବୁ ବରଜିଲା
ଟେମସ୍ କଳିଜା ଗଲା ଥରି । ୨ ।
ରଣଜିତ୍ ସିଂହ ପଞ୍ଜାବ କେଶରୀ
ବଂଶଧର ସବୁ ଗଲେଣି କି ମରି
ଲାଲା ଲଜପତ ଦେଲେ ଛାତି ହାଡ଼
ସେଠା ଲୋକ କଣ ଗଲେ ଡରି । ୩ ।
ଭଗତ ସିଂ ଯେ ପାଇଥିଲେ ଫାଶି
ଜନମି ଥିବେ ତ ଏଇ ଦେଶେ ଆସି
ଜାଣେ କି ତାଙ୍କର ଖବର ପଢ଼ିନି
(ତାଙ୍କ) ଦେଶକୁ ଦଖଲ କଲା ଅରି । ୪ ।
ଆମ ଦେଶେ ଆଉ ନାହିଁ କେ ସୁଭାଷ
ତେଜି ନିଜ ବାସ ଲଙ୍ଘି ନୀଳାକାଶ
ଆଜାଦ୍ ବାହିନୀ ଆଜି ସଜାଇବ
ବଜାଇ ଗରଜେ ରଣଭେରୀ । ୫ ।
ଗତି ଅଧେ ଯାଇ ଉଡ଼ାଜାହାଜରେ
ଉଡ଼ାଇ ଆଣିଲା ଯିଏ ସାରିଅର୍‌ରେ
ମରଣ ଯା ପାଖେ ଶରଣ ପଶିଲା
(କହ) ଅଛି କି ନାହିଁ ସେ ଦେହ ଧରି । ୬ ।

● ● ●

## ଶେଷ କଥା

ମୁଖ ବନ୍ଦ କରିଲେ କି ଦୁଃଖ ଯିବ ଭାଇ
ଭ୍ରମରେ ଭ୍ରମୁଛ ଖାଲି
ନିଜ ଗାତ ନିଜେ ଖୋଳି
ଆପଣା ବେକରେ ଆପେ ଘେଟ ଲଗାଇ ।
ବୃଥାରେ ଦେଖାଅ ଦମ୍ଭ
ଟଳୁଛି ଆସନ ତବ
ନେଡ଼ି ଗୁଡ଼ କହୁଣୀକି ଦେଲ ବୁହାଇ ।
ତୁମ୍ଭ ଅତ୍ୟାଚାର କର୍ମ
ନ ସହି ପାରିଲା ଧର୍ମ
ଘରର ଯେତେକ ଦେଲ ସବୁ ଫିଟାଇ ।
କେତେ କରି କୂଟ ନୀତି
ଥାପିଥିଲ ଏହି ଭିତ୍ତି
ମସୀ ଜୀବୀ ଅସି ମୁନେ ଦେଲ ଭଙ୍ଗାଇ ।
ପଢ଼ିନା ରବଣ କଥା
ସୀତା ଲାଗି ଯିବ ମଥା
ଜଣାଥିଲା ନ ପାରିଲେ କେହି ଚେତାଇ ।
କ୍ରୋଧଟି ଅନ୍ଧାରକଣା
କରିଦିଏ ବୁଦ୍ଧିବଣା
ଜାନ୍ଦର ଲକ୍ଷ୍ମୀଙ୍କି ଲୋକ ଗୋଡ଼େ ଠେଲଇ ।
ଲୋଡ଼ ଯଦି ପ୍ରତିକାର
ଭୁଲିଯାଅ ଅଧିକାର
ଆଜ ଏ ପତାକା ତଳେ ମଥା ନୁଆଁଇ ।
ଛାଡ଼ ସେ ବେପାରୀ ବୁଦ୍ଧି
ଦେଖାନା ଶିକାରୀ ସିଦ୍ଧି ?
ବଳେ ଆଉ ନ ପାରିବ ତିଳେ ଚପାଇ ।
ଠକି ଠକି ରହିଲୁଣି
ଠିକି ଠିକି ଶିଖିଲୁଣି
ବଇଠକେ ନ ପାରିବ ଆଉ ଭୁଲାଇ ।
ଚାହଁ ଯଦି ବିଶ୍ୱଶାନ୍ତି

ଶେଷ ନାହିଁ କୁଟ୍ ।ତି
ଆସ ଯାଶୁ ପ୍ରେମ ବାକ୍ୟେ ହୃଦ ମଜାଇ ।

● ● ●

## ତମେ ଯୁବାଜନ

ତମେ ଯୁବାଜନ ମୋ ଦେଶ ଜୀବନ
ଜାଗ ଜାଗ ଆଉ ନ କରି ଡେରି,
ଭାରତ ଜନତା ଗୁହାଁରି ତୁମ୍ଭକୁ
ବଜାଅ ତୁମ୍ଭର ବିଜୟ ଭେରୀ ।

ସୈନ୍ୟ ସଜାଇ ଯେ ଭେରୀ ବଜାଇ
ଦେଖ ତମ ଦେଶ ପାହାଡ଼ ଟଳାଇ
ଶହେ କୋଟି ଆଖି ଫିଟିଗଲା ଏଠି
ଆମ ଘର ଗ୍ରବି ଆସିଲା ଫେରି ।
ନିଜକୁ ନିଜେକି ପାରୁନାହିଁ ଚିହ୍ନି
ଆସିଛି ପୃଥିକି କେଉଁ ଲକ୍ଷ୍ୟ ଘେନି
ତମ କଳିଜାରେ ଲେଖା ଅଛି ସଫା
ତମେ ତ ସଙ୍କଟ୍ କରିବ ପାରି ।
ଗବେଷଣାଗାରେ କରଅ ପରୀକ୍ଷା
ଯୁଦ୍ଧ ଅବତାର ଦେଇ ଯେଉଁ ଶିକ୍ଷା
ପ୍ରତି ରକ୍ତ ବିନ୍ଦୁ ସାଇତିଛି ତାହା
ପ୍ରତି ଧମନୀରେ ରହିଛି ଭରି ।
ବିଷ ବିଜ୍ଞ ନର ଭୟେ ଆତଙ୍କିତ
ନବଖଣ୍ଡ ମହୀ ଆଜି ବିଚଳିତ
ବୁଦ୍ଧି ବାଟ କିଛି ଦିଶୁ ନାହିଁ ଆଉ
ଜାତିସଂଘ ଗତି ଉଠଇ ଥରି ।
ନିରସ୍ତ୍ରୀକରଣ ନାମେ ନିଶି ଦିନ
ମାରଣା ଅସ୍ତ୍ରର ଗ୍ଲଲିଛି ନିର୍ମାଣ
ଏହି ନୀତି ଯେବେ ଗ୍ଲଲିଥିବ ନିତି
କେହି ନ ପାରିବେ କାହାକୁ ତ ଚେତି
ବିଷବାହୀ ବୋମା ଚପିଯିବ ସଫା
ଶତ ହିରୋସୀମା କରି ତିଆରି ।
ମାନବ ଜାତିକି ପଡ଼ିଛି ବିପଦ
ଏକମାତ୍ର ତମେ ତାଙ୍କରି ସମ୍ପଦ
ଗାଏ ଇତିହାସ ଏକା ତମ ଦେଶ
ବିଷରୁ ଅମୃତ ପାରେ ଉଡ଼ାରି ।
ଭୀଷ୍ମ ପରି ଯେବେ ରଖି ମନୋବଳ
ପ୍ରହଲ୍ଲାଦ ପରି ରହିବ ଅଟଳ
ସେହି ଗାନ୍ଧୀ ନୀତି ରଖିବ ଏ ଚିତ୍ତ
ପ୍ରଳୟ ମୁଖରୁ ଯିବା ଉଦ୍ଧରି ।

●

## ତରୁଣ : ତୋହରି କରମ ଫଳେ

ତରୁଣ ! ତୋହରି କରମ ଫଳେ
ଭାରତ ମୋର ଭାଗ୍ୟବାନ
ଗ୍ଲହୁଁ ନା ତୁ ଫୁଲ ଗ୍ଲହୁଁ ନା ତୁ ମୂଲ
ଦେଶ ଲାଗି ଦେଲୁ ନିଜର ଜାନ୍ । ପଦ ।
ଯୋଗୀବର ଯୋଗ ପାରିଲୁ ବୁଝି
କରମଗ୍ଦରର ମରମେ ମଜି
ହିମଗିରି ହୃଦ ତରଳାଇ ଦେଲୁ
(ହୋଇ) ତରଙ୍ଗ ତୁଲେ ଧାବମାନ । ୧ ।
ଜନକ ଜନନୀ ସେନେହ ଏଡ଼ାଇ
ଭାଇ ଭଉଣୀଙ୍କି ନ ଗ୍ଲହିଁଲୁ ତୁହି
(ମୋ) ଶବ ଜାତିକୁ ଶିବ କରିଦେଲୁ
ଆଲୋକିତ କଲୁ ହିନ୍ଦୁସ୍ଥାନ । ୨ ।
ଆଗ ପଛ କିଛି ଭାବିଲୁ ନାହିଁ
ଆଖି ବୁଜି ବନ୍ଧୁ ପଡ଼ିଲୁ ଡେଇଁ
ନିଜ ନାମ ଆଶା ନ ଖୋଜିଲୁ ଦିନେ
(ତୁ) ସ୍ୱାର୍ଥକୁ କଲୁ କୋରବାନ୍ । ୩ ।
ଅହିଂସା ବିଜୟ ଗଉରବ ଟୀକା
ଲଲାଟୁ ତୋର ନ ପଡ଼ିବ ଫିକା
ମରିଲେ ତୁ ଚିର ଅମର ହୋଇବୁ
ତୋତେ ସାହା ସେହି ଭଗବାନ୍ । ୪ ।

ଯାବତ୍ ମୋ' ପିଣ୍ଡେ ପରଣ ରହିବ
ଯାବତ୍ କର ଲେଖନୀ ବହିବ
ତୋହରି ମହିମା ଗାଇ ଗାଇ ନିତି
ରବି ପରି ହେବି ତେଜିୟାନ୍ । ୫ ।

● ● ●

## ତୁମେ ତ ଆମର ଯୋଗ୍ୟ ନାଉରୀ

ତୁମେ ତ ଆମର ଯୋଗ୍ୟ ନାଉରୀ
(ଆଜି) ତୁମରି ଉପରେ ଆଖି ସବୁରି
ବୁଲି କେତେ ବାଟ ଦେଖି କେତେ ଘାଟ
ଦେଇନା ଆମକୁ ମନୁ ପାଶୋରି । ପଦ ।
ଜନମ ଭୂଇଁକି ଉଦ୍ଧାରିବା ପାଇଁ
ତରୁଣ ବୟସୁ ଆସି ତମେ ଭାଇ
ଲହରୀ ସାଥିରେ ତାଳ ପକାଇଛ
ଡରି ନାହଁ ଦେଖି କାଳ ଭଉଁରୀ । ୧ ।
ସୁଭାଗ୍ୟ ଆମର ଭେଟ ତୁମ ସଙ୍ଗେ
ତମେ ତ ସାହାସେ ବସିଅଛ ମଙ୍ଗେ
ପୋରିହାଁ କାତରେ ହାତ ପକାଇଛ
ଉବୁଟୁବୁ ହୁଏ ଦଦରା ତରୀ । ୨ ।
କେଉଁ କଥା ଅବା ତୁମକୁ ଅଜଣା
କି କହିବୁ ଆମ ମନର ବେଦନା
ସବୁ ଚିଜ ଭଲ ବର୍ଷି ବର୍ଷି ଘରେ
କମି କମି ଯାଏ ଆୟୁ ସବୁରି । ୩ ।
ଆସି ସ୍ୱାଧୀନତା ଆସିଲାତ ନାହିଁ
ଦି' ଫାଳ ହୋଇଗଲା ଏ ଭରତ ଭୂଇଁ
ଘନ୍ତୁ କେତୁ ପଡ଼ି ଆମେ ସବୁ ହେଲୁ
ବାପୁଜୀଙ୍କି ଦେଲୁ ବିଦାକରି । ୪ ।

● ● ●

## ସଜାଇ ରଖ ଶିବରେ ସୈନ୍ୟ

ସଜାଇ ରଖ ତୋ' ଶିବିରେ ସୈନ୍ୟ ବଜାଇ ବିଜୟ ବାଦ୍ୟ
ପଜାଇ ରଖ ତୋ' ସମର ଅସ୍ତ୍ର ଖୋଜାଇ ଶକତ ସାଧ୍ୟ ।
ଲଢ଼ାଇ ରଖ ତୋ' ଜାତୀୟ କେତନ କଢ଼ାଇ ଜାତୀୟ ମନ୍ତ୍ର
ଛଡ଼ାଇ ଧରମ ଭେଦାଭେଦ ବିଷ ଲଗାଇ ତୋ' ତ୍ୟାଗ ଯନ୍ତ୍ର ।
ଜଳାଇ ରଖ ଏ ଯଜ୍ଞ ଅନଳ ତରଳାଇ ଦେଶ ଭକ୍ତି
ଟଳାଇ ସକଳ ବିଘ୍ନ ବିପଦ ଖେଳାଇ ଅମର ଶକ୍ତି ।
ଜୀବନ ଯୌବନ ଅରପଣ କର ଅଳସ ବିଳାସେ ହତ୍ୟା
ଘୁଞ୍ଚାଅ ମାନବ ପ୍ରାଣର ଅଶାନ୍ତି ଦୁଃଖ ଅନ୍ଧକାର ବାତ୍ୟା ।
ସେନାପତିଙ୍କର ଆଦେଶ ପାଇଲେ ଗିରି ପର୍ବତ ଲଙ୍ଘି
ବନ୍ଧୁକ ଆଗେ କନ୍ଦୁକ ପରି ମସ୍ତକ ଦିଅ ଫିଙ୍ଗି ।
ଚମକି ଉଠୁ ଏ ବିଶ୍ୱ ଜଗତ ଚମକୁ ସେଠାର ଇନ୍ଦ୍ର
ମାନବ ଦାନବ ଦେବତା ଜାଣନ୍ତୁ ଭାରତ ସୃଷ୍ଟି କେନ୍ଦ୍ର ।

● ● ●

## ମେଲଣି ନିଅ

ମେଲଣି ନିଅ ଗୋ ଆଜି ମେଲଣି ନିଅ
ହୃଦୟେ ହୃଦୟେ ତୋଳି ପୀରତି ମଦରା ବୋଳ
ଗୋଲାପି ଅଧରୁ ଭରି ପିଆଇ ପିଅ । ପଦ ।
ଯାଉଛି ଯିବି ଗୋ ଗୁଳି ସେ ରଣ ଭୂଇଁକି
ହୃଦଟରେ ରଖି ମୋର ସ୍ୱଦେଶ ଛବିକି
ଯାଇଥିଲେ ଯେତେ ତହିଁ ଫେରିଲେ କଦବା କେହି
ମୋହ ପ୍ରତି ବାରେ ହସି ସଦୟ ହୁଅ । ୧ ।
ନାହିଁ ଧୂପ ଦୀପ ବାସ ନ ହୁଏ ଆରତି
ଦୟା ମାୟା ନାହିଁ ତହିଁ ଭକତି ପୀରତି
ବିଷବାଷ୍ପ ଶବ ଗନ୍ଧ ଜ୍ୱଳନ୍ତ ନରକ କୁଣ୍ଡ
ପଥର ପାଲଟେ ଯହିଁ ଜୀବନ୍ତ ଦିଅଁ । ୨ ।
ନାହିଁ ମଖମଲ ଶେଯେ ତହିଁ ହେନା ବାସ
ନାଚେ ତହିଁ ତରବାରୀ ମୃତ୍ୟୁ ଅଟ୍ଟହାସ
ନାହିଁ ତହିଁ ମଧୁ ଦୂତ ଶକୁନି ଗାଏ ସଙ୍ଗୀତ
ଦିବା ଭାଗେ ଶିବା ଡାକେ କମ୍ପାଇ ଦେହ । ୩ ।
ଅଜଣା ତ ତହିଁ ଫଗୁ ଦକ୍ଷିଣା ପବନ
ନିହତର ଶେଷ ଶ୍ୱାସ ଆହତ ରୋଦନ
କମାଣର ଧୂମ ସାଥେ ମିଶିଯାଏ ନଭ ପଥେ
ଧାର ଧାର ବହିଯାଏ ରକତ ସୁଅ । ୪ ।

ଘଟିବାର ଘଟୁ ଯାହା ଯିବି ମୁଁ ମୁକରେ
ଦେଶ ସ୍ୱାଧୀନତା ଇଷ୍ଟ ଦେବତା ମୋହର
ତୋ' ନୟନ ନୀର ଧରେ ଯାଇ ମୁଁ ଅଜଣାପୁରେ
ଧୋଇ ଦେବି ଦେଶବାସୀ ଜଇ-ଭଉଣୀ ଲୁହ । ୫ ।

● ● ●

## ଆମେ ସବୁ ଯିବା ରକତେ ଭାସି

ବନ୍ଧୁକ ଡାକଇ ଦୁଆରେ ଆସି
ଆମେ ସବୁ କ'ଣ ହେବା ଉଦାସୀ
କି ହେବ ଏ ଟଙ୍କା କି ହେବ ଏ ସୁନା
ଘଡ଼ିକ ଭିତରେ ସବୁ ହେବ ଚୂନା
ଆମେ ସବୁ ଯିବା ରକତେ ଭସି । ପଦ ।
ଜଳ ସ୍ଥଳ ନଭ ତିନି ଆଡ଼ୁ ଘେରି
ମାଡ଼ି ଆସିବ ସେ ପଙ୍ଗପାଳ ପରି
ଦିନ ହେବ ରତି ଘଟିରେ ତ ବତୀ
ଲିଭଇ ଅନ୍ଧାରେ ରହିବା ବସି । ୧ ।
କ୍ଷଣେ ଘଡ଼ଘଡ଼ି ପରି ଭୀମ ରଡ଼ି
ଫୁଟିବ ବଛରୀ ବୋମା ଯେବେ ପଡ଼ି
ଫାଟି କାନଚିରି ଝରିବ ରକତ
ଗେଷୀର କଲିଜା ପଡ଼ିବ ଖସି । ୨ ।
ଗିରିଜା ମନ୍ଦିର ମସଜିଦ୍ ମଠ
ସବୁଠି ରହିବେ ତାଙ୍କ ସୈନ୍ୟ ଥାଟ
ସହର ଦଖଲ କରି ଅଧିକାର
ଖାଇବେ ଲୁଟି ଯା ତାଙ୍କର ଖୁସି । ୩ ।
ଧନଠାରୁ ବଡ଼ ଅଟଇ ଜୀବନ
ଜୀବନଠୁଁ ବଡ଼ ଅଟଇ ସମ୍ମାନ
ଆମର ସମ୍ମାନ ଜାତୀୟ ପରାଣ
ରଖ ଅ‌ଛି ତାକୁ ଯୁଦ୍ଧରେ ଝାସି । ୪ ।
ସମର ବିଜୟୀ ଆମର ଯବାନ୍
ଆମେ ଯେବେ ତାଙ୍କ ମନରଖୁ ଟାଣ
ଫେରିଯିବ ଅରି ଦେଖିଲେ କେଶରୀ
ମୃଗ ଧାଏଁ ଯଥା ଜଙ୍ଗଲେ ପଶି । ୫ ।

## ଘରକୁ ନ ଯିବୁ କେବେ ଫେରି

ହେବ କେତେଦିନ ହେଉ ଡେରି
(ଆମେ) ଘରକୁ ନ ଯିବୁ କେବେ ଫେରି
ଦେଶରୁ ବଇରୀ ଫେରିବା ଯାକେ
ଗୃହେ ବସିବେ ଆମରି ଲୋକେ
ତାଙ୍କରି ବିଶ୍ୱାସ ତାଙ୍କରି ନିଃଶ୍ୱାସ
ରକ୍ଷିବ ଆମକୁ ଟାଣ କରି । ୧ ।
ବିଷ ବୋମା ପଡ଼େ ପଡ଼ୁ ଆକାଶୁ
ଦେଶରୁ ତଡ଼ିବୁ ଯେତେକ ଦସ୍ୟୁ
ଲଢ଼ିଛୁ ଲଢ଼ିବୁ କେବେ ନ ହଟିବୁ
ହମିଦ ପରାଏ ଦମ୍ଭ ଧରି । ୨ ।
ଆମ ସେନାପତି ଆମ ଦେବତା
ମାନି ଚାଲୁଥିବୁ ତାଙ୍କରି କଥା
ନିଆଁକୁ କହିଲେ ନିଆଁକୁ ଡେଇଁବୁ
ଜଳିଯିବୁ ପଡ଼େ ଜାଳ ପରି । ୩ ।

● ● ●

## ହାତରେ ନ ଥିଲା ତରବାରୀ

(ଆମ) ହାତରେ ନଥିଲା ତରବାରୀ
(ଥବା) ହୋଇତ ନଥିଲୁ ଦରବାରୀ
ଭାରତ ମାତାର ନାମକୁ ସୁମରି
ବଢ଼ିଲା ନଈକୁ ହେଲୁ ପାରି । ପଦ ।
ହାତରେ ନଥିଲା ଖଣ୍ଡେତ ବନ୍ଧୁକ
ଥବା ପ୍ରାଣ ନାଶି ଜହର କନ୍ଦୁକ
ତରୁଣ ବନ୍ଧୁଙ୍କ ଅରୁଣ ହୃଦକୁ
ଗୁନ୍ଥିଥିଲୁ ପୂଜା ଫୁଲକରି । ୧ ।
ନଥିଲା ଟ୍ରପେଡ଼ୋ ନଥିଲା ଜାହାଜ
କେତେ କୁଳବଧୂ ହୋଇ ଆସି ସଜ
ସମର ଚରଣେ ପ୍ରାଣ ଢାଳି ଦେଲେ
ପାଷାଣକୁ ଦେଲେ ଚୂନା କରି । ୨ ।
ନଥିଲା ମଥାରେ କୂଟ ବୁଦ୍ଧି ବଳ
ପ୍ରେମ ଥିଲା ଏକା ହୃଦୟ ସମ୍ବଳ

ସେ ପରଶମଣି ଆଲେ।କିତ କରି
ଆମ ବାଟ ନେଲୁ ଆମେବାରି । ୩ ।
ନଥିଲା ସିନ୍ଦୁକ ନଥିଲା ତ ଟଙ୍କା
ସାହାଥିଲା ପୂତ ଜାତୀୟ ପତାକା
ଭିକ ମାଗୁଥିଲୁ ସଙ୍ଗେ ନେଇ ତାରେ
ଆମେ ବାର ଦ୍ୱାର ବୁଲିବୁଲି । ୪ ।
(ଆମ) ବ୍ୟୋମରେ ନଥିଲା ବ୍ୟୋମଜାନ
ଚଳାଇ ଆମର ଦେହମାନ
ମରଣ ଦୁଆରେ ଭଗ ହୋଇଥିଲୁ
ବରଣମାଳାକୁ ହାତେ ଧରି । ୫ ।
ମନେ ଅଛି ସବୁ ସେ ଝଡ଼ି ବତାସ
ଯାଇ ନାହିଁ ଭାଇ ମାଡ଼ର ପରସ
ସବୁ ସହିଗଲୁ ପଥର ପରିତ
ଜଣକ ମୁହଁକୁ ଗ୍ରହି କରି । ୬ ।
ଗଜ ଅଶ୍ୱାରୋହୀ ନଥିଲେ ପଦାତି
ତଥାପି ତ ଥରି ଉଠିଲା ଅଗତି
ଡେଜିଲେ ବିଦେଶୀ କେତେ ଦେଶ ଭାଇ
ସେହି ଗାନ୍ଧୀ ନାମ ହୃଦେ ଭରି । ୭ ।
ନଥିଲେ ପ୍ରତାପ ନଥିଲେ ଶିବାଜୀ
ଅବା କାହିଁ ଜୟୀ ବୀର ସୈନ୍ୟ ସଜି
ପାଞ୍ଚ ହାତୀ ଖଦୀ ପିନ୍ଧା ସେ ନାଭରୀ
(ଆମ) ଢଙ୍ଗାକୁ ଆଣିଲା କାତମାରି । ୮ ।

● ● ●

## ଆହ୍ୱାନ

ଉନ୍ନତ ହୁଅ ଜାଗ୍ରତ ହୁଅ
ଭାରତ ସ୍ୱର ସନ୍ତାନ
ବିଦ୍ରୋହୀ ହୁଅ ବିଦ୍ରୋହୀ ବୀର
ଭାଙ୍ଗି ପିଶାଚ ଶାସନ ।
ଭାଙ୍ଗ ଆଇନ୍ କାନୁନ
ଘନ୍ତୁ ରକତ ଶୋଷଣ
କିପୂବୀ ହୁଅ ଭରତ ସାଗ
ବନ୍ଧନ କର ଛେଦନ ।
ଅତ୍ୟାଗ୍ରରୀର ଗରବ
ଦମ୍ଭ ସାହାସ ସରବ
ଚୂର୍ଣ୍ଣ କର ଦେଖୁ ଅଗତି
କରୁ ତା' ମୃତ୍ୟୁ ଆହ୍ୱାନ ।

● ● ●

## ବନ୍ଦୀର ଚିନ୍ତା

ଗ୍ରହୁଁ ଗ୍ରହୁଁ ଦିନ ଯାଏ ବିତି
ଆସେ ସକାଳ ଆସଇ ସଞ୍ଜ
ପାହିଯାଏ ରାତି ହୋଇ ପାହାନ୍ତି । ପଦ ।
ଖାଏ ପିଏ ଉଠେ ଶୁଏ
କଥା ଶୁଣେ କଥା କୁହେ
ଶୁଣେ ଏକ ସ୍ୱରେ ସେହି ଜୀବନ ଗୀତି । ୧ ।
ସେହି ଜହ୍ନ ସେହି ତାରା
ସେହି ବର୍ଷା ସେହି ଖରା
ସେହି ଛବି ସେହି କବି ଆଙ୍କଇ ନିତି । ୨ ।
ସେହି ଗଛ ସେହି ଡାଳ
ଡାକିଯାଏ ସେହି ରେଳ
ସହିବାକୁ ହୁଏ ସେହି ନୀତି ଅନୀତି । ୩ ।
ସେହି ବାଡ଼ ସେହି କାନ୍ଥ
ସେହି ଘର ସେହି ଛାତ
ଆଉ କେହି ନାହିଁ ସେହି ପୁରୁଣା ସାଥି । ୪ ।
ଖୋଜେ ଯେବେ ନୂଆ କାହିଁ
ପ୍ରତିଧ୍ୱନି କହେ 'ନାହିଁ'
ନିରାଶାରେ ଭାସିଯାଏ ଲିଭଇ ସ୍ମୃତି । ୫ ।

● ● ●

## ଉଠ ଭାଇ ପାହିଲା ରାତି

ଉଠ ଭାଇ ପାହିଲା ରାତି
ବାଜିଲାଣି ଭେରୀ କର ନାହିଁ ଡେରି
ଫେରି ନାହିଁ ଆମ ଅଗତି । ପଦ ।
ଆମ ସୀମା କରି ଦଖଲ
ବସିଲାଣି ହୋଇ ଅଟଳ

ବଧୂଲି ଅଧର ଯାଉଛି ଶୁଖି
କବିତା ଲେଖିବି କାହାକୁ ଦେଖି
ଶତ ସଧବାଙ୍କ ସିନ୍ଦୂର ଲିଭାଇ
ଛାତିରେ ବଇରୀ ରହିଛି ବସି ।୧।
ଗୋଲାପି ଗଣ୍ଡରୁ ଝରେ ଲୋତକ
ଜୋଛନା ରାତିରେ ପଡ଼େ ଚଡ଼କ
ଚକୋର ନୟନୀ ଚରଣ ନଚଳେ
ଜଗ କୁମ୍ଭ ପଡ଼େ କାଖରୁ ଖସି ।୨।
ଝାଉଁଳି ପଡ଼ଇ କମଳ କଳି
ଫୁଲବାସ ବାରି ନପାରେ ଅଳି
ହେନା ଶ୍ୱାସରୁଦ୍ଧ କରଇ ବାରୁଦ
ଛାଗ ଯାଏ ବାଘ ବସାରେ ପଶି ।୩।
ସୁନା ସିନ୍ଦୁକକୁ ଗୋଇଠା ମାରି
ଲକ୍ଷ୍ମୀ ଯାଉଛନ୍ତି ବିଦେଶ କରି
ମା' ସରସ୍ୱତୀ ତଳେ ଥୋଇ ପୋଥି
ଉଠାନ୍ତି ଆମକୁ ପିଠି ଆଉଁସି ।୪।
ରକ୍ତ ମନ୍ଦାର ଗଳେ ଲମ୍ବାଇ
ନର ମୁଣ୍ଡ ମାଳ ହାତେ ଝୁଲାଇ
ସାଜ ସଜ କହି ଡାକେ ରଣଚଣ୍ଡୀ
ଚମକି ଉଠନ୍ତି ମୂଲିଆ ଚାଷୀ ।୫।
ରାତ ଥାଳି ପାଖେ ବସିଲ ବେଳେ
ତାଙ୍କରି ଛବି ମୋ ଆଖିରେ ଖେଳେ
ଶତ ନିର୍ଯ୍ୟାତନା ସହେ ଯେ ସୈନିକ
(ଆଜି) ଅରିଦୁର୍ଗେ ବନ୍ଦୀ ଭିକ୍ଷାସୀ ।୬।

● ● ●

## ଧର୍ମପତ୍ନୀଙ୍କ ଉଦ୍ଦେଶ୍ୟ

(ବ୍ରହ୍ମପୁର ଜେଲ)

ବଂଧୁ କହନା କହନା ଆଜ ସେ କଥା ମୋତେ
ହେଲ ନଥିବ ସେ ବ୍ୟଥିତ କେବେ
ସକାଳରୁ ସଂଜ ସଂଜରୁ ସକାଳ
ପିଲଙ୍କ କଟାଳ ଘରର ଜଞ୍ଜାଳ
ଘାରୁଥିବ ତାର କୋମଳ ଚିତେ ।୧।
ବାର ଓଷା ବାର ପୁନେଇ ପରବ
ପରବତ ପଢି କରି ଅନୁଭବ
କଳି କରୁଥିବ ଦଇବ ସାଥେ ।୨।
କାକ ଡାକ ଶୁଣି ଘର ଚାଳକୋଣେ
ଡାକ ପାଞ୍ଜି ଦିନ ଗୁଡକ ପଗଣେ
ଚାହୁଁଥିବ ଆସି ଗବାକ୍ଷ ପଥେ ।୩।
ଘୋର ବର୍ଷାରାତି ଚଇତି ପାହାନ୍ତି
ଦେଉଥିବ ତାର ହୃଦୟ କରତି
ମନେ ପଡ଼ୁଥିବ ଅତୀତ ଯେତେ ।୪।
କେବେ ସ୍ୱାଧୀନତା ଦେବେ କଳ୍ପତରୁ
ରାକ୍ଷସ ମୁହଁରୁ ଏ ଯୁଦ୍ଧ ଭୂଇଁରୁ
ଫେରିଯାଇ ତାକୁ ଭେଟିବି ସତେ ।୫।

● ● ●

## ଫେରାଇ ନଦିଅ

ହରି !
ସ୍ୱରାଜ୍ୟ ପଛକେ
ଡେରି ହୋଇଯାଉ
ଫେରାଇ ନ ଦିଅ
ତୁମ୍ଭର ଦୂତକୁ
କେତେ ଅଘଟନ
ଘଟା ତମେ ହରି
ଗଳା କରିଦିଅ
ଉଷୁଆଁ ଧାନକୁ ।
ତେଇଶି ବରଷ
କାଳ କଟାଇଲୁ
ଦେଖି କରି ତାକୁ
ଦେଖି ନ ପାରିଲୁ
ଚିହ୍ନି କରି ଆମେ
ଚିହ୍ନିଲୁ ତ ନାହିଁ
ଶୁଣିଲେ ସେ କଥା
ବିଦାରଇ ବୁକୁ ।

ଭବି ଭବିଷ୍ୟତ
ଦୁଃଖକୁ ଆମର
ବୁଦ୍ଧି ବାଟ ଦେଲ
ବୁଲି ବାରଦ୍ୱାର
ବୁଝ ତାଙ୍କ କଥା
ବୁଝି ନ ପାରିଲୁ
ଦୁର୍ଭିକ୍ଷ-ଗହୁତ
ଗ୍ରାସଇ ଦେଶକୁ ।
ଦରିଆ କୂଳକୁ
ଦରବାର ଯାକେ
ଚଳାଇ ଆମଙ୍କୁ
ସତ୍ୟ ଉପଦେଶ
ଅହିଂସା ନୀତିରେ
ଯୁଦ୍ଧ ଜୟ କଲ
ଲୁଣ ଆଣି ଦେଲ
ଚୋରଣି ପାଖକୁ ।
ଭାରତ ଆବସ୍ଥା
ପୃଥିବୀ ବ୍ୟବସ୍ଥା
ଦେଖି ତା'ର ହୃଦେ
ଜାଗେ ସଦା ବ୍ୟଥା ।
ଆମ ଓଡ଼ିଶାର
ଦାରୁଣ ଦୁର୍ଦ୍ଦଶା
ବେଶୀ ବାଧେ ତାର
କୋମଳ ପ୍ରାଣକୁ ।
(୧୯୪୩ ମସିହାରେ ଗାନ୍ଧିଜୀଙ୍କ ଅନଶନ ସମୟର ଲେଖା)

• • •

## ବିଶ୍ୱ ହିତ ଲାଗି ଯାଉ ପଛେ ପ୍ରାଣ

ବିଧ୍ୱଂସ ପଥରେ
ସାରା ପୃଥ୍ୱୀ ଛୁଟେ
ଭାରତ ଚାଲଇ ଗଠନ ପଥେ ।

ହିଂସା ଜର୍ଜରିତ
ଥରେ ବିଶ୍ୱ ଚିର
ଭାରତ ହସଇ ଅହିଂସା ମତେ ।

ଲୁଟି ପର ଚିର
ସୁନାର ସିନ୍ଦୁକ
ଗଢ଼େ କିଏ ବିଷ
ବୋମାର କନ୍ଦୁକ
ଭାରତର ରକ୍ଷୀ
ସେବକ ସୈନିକ
ଲଢ଼ି ମରୁଛନ୍ତି ଜଗତ ହିତେ,
ଭାରତ ହସଇ ଅହିଂସା ମତେ ।

ବୀର ପୁରୁଷଙ୍କ
ଦିନ ରାତି ଚିନ୍ତା
କେ କେତେ ପାରିବ
କରି ନର ହତ୍ୟା,
ନିଜର ଇଜ୍ଜତ
ରଖିବା ପାଇଁକି କି
କାଠର ଅରଟ ଘୂରେ ଭାରତେ,
ଭାରତ ହସଇ ଅହିଂସା ମତେ ।

ଶସ୍ତ୍ରଧରଙ୍କର
ଖେଳୁଅଛି ମଥା
ଖେଳି କେ ପାରିବ
କେତେ କପଟତ ।

ଭାରତ ଫକୀର
ଗାନ୍ଧୀ ମହାବୀର
ସଦା ସତ କହି ଚାଲନ୍ତି ସତ୍ୟେ,
ଭାରତ ହସଇ ଅହିଂସା ମତେ ।

କ୍ଷଣିକ, କ୍ଷଣିକ—
ସମ୍ପଦ ଲୋଭରେ,

ପର ଦେଶକୁ ଯେ
ପଦାନତ କରେ,
ନିଜ ସ୍ୱାଧୀନତା
ଆଶାରେ ଭରତ
ସ୍ୱାଧୀନ ପତାକା ଉଡ଼ାଏ ହାତେ,
ଭରତ ହସଇ ଅହିଂସା ମତେ ।
ବିଶ୍ୱ ହିତ ଲାଗି
ଯାଉ ପଛେ ପ୍ରାଣ
ନ ଚାହେଁ ନେବାକୁ
ପରକୁ କଷଣ
ଶତ୍ରୁ ମିତ୍ର ପକ୍ଷ
ନାହିଁ କେ କାହାର
ନାହିଁ ତା ଶତ୍ରୁତା ମାନବ ସାଥେ,
ଭରତ ହସଇ ଅହିଂସା ମତେ ।

● ● ●

## କାଗ ପାଟେରୀ

କାଗ ପାଟେରୀ !
କହ କେତେ ଦିନ ଲଗାଇ ବନ୍ଧନ
ରହିବୁ ତୁ ମୋତେ ଘରବେ ଘେରି ।
ଚାହିଁଲେ ତୋ ଆଡ଼େ ମନ ଭାଙ୍ଗି ପଡ଼େ
ହୃଦୟ ଭିତର ହୁଏ ବିଦାରି
କାଗ ପାଟେରୀ...
ମୋ' ଘର ଭଉଣୀ
ଡାକୁଛନ୍ତି ମୋତେ
ଶୁଭୁନାହିଁ କିରେ
ସେ ଶବଦ ତୋତେ
ପାଷାଣରୁ ବଳି ହେଲୁ ତୁ ପାଷାଣ
ବଇରୀ କଥାରେ ହେଲୁ ବଇରୀ
କାଗ ପାଟେରୀ... ।
କେତେ ଆଶା ବାସ
ପୂରେଇ ପରବ
ସ୍ମୃତି ପଟେ ନିତି
କରେ ଅନୁଭବ
କେତେ ବନ୍ଧୁ ଗତି କେତେ ମନ ସାଥି
ମନ ବିରସରେ ଯାଅଛି ଫେରି
କାଗ ପାଟେରୀ ।
କେଉଁ ଦୋଷ ଆମେ
କରିଥିଲୁ କା'ର
ମାଗୁଥିଲୁ ଆମେ
ଆମ ହୃଦ-ହାର
ଆମ ଘର ଚାବି ଆମେ କଲୁ ଦାବି
ବିନା ବିଚାରେ ତ ଆଣିଲେ ଧରି
କାଗ ପାଟେରୀ ।
ସତ କଥା କହି
ସେନାପତି ମୋର
ପୃଥିବୀର ସାଧୁ
ଆଜି ବନ୍ଦ ଘେର
ଏ ବୃଦ୍ଧ ବୟସେ ଭୀଷ୍ମଙ୍କ ପରାୟେ
ଶର ଶେଯେ ରହି ପଡ଼ଇ ଝରି
କାଗ ପାଟେରୀ ।
ତୋ ଖଟ ମାଠରେ
ନାହିଁ ମୋର ଶାନ୍ତି
ସପନ ଦେଖେ ମୁଁ
ନିତି ଅଧ ରାତି
ଜଣେ କିଏ ଆସି ଦର ଦର ହସି
କହେ ମୋତେ—କିରେ ଦେଲୁ ପାଶୋରୀ
କାଗ ପାଟେରୀ ।
କାଇପଡ଼ା ରକ୍ତ
କୋରାପୁଟ ଲୁହ
ଭରମ କୃଷକ
ଘରଣୀର କୋହ
ଆଖି ଆଗେ ଆସି ଛବି ପରି ଭାସି
ହୃଦୟ ମୋହର ଦିଅଇ ଘାରି
କାଗ ପାଟେରୀ ।

ପ୍ରଳୟ ଅନଳ
ଆସିଲାଣି ଜଳି
ତୋ ଶିଳା-ହୃଦୟ
ପଡ଼ିବ ତରଳି
ସ୍ୱାଧୀନତା ପଥେ ଚାଲିବୁ ସମସ୍ତେ
ମୁକତି ପତାକା ଗଗନେ ଧରି
ଜାଗ ପାଞ୍ଚୋରୀ ।

(୧୯୪୩ ମସିହା ବ୍ରହ୍ମପୁର ଜେଲ)

● ● ●

## ଦମ୍ଭ ଧରି କେତେ ରହିବ ବୁଦ୍ଧ

ଦମ୍ଭ ଧରି କେତେ ରହିବ ବୁଦ୍ଧ
ଜାତି ପତାକାର ମହତ ରଖିବ (ତୁମେ)
ମରିବ କିଏ ସେ ଫିଟାଇ ଛାତି ।
ପତାକା ଆମର ସାରା ଭାରତର
ଏଥିରେ ନାହିଁ ତ କା'ର ଅଧିକାର
ବସ୍ତ୍ର ଛଡ଼ି ମାଡ଼ ଭାଙ୍ଗୁ ଛାତି ହାଡ଼
ବହି ଯାଉ ପଛେ ରକତ ସୁଅ । ୧ ।
ତାହା ଲାଗି କେତେ ଲଗିଛି ଲଢ଼ାଇ
ନେଇ ନ ପାରିଲେ ତାହାକୁ ଛଡ଼ାଇ
ମଲେ କେତେ ବୀର
ବହିଲା ଲୁହ । ୨ ।
ତାକୁ ଅପମାନ
ମରଣ ସମାନ
ତା ଲାଗି ବଳିଛି ଅହିଂସାର ରଣ
ସେତ ଆମ ଜାତି ପରାଣ ଦିଅଁ । ୩ ।

● ● ●

## ବନ୍ଦୀର ଅତୀତ ସ୍ମୃତି

ମୁଁ ଜାଣେନା ଜାଣେନା କାହିଁକି
ସ୍ମୃତି ପରୁଆରେ ସାଇତିଲି ତାରେ
ପହିଲି ଭେଟରେ ଚାହିଁକି । (ଘୋଷା)
ତା' ନୟନ ଶଶୀ ଜୋଛନା ପରଶି
ମୋ ହୃଦ କୁମୁଦ ଉଠିଲା ବିକଶି
ମୋ' ଧୈର୍ଯ୍ୟ-ପଥର ବନ୍ଧ ଭାଙ୍ଗିଗଲା
ପୀରତି ତରଙ୍ଗ ବାଢ଼ିକି । ୧ ।
ମୁଁ ଜାଣେନା ଜାଣେନା......
କେଉଁ ଜନମର ସାଥି ସେ ମୋହର
ଦୂର ଅତୀତର ପ୍ରିୟ ସହଚର
କେଉଁ ଧୂଳି ଘରେ ଧୂଳି ଖେଳୁଥିଲୁ
ଫୁଲ ମଧୁରସ ଖାଇକି । ୨ ।
ମୁଁ ଜାଣେନା ଜାଣେନା......
କେଉଁ ତମାଳର ତଳେ ବାଇ ବଂଶୀ
ଆଉ ବକୁଳର ବାସେ ଗଲୁ ଭାସି
କୋଇଲି ସାଥିରେ କଣ୍ଠ ମିଳାଇଲୁ
ବଉଳ ବନରେ ବୁଲିକି । ୩ ।
କେଉଁ ମାଘ ମାସ ପାହାନ୍ତା ପହରେ
ପୂଜା ଫୁଲ ତୋଳି ଫେରୁ ଫେରୁ ଘରେ
ଦକ୍ଷିଣା ପବନ ବହି ଗୁପତରେ
ଛୁଇଁଗଲା ଆମ ଦୁହିଁଙ୍କି । ୪ ।
ମୁଁ ଜାଣେନା ଜାଣେନା........
କେଉଁ ଘଟଣାରେ ଘଟ ହୋଇଥିଲୁ
ଜଳା କଳେବର ଜଳ୍ପାଇ ଶିଖିଲୁ
ଆଜି ଯା' କୃପାରେ ଭେଟା ଭେଟି ହେଲୁ
ବନ୍ଦେ ତାଙ୍କୁ କର ଯୋଡ଼ିକି । ୫ ।
ମୁଁ ଜାଣେନା ଜାଣେନା........

● ● ●

## ନ କର ମନେ ଭାବନା

ଯିଏ ଯିବାର ଯାଆନ୍ତୁ ଚାଲି
(ତୁ) ନକର ମନେ ଭାବନା
ମୁକ୍ତି ପଥର ଯାତ୍ରୀ ତୁହିଁରେ
ଜୀବନ—ବ୍ୟାପୀ ସାଧନା
ତୋର ଜୀବନ-ବ୍ୟାପୀ ସାଧନା ।

ଆସିବେ କେତେ ଯିବେରେ କେତେ
କାନ୍ଧ ମିଳାଇ ସବୁରି ସାଥେ
ଗ୍ଭଲିବୁ ବାଟ ସଭିଙ୍କି କରି ବନ୍ଦନା
ନକର ମନେ ଘବନା
ତୋର ଜୀବନ-ବ୍ୟାପୀ ସାଧନା ।

ଭବିବୁ ନାହିଁ ଆପଣା ପର
ଆଜି ଯେ ପର କାଲି ସେ ଘର
ଫେରିବେ ନିଶ୍ଚେ ଦେଖିଲେ ତୋର ଯାତନା
ନକର ମନେ ଭବନା
ତୋର ଜୀବନ-ବ୍ୟାପୀ ସାଧନା

ଆସିବ ବେଳ ପଡ଼ିବୁ ଏକା
ମାଡ଼ି ଆସିବ ପ୍ରବଳ ଧକ୍କା
ନିର୍ବାପିତ ହେବାରେ ତୋର ଚେତନା ।
ନକର ମନେ ଭବନା
ତୋର ଜୀବନ-ବ୍ୟାପୀ ସାଧନା

ଭକ୍ତ ଦେଖି ଭକତ ତୋର
ଭକ୍ତ ହେବେ ଆସି ମୂକର
ଶକ୍ତି ବର୍ଦ୍ଧିବ, ପାଇବୁ ଶତ ସାନ୍ତ୍ୱନା ।
ନକର ମନେ ଭବନା
ତୋର ଜୀବନ-ବ୍ୟାପୀ ସାଧନା ।

ନିର୍ଭୀକ ଯେ ହେବୁରେ ତୁହି
ମୃତ୍ୟୁ ମନ୍ତ୍ରେ ଦୀକ୍ଷା ନେଇ
ମୁକ୍ତ ହେବୁ, ପୂର୍ଣ୍ଣ ହେବ ତୋ ବାସନା ।
ନକର ମନେ ଭବନା
ତୋର ଜୀବନ-ବ୍ୟାପୀ ସାଧନା ।

● ● ●

## ଜମ ଜାମ ସଇନ

ଜନ୍ମ ଜାମ ପଗ ସବୁ ସରିନି ହେ କେଶରୀ
(ଆମେ) ଗ୍ଭହିଁଛୁ ଗ୍ଭତକ ପରି । ପଦ ।
ପର୍ଦ୍ଧି ଜାତି ଇତିହାସ ମଉଳିଲ ତୁମ ହସ
ସମଝିଲ ଆମ ଦେଶ ବିଦେଶୀଙ୍କ କିଣାଦାସ
ଭୂଗୋଳର ମାନଚିତ୍ର
ଶୁଖାଇଲ ନିତି ତୁମ ଶିରୀ । ୧ ।

ବସନ୍ତ ବାଇଲ ବଂଶୀ କୋଇଲି ଗାଇଲ ଆସି
ଜୋଛନ ଡାକିଲ ବସି ସଭିଙ୍କ ପାଖରୁ ଖସି
ଛନ ଛନ କଲ ମନ
ସପନେ ଜାହାକୁ ଝୁରି ଝୁରି । ୨ ।
ଯୋଗକୁ ଜଣେ କେ ଗ୍ରୁ ଆସିଲ ଅମର ପୁତ୍ର
ଦୀକ୍ଷା ଘେନି ତାହା ଠାରୁ ଦୃବ ତୁମେ ହେଇ ଦାରୁ
(ତମ) ସପନ ତ ହେଲ ସତ
ତୁଟିଲ ବିଦେଶୀ ଲୁହା ଡୋରି । ୩ ।

ସ୍ୱାଧୀନତା ସ୍ରୋତେ ପଡ଼ି ଯାଇ ନାହିଁ ପଥ ଛୁଡ଼ି
ଭଉଁରି ସାଥିରେ ଲର୍ଢି ଜବ ଆଜି ହର ଘଡ଼ି
ବଡ଼ ହେବୁ ଆମେ ସବୁ
ରହିବୁ ଧରାରେ ଦେହ ଧରି । ୪ ।
ଗ୍ଭରି ଖଡ଼େ ଜଳେ ନିଆଁ ଦୁନିଆ ସାର ଛାନିଆଁ
ଆମର ଯେ ନାଉରିଆ ସେ ତ କାଠି କାଉଁରିଆ
ଟକ୍କୁ ମର୍ତ୍ତ୍ୟ କହେ ସତ୍ୟ
କାହାରିକୁ କେବେ ନାହିଁ ଡରି । ୫ ।

● ● ●

## ସ୍ୱାଧିନତା ଆଣି ଦେଲା କେ ଦେଶକୁ

ସ୍ୱାଧୀନତା ଆଣି ଦେଲା କେ ଦେଶକୁ
ତମକୁ ସ୍ୱାଧୀନ କଲାରେ କିଏ
ବର୍ଷ ମନ୍ଦୁଡ଼ିରେ ବୁଲି ବୁଲି ଘରେ
ଭିକ ମାଗି ଭିକ କିଏ ସେ ଦିଏ ।
ଦେଲା କେ ତମକୁ ଏଭଳି କ୍ଷମତା
ତମେ ଆଜି ଦେଶ ଦଶଙ୍କ କ୍ଷମତା
ସୁନାର ଭରତ ଗଢ଼ିବା ପାଇଁ କି
ଚୂନା କରି ନିଜ ଦିହକୁ ଧୂଏ । ୧ ।
ସଂସାରେ ତୁମକୁ ଦେଲା କେ ସମ୍ମାନ
ସବୁ ଦରବାରେ ଦେଲା କେ ଆସନ
ଅଶୋକ ଚକ୍ରର ପତାକା ତୁମର
ସତ୍ୟ ଅହିଂସାର ବାରତା କୁହେ । ୨ ।
ଧନବଳ ସାଥେ ଲଢ଼େ ମନୋବଳ
ହାରିଯିବ ଧନ ଏହା ଶେଷ ଫଳ
ଦଳ ଛାଡ଼ି କଳ କିଏ ଚଳାଇବ
ଯେବେ ବଡ଼ ଧନୀ ହେଉଚ ସିଏ । ୩ ।
ଗାନ୍ଧୀ, ଗୋପବନ୍ଧୁ ପଦଧୂଳି ନେଇ
ଜିତିଛୁ ଯୁଦ୍ଧରେ କରିକି ଲଢ଼ାଇ
ନିଜର ମଙ୍ଗଳ ନିଜେ ସେ କରିବ
କଂଗ୍ରେସକୁ ଭୋଟ ଦେବରେ ଯିଏ । ୪ ।
(ନିର୍ବାଚନ ସମୟରେ ଲିଖିତ)

● ● ●

## ଦୁର୍ଗା ସ୍ତୁତି

ଭଜମନ ଦୁର୍ଗା ଦେବୀଙ୍କି
ଡର ନାହିଁ ଆଉ ଏଣିକି
ଅସୁରକୁ ମାରି ଦଶଭୁଜ ଧରି
ରଖିବେ ଆମର ଏହି ପୃଥ୍ୱୀକି । ଘୋଷା ।
ଫୁଲ ତୋଳି ହାର ଦିଅ ଗିନ୍ଥାଇ
ଭକତିରେ ନିଅ ତାଙ୍କୁ ବନ୍ଦାଇ
ଦିହେ ବୋଳି ହୁଅ ତାଙ୍କ ପାଦଧୂଳି
ହାତେ ନେଇକି
ତୁମ ଆଢ଼େ ସେ ତ ଛନ୍ତି ଚାହିଁକି ।
ନଭୁଲ ତାହାଙ୍କୁ ସେ ତମ ମାଆ
ସବୁ ବେଳେ ହେବେ ତୁମକୁ ସାହା
ତମେ ତାଙ୍କୁ ଭଜିବା ପୂର୍ବରୁ
ଭାବୁଛନ୍ତି ସଦା ତୁମପାଇଁ କି ।
ଦିଅ ଧୂପ ଦୀପ ସୁବାସ ଚନ୍ଦନ
ମହକି ଉଠୁ ଏ ଗାଁ ଘର ବନ
ହୁଅ ତୁମେ ଧନ୍ୟ ତାଙ୍କ ଗୀତ ଗାଇକି ।
ରୋଗ ଶୋକ ଦୁଃଖ ସବୁ ହେବ ଶେଷ
ବଦଳି ଯିବ ତ ତୁମର ଏ ବେଶ
ଗଗନ ପବନ ଯିବ ମହକି ।
(କନକ ଗିରି ମେଳାରେ ପଠିତ

● ● ●

## ନଗ୍ନ ତୁ ମା'

କେତେ ରଙ୍ଗେ ମୋତେ ନଗ୍ନଇବୁ ମାଗୋ
ନଗ୍ନ ତୁ ମା'
ଏହି ଦୁନିଆରେ କେହି ନାହିଁ ମୋ'ର
ଅଟୁ ତୁ ମୋହର ଜୀବନ ସାହା ।
ଜନ୍ମିବାର ଯେତେ କର କଳବଳ
ତୋତେ ଯେବେ ମାଗୋ ଲାଗୁଛି ଭଲ
ଦେହକୁ ମୋହର ଦେଇ ତୋର ଜିମା
ତୋ' ପାଖେ ଜୀବନ କରିଛି ମୁଁ ବୀମା
ଅକାତ ପାଣିରେ ଡାତ ମାରି ମୁହିଁ

ଭସାଇ ଦେଇଛି ମୋହର ନାଆ
ଇଚ୍ଛା ତୋ'ର ଯାହା କର ତୁ ତାହା ।

● ● ●

## ପ୍ରିୟତମ

ଆହେ ପ୍ରିୟତମ,
ତମ ପରି ମୋର କେହି ନାହିଁତ
କାନ ଡେରି ତୁମେ ରହ ଗହିଁତ
ଭାଷା ନାହିଁ ମୋ'ର ଭାବ ପ୍ରକାଶିବ
ମୋ'ର ଭାବନାର ତୁମେ ଅତୀତ । ପଦ ।
ତମେ ମୋର ନିଃସ୍ୱ
ତମେ ମୋର ବିଶ୍ୱ
ତମେ ମୋର ଚିର ଜୀବନ ସର୍ବସ୍ୱ
ମୋ ପ୍ରାଣ ପଥର ବନ୍ଧ ଭାଙ୍ଗିଗଲା
ତମରି ପୀରତି ଡେଇ ବାହିତ । ୧ ।
ତୁମେ ଅଗ୍ନି ଶିଖା
ମୁହିଁ ଅଗ୍ନି କଣା
ସବୁ ଅଭିମାନେ ହୁଏ ବାଟବଣା
ତୁମେ ପଦ୍ମ ନାଡ଼ ମୁହିଁ ପଦ୍ମଫୁଲ
ରହିଅଛ ତୁମେ ମୋ' ସହିତ । ୨ ।
ବିଶ୍ୱ ଜଗତର କୋଟି ସର୍ବହରା
ରକତ ଦେଇ ଯେ ଗଢ଼ିଲେ ଏ ଧରା
ବିଜୁଳି ପରଏ ଗୁଞ୍ଜିତ ହେଲେଣି
ତୁମରି ଇଙ୍ଗିତ ପାଇତ । ୩ ।
ତୁମ ପାଖେ କିବା କରି ବିଜ୍ଞାପନ
ବାରେ ବାରେ ଦିଅ ମାନବ ଜନମ
ମାନବ ସେବାରେ କଟିଯାଉ ପ୍ରାଣ
ମାନବ ସେବାରେ ଶୁଖୁ ରକତ । ୪ ।

● ● ●

## ସେହି ନିରାକାର

ମୂଳାଧାର ସେହି ନିରାକାର
ଆଖି ଆଗେ ଘଟି କରି ସିଏ ନିତି
ସାର ସୃଷ୍ଟି ତା'ର ସଂହାର ।
ମୂଳ ପାଣି ଲଗି କାନ୍ଦିବ ଡାଳ
ମୂଳ ଶୁଖିଗଲେ ନ ଧରିବ ଫଳ
ସବୁ ପୂଜା ପାଠ ହେବ ସିନା ବ୍ୟର୍ଥ
ମନେ ଭାବ ତୁମ ବାହାଘର । ୧ ।
ରବି ଶଶୀ ତାରା ସସାଗରା ଧରା
ତା'ର ପାଦ ପଦ୍ମେ ଲୋଟୁଛନ୍ତି ପରା
ଅନ୍ତରଯାମୀ ସେ ଅନ୍ତର ଜଣାଇ
କେହି ନାହିଁ ତା'ର କଣେ ପର । ୨ ।
ତାହା ସାଥେ ଯିଏ ରଖେ ନିତି ଭାବ
ଦୁନିଆରେ ତା'ର ନ ରହେ ଅଭାବ
ପାପୀ ତାପୀ ଢପୀ ସଭିଙ୍କୁ ଉଦ୍ଧାରେ
ପାତର ଅନ୍ତର ନାହିଁ ତା'ର । ୩ ।
ମାୟା ଜାଲ ତାର ପାରିବ ଯେ କାଟି
ପାରି ହୋଇଯିବ ଏ ପରୀକ୍ଷା ଘାଟି
ମହାକାଳ ସ୍ରୋତ ମାଡ଼ି ଆସୁଅଛି
ଚାରି ଯୁଗ ମଧ୍ୟେ କଳି ସାର । ୪ ।

● ● ●

## ମୋ' ହାତକୁ ଦିଅ ହେ ତରବାରୀ

ମୁଁ ଚାହେଁନା ହେବାକୁ ଦରବାରୀ
ମୋ' ହାତକୁ ଦିଅ ହେ ତରବାରୀ (ପଦ)
କି ହେବ ଏ ଶିକ୍ଷା କି ହେବ ଏ ଦୀକ୍ଷା
କରି ନ ପାରିଲେ ସ୍ୱାଧୀନତା ରକ୍ଷା
ପର ଅଧିନତା ପଦେ ନୋଇଁ ମଥା
(ଯେବେ) ଜୀବନ ରଖିଲି ଭିକ୍ଷା କରି । ୧ ।
ଚାହେଁ ନାହିଁ ଆଧି ଚାହେଁନା ଉପାଧି
ବିଜୁଳି ଆଲୁଅ ମଖମଲ ଗଦି
ହିମାଳୟ ପରେ ପ୍ରହରୀ ମୁଁ ହେବି
ବରଫରେ ପଡ଼େ ଯାଏ ସରି । ୨ ।
ଭେକ ଉପାସରେ ନିତି ପଡ଼ି ପଡ଼ି,
ଅଜଣା ରୋଗରେ ଯାଏ ପଡ଼େ ସଢ଼ି

ଜଙ୍ଗଲ ହୋଇ ମୁଁ ଜନମେ ଏ ଦେଶେ
ଜଗେ ବଇରୀଙ୍କୁ ବାଟ ଘେରି ।୩।
ସମର ଭୂଇଁରେ ପଡ଼େ ମୁହିଁ ଟଳି
କମାଣ ଗୁଳାରେ ହୁଏ ପଛେ ଧୂଳି
ଯବାନମାନଙ୍କ ଯୋଡା କଣ୍ଢା ହୋଇ
ବଇରୀ ଜଙ୍ଘିଜା ଦିଏ ଚିରି ।୪।

● ● ●

## ଉଦ୍‌ବୋଧନ ସଙ୍ଗୀତ

ଆମେ ଚାଲିଛୁ ଚାଲିବୁ ଗୋଟିଏ ପତାକା ହାତରେ ଧରି
ଶତ ଝଡ଼ି ମରୁଡ଼ି ଭିତରେ ବାହି ନେଉଁ ଆମ ଜୀବନ ତରୀ
ଜାତୀୟ ଜୀବନ ଶିଶୁ ବଟ ମୂଳେ
କାଳର ପ୍ରବଳ ସ୍ରୋତ ସତୀ କୂଳେ
ଜଳ ଧାର ସିଞ୍ଚି
ରହି ଅନୁବର୍ଷି
ଚାଲୁ ଥକାମାର ପଥିକ ପରି ।୧।
ମଧୁ ଗୋପବନ୍ଧୁ ପଠାଣି ସାମନ୍ତ
ଉଇଁ ଯେତେବେଳେ ହେଲେ ଏଠି ଅସ୍ତ
ସଭିଙ୍କ ପ୍ରତିଭା ଦୀପ ଜାଳିଅଛୁ
ଆମ ଟିଗଲୁଗା ସଳିତା ପରି ।୨।
ଆମ ଶିଷ୍ୟ ପଗ ଧରମା ବାଜିଆ
ରଚିଲେ ଯେ' ମାନେ ସ୍ମୃତିର ଚାକିଆ
ଜାତି ଲାଗି ଛାତି ହାଡ଼ ଫିଙ୍ଗିଦେଲେ
ଦେଶ ଲାଗି ଦେଲେ ଜୀବନ ସାରି ।୩।
ଆମେ ହେଁ ଦେଶର ବାଇଶି ପାହାଚ
ଆମେ ହିଁ ଗଢ଼ିବୁ ସାମ୍ୟବାଦ ଛାଞ୍ଚ
ଦେଶ ସ୍ୱାଧୀନତା
କରିବାକୁ ରକ୍ଷା
ନୂଆ ନୂଆ ସୈନ୍ୟ ଯିବୁ ତିଆରି ।୪।
ଆଖି ଆଡ଼୍ ଆଳେ ଖଟି ସାରଦିନ
ନିତି ମୂଲିଆ ଠୁଁ ଆମେ ସବୁ ହୀନ
ନୋହୁଁ କର୍ମଚାରୀ
କାମ ଯାଉଁ ଛଡି
ପଡ଼ିଛୁ ବନସ୍ତେ ନିରମୂଳି ପରି
ସତେ ଆମ ଯଶା ଯିବକି ଫେରି ।୫।

● ● ●

## ଗୁରୁଜୀ

ଗୁରୁଜୀ !
ଗଢ଼ିବ ପାଇଁକି ତମେ ଯେବେ ଥରେ ଆସନ୍ତ ଫେରି
ଶହ ଶହ ଲୋକ ତମ ଚାରି ପାଖେ
ପାଗଳ ପଣଏ ଯାଆନ୍ତେ ଘେରି
ତୁଙ୍ଗ ଶିଖରୀ ତୁଳ
ପୂଣ୍ୟ ଜଳଧି ଜଳ
ବଜାଇ ନିଅନ୍ତି ଛାକର ଧରି
ସିଂହ ଭୂମି ଠାରେ ଦେଇ ସିଂହ ଡାକ
ଦେଲେ ଯେଉଁ ଜାତି ସଗର ସେବକ
ସେ ମହାସାଗର ଛାତ ଫାଟିଲଣି
ଡର ଲାଗେ କ୍ୱାଳେ ପଡ଼ିବ ଟଳି ।୧।
ଚାଲି ଗଲେ ସିନା ବିଦେଶୀଏ ଦଳ
ଅବିକଳ ଛାଡ଼ିଗଲେ ତାଙ୍କ କଳ
ଧନୀ ମହାଜନ ବଣିକ ଶୋଷଣ
ଚଳାଏ ସେ କଳ ପୂର୍ବପରି ।୨।
ଲଭି ଯେଉଁ ଶିକ୍ଷା ଘେନି ଯେଉଁ ଦୀକ୍ଷା
ଦ୍ୱାରେ ଦ୍ୱାରେ ବୁଲି ମାଗି ମୁଷ୍ଟି ଭିକ୍ଷା
ଅରଜିଲୁ ଆମେ ଯେଉଁ ସ୍ୱାଧୀନତା
ମୁଳଦୁଆ ତାର ଉଠଇ ଥରି ।୩।
ନିକମା ଦଳର ଜଠର ଅନଳ
ଅଳପ ବେତନ ଭୋଗୀ ଅଶ୍ରୁଜଳ
ସବୁ ହୁଏ ଠୁଳ ପଡିଗଲେ ବେଳ
ଶାସନକୁ ଦେବ ଅଚଳ କରି ।୪।
କୋଡ଼ୁନ୍ତୁ ଯେତିକି ମାଡ଼ୁନ୍ତୁ ସେତିକି
ନ ବିଚାରୁ ଆମେ ଲାଭ ବା କ୍ଷତିକୁ
ଜର ସାଥେ ଦର ବଢ଼ି ଚାଲିଅଛି
କରଜରେ ଆମେ ଗଲୁଣି ସରି ।୫।

● ● ●

## ଆମେ ଯୁବତୀ ଆମେ ଯୁବକ

ଆମେ ଯୁବତୀ ଆମେ ଯୁବକ
ଆମେ ସେବିକା ଆମେ ସେବକ
ଭାରତ ଦୁର୍ଗର ପ୍ରହରୀ ଆମେରେ
ବିଶ୍ୱର ଶାନ୍ତି ରକ୍ଷକ ।

ଆମ ଘର ଛାତ ନୀଳ ଅମ୍ବର
ଆମ ସୁଖ ଶେଯ ଶ୍ୟାମ ପ୍ରାନ୍ତର
ଅନୀତି ଅନ୍ୟାୟ ବଇରୀ ଆମର
ଆମେ ସତ୍ୟର ସଦା ସାଧକ ।

ଆମେ ମରିବା ପାଇଁକି ଡରୁନା
ଆମେ ସହି ପାରୁ ସବୁ ଯାତନା
କାଳ ସଙ୍ଗେ ତାଳ ପକାଇ ଚାଲିବୁ
ଘୋର ଅନ୍ଧାରେ ଜାଳି ଆଲୋକ ।

ମାନବ ଜାତିକୁ କରିବୁ ଏକାଠି
ଜାତି ବର୍ଣ୍ଣ ଭେଦ ପକାଇବୁ କାଟି
ମାନବ ରାଷ୍ଟ୍ର ଗଢ଼ିବୁ ମହୀରେ
ହସି ଉଠିବ ଏ ଭୂଲୋକ ।

● ● ●

## କାଳ ଭର୍ଉରୀ

ଆମ ସୁନାର ସଂସାର ଯାଇଛି ସରି
ଦଇବ ଆମକୁ କଲା ଭିକାରୀ

( ୧ )

ପାଳିବୁ କି ଆଉ ଦିଆଲି ପରବ
ଫୁଟାଇବୁ ବାଣ ଦେଖାଇ ଗରବ
ମାଳ ମାଳ ଦୀପ ସଜାଇ ବସିବୁ
ଉଆଁସ ରାତିକି ପୁନେଇ କରି ।

( ୨ )

ବଡ଼ ବଡ଼ ଭୂତ ଆସିବେ ଅନ୍ଧାରେ
ଦେଖିବେ ସଭିଏଁ ପଡ଼ିଛୁ ପଦାରେ
ଚଲେଇରେ ଶୋଇ ସଢ଼େଇରେ ଖାଇ
ଦୁର୍ଭାଗ୍ୟ ଆମର ଯାଇନି ସରି ।

( ୩ )

ଛପି ରହିଥିଲେ କୁଆଁର ପୁନେଇ
ଗଲେ ଜହ୍ନ ମାମୁଁ ଅନେଇ ଅନେଇ
ଦେହ ତ ଥରୁଛି ଖେଳିବ କେ ପୁଚି
କୁମାରୀ ଏ ଦେଲେ ଲୁହ ଆଞ୍ଜୁଳି ।

( ୪ )

କଦଳୀ ଗଛର ନାହିଁ ଆଉ ସତ୍ତା
ଭାବିବ କିଏ ସେ ଡଙ୍ଗା ଭସା କଥା
ଜୀବନ ଡଙ୍ଗାକୁ ବାହିବୁ କିପରି
ଆଖି ଆଗେ ନାଚେ କାଳ ଭଉଁରୀ ।

( ୫ )

ହରିବାକୁ ଆମ ଜୀବନ କଷଣ
ଢାଳନ୍ତି ଯେ ମାନେ ଧନ ଜନ ମନ
ତାଙ୍କ ଋଣ ଆମେ ସୁଝି ନ ପାରିବୁ
ଥିବୁ ଯେତେ ଦିନ ଜୀବନ ଧରି ।

● ● ●

## ଡର ନାହିଁ

ଡର ନାହିଁ ଆଉ ନାହିଁ ତ ବେରି
କଳ କଳି ଯୁଗ ଯାଇଛି ଫେରି
ଆସିଲାଣି ସତ୍ୟ ହସିବ ଏ ମର୍ତ୍ତ୍ୟ
ଆସିଲାଣି ସବୁ ଦେହ ଧରି ।
ମନୁଷ୍ୟ ଦେହରେ ନେଇଲେଣି ଜନମ
ଦେଖାଇବେ ଶକ୍ତି ଦେଖାଇବେ କର୍ମ
ଏକପରି ସାରି ବାହରି ପାରି
ବଜାଇବେ ସତ୍ୟ ବିଜୟ ଭେରୀ ।
ଛାଡ଼ି ଦିଅ ହିଂସା ଛାଡ଼ି ଦିଅ ମିଥ୍ୟା
ଆଖିରେ ଦେଖିବ ସକଳ ଦେବତା
ଯିବ ନିଦ ଭାଙ୍ଗି ହେବ ତାଙ୍କ ସଙ୍ଗୀ
ତମ ହରି ପାଶେ ରହିବେ ଘେରି ।
ମା ଶ୍ରୀ ଚରଣେ ଦିଅ ଆଜି ଧ୍ୟାନ

ଛୁଟି ଯିବ ମନୁ ସକାଳ ଅଶ୍ରୁ ଜଳ
ଲଟିଯିବ ଛାତୀ ଯମ ଯିବ ହଟି
ଜନ ବାଞ୍ଛା ଯିବ ନିଶ୍ଚୟ ପୁରି ।

● ● ●

## ଭୋଟ କାଗଜଟି ସେଥିରେ ରଖ

ଅସ ମାଆ ମୋର ଭଉଣୀଯାକ
ଆସିଛି ତୁମ୍ଭକୁ ଦେଶର ଡାକ
ଗଢ଼ିବାକୁ ହେବ ଦେଶ ସରକାର
ଚାହିଁଛନ୍ତି ସାରା ପୃଥ୍ବୀର ଲୋକ । ପଦ ।

ଏତୁରି ଘରଠୁଁ ରୋଷଘର ଯାଏ
ବନ୍ଦୀ ହୋଇ ମାଟି ପରଦା ସେ ପାଖେ
ଅଖି ଥାଇଁ ଥାଇଁ ଅନ୍ଧ ହୋଇଥିଲି
କବାଟ କଣରେ କାଟି କାଳକ । ୧ ।

ଦେଖା ଦେଲେ ଆସି ସେ ମହାମାନବ
ଶବ ଥିଲେ ଆମେ ହେଲେ ଆଜି ଶିବ
ତାଙ୍କ ତପବଳେ ତାଙ୍କ କର୍ମ ଫଳେ
ଚୁଟିଛି ଅନ୍ଧାର ଫୁଟେ ଆଲୋକ । ୨ ।

କଂଗ୍ରେସ ଅମର କରି ସୁବିସ୍ତର
ଝିଅମାନଙ୍କୁ ତ ଦେଲା ଅଧିକାର
ଆଇନି ବଳରେ ସବୁ ସମ୍ପତ୍ତିରେ
ପୋଷିଆ ଝିଅ ତ ହେବ ମାଲିକ । ୩ ।

ଘର ଚଳାଉଛି ହୋଇକି ଘରଣୀ
ତମ ଲାଗି ଘର ତମେ ସୁଲକ୍ଷଣୀ
ଲକ୍ଷ ଲକ୍ଷ ଘର ଚଳାଇବା ଲାଗି
ବାଛିବାକୁ ହେବ ଦେଶ ଶାସକ । ୪ ।

କଂଗ୍ରେସ ତମର ଫିଟାଇଛି ଆଖି
ରବି ଶଶୀ ତାର ରହିଛନ୍ତି ସାକ୍ଷୀ
ଯୋଡ଼ି ବଳଦର ଛବି ତମ ପେଡ଼ି
ଭୋଟ କାଗଜଟି ସେଥିରେ ରଖ । ୫ ।

● ● ●

## ଓଡ଼ିଶାର ଦାବି

ଜ ଲବ ଅମକୁ ଓଲୁ ବୋଲି
ଯାଇଅଛି ଆମ ଆଖି ଖୋଲି । ପଦ ।

ଅମେ ଗଢ଼ିଅଛୁ ଦିଲ୍ଲୀ ସିଂହାସନ
ଅମେ ଗଢ଼ିଛୁଏ ଜାତୀୟ ଫେଡେନ
ଅମ ଲାଗି ପରା ଦେଶ ୟୁନିୟନ୍
ଅମକୁ କିଏ ସେ ଦେବ ଦଳି ? । ୧ ।

ଓଡ଼ିଶା ନିବାସୀ ଓଡ଼ିଶାର ସ୍ୱାମୀ
ସ୍ୱାଧୀନତା ଲାଗି ପିନ୍ଧିଥିଲୁ ଫାଶୀ
ବାରବରଷର ବାଜୁତ କୁମର
ଗୁଳି ଖେଟେ ଦେଲା ପ୍ରାଣବଳି । ୨ ।

ଏ ଦେଶ ମହିଳା କୋଳେ ଘେନି ପିଲା
ପଥର ପାଚେରୀ ତଳେ ରହିଥିଲା
ଯୁବକ ଜାଳିଲେ ଜୀବନ ମଶାଲ
ବିଦେଶୀ ଶାସନ ଗଲା ଟଳି । ୩ ।

ଟାଣ କରିବାକୁ ସ୍ୱାଧୀନତା ଭିତ୍ତି
ଆରେ ଅମ ରାଜା ଛାଡ଼ିଲେ ରାଜୁତି
ତେଜି ଜମିଦାରି ଗଲେ ଜମିଦାର
ପାସନ କଳର ଧ୍ୱଜା ତୋଳ । ୪ ।

ଶାସନ କଳକୁ ଚଳାଇବାପାଇଁ
ରାଜ୍ୟପାଳ ମନ୍ତ୍ରୀ ଦେଇଛୁ ଯୋଗାଇ
ଅମେ ଦୁଇକୋଟି ଆମ ଜିଭ କାଟି
ପାରିବ କିଏ ସେ ଦିନେ ଚଳି । ୫ ।

ଅମ ମାଟି ତଳେ ରହିଅଛି ସୁନା
ପାରିବ ଆମକୁ କିଏ କରି ଚୁନା
ନେଇ ଅମ ମାଟି ଟାଟା କୋଟିପତି
ନଜକୁ ପଛକେ ଅମ ଚୁଲୀ । ୬ ।

ଶିଖାଇ ଯାଇଛି ଗୁରୁ ମହାମନ୍ତ୍ର
ଗଣତନ୍ତ୍ର ଅର୍ଥ ନୋହେ ଜଣତନ୍ତ୍ର
ଅନ୍ୟାୟ ସହିବା ନୁହଇ ଅହିଂସା
ଭୀରୁ ହୋଇ ସଦା ପଶୁ ଭଳି । ୭ ।

ପଦାକୁ ମହିଷି ଶିଂଘ ଦିଶେ ଫଟା
ଯୁଝିଲ ବେଳକୁ ହୋଇଯାଏ ଗୋଟା

ଆମ ଦାବୀ ଆମେ ହାସଲ କରିବୁ
ହିମାଳୟ ପଛେ ପଡ଼ୁ ଟଳି ।୮।

● ● ●

## ଶପଥ ପତ୍ର

ତୁମ୍ଭ ପାଦ ପଦ୍ମ ତଳେ ଆଜି ପ୍ରଭୁ
ଶପଥ କରୁଛୁ ଏତିକି,
ଯାଏ ଯେବେ ଦୂରେ ଯାଏ ଯେଉଁ ପୁରେ
ନ ଭୁଲିବି ମୋ'ର ସାଥିଙ୍କି ।
ମରେ ଗୁଳି ଖେଳେ ଅବା ଫାଶି କାଠେ
ନ ଛାଡ଼ିବି ମୋ'ର ନୀତିକି,
ଯେ ନୀତିରେ ମୁହିଁ ମୋ' ଜନମ ଭୂଇଁ
ଗଢ଼ିବି ଆଣିଥିଲି କ୍ଷିତିକି ।
ସବୁ ଅହଂକାର ମନୁପୋଛୁ ମୋର
ସଫା ରଖିବି ମୋ ମତିକି,
ଧନ ଜନ ମାନ ଦେଇ ମୋ ଜୀବନ
ଗଢ଼ିବି ମନୁଷ୍ୟ ଜାତିକି,
ତୁମ୍ଭ ପାଦ ପଦ୍ମ ତଳେ ଆଜି ପ୍ରଭୁ
ଶପଥ କରୁଛି ଏତିକି ।

(ଆଜିକି ବାରବର୍ଷେ ତଳେ କବି ମଧ୍ୟବର୍ତ୍ତୀକ ଳୀନ ନିର୍ବାଚନରେ ଜଗତସିଂହପୁର-ଗୋବିନ୍ଦପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ତରଫରୁ ପ୍ରତିନିଧି ରୂପେ ବିଧାନ ସଭାଗୃହକୁ ଆସିବା ପୂର୍ବରୁ ଏହି କବିତାଟି ରଚନା କରିଥିଲେ)

● ● ●

## ଭେଦ କାରାବାସ

ଭେଦି କାରବାସ ଭେଦି ନୀଳାକାଶ
ଜମ ଲାଗି ହେଲ ପାଗଳ ପ୍ରଭାଷ
ଭେଟିଲ କି କାହିଁ ? ମତେ ଜଣା ନାହିଁ
ନ ଫେରିଲ ଆଉ ଯାଇଛି ଗ୍ଲାଲି,
ଗଳି ନ ପାହୁଣ୍ଡ ମୋ' ଘର ଲକ୍ଷ୍ମଣ
ଗଦ୍ ଗଦ୍ କଣ୍ଠେ ଜପ ରାମ-ନାମ
ତୁମ ଶ୍ରୀ ପୟରେ ଶୁଖାଉଛି ଦେଶ
ହସି ଫାଶୀ କାଠେ ପଡ଼ିଲ ଝୁଲି

ତେଣେ, ପରଶ ଗ୍ଲାଲିଛି ପରମାଣୁ ବୋମା
ଜାଳିବ କିଏ ସେ କେତେ ହିରୋସୀମା
ଏଣେ, ପ୍ରଦେଶର ସୀମା ଲାଗି ଆମେ ଭାଇ
ପିଲାଏ ଯେପରି ଖେଳନ୍ତି ଧୂଳି,
ମାନବ ଜାତିକି ଆପଣାର କରି
ପ୍ରାଣ ଦେଇ ପୂଜା କଲେ ଯେ ପୂଜାରୀ
ସେହି ଗାନ୍ଧୀ ନୀତି ନ ଘେନିଲେ ପୃଥ୍ୱୀ
ଘଡ଼ିକ ଭିତରେ ଯିବ ତ ଜଳି

● ● ●

## ବାର୍ କଳି ଦେବେ ଲଗାଇ

ତମେ ଏକ ମନ ଏକ ପ୍ରାଣ ନୋହିଲେ ଭାଇ
ପର ପଶି
ଘର ନାଶି
ବାର କଳି ଦେବେ ଲଗାଇ ।ପଦ।
ପାଇଥିଲ ସ୍ୱାଧୀନତା
ସହିଥିଲ କେତେ କଥା
ଡକାଏତ୍ ଦଳ ଆସି
କାଟି ଆଜି ତମ ମଥା
ତମ ଦେଶ ନେବେ ଛଡ଼ାଇ ।୧।
ଛାତିରକ୍ତ ଦେଇ ଢାଳି
ପୋଛିଲ ଯେ ତମ କାଳି
ଯାଅ ନାହିଁ ତାକୁ ଭୁଲି
ମଥାରେ ଆଶୀଷ ଢାଳି
ରହିଛି ସେ ଦୂରୁ ଅନାଇଁ ।୨।
ଭୀରୁ ନୁହେଁ ବୀର ତୁମେ
ଲାଗି ଯାଅ ସଦା କ ମେ
ଅଡ଼ମ୍ ଇଚ୍ଛା କର ସର୍ବେ
ମାଡ଼ିଗ୍ଲାଇ ବୀର ଗର୍ବେ
ବଇରୀକୁ ଏଠୁ ହଟାଇ ।୩।

● ● ●

## କେ ଅଛୁ ବୀର

କେ ଅଛି ବୀର ଗ୍ରାମେ ଗ୍ରାମେ ପକା ଶିବିର
ଶେଷ ରକ୍ତ ବିନ୍ଦୁ ଶେଷ ହେବା ଯାକେ କର ସମର
ଭାଇ ଭାଇ ମିଶାଇ କାନ୍ଧ

ଭୁଲ ସବୁ ଗାଆଁ ବିବାଦ
ରହିଛନ୍ତି ଦୁନିଆଁ ଯାକ
ସେନାପତି ଦେଉଛଣି ଡାକ
ମାନ ତା'ଙ୍କ କଥାକେ ପ୍ରତି ଅକ୍ଷର । ୧ ।

ବିଲ କରି କରଅ ଚାଷ
ରଖ ନାହିଁ ଗୋଟିଏ ଘାସ
ଫୁଲ ଫଳେ ଭରି ଦିଅ ହାଟ ବଜାର । ୨ ।

ପଢ଼ି ଶୁଣି ଶୁଣା ଖବର
ଦେଶ ଲଗି ସବୁ ଆମର
ଦେଶ ଲଗି ମରିବାକୁ କେବେ ନ ଡର । ୩ ।

ଲକ୍ଷ ଲକ୍ଷ ଆମଭି ଭାଇ
ସଢ଼ୁଛନ୍ତି ଅର୍ଥ ନପାଇ
ଜୀବନର ଆଶା ଛାଡ଼ି ଘର ଦୁଆର । ୪ ।

● ● ●

## କଟି ଯାଉ କାଳ ଭଉଁରୀ

ଥୟ ଧର ଥୟ ଧର ନାଆ ବହି ନେବ ନାଉରୀ
ଅକାତ କାତ ତା' ପାଣି ତମେ ଜାଣି ନାହଁ ପହଁରି

ଅକଟେ ପଡ଼ିଛି ନାହା
ସକଳେ ଲଗାଅ ବାହା
ମାନ ମୋର ସାନ କୁହା
ନାଉରୀକୁ ହୁଅ ସାହା
କଟିଯାଉ କାଳ ଭଉଁରୀ । ୧ ।

ହୁଅ ନାହିଁ ହଲ ଚଲ
ନାହା ହେବ ଟଳ ମଳ
ହେବ ଯଦି ଦଳ ଦଳ
ହଟହଟା ହେବ ଆହୁରି । ୨ ।

ଶୁଣ ଜଳ କଳ ସ୍ୱନ
ଚଞ୍ଚଳ ନ କର ମନ
ଉପରେ . ଗରଜେ ଘନ

ଆହାରେ ଝଞ୍ଜା ପବନ
ତମେ ଏକା ନାହା ପଶାରୀ । ୩ ।

ନିଜ ନିଜ ଥାନେ ବସି
ଆହୁଲ ପକାଅ କଷି
କାମ କର ମିଳିମିଶି
କାଁଟ ଘାଟ ଯିବ ଦିଶି
ହସି ହସି ଯିବ ଉତୁରି । ୪ ।

● ● ●

## ବିଜୟ ବାଦ୍ୟ

ବିଜୟ ବାଦ୍ୟ ବଜାରେ ସୈନିକ
ଆଜି ସ୍ୱାଧୀନତା ଜନମ ତିଥି
ଶହେ ବରଷର ଯୁଗ ଇତିହାସ
ଯାଉଛି ଯିବ ତ ଆଜି ତୁ ବିତି । ପଦ ।

ବେତାର ବାରତା ଦେ' ତୁ ପଠାଇ
ଗଗନେ ପବନେ ବିଜୁଳି ଛୁଟାଇ
ଗୁଣୀ କାରିଗର ଦେଶ ଏ ଆମର
ପ୍ରାଣର ବାସନା ଦୁନିଆ ପ୍ରୀତି । ୧ ।

ଆମରି ତିଆରି ଏହି ମହୋଦଧି
ଆମେ ହିଁ ଗେଣିଛୁ ଅମର ଔଷଧି
ଆମ ମାଟି ତଳେ ହୀରା ନୀଳା ଫଳେ
ଜଳାଇ ଜଗତେ ଅଲିଭ ଜ୍ୟୋତି । ୨ ।

ବିଦେଶୀ ଶାସନେ ସବୁ ଆମେ ଭୁଲି
ଭାବିଲୁ ନିଜକୁ ନିଜ ଘର କୁଲି
ଯୁଗ ବଦଳିଲା ବନ୍ଧନ ତୁଟିଲା
ବଦଳି ଗଲା ସେ କାଳର ଗତି । ୩ ।

ଲଢ଼ାଇ ଆମର ହୋଇ ନାହିଁ ଶେଷ
ଗଢ଼ିବାକୁ ହେବ ବଦଳାଇ ବେଶ
ସୁନା ଶରୀରକୁ ଚୂନା କରି ଦେବା
ଗଢ଼ିବାକୁ ହେବ ଯଥା ଶକତି । ୪ ।

● ● ●

## ପଛକୁ ନ ଯିବୁ କେବେ ହଟି

ପଛକୁ ନ ଯିବୁ କେବେ ହଟି
ଆମ ବେକ ପଛେ ଯାଉ କଟି
ମାତୃଭୂମିକୁ ମୁକ୍ତ କରିବୁ
ତଡ଼ିବୁ ଶତ୍ରୁ ଗୋଟି ଗୋଟି । ପଦ ।

(ଆମ) ରକ୍ତରେ ଆଜି ଲାଗିଛି ନିଶା
ଲୋଡ଼ା ନାହିଁ ଆମ ନିନ୍ଦା ପ୍ରଶଂସା
ଲକ୍ଷ୍ୟ ଆମର ହିମଗିରି ବର
ଲକ୍ଷ୍ୟ ଆମର ସୀମା ଘାଟି । ୧ ।

ଧରି ମନବଳ ରହି ଅଟଳ
ଗର୍ଜୁଛୁ ଗର୍ଜିବୁ ଚାକରି ବଳ
ଜଳିବୁ ବଇରି ଜଳ ଅଟଳ
ତାଙ୍କ କଉଶଳ ହୋଇବ ବିଫଳ
ତାଙ୍କ ଧନ ଜନ ସବୁ ଯିବ ତୁଟି । ୨ ।

ଜାଣିଲେଣି ଆମ ଦେଶ ଜନତା
ବୁଝିଲେଣି ଅରି ମନର କଥା
ଜୀବନକୁ ପାଣି ଛଡ଼ାଇ ଦେଲେଣି
ଆମ ଦେଶ ଯୁବା ଗୋଟି ଗୋଟି । ୩ ।

ଲଲାଟେ ଆମର ରହିଛି ଲେଖା
ବିଶ୍ୱକୁ ଆମେ ହିଁ କରିବୁ ରକ୍ଷା
ମାନ ସରୋବର ଡ଼ାକଇ ଆମକୁ
ଲୁହ ଢ଼ାଳୁଅଛି ତଳେ ଲୋଟି । ୪ ।

● ● ●

## ବାଣ୍ଟୁ ବନ୍ଧୁ

ଜମ ଛବି ଅଢ଼େ ରହିଲା ବେଳକୁ
କଳିଜା ଉଠଇ ଥରି,
ଦେବତ ହେ ତୁମେ ଆସିଥିଲ ସତେ !
ମଣିଷ ଶରୀର ଧରି ।

ଏ ଦେଶ ଏରଡ଼ିଶାଳେ
ତମେ ଜନମି ଜନନୀ କୋଳେ
କୁଆଁ କୁଆଁ ହୋଇ ପାଟି କରୁଥିଲ
ଟିକି ଟିକି ଆଖି ଖୋଲି,
କିଏ ଜାଣିଥିଲା ହେବ ତମେ ଦିନେ
ବିଶ୍ୱ ମାନବ ବୋଲି । ୧ ।

ଷଢ଼େଇରେ ପାରି ବୁଲି
ତମେ ଖେଳୁଥିଲ ଯେବେ ଧୂଳି
ପରଜାପତିର ପଛେ ଧାଉଁଥିଲ
କାଟୁତ ନଥିଲା ଖଗ,
କିଏ ଜାଣିଥିଲା ନାଆଁଟା ତମର
ବାଜିବ ଦୁନିଆଁ ଯାକ । ୨ ।

ଚଳକୁ ନୁଆଁଇ ମଥା
ଲାଜେ କହୁଥିଲ ମନକଥା
କଅଁଳା ବାଛୁରୀ ପରି ଡେଉଁଥିଲ
ମାଆଙ୍କ ପଣତ ଧରି,
କିଏ ଜାଣିଥିଲା ଜୀବ ସେବାରି
ଜୀବନଟା ଦେବ ସାରି । ୩ ।

ବାଡ଼ି ବଗିଚାରେ ବୁଲି
ଖାଉଥିଲ ପାରି କୋଳି
କୋଇଲିକୁ ତମେ ଥଟା କରୁଥିଲ
କୁହୁ କୁହୁ ଡାକ ଛାଡ଼ି,
କିଏ ଜାଣିଥିଲା ଜାତିର ଶାଙ୍କୁଳି
ଦେବ ଆସି ତୁମେ କାଢ଼ । ୪ ।

ଚାଟଶାଳେ ହୋଇ ଚାଟ
ପଢ଼ୁଥିଲ ଯେବେ ପାଠ
ଭୂତ ଗପ ଶୁଣି ଧାଇଁ ମା' ପାଖକୁ
ରାମ ନାମ ଗଲ ଶିଖି
କିଏ ଜାଣିଥିଲା ଯୁଗ ଯୁଗ ଲାଗି
ଯିବ ତୁମେ ଯଶ ରଖି । ୫ ।

ମାନିଗଲ ନିଜ ଦୋଷ
କଲେ ନାହିଁ ପିତା ରୋଷ
ତମର ସରଳ କଥା ଶୁଣି ଶୁଣି
ତାଙ୍କ ଆଖିରୁ ବହିଗଲ ଲୁହ,
କିଏ ଜାଣିଥିଲା ଏଠି ଆସି ତମେ
ଗେଳିବ ରଜତ ସୁଅ । ୬ ।

ଅନ୍ଧ ମୁନି ବେଶ ଦେଖି
ରଖିଥିଲ ମନେ ଲେଖି
ପିତା ମାତା ଠାରୁ ବଡ଼ ଦେବ ଦେବୀ
ନାହାନ୍ତି ପୃଥ୍ୱୀରେ କେହି,
କିଏ ଜାଣିଥିଲା ପୂଜିବେ ତମକୁ
ବାପୁଜୀ ଉପାଧି ଦେଇ । ୭ ।

ମାତା ପାଦ ଧୂଳି ଘେନି
ତାଙ୍କ ଉପଦେଶ ମାନି
ଦୂର ବିଲାତରେ କାଳ କଟାଇଲ
ଦେଖି ସେଠା ଧନ ଜନ
କିଏ ଜାଣିଥିଲା ଅଟଳ ରହିବ
ତମର ଯୁବକ ଦାନ । ୮ ।

ଗୋରଙ୍କୁ କଳାଏ ଡରି
ଚଳନ୍ତି ପଶୁଙ୍କ ପରି
ଆଫରିକାବାସୀ ଗଇଏ ଜାକିଲେ
ଗ୍ଳିଲ ନ କରି ଭୟ,
ମଥାର ରକତ ଡାଳିଦେଇ ତମେ
ଅରି ମନ କଲ ଜୟ । ୯ ।

ଲଇ ଲଇ ବହି ପଢ଼ି
ଜୀବନକୁ ଦେଇ ଗଢ଼ି
ସବୁ ଧରମର ମରମ ଶିଖିଲ
ସତ୍ୟକୁ ବିକିଲ ପ୍ରାଣ
କିଏ ଜାଣିଥିଲା ଦଧୀଚିଠୁଁ ବଳି
ତମ ଛାତି ହାଡ଼ ଟାଣ । ୧୦ ।

ଛୁଆଁ ଅଛୁଆଁର ଭେଦ
ମନେ ଦେଲା ଘୋର ଖେଦ
ଲେକ ଉପାସରେ ବିଭୁଙ୍କୁ ଡାକିଲ
ଏ ପାପ ଦୂରିତ ଲାଗି,
କିଏ ଜାଣିଥିଲା ବଣକୁ ନ ଯାଇ
ହେବ ବୋଲି ଏଡ଼େ ଯୋଗୀ । ୧୧ ।

ତମ ଶାଣ ଦିଆ ନୀତି
ସଦା ଓଜନ ତଉଲ ପ୍ରୀତି
କସ୍ତୁରିବାକୁ ଭୋଗ ବିଳାସରୁ
ରଖିଲ ବହୁତ ଦୂରେ,
କିଏ ଜାଣିଥିଲା ସିନ୍ଦୂର ଘେନି ସେ
ଫେରିବ ସରଗ ପୁରେ । ୧୨ ।

ଯେତେ ଥିଲେ ଯୁଗ ନେତା
ସବୁରି ଗୋଟିଏ ଚିନ୍ତା
ଦେଶରୁ ହଟାଇ ବିଦେଶୀ ଶାସକେ
ହାସଲ କରିବେ ଦାବି
କିଏ ଜାଣିଥିଲା ଫେରାଇ ଆଣିବ
ତୁମେ ଆମ ଦେଶଚାବି । ୧୩ ।

କି ମନ୍ତ୍ର ପଢ଼ିଲ ଆସି
ଆମ ଦେଶର ମୂଲିଆ ଚାଷୀ
ଯୋଗୀ, ଭୋଗୀ, ରୋଗୀ ତେଜି ସ୍ୱତ ଦାଗ
ସାଜିଲେ ତୁମରି ସୈନ୍ୟ,
କିଏ ଜାଣିଥିଲା ବଇରୀ ତମର
କହିବେ ତୁମକୁ ଧନ୍ୟ । ୧୪ ।

ଲୁଣ ଆଇନକୁ ଭାଙ୍ଗି
ନେଇ କେତେ ଜଣ ସଙ୍ଗୀ
ଦରିଆ କୂଳରୁ ବାହାରିଲ ଯେବେ
ଚମକି ପଡ଼ିଲା ପୃଥ୍ୱୀ,
କିଏ ଜାଣିଥିଲା ଦେଖାଇବ ତମେ
ବନ୍ଧୁକ ମୁନକୁ ଛାତି । ୧୫ ।

ବିଭୁ ପାଦେ ରଖି ଲୟ
ମନ ଧ୍ୟାନ କରି ଥୟ

ଶାସନ କଳର ନାଗ ସାପକୁ ତ
ଖେଳାଇଲେ କେଳାପରି,
କିଏ ଜାଣିଥିଲା ହସି ହସି ତା'ର
ମଥା ମଣି ନେବ ହରି । ୧୬ ।

କରିଥିଲ ଯେବେ ସନ୍ଧି
ଖଦି ପାଞ୍ଚ ହାତି ପିନ୍ଧି
ଗୋଲଟେବୁଲ୍‌ରେ ଯୋଗ ଦେଇ ତୁମେ
କହିଲ ଜାତିର କଥା,
କିଏ ଜାଣିଥିଲା ଭରତ ଭିତରେ
ଅଛି ବୋଲି ଏଡ଼େ ମଥା । ୧୭ ।

ସବୁ ଜୀବ ପ୍ରତି ଦୟା
କିଏ ସମଜିଛି ତମ ମାୟା
ଫୁଲ ଗଛୁ ଫୁଲ ତୋଳୁ ତ ନଥିଲ,
ଗଛକୁ କାଟିବ ବୋଲି
କିଏ ଜାଣିଥିଲା ମଣିଷ ହାତରେ
ମରିବ ଖାଇକି ଗୁଳି । ୧୮ ।

ରହିଛି ତମର ଗୀତା
ମାଟିରେ ମିଶିଛି ଚିତା
ପାଗଳ ମାରିଲା ଥରେ ସିନା ଗୁଳି
ଆମେ ଗୁଳି କରୁ ନିତି,
ଜଗତ ଜାଣଇ ଗାନ୍ଧୀ ଠାରୁ ବଡ଼
ଗାନ୍ଧୀଙ୍କ ଅହିଂସା ନୀତି । ୧୯ ।

ଦୁଇ ନାବେ ଦେଇ ପାଦ
ଆମେ ବିବେକର କରୁ ଶ୍ରାଦ୍ଧ
ମାମୁଁ ବେଳ ଧରି କାନ୍ଦୁ କେତେବେଳେ
ମାଈଁ ବେଳ ଧରି କାନ୍ଦୁ,
ଲେକିଲା ପେଟକୁ ଯାହା ମିଳେ ଯେବେ
କଇବଲ ହୋଇ ଗନ୍ଧୁ । ୨୦ ।

ପ୍ରକୃତି ଦେଖାଏ ଆଖି
ଯାଏ ସବୁରି ରଜତ ଶୁଖି
ବର୍ତ୍ତି ମନ୍ଦିରେ ସର୍ତ୍ତି ଯାଉ ଆମେ
ଭାବନାରେ କାଟୁ ଦିନ,
ନିକମା ସଂଖ୍ୟାତ ବର୍ଦ୍ଧି ଗ୍ଲାଣିଅଛି
କରିବ କେ ସମାଧାନ । ୨୧ ।

ଧରି ଛୋଟ ଛୋଟ କଥା
ଫଟାଫଟି ହେଉ ମଥା
ଗୋଟିଏ ମାଆର ପିଲା ସବୁ ଆମେ
ଯାଉ ଏ କଥାଟି ଭୁଲି
ନିଜ ବାଟେ ନିଜେ କଣ୍ଟା ପୋତୁ ଅଛୁ
ଆଖିରେ ପକାଇ ଧୂଳି । ୨୨ ।

ଦୁନିଆର ଦଶା ଦେଖି
ମନ ଯାଉଅଛି ଶଙ୍କି
ହଳାହଳ ବୋମା ତିଆରେ ମଣିଷ
ମାରିବାକୁ ନିଜ ବଂଶ,
କିଏ ସେ କହିବ ଆଖି ପିଛୁଳାକେ
ନୋହିବ ଏ ଧରା ଧ୍ୱଂସ । ୨୩ ।

ଗଣତନ୍ତ୍ର ମଥା ପିଟେ
ରକତର ସ୍ରୁଅ ଛୁଟେ
କୋଟି କୋଟି ଲୋକ ଥକାମରା ହୋଇ
ଅଛନ୍ତି ଆକାଶେ ଚାହିଁ,
ପ୍ରଳୟର ସ୍ରୋତ ମାଡ଼ି ଆସୁଅଛି
ବୁଦ୍ଧି ବାଟ ଦିଶୁ ନାହିଁ,
ନ ଧରିଲେ ତମ ନୀତି
ନିଶ୍ଚେ ଜଳିଯିବ ଏହି କ୍ଷିତି
ଡାକେ ହିମାଚଳ ଡାକେ ସୀମାଚଳ
ଡାକନ୍ତି ସପତ ସିନ୍ଧୁ,
ଏ ଘୋର ସଙ୍କଟେ ଦେଖା ଦିଅ ଆସି
ହେ ମୋର ବିଶ୍ୱ ବନ୍ଧୁ । ୨୫ ।

● ● ●

## ମୋ ଭାଇ ପରାଣେ ଅଜି

ମୋ ଭାଇ ପରାଣେ ଆଜି
ନବ ଭାବେ ଉଠୁ ଜାଗି
ମିଳନର କୀର୍ତ୍ତି ଗାଜି
ଅପୂର୍ବ ସ୍ୱରେ,
ଆଶାର ବିପଞ୍ଚ ଧ୍ୱନି
ବ୍ୟାପୀ ଯାଉ ଏ ଅବନୀ
ମତାଇ ଭାଇ ସକଳେ
ନବ ମନ୍ତ୍ରରେ । ୦ ।

ଆମେ ପରା ବୀର କୁମର
ବଢ଼ ଦେଉଛ ଯେ ଆମ ଜାତିର ଘର । ୧ ।

ଆମ ଜାତିର ଧରମା
ଶିଶୁ ବିଚିତ୍ର କରମା
ଗଢ଼ି ଥିଲା କୋଣାରକେ
ସୂର୍ଯ୍ୟ ମନ୍ଦିର,
ବାରଣ ବଢ଼ାଇ ହିତେ
କପଟ ନରଘି ଚିତେ
ଝାସ ଦେଲା ଚନ୍ଦ୍ରଭଗା
ନୀରେ ଶରୀର ।
ଆମେ କିରେ ସେହି ଓଡ଼ିଆ
ବିଦେଶୀଙ୍କ ପାଖେ
ଥାଜି ଲୁଚି ମୂଳିଆ । ୨ ।

ଆମ ନଦୀ ମହାନଦୀ
ସାଗରତ ମହୋଦଧି
ବଢ଼ଦାଣ୍ଡ ଧୂଳି ଆମ
ଶିର ଭୂଷଣ,
ଆମରି ରକତେ ଗଢ଼ା
ହୋଇଅଛି ଦୁର୍ଗ ପରା
ବାରବାଟୀ ନାମେ ଖ୍ୟାତ
କେଡ଼େ ଶୋଭନ,
ଆମ ଚିଲିକା ସୁନ୍ଦରୀ
କେଉଁଭଳି କେତେ କବି
ଗଲେଣି ମରି । ୩ ।

ଆମରି ଜାତିର ନାମ
ଅଭିମନ୍ୟୁ, ବୀର ଭୀମ
ଦୀନକୃଷ୍ଣ, ବ୍ୟାସ ଆଦି
ଏହି ଧରାରେ,
ଭକ୍ତ କବି ଜୟଦେବ
ବିରଚିଲେ ମହାକାବ୍ୟ
ଜନ୍ମ ହୋଇଥିଲେ
ଆମ ଓଡ଼ିଆ ଘରେ ।
ଆମେ କିରେ ସେହି ଓଡ଼ିଆ
ବିଦେଶୀ ଶାସନ ପଦେ
ଘେଗୁଛୁ ଏହା । ୪ ।

ଧୋଇ ମନ୍ଥିଡ଼ି ପବନ
କରିଛି ତ ହୀନ ବଳ
ଶ୍ମଶାନ ହୋଇଛି
ଏହି ଓଡ଼ିଶା ମାଟି
ନାହାନ୍ତି ସେ, ଗୋପବନ୍ଧୁ
ଦରିଦ୍ର ଓଡ଼ିଆ ବନ୍ଧୁ
ଆଖି ପାଣି ଦେବ ଯାର
ହୃଦୟ ଫାଟି
ସତେକିରେ ଅମେ ଦୁର୍ବଳ
କାଳିଆ ସାଥିରେ ଥାଉ ଆମରି ବଳ । ୫ ।

● ● ●

## ଜାଗ ଜାଗ ବୀର ସନ୍ତାନ

ଜାଗ ଜାଗ ବୀର ସନ୍ତାନ
ସାଜ ସାଜ ହେ
ଉଠିରେ ମାତି ପକ୍ଷଣ ପାତି
ପାଇବ ଅପଣା ରାଜ ହେ । ୦ ।

ମାତାର ବନ୍ଧନ, କଷଣ ମୋଚନ
ସବୁରି ସନ୍ତାନ ଧର୍ମ
ବଛରି ଶାସନ ଲେପ ସାଧନ
ତୁମ୍ଭରି ପ୍ରଧାନ କର୍ମ । ୧ ।

ବନ୍ଧୁକ ଶବଦ, ସମ୍ପଦ ଜବତ,
ଦଣ୍ଡାଘାତ ଅବା କାର
ତୁଚ୍ଛ ସବୁ କରି, ଦୃଢ଼ ଭାବେ ଧରି
ଜାଗି ଉଠ ଦେଶ ସାର । ୨ ।

ପରୀକ୍ଷା ସମୟେ, ଦମ୍ଭ ହୃଦୟେ
କୁଲମ ଜାତନା ଦାଉ
ଦୃଢ଼ ସହ ଭଇ ପଛେ ନ ଅନାଇ
ଯାହା ଇଚ୍ଛା ତାହା ହେଉ । ୩ ।

ଅହିଂସା ଅସ୍ତ୍ରର ଶକତି ଅପାର
ସତେଜେ ସପ୍ରେମେ ଧର
ମହାତ୍ମାଙ୍କ ବାଣୀ କାୟମନେ ଶୁଣି
ନୈତିକ ସମର କର । ୪ ।

● ● ●

## ମାଆ ମୋତେ ଦେ ସଜାଇ

ମାଆ ମୋତେ ଦେ ସଜାଇ
ସେନାପତି ମୋତେ ସଙ୍କେତ ଦେଲେଣି
ଭେରୀ ବଜାଇ ।

( ୧ )

କାଲି ସୂର୍ଯ୍ୟ ଆସିଲେ ଉଇଁ
ତୋହ ପାଖେ ନଥିବି ମୁହିଁ
ଜହ ମୋର ଦେହକୁ ଛୁଇଁ
ଚିନ୍ତେ ମୋତେ ଭାବିବୁ ନାହିଁ
ମନକୁ ରଖିବୁ ତୋର ବୁଝାଇ ।

( ୨ )

ପାଦଧୂଳି ପାଣିରେ ଗୋଳି
ଦେ ମୋର ମଥାରେ ବୋଳି
ଦେଖିବାକୁ ବଇରି ଗୁଳି
ଖଣ୍ଡିପଡ଼ୁ ତଳେ ଝାଉଁଳି
ଫେରେ ମୁଁ ପତାକା ତୋର ଉଡ଼ାଇ ।

( ୩ )

ରକତେ ମୋ ଲାଗିଛି ନିଶା
ପିତା ଭଗେ ଖିରି ଅରିସା
ଭାଙ୍ଗି ମୁଁ ବଇରି ଆଶା
ଉଡ଼ାଇବି ତାହାର ହଂସା
ଉଦ୍‌ବି ମୁକର ଛାତି ପଚାଇ ।

( ୪ )

ଭଇ ଭଇ କହି ସେ ନିତି
ଦେଖାଇଲା ବାହାର ପ୍ରୀତି
ଲେଉଟାଇଲା ତୋର ସମ୍ପତ୍ତି
ଯୁଦ୍ଧଛଡ଼ା ନାହିଁତ ଗତି
ପଛରୁ ଛୁରୀ ସେ ଦେଲା ଲଗାଇ ।

( ୫ )

ବେଳେ ତୋର ଲଗାଇ ଫାଶି
ସ୍ୱହେଁ ତୋତେ କରିବ ଦାସୀ
କୋଟି କୋଟି ମୂଲିଆ ଚାଷୀ
ଆମେ ସବୁ ହେବୁ ଭିକ୍ଷାସୀ
ଦୁଆରେ ତାହାର ହାତ ପତାଇ ।

● ● ●

## ଭମ ଶ୍ରୀଚରଣେ

ଆଜି ଦେଶ ଲାଗି ତମ ଶ୍ରୀଚରଣେ ଅମର ଏଟିକି ଭିକ୍ଷା
ଜାଳେ ହିମାଳୟ ଡେଇଁ ସବୁ ଭୟ ଭର ସୀମାଭକୁ ରକ୍ଷା ।
ବଇରୀ ଆସିଲା ମାଡ଼ି
ସେ ତ ସହଜେ ନ ଯିବ ଛାଡ଼ି

ତାଙ୍କୁ ପେଟ ଜ୍ୱାଳା କରିଛି ପାଗଳା ଦେଶରେ ନ ମିଳେ ଭୋଜ
ଖାଣ୍ଟି ପଡ଼ିଶାଙ୍କ ଲହୁ ଲାଗି ବାଇ ଷାଠିଏ କୋରଡ଼ ଲୋକ
ଅଫିମ ନିଶାକୁ ଛାଡ଼ି
ଯୁଦ୍ଧ ନିଶାରେ ଗଲେଣି ପଡ଼ି ।

ଚପି ଆସିଲେଣି ଗୁହୁଁ ଗୁହୁଁ ଦେଖ ଆମ ଭାରତର ସୀମା
କେଶରୀ ହାତରୁ ଦେଶ ମୁକୁତାଇ ଦେବା କି ଶୃଗାଳ କିମା
ଛବିଶ ବରଷ ଲଢ଼ି
ହାତୁ ଭାଙ୍ଗି ଥିଲେ ହାତ କଡ଼ି ।

କେତେ ଲାଠି ମାଡ଼ ଭାଙ୍ଗି ଛାତି ହାଡ଼ ଅଙ୍ଗେ ଲିଭାଇଲେ ଗୁଳି
ଲହୁ ଲୁହ ସୁଅ ଛୁଟିଲା ସବୁଠି ଖେଳିଲା ବନ୍ଧୁକ ଗୁଳି
ମୁକତି ପାଇଲା ଦେଶ
ଆଜି ବସିଛି ହେବ କୁ ଶେଷ ।

ସ୍ୱାଧୀନତା ଦୀପ ନିମିଷେ ଲିଭିବ ଆସୁଛି ଯେ ଘୋର ଝଡ଼
ଲଢ଼ି ନ ପାରିଲେ ବ୍ରିଟିଶ କବଳେ ପୁଣି ଯିବା ନିଶ୍ଚେ ପଡ଼ି
(ଆମ) ସ୍ୱାଧୀନ ଭାରତ ସୈନ୍ୟ
ତାଙ୍କୁ କହିବାକୁ ହେବ ଧନ୍ୟ ।

ହାଡ଼ ଭଙ୍ଗା ଜାଡ଼ ବରଫର ଚୋଡ଼ ଗୁଳି ଗୋଳା ଚୋଟ ସହି
ପ୍ରାଣ ମୂର୍ଚ୍ଛା ହୋଇ କରନ୍ତି ଲଢ଼ାଇ ପହଁରି ରକତ ନଈ
ନୋହିଲେ ତାହାଙ୍କୁ ସାହା
ନିଶ୍ଚେ ବୁଡ଼ି ଯିବ ଆମ ନାହା ।

ଶୟନେ ସପନେ କିବା ଜାଗରଣେ ଭାବ ଆଜି ତାଙ୍କ କଥା
ଜୀବନକୁ ସିଏ ବଳି ଦେଇଛନ୍ତି ରଖିବାକୁ ଆମ ମଥା
ତାଙ୍କ ହାତ କର ଟାଣ
ରଖ ଚାଳିଶ କୋଟିଙ୍କ ପ୍ରାଣ ।

● ● ●

## ସର୍ବସ୍ୱ ଦାନ

ହିମାଳୟ ଗିରି କହେ ପୁକାରି
ଡର ନାହିଁ ଟିକେ ନ କର ଡେରି
ବଡ଼ ଅବିଶ୍ୱାସୀ ତମ ଭଉଣୀ
ଭାଙ୍ଗି ସବୁ ଦଳ ହୁଅ ଏକ ମେଳ
ରହିବ ଏ ପୃଥ୍ୱୀ ଭାବ କିପରି ? ପଦ ।

ଚଉଦିଗେ ମେଘ ରହିଅଛି ଘୋଟି
ଦାନବ ହାତରେ ମାନବର ଚୋଟି
ଝଡ଼ି ପୋକ ପରି ମାଡ଼ି ଆସିଲେ ସେ
ତଡ଼ିବାକୁ ହେବ ସାହସ ଧରି । ୧ ।

ସବୁ ଶକ୍ତି ଭରା ଅଛି ତମ ପାଖେ
ଜାଗିଥିଲା ଦେଶ ଦିନେ ତମ ଡାକେ
ଦେଖି ମନ ବଳ ଛାଡ଼ି ଦେଇ ଛଳ
ବିଦେଶୀ ଶାସକ ଗଲେତ ଫେରି । ୨ ।

ଜଗତ ଜନତା ନ ଚାହାଁନ୍ତି ହତ୍ୟା
ଯୁଦ୍ଧରେ ଆମକୁ ଲଗାଇ ଅଯଥା
ପଞ୍ଚଶିଳା ଦେଶେ ରକ୍ତ ଝର ନଦୀ
ବୁହାଇବା ଲାଗି ବସିଛି ଅରି । ୩ ।

ନ ଛାଡ଼ିବା ଯାଏଁ ଆମ ଦେଶ ସୀମା
ଯଦି ମଥା ଆମେ ଦେଇ ମୃତ୍ୟୁ ଜିମା
ଲଢ଼ୁଛୁ ଲଢ଼ିବୁ କେବେ ନ ଛାଡ଼ିବୁ
ଯାଉପଛେ ଆମେ ଧରାରୁ ସରି । ୪ ।

● ● ●

## ଗାଇ ଗାଇ ଚାଲ ଜାତୀୟ ଗୀତ

ପାହିଲା ରାତି ହେଲା ପାହାନ୍ତି
ଚାଲ ଗୋ ଭଉଣୀ ଚାଲ ମୋ ଭାଇ
ଗାଇ ଗାଇ ଚାଲ ଜାତୀୟ ଗୀତି । ପଦ ।

ଦେଖ ଚଉଦିଗେ ଖେଳେ ଚହଳ
ଲହରୀ ପରାଏ ଲୋକ ଗହଳ
ଲକ୍ଷ ଲକ୍ଷ ପ୍ରାଣେ ଫୁଟି ଉଠେ ଆଜି ଜାତୀୟ ପ୍ରୀତି । ୧ ।

ସ୍ୱାଧୀନତା ଲଭି କରି ସମର
ପ୍ରାଣ ହାରିଥିଲେ ଯେତେ ଅମର
ବରଷ ଉତ୍ସବ ଉଲ୍ଲାସ ପରଶେ ଆଜି ଜାଗୁଛନ୍ତି । ୨ ।
ସଜପୁଷ୍ପ ବାସ ଛୁଟେ ଜୀବନେ
ଜାତୀୟ ପତାକା ଉଡ଼େ ଗଗନେ
ଗୋଟିଗୋଟି ହୋଇ ତା ମନେ ପଡ଼ଇ ଅତୀତ ସ୍ମୃତି । ୩ ।
ଜଗତ ମଙ୍ଗଳ ଆମର ଲକ୍ଷ୍ୟ
ଆମେ ଜଗତର ଜନ ସେବକ
ପ୍ରତି ରକ୍ତବିନ୍ଦୁ ଯେବଇ ଆମର ଜଗତ ଶାନ୍ତି । ୪ ।

● ● ●

## ସ୍ୱାଧୀନତାର ଦଶବର୍ଷ ପରେ

ଭବ ଭୁମ ଲଭ ଭାରତବାସୀ
ସ୍ୱଚ୍ଛ କାରିଗର ମୂଲିଆ ଚାଷୀ
ଆମେ କାହିଁ ଥିଲେ କାହିଁ ହେଲେଣି ଆସି ।
ସବୁ ଗଗନରେ ଆମରି ପତାକା
ଉଡ଼େ ପୃଥିବୀର ହୋଇ ପ୍ରିୟ ସଖା
ସବୁ ଦେଶ ନିଧି ଆସି ଆମ ଘରେ
ଶଙ୍ଖୁଳି ଆମକୁ ଛୁଅନ୍ତି ଖୁସି । ୧ ।
ପ୍ରତି ଦରବାରେ ଆମ ଦୂତ ଯାଇ
ଆମ ମନ କଥା କହନ୍ତି ବୁଝାଇ
କରନ୍ତି ବିଚାର ଆମ ପ୍ରତିନିଧି
ବିଶ୍ୱ ପଞ୍ଚାୟତ ସଭାରେ ବସି । ୨ ।
ଖଣିଜ ବଣିଜ ଉନ୍ନତି ପାଇଁ କି
ସବୁ ଜାତି ଲୋକେ ଆସନ୍ତି ଏଠିକି
ଦେଶର ଖବର କରଇ ପ୍ରଚାର
ବେତାର ବାରତ ଦିବସ ନିଶି । ୩ ।
ଆମ ନୀତି ଯେବେ ଆମେ ଯିବା ଭୁଲି
ଅଳସ ବିଳାସ ପଙ୍କେ ଯାଉ ବୁଡ଼ି
ଆମ ସ୍ୱାଧୀନତା ନିଶ୍ଚେ ହେବ ବୃଥା
ମାଟିତଳେ ଯିବା ସଭିଏଁ ମିଶି । ୪ ।
ଆମ ହାତେ ଆଜି ଆମ ଘର ଚାବି
ଯେ ବଳେ ହାସଲ କଲେ ଆମ ଦାବି
ସେ ବଳେ ପୃଥ୍ୱୀକି ବଞ୍ଚାଇବା ଆମେ
ସ୍ୱଚ୍ଛ କାରିଗର ମୂଲିଆ ଚାଷୀ । ୫ ।

● ● ●

## ମାଗୁଣି ମୋହର ଏତିକ

ମାଗୁଣି ମୋହର ଏତିକି
ବଞ୍ଚାଇ ରଖିବା ନୀତିକି । ପଦ ।
ମରି ନାହିଁ ସେ ତ ଗୁଳିରେ
ବଞ୍ଚେ କି ପବନ ଶୂଳିରେ
ଦୋଳେ ତୁମ୍ଭ ହୃଦ ଦୋଳିରେ
ବିଜୁଳି ପରଏ ଖେଳିଲେ
ନ ଭୁଲ ତାହାର ପ୍ରୀତିକି । ୧ ।
ଗଗନେ ପବନେ ଭାସଇ
ଦେଖିଲେ ନୟନ ଦିଶଇ
ସବୁରି ସାଥିରେ ମିଶଇ
ଲୁହ ଲହୁ ଦେଖି ହସଇ
ମୁହଁକୁ ତୁମ୍ଭର ଚାହିଁକି । ୨ ।
ବାରେ ବାରେ ପରା କହିଲେ
ଲେଖି ଦେଇ ସଫା କହିରେ
ନମରେ ମନୁଷ୍ୟ ମହୀରେ
ପୁରୁଣା ପୋଷାକ ଭଳିରେ
ନୂଆକୁ ପିନ୍ଧିବା ପାଇଁକି । ୩ ।
ଖଟାଇଲ ନିଜ ଗତର
ସମଜି ତା ମୂଳ ମତର

ଚରଚି ପଡ଼ିବ ପଥର
ମଉଳିବ ବିଷ ଯନ୍ତର
ଉଧାରିବା ଆମ ମହୀକି ।୪।

● ● ●

## ଆଉ ତାଙ୍କ ସାଥେ କାରବାର ?

ଆଉ ତାଙ୍କ ସାଥେ କାରବାର ?
ଦଗା ଦେଲେ ସେତ ଦଗାଦାର
ଆମ ନୀତିକି କଲେ ସେ ଛାରଖାର
ଆମ ପ୍ରୀତିକି କଲେ ସେ ନାରଖାର ।ପଦ।
ବାରଦ୍ୱାର ଶୁଣ୍ଡି- ପିଣ୍ଡା ବୁଲାଇଲ
ଆମ ବେକରୁ ଟାଣିଲେ ଫୁଲହାର ।୧।
ବନ୍ଧୁ ବନ୍ଧୁ କହି କାନ୍ଧରେ ହାତ
ପକାଇ ମାରିଲେ ପଛରୁ ନାତ
କେବେ ହେଲେ ତାଙ୍କ କଥା ନ ଭୁଲିବୁ
ଛାତିରେ ହୋଇଛି ତିନିଗାର ।୨।
ସପନରେ କେବେ ନଥିଲା ଭାବ
ଛଡ଼ାଇବେ ବୋଲି ଆମର ସ୍ୱତ୍ୱ
ସରଳ ବିଶ୍ୱାସେ ଗରଳ ପିଇଲୁ
ମରିବାକୁ ଆଉ ନାହିଁ ଡର ।୩।
ଖଣିଜ ଦରବ ସବୁଜ କ୍ଷେତ
ଆଉ ବିଲବାରି ସବୁଜ ଗଛ
ଅପାର ଖଣିଜ ବଣିଜ ଚିଜ ।୪।

● ● ●

## ଭାରତବାସୀ ଶ୍ରମିକ କୃଷୀ

ଭାରତବାସୀ ଆମେ ଶ୍ରମିକ କୃଷୀ
ଆଉ ନ ପାରିବା ନିମିଷେ ବସି
ପ୍ରତି ରକ୍ତବିନ୍ଦୁ ମାଟିରେ ଢାଳିବା,
ବଇରି ବସିଛି ଦୁଆରେ ଆସି । (ପଦ)

ଆମ ଜମିବାଡ଼ି କରି ଦଖଲ
ବାନ୍ଧିବେ ଏଠି ସେ ହଳ ଲଙ୍ଗଳ
ଲକ୍ଷ ଲକ୍ଷ ଲୋକ ଅଛନ୍ତି ବେକାର
ପଙ୍ଗପାଳ ପରି ଆସିବେ ପଶି ।୧।

ଆମ ସ୍ୱାଧୀନତା ହୋଇବ ନଷ୍ଟ
ଯୁଗ ଯୁଗ ଲାଗି ଭୋଗିବା କଷ୍ଟ
ଧରମ କରମ ସବୁ ଗଳିଯିବ
ଆମ ଦେଶେ ଆମେ ହେବା ବିଦେଶୀ ।୨।

ଇଂରେଜ ଶାସନୁ ଯିବ ଏ ବଳି
ଆମ ପତାକାକୁ ଦେବେ ତ ଦଳି
ମଣିଷ ପଣିଆ ସବୁ ସରିଯିବ
ପଶୁଙ୍କ ସଙ୍ଗରେ ରହିବା ମିଶି ।୩।

ରଖିବା ନାହିଁତ ଇଞ୍ଚେ ପଡ଼ିଆ
ଫସଲ କରିବା ଆମେ ବଢ଼ିଆ
ଆମ ଛାତି ହାଡ଼ ଗୁଣ୍ଡ କରି ଆମେ
ଖଟିବୁ ବିଲରେ କମର କଷି ।୪।

ଲଢ଼େଇ ପାଇଁକି ଯାହାକି ଲୋଡ଼ା
ଆମରି ହାତରେ ହୋଇବ ଗଢ଼ା
ମୁଣ୍ଡ ଝାଳ ଆମେ ତୁଣ୍ଡରେ ମାରିବୁ
ଦିନ ରାତି କାମ କରିବୁ ହସି ।୫।

(ଦ୍ର. ଦ୍ର.—ଭାରତ ଓ ଚୀନ ଯୁଦ୍ଧ ସମୟରେ କବିତାଟି ଲିଖିତ ।)

● ● ●

## ହୋଇଥାନ୍ତା ଯେବେ ଆଗ ଲଢ଼େଇ

ହୋଇଥାନ୍ତା ଯେବେ ଆଗ ଲଢ଼େଇ
ବାଳ ବୃଦ୍ଧା ଯୁବା ହେଉଥାନ୍ତେ ଭାଇ
ବନ୍ଧୁକ ମୁନକୁ ଛାତି ବଢ଼ାଇ (ପଦ)

ଗାଡ଼ୀ ଯାଉଥିଲେ ଦରିଆ କୂଳକୁ
ଆମେ ଯାଉଥାଉ ପାହାଡ଼ ତଳକୁ
ନିରୀହ ଉପରେ ରିହ ଅତ୍ୟାଚର
ଦେଖନ୍ତା ଦୁନିଆ ଅଙ୍ଗେ ଲିଭାଇ । ୧ ।

ଏତେ ଲେଖାଲେଖି ଏତେ ଛକାଛକି
ହାତ ପତାପତି ଏତେ ଡକାଡ଼କି
ହେଉଚ ନଥାନ୍ତା ନରହନ୍ତା ଦଳେ
ଦିଅନ୍ତୁ ମୁକର ଏଠୁ ହଟାଇ । ୨ ।

ଯେତେ ଯେତେ ଟଳି ପଡୁଥାନ୍ତେ ତଳେ
ତାଙ୍କ ପଛେ ପଛେ ଆଉ ଦଳେ ଦଳେ
ଛିଡ଼ା ହେଉଥାନ୍ତେ କେବେ ନ ଡରନ୍ତେ
ଥକିଯାନ୍ତା ଅରି ଗୁଳି ଫୁଟାଇ । ୩ ।

ଜାତିସଂଘ ଛାତି ଉଠୁଥାନ୍ତା ଥରି
ତହଳ ପଡ଼ନ୍ତା ଏହି ପୃଥ୍ୱୀ ଭରି
ପଚି ମହାଦେଶୁ ଶାନ୍ତି ସେନାଦଳ
ଆସନ୍ତେ ପତାକା ନଭେ ଉଡ଼ାଇ । ୪ ।

ଆମ ଏ ଦେଶକୁ ଆସିଲେ ସେ ମାଡ଼ି
ନେଇ ନ ପାରନ୍ତେ ମାଟିକି ତ ତାଡ଼ି
ବିନା ସହଯୋଗେ ବଞ୍ଚି ନ ପାରନ୍ତେ
ଆପେ ଆପେ ଯାନ୍ତେ ଏଠୁ ପଳାଇ । ୫ ।

● ● ●

## ଆମର ତ ସେହି ଗୋଟିଏ କଥା ·

ଆମର ତ ସେହି ଗୋଟିଏ କଥା
କଟିଯାଉ ପଛେ କୋଟିଏ ମଥା
ହାତେ ହେଲେ ଭୂଇଁ ନ ଛାଡ଼ିବୁ କାହିଁ
ଯୁଦ୍ଧକୁ ପଛକେ ଆସି ଦେବତା । ପଦ ।

ଆମ ସୀମାରେଖା ନ ଭୁଲିବୁ ଆମେ
ଲିଭାଇ ନ ଦେବୁ ନିଜର ସତା । ୧ ।

କେଶରୀ ଶାସନ ଶେଷ କଲୁ ଆମେ
ଜନ୍ତୁକୁ ପାଖେକି ନ ଲିବୁ ମଥା ? । ୨ ।
ଜାତିସଂଘ ସାଥି କରିବା ପାଇଁକି
ଲଢ଼ିବାର ଫଳ ହେଲା ଏଇତ । ୩ ।

ଚିହ୍ନତ ତାଙ୍କର କଲୁ ସିଉକାର
ଭୁଲିଗଲୁ ସେତ ସବୁ ବନ୍ଧୁତା । ୪ ।
ସାକ୍ଷୀ ଇତିହାସ ଯାଇଁ କେଉଁ ଦେଶ
ଦୀକ୍ଷା ଦେଲା କେଉଁ ଧରମ କଥା । ୫ ।

ଯୁଗ ଯୁଗ ଧରି ମାନି ଆସୁଥିଲେ
ଗୁରୁ ଘର ବୋଲି ତାଙ୍କ ଜନତା । ୬ ।
ବିଶ୍ୱାସ ଭିତରେ ବିଷ ମିଶାଇଲେ
ଫଦାକୁ ଦେଖାଇ ବନ୍ଧୁ ମମତା । ୭ ।

ଦେଖି ଏ ଦୁନିଆ ଜାଚିଲା କେ ନିଆଁ
ପଞ୍ଚଶୀଳ ନୀତି କଲେକେ ହତ୍ୟା । ୮ ।

(ବି. ଦ୍ର.—ଭାରତ ଓ ଚୀନ ଯୁଦ୍ଧ ସମୟରେ ରଚିତ ।)

● ● ●

## ପଥଯାତ୍ରୀ

ଆମେ ସେ ଦେବତା ପଥଯାତ୍ରୀ
ହିମାଚଳ ଶିଖୁ ସୀମାଚଳ ବ୍ୟାପୀ
ଶୁଭେ ଯାର ଜୟ ଗୀତି । ପଦ ।

ଗୀତାର ଧରମ ଅହିଂସାର ମର୍ମ
ଭେଦେ ଯାର ଛୁଦତନ୍ତ୍ରୀ
ଅରଟ ଚକ୍ରର କଟ୍ କଟ୍ ହୁଂକାର
ଗଗନେ ଯାଏ ପ୍ରକଟି । ୧ ।

ସେ ଦେବତା ସାଙ୍ଗେ ତୋଳିବୁ ନିଶାଣ
ବୀର ମଦେ ଆମେ ମାତି
ଜଗତେ ଥୋଇବୁ ନବୀନ ଆଦର୍ଶ
ଶତ୍ରୁ ଦେବ ମଥା ପୋତି । ୨ ।

ସୂତା ଖିଅକରେ ଫେରଇ ଆଣିବୁ
ଜନମ ଭୂମି ମୁକତି
ଦେଇ ପ୍ରାଣବଳି ଦେଖାଇବୁ ଆମେ
ଜଗତେ ନୈତିକ ଶକ୍ତି । ୩ ।

● ● ●

## ନାହାନ୍ତି କେହି ନାଉରୀ

ନଈ ବଢ଼ି ଆସେ ମାଡ଼ି ନଗ୍ରଇ କାଳ ଭଉଁରୀ
ନ ଦିଶଇ ଥଳକୂଳ ନାହାଁନ୍ତି କେହି ନାଉରୀ
ନାହିଁ ଖର ନାହିଁ ଜହ୍ନ
କଳଜ କାଳିଆ ଘନ
କମ୍ପେ ଝଞ୍ଜା ପବନ
ଥରି ଉଠେ ବିଲ ବନ
ଚଉଦିଗ ଅନ୍ଧକାର ମନରେ ଶଙ୍କା ସବୁରି । ୧ ।
ଅନ୍ତର ଘଡ଼ିକି ଘଡ଼ି
ଠାବେ ଠାବେ ବଜ୍ର ପଡ଼ି
ଘର ଦ୍ୱାର ଯାଏ ପୋଡ଼ି
ଖସଇ ନଈ ଅତଡ଼ି
ଭବିଷ୍ୟତ ଭାବି ଭାବି ଉଠଇ ଦେହ ଶିହରି । ୨ ।
ରୋଧିବ କେ ଗତି ତାର
ବନ୍ଧବାଡ଼ ଛାର ଖାର
ପରବତ ପାରବାର
କରି ସବୁ ଏକାକାର
ଅଘଟନ ଘଟାଇବ ବୁଲଇ ହାତ କାଉଁରୀ । ୩ ।
କେବଳ ଯମୁନା ପାଠେ
ସୁନୀଳ ଗଗନ ପଟେ
ଡାକ ଶୁଭେ ଗଳ ଘାଟେ
ଚାଲି ଆସ ଏହି ବାଟେ
ସାରଡ଼ି ରଖିଛି ତରୀ ବସିଲେ ଯିବ ଉତୁରି । ୪ ।

● ● ●

## ଆସ ଉତ୍କଳୀୟ

ଆସ ଉତ୍କଳୀୟ ଶୁଣ ସର୍ବେ ମିଳି
ଏ ଦେଶ ଜାତିର ପୂରୁବ କଥା,
ସ୍ମରଣେ ଯାହାର ଗରବେ ତୋହର
ଆପେ ଆପେ ନଇଁ ପଡ଼ିବ ମଥା ।
ବକ୍‌ସି ଜଗବନ୍ଧୁ, ଚନ୍ଦନ ହଜୁରୀ
ଗଲେଣି ଭରେଇ ଆମର ପଥେ,
ଯଶ କି ତାଙ୍କର ହେବକି ମଳିନ
ଅମଳିନ ପଗ ତାହା ଜଗତେ ।
ପାଇକ ପୁଅର ଗାରିମା ଯା' ଥିଲା
ସ୍ୱାଧୀନତା ଯାଗେ ଦେଲା ଆହୁତି
ସେ ଜାତି ଦାୟାଦ ଆମେତ ସରବେ
ବୋଲି ହେବା ଅଙ୍ଗେ ସେହି ବିଭୂତି ।
ତୋଷାଳି ପ୍ରାନ୍ତରେ ଦିନେ ବହିଥିଲା
ସମରେ ବୀରର ରକତ ନଈ
ସ୍ୱାଧୀନତା ପାଇଁ ପ୍ରାଣ ଦେଲେ ଯେତେ
ପସୁରିଲେ ମାଟି ଯିବ ତ କହି ।
ଶାନ୍ତି, ମୈତ୍ରୀ, ପ୍ରୀତି ପୂତବାଣୀ ନାହିଁ
ସ୍ଫୁରୁଥିଲା ପ୍ରତି ଅନ୍ତର ଭରି,
ଅହିଂସା ମନ୍ତ୍ରରେ ଦେଲା ଯେଉଁ ଦୀକ୍ଷା
କାହିଁ କେଉଁ ଦେଶ ହେବ ତା' ସରି ?
ଜାତି ପାଇଁ ଦିନେ ବାଜୁତ ଧରମା
ଝାସିଥିଲା ପ୍ରାଣ ସାଗର ଜଳେ,
ଲିଭିବ କି ତାର ଅଲିଭ କାହାଣୀ
ଥିବା ଯାଏ ନର ଧରଣୀ ତଳେ ।
ତ୍ୟାଗ, ଆଦରଶ ଜାତିର ମହତ୍ତ୍ୱ
ଦେଶ ପାଇଁ ଦେଲା ନିଜକୁ ବଳି,
ଦରିଦ୍ର ଜନର ବନ୍ଧୁ ଗୋପବନ୍ଧୁ
ସେ ପୁଣ୍ୟ ମହିମା ହେବ କି ଜଳି ?

ବାଜି ଗଲଣ ନାମ୍ଁ ଲୁଟି ନାହିଁ
ମୁକତ ପଥର ସୈନିକ ସେହି,
ତରପଣ କର ସେ ନାମ ଉଚ୍ଚାରି
ସ୍ୱାଧୀନ ସଂଗ୍ରାମ ପୂରଣ ପେଇ ।

● ● ●

## ଭାବୁନା ତାହାକୁ ପର ବୋଲି

ଭାବୁନା ତାହାକୁ ପର ବୋଲି
ଦେଖୁଣି ଦେବ ସେ ଆଖି ଖୋଲି
ଦେଖିବ ଦୁନିଆ ଜଳୁଛି ଯେ ନିଆଁ
ଶୀତଳ ହୋଇବ ପାଣି ଭଳି । ପଦ ।

ପାଇଛି ସେ ଆଜ୍ଞା କରିଛି ପ୍ରତିଜ୍ଞା
ନ କରିବ କେବେ କାହାକୁ ଅବଜ୍ଞା
ମହାତ୍ମାର ଧ୍ୟାନ ମହାତ୍ମା ବଚନ
ଅକ୍ଷରେ ଅକ୍ଷରେ କରିବ ପାଳନ
ହିମାଳୟ ପଛେ ଯାଉ ଟଳି । ୧ ।

ହଜିନେବ ଦୁଃଖ ବରିନେବ ସୁଖ
ଗୁରିଆଡ଼େ ଦେଖ ପଡ଼ିଲାଣି ଡାକ
ଯୋଡ଼ି ବଳଦର ଛବିଟି ତମର
ମନରୁ ତାହାକୁ କେବେ ନ ପାଶୋର,
ହିମାଳୟ ପଛେ ପଡ଼ୁ ଟଳି । ୨ ।

ଭାଙ୍ଗିଯିବ ଦଳ ବଦଳିବ କଳ
ସାରା ପୃଥ୍ୱୀ ଆଜି ହୁଏ ଟଳମଳ
ଆସିଲାଣି ସତ୍ୟ ହସିବ ଏ ମର୍ତ୍ତ୍ୟ
ଅନୀତି-ଅନ୍ୟାୟ ଯୁଗ ବଦଳିବ
ଆଉ ନ ରହିବ ଯିବ କଳି । ୩ ।

ନୁହଁନ୍ତି କେ ପର ସମସ୍ତେ ନିଜର
ସାରା ଭାରତକୁ ଭାବେ ନିଜ ଘର
ସରଗ ପୁରରୁ ଡାକନ୍ତି ଦେବତା
ଜୀବନକୁ ଆଜି ଦିଅ ଡାଳି ।

● ● ●

## ବ୍ରହ୍ମଗ୍ଚାରୀ

ମୁଁ ଜନମିଛି ସିନା ଦେହ ଧରି
ଅନ୍ଧାରେ ଥିଲି ମୁଁ ଅନ୍ଧପରି
ଫିଟିଅଛି ଆଖି ଶିଖି ନାହିଁ ଦେଖି
ହାତଥାଇ ହାତେ ପାରି ନାହିଁ ଲେଖି ।

ଥାଇ ମୋ'ର କାନ ନ ବୁଝେ ମୋ' ମନ
ପାରି ନାହିଁ ଭଲ ମନ୍ଦ ବାରି,
ମାନିବି ଆଦେଶ ବଦଳାଇ ବେଶ
ଗଢ଼ିବି ନିଜକୁ ନୂଆ କରି ।

ପାଇବି ମୁଁ ଶିକ୍ଷା ନେନିବି ମୁଁ ଦୀକ୍ଷା
ଗୁରୁ ହିଁ କରିବେ ମୋତେ ଏକା ରକ୍ଷା,
ଗୁରୁ ମୋର ମାତା ଗୁରୁ ମୋର ପିତା
ଚଳାଇବେ ବାଟ ହାତ ଧରି ।

ନଈପରି ଯିବି ସିନ୍ଧୁ କୂଳେ ବହି
ସାଧିବି ମୁଁ କର୍ମ ଦଶ ଘାଟେ ରହି,
ଦଶ ଦିଗ ପାଳ ଦେବେ ଶୁଭାଶୀଷ
ସବୁ ଦୁଃଖ-ସୁଖ ନେବି ବରି ।

ରବି ଶଶୀ ପରି ଜୀବ ସେବା କରି
ପବନ ପରି ମୁଁ ସଭିଙ୍କୁ ଆଦରି
ନିଆଁ ପରି ମୁହିଁ ତେଜ ଦେଖାଇବି
ବାହାରିବି ହୋଇ ବ୍ରହ୍ମଚାରୀ ।

କଉପିନି ସାଥେ କଟିରେ ମେଖଳା
କାମ କାମନାର ବେକରେ ଅର୍ଗଳା
ହାତେ ମୋର ଦଣ୍ଡ ଦେଖୁ ଏ ବ୍ରହ୍ମାଣ୍ଡ
ରୋଗ ଶୋକ ଯିବ ଅପସରି ।

ଭୀଷ୍ମ ପରି ଚିର କରିବି ସଂଯତ
ଡରିଯିବେ ଦେଖି ମୋତେ ଯମଦୂତ,
ଦେବ, ଋଷି, ପିତୃ ଋଣ ଶୁଝିବାକୁ
କାନ୍ଧେ ଉପବୀତ ତିନି ସରି ।

ଶୁଷ୍କ ଗୃହ କୋଳୁ ହୋଇ ମୁଁ ବାହାର
ପଢ଼ିବି ମୋର ନୂତନ ସଂସାର,
ନିଜ ନାମ ମୁହିଁ ସାର୍ଥକ କରିବି
ଭବ ସାଗରରୁ ହେବି ପାରି ।

● ● ●

## ମନରୁ ଆନ୍ଧାର ଯାଇ ନାହିଁ ତ

ସାଥି ହେ....

ସବୁ ଅତୀତ
ମନରୁ ଆନ୍ଧାର ଯାଇ ନାହିଁ ତ
ଭାବିଲା ବେଳକୁ ଭାଳସଇ ବୁକୁ
ଲାଗେ ସବୁ କଥା କାଲିପରି ତ । ପଦ ।

ଆସି ଖେଳିଗଲା ମଳୟ ପବନ
ଲିମ୍ବ କାଠ ଆମେ ହୋଇଲୁ ଚନ୍ଦନ
ତୁଟିଲା ବନ୍ଧନ ଫିଟିଲା ନୟନ
ଆଗେଇ ଚାଲିଛି ଆମ ବୋଇତ । ୧ ।

କାହିଁ ଥିଲେ ଆସି ହେଲେଣି ତ କାହିଁ
ଜଗତ ଆମକୁ ରହିଅଛି ଚାହିଁ
ଆମ ଘର ଚାବି ଆମ ହାତେ ଆଜି
ନଖୋଲିଲେ ତାଲା ଥିବ ପଡ଼ି ତ । ୨ ।

ଆମ ଦେଶ କେବେ ନୁହଁଇ ଗରିବ
ଭାବିଲେ ଗରିବ ସବୁ ତ ସରିବ
ଦେହଠାରୁ ବଡ଼ ନାହିଁ କିଛି ଧନ
ଦେହ ଗଲେ ଯିବ ସବୁ ସରି ତ । ୩ ।

କହେ ମହୋଦଧି କହେ ମହାନଦୀ
ସୁଖ ଶାନ୍ତି ଯେବେ ଖୋଜି ନିରବଧି
ଶ୍ରମ ଜଳବାହା ହେବ ତୁମ ସାହା
ଚିହ୍ନିବେ ତୁମକୁ ସାରା ଜଗତ ।

● ● ●

## ବିଶ୍ୱର କରିବା ସଭିଏଁ ବସି

କି ଶୁଭ ଯେ ଘରେ ପାଇଛି ନିଶି
ଆମେ ସବୁ ଆଜି ଏକାଠି ମିଶି
ମନ କଥା ଆଉ ମନରେ ନରଖି
ବିଶ୍ୱର କରିବା ସଭିଏଁ ବସି । ପଦ ।

କେହି ନୋହୁଁ ବଡ଼ କେହି ନୋହୁଁ ସାନ
ତୁଳସୀ ପତର ସବୁ ତ ସମାନ
ଏ ଦେଶରେ ଆମ ସବୁର ଜନମ
ଏ ମାଟିରେ ସୁନା ଫଳାଏ ଚାଷୀ । ୧ ।

ନିଜ ମେରୁ ହାଡ଼ ନିତି ଚୂନା କରି
କରେ କାରିଗର ତବିଜ ତିଆରି
ତା' ଅଧା ମଜୁରୀ ନେଉଥିଲେ ମାରି
ମଝି ଲୋକ ଦଳେ ମଝିରେ ପଶି । ୨ ।

ନକରି କାହାକୁ ଖାତର ଅନ୍ତର
ଲୋକଙ୍କ ଅଭାବ ଦେଖୁ କରି ଦୂର
କଳା ବଜାରକୁ ସମୂଳେ ଧ୍ୱଂସିବା
ଆମ ଦାୟିତ୍ୱଟି ସବୁଠୁ ବେଶୀ । ୩ ।

ପେଟ କଷ୍ଟଠାରୁ ନାହିଁ ବଡ଼ କଷ୍ଟ
ଅଭାବେ ସ୍ୱଭାବ ହୁଏ ସିନା ନଷ୍ଟ
ପେଟ ପୁରା ଦେଇ ପିଠିକି ମାରିଲେ
ବୁଦ୍ଧି ବାଟ ଯାଏ ସହଜେ ଦିଶି । ୪ ।

● ● ●

## ଭାବି ଭାବି ଭାବନାରେ

ଭାବି ଭାବି ଭାବନାରେ ଯାଏ ମୁଁ ଭାସି
ମନର ଭାବନା ପ୍ରାଣର ବାସନା
ପାରେ ନାହିଁ କେବେ ସବୁ ପ୍ରକାଶି । ପଦ ।

ମାପକାଠି ତାର ନୁହେଁ ଫୁଲ ହାର
କର ତାଳି ନୁହେଁ ପ୍ରଶଂସା ପତର

କବି ପ୍ରତିଭାକୁ ସୁନା କଷଟିରେ
ପାରିବ କିଏ ସେ ପୃଥ୍ୱୀରେ କଷି ।୧।

କଳ୍ପନା ସୁନ୍ଦରୀ ସାଥିରେ ବିହରି
ଭ୍ୟାଲେଣ୍ଟିନା ଠାରୁ ବେଗ ଗତି ଭରି
କୋଟି ବ୍ରହ୍ମାଣ୍ଡ ସେ ବୁଲି ଆସି ପାରେ
ଟେବୁଲ ପାଖରେ ନିମିଷେ ବସି ।୨।

ରାଜନୀତି ହାତେ ନୁହେଁ ସେ କନ୍ଦୁକ
ହଟେ ନାହିଁ ଦେଖି ସମାଜ ବନ୍ଧୁକ
ସତ କହିବାକୁ ଡରେ ନାହିଁ କେବେ
ମତ ଲାଗି ପଛେ ପାଉ ସେ ଫାଶୀ ।୩।

ମାନବ ଜାତିକି ମାନବ ନୀତିକି
ଆଙ୍କେ ବଡ଼ କରି ମାନବ ପ୍ରୀତିକି
ଦାନବ ସାଥିରେ ତାଳ ପକାଏ ସେ
ବିଶ୍ୱ ଶାନ୍ତି କଥା ସଦା ମନାସି ।୪।

ପାହାଡ଼ାରୁ ତାକୁ ଉଠାଏ କୋଇଲି
(ତାକୁ) ହଳଦୀ ବସନ୍ତ କହେ ମନଖୋଲି
ଲେଟେ ଫୁଲ ବାସ ଦକ୍ଷିଣା ପବନ
(ତା) ଭଙ୍ଗା କୁଡ଼ିଆର ଦୁଆରେ ପଶି ।୫।

ତଳେ ମହାସିନ୍ଧୁ ତରଙ୍ଗ ଉଛାଳ
ଊର୍ଦ୍ଧ୍ୱେ କଳା ମେଘ ଗଳେ ବକମାଳ
ଦେଖି ଦୁନିଆକୁ ଭୁଲିଯାଏ ସେ ତ
ଭବ ଲହରୀରେ ଯାଆନ୍ତି ମିଶି ।୬।

ଚେତନ ସାଥିରେ ଯୁଝେ ଆଜି ଜଡ଼
ଅସି ଧାର ଠାରୁ ମସୀ ଧାର ବଡ଼
ପ୍ରମାଣ କରି ସେ ଦେଖାଇବ ଶେଷେ
ହସି ଉଠିବେ ତପନ ଶଶୀ ।୭।

• • •

## ପଲ୍ଲୀ କୁମାରୀ ପ୍ରତି

ଆରେ ପକ୍ଷୀ ଗାଆରେ ମୋ'ର ସେଇ ବସନ୍ତ ଗୀତ
ଫେରାଇ ଦେ' ମୋ' ପଦ୍ମବନ ଲେଉଟାଇ ନେ ଶୀତ
ପାଚିଲା ପତ୍ର ପଡ଼ୁରେ ଝରି
ଦୁଃଖ ଯେତେ ଯାଉ ମୋ' ସରି
ମଳୟ ସଙ୍ଗେ ମିଳାଇ ଦେ' ମୋ' ଫୁଲ ପଲ୍ଲବ ଚିର
ଆରେ ପକ୍ଷୀ ଗାଆରେ ମୋ'ର ସେଇ ବସନ୍ତ ଗୀତ ।୧।

ଗାଆରେ ପକ୍ଷୀ ଗାଆରେ ଧୀରେ ସେ ସଙ୍ଗୀତ ଭଣି
ସକଳ ବାଧାବିଘ୍ନ ମୋ'ର ଯାଉରେ ଦୂରେ ଖସି
କୁଞ୍ଜେ ଉଠି କେତେକୀ ମୋ'ର
ଶୁଣିବ ବୋଲି କଣ୍ଠ ତୋ'ର
ବିଶ୍ୱ ଦ୍ୱାରେ ବିଞ୍ଚେ ଆଜି ସଉରଭର ଭଣି
ଗାଆରେ ପକ୍ଷୀ ଗାଆରେ ଧୀରେ ସେ ସଙ୍ଗୀତ ଭଣି ।୨।

ଗାଆରେ ପକ୍ଷୀ ଗାଆରେ ମୋ'ର ଆମ୍ବବନେ ବସି
ମୁକୁଳ ମୋ'ର ଝରୁ ଆନନ୍ଦେ ପକାଇ ଚଣା କସି
ଆମ୍ବ ମୂଳେ ଥାଡ଼ ବଇଁଶୀ
ଗୋପାଳ ପୁଅ ବଜାଏ ବସି
ଗନ୍ଧାକୁଳ ହୃଦୟ ତା'ର ବନ୍ଦେ ତୋତେ ବସି
ଗାଆରେ ପକ୍ଷୀ ଗାଆରେ ମୋର ଆମ୍ବବନେ ବସି ।୩।

ଆରେ ପକ୍ଷୀ ଗାଆରେ ତୋ'ର ଦେଖିବା କେଡ଼େ ଛାତି
ତୋ' ଚୋଟା ବାଟେ ଆସଇ ମୋ'ର ଗୁହାଳୀ ଘର ସାଥି
କଣ୍ଠ ତା'ର କେଡ଼େ ମଧୁର
ଉଚ୍ଛୁଳି ପଡ଼େ ଗୁହାଳୀ ଘର
ତୁଚ୍ଛାଟାରେ ଦେଖାଉ ତାକୁ ଆପଣା ବଡ଼ ଖ୍ୟାତି
ଆରେ ପକ୍ଷୀ ଗାଆରେ ତୋ'ର ଦେଖିବା କେଡ଼େ ଛାତି ।୪।

ଗୁହରେ ବସି କାହିଁକି ଏତେ ଗାଉଛୁ ବଢ଼ି ବଢ଼ି
ତୋହରି ସ୍ୱରେ ହୃଦୟ ତା'ର ଯାଇଛି ଆଜି ଜଡ଼ି
ତା' ସାଥିରେ ଲଗିଲୁ ଆଗ
ପଛରେ ତା'କୁ ଦେଖାଉ ରାଗ
ଗାଳି ଦେବେଟି ମାଆ ତୋହର କଣ୍ଠ ଗଳେ ପଡ଼ି
ଗୁହରେ ରହି କାହିଁକି ଏତେ ଗାଉଛ ବଢ଼ି ବଢ଼ି ।୫।

ଗାଆରେ ପକ୍ଷୀ ଗାଆରେ ଧୀରେ ଗାଆ ତୁ ମନେ ମନେ
କୁମ୍ଭ ପାଖେ ପଲ୍ଲୀ କୁମାରୀ ଯାଉଛି ଆମ୍ରବନେ
ତୋହରି ଡାକେ ବାରକୁ ବାର
ଉଚ୍ଛୁଳି ପଡ଼େ କଳସୀ· ତାର
ପଲ୍ଲବରେ ପଶତ ତା'ର ଉଡ଼ଇ ସଂଗୋପନେ
ଗାଆରେ ପକ୍ଷୀ ଗାଆରେ ଧୀରେ ଗାଆ ତୁ ମନେ । ୬ ।

ଗାଆରେ ପକ୍ଷୀ କାହୁଁ ଆସି ସେ ଉଇଁଲ କୁଞ୍ଜବନେ
ବଉଦ ତଳେ ଥିଲ କି ଲୁଚି ନୀଳ ଆକାଶ କଣେ
ଗ୍ରହାଣୀ ତା'ର କେଡ଼େ ମଧୁର
ଚହଲି ଗଲା ହୃଦୟ ମୋ'ର
ଧୁହିଁ ରହିଲି ମୁହଁରେ ତା'କୁ ଗନ୍ଧ ଉଦିଆ ମନେ
ଗାଆରେ ପକ୍ଷୀ କାହୁଁ ଆସି ସେ ଉଇଁଲ କୁଞ୍ଜବନେ । ୭ ।

କହରେ ପକ୍ଷୀ କାହୁଁ ଆସି ସେ ଉଜାଡ଼ି ଦେଲ ବନ
ଛଡ଼ାଇ ଦେଲ ହୃଦୟ ମୋ'ର ହଜାଇ ଦେଲ ମନ
ଦେଖ ଲୋତକ ପଡ଼ଇ ଝରି
ନୟନ ହେଲ ତୋହରି ପରି
ଏବେ ଏ ରଙ୍ଗ ଜଲରେ ମୋତେ ତୋହରି କୁହୁ ସ୍ୱନ
କହରେ ପକ୍ଷୀ କାହୁଁ ଆସି ସେ ଉଜାଡ଼ି ଦେଲ ବନ । ୮ ।

● ● ●

## ଭାବିପାରେନା ମୁଁ ଆଗକୁ କିଛି

ପାହିନି ରଜନୀ ପ୍ରାତଃ ହୋଇଅଛି ଅନ୍ଧାର
ମୋ' ଜୀବନେ ଆସିଗଲା କଷାଘାତ ସବାର ।୧।

ଆମ ନିଶି ଯାଇ ନାହିଁ. ଧରଣୀରୁ ଉଭର
ରହିଥିଲି ମୁହିଁ କ୍ଳାନ୍ତ ଶାନ୍ତ ଶେଯରେ ଶୋଇ ।୨।

ସନ୍ଧ୍ୟା ଶୋଭା ଗଗନରେ ନାହିଁ ହେଲେ ଉକୁଟି
ବିଜନତା ଭଙ୍ଗି ଗୁରୁଦେବ ପ୍ରବେଶିଲେଟି ।୩।

ଦେଖିଲେ ଗୁରୁଦେବଙ୍କ ଦେବ ତାକୁ ଅଛନ୍ତି
ପଦ୍ମନାଭ ଶୋଇ ଅଛନ୍ତି ତଳେ ଶୁଣୁ ନାହାଁନ୍ତି ।୪।

ଗୁରୁଦେବ ଦେବ ଡାକୁଥିଲେ ଏହାକି ସତ
ତାହା ଏକା ଜାଣନ୍ତି ସେ ଦେବ ଜଗନ୍ନାଥ ।୫।

ପଚାରିଲେ ଗୁରୁଦେବ କିହୋ ତୁମ୍ଭେ ଶୋଇଛ
ବାପା ମୋର ଡାକୁଛନ୍ତି ତିଳେ ନ ଶୁଣୁଛ ।୬।

ମୁଁ କହିଲି ଗୁରୁଦେବ ଜାଗିଥିଲି ଏ ଯାଏଁ
ଏଇକ୍ଷଣି ଶୋଇଗଲି ମୁଣ୍ଡ ମୋ ବଥାଏ ।୭।

ଏ କଥା ଗୁରୁଦେବଙ୍କୁ ଖୋଲି କହିଥାନ୍ତି
କିନ୍ତୁ ନ କହିଲି ବୋଲି ରୁଷ୍ଟ ହୋଇଲେ ଅଣ ତି ।୮।

ଗୁରୁଦେବ କହନ୍ତି ଯେ ତୁମ୍ଭେ ଅଟ ବଡ଼ ଠକ
ସବୁ କାର୍ଯ୍ୟେ ଠକୁଅଛ ମନେ ନାହିଁ କୋଉ ଦକ ।୯।

ଆଜିଠାରୁ ତୋତେ ବହୁ ଦଣ୍ଡରେ ଦଣ୍ଡିତ
କରିବାକୁ ଅନୁମତି ଦେଲି ମୁଁ ସତତ ।୧୦।

ଅଫିସ୍‌ର କାର୍ଯ୍ୟ ଆଉ ମୋ ବାପାଙ୍କ କାର୍ଯ୍ୟ
ଅବହେଳେ କରିବୁ ତୁ ହୋଇଲ ଏ ଧାର୍ଯ୍ୟ ।୧୧।

ଆଜ କାନ ମୋଡ଼ିକରି ଏହି କର୍ମୀଙ୍କର
କରିବୁ ନତୁବା ମୋର ଘରୁ ତୁ ବାହାର ।୧୨।

ଘରୁ ବାହାରିବା ସଙ୍ଗେ ସଙ୍ଗେ ତୋ ଚାକିରି
ଯିବ ସିନା ମନେ ମନେ ନ ହୁଅ ଆତୁରି ।୧୩।

ହୃଦୟକୁ ମୋର ବହୁ ହୋଇଲ ଯେ ବାଧା
ହୃଦଏ ପ୍ରକୋଷ୍ଠ ମଧ୍ୟ ଉଠେ କୋହ ସ୍ପର୍ଦ୍ଧା ।୧୪।

ମନରେ ମୋହର ବହୁ ଆବେଗ ଖେଳଇ
ଭାବିପାରେ ନାହିଁ ମୁହିଁ ଆଗକୁ କିଛି ହିଁ ।୧୫।

ଭାବି ଭାବି ନୟନରୁ ଲୋତକ ମୋ ବହଇ
ଶ୍ରାବଣର ଧାର ପରି କେତେ ଅଶ୍ରୁ ବହଇ ।୧୬।

ମୋ ଆଖି ଲୋତକ ନିବାରଣ ପାଇଁ ଜଣେ
ଥିଲ ଏକା ହୃଦୟେ ଦେବତା ସମାନେ ।୧୭।

ଭୁଲି ନାହିଁ ନ ଭୁଲିବି ମୋ ଜୀବନ ସରିଲେ
ଅସରନ୍ତି ପ୍ରେମ ତାଙ୍କ ନୟରେ ବର୍ଷିଲେ । ୧୮ ।

ବହୁ ମୋତେ ବୁଝାଇଲେ ଛାଡ଼ି ବାପା ସେ କଥା
ମନେ କଷ୍ଟ ନ କରହେ ପାଉଛି ମୁଁ ବ୍ୟଥା । ୧୯ ।

ନୃସିଂହ ବାବୁ ଅଟନ୍ତି ଗୁରୁ ଦେବଙ୍କ ମଉସା
ସବୁ ମୋତେ ବୁଝାଇଲେ କହ ମୋତେ ଭଷା । ୨୦ ।

କହିଲେ କାହିଁକି ବାବୁ କାନ୍ଦ ପିଲଙ୍କ ପରି
ପାସ୍ତୁ ଯେତେ ଝଡ଼ ଝଞ୍ଜା ସହ ଧୈର୍ଯ୍ୟ ଧରି । ୨୧ ।

ଶାନ୍ତ ହେଲି ସିନା ମୋର ହେଜେଙ୍କ କଥାରେ
ହୃଦୟେ ମୋ ଦହଗଞ୍ଜ ହୋଇଲ ଆତୁରେ । ୨୨ ।

ଆକୁଳକୁ କେହି ମୋର କରିବାକୁ ଶୀତଳ
ନଥିଲେ ମୁଁ ନିଜେ ନିଜେ କରି ନେଲି ଶୀତଳ । ୨୩ ।

ବିଜନ କାନନ ଅଗ୍ନି ଲାଗି ପୋଡ଼ିଗଲେ
ଜଗତ ଜାଣନ୍ତି ଗୁରୁଦେବ) ଜାଣନ୍ତି ଟି ଭଲେ । ୨୪ ।

କିନ୍ତୁ ମନ ପୋଡ଼ିଗଲେ ମନ ଏକା ଜାଣଇ
ତା ମୂଳରେ ଭଗବାନଙ୍କ କରୁଣା ଅଟଇ । ୨୫ ।

ଗୁରୁଦେବ କେତେ ମୋତେ ଗାଳି ଦେଇ ଯେ ଗଲେ
କିଛି ତାଙ୍କୁ ନ କହିଲି (ସବୁ)ସହିଲି ମୁଁ ଭଲେ । ୨୬ ।

ଭବୁଥାଏ କେତେ ସୁଖ କଲି ମୁହିଁ ମୋ ଘରେ
ଆଜି କିନ୍ତୁ କି କଷ୍ଟ ମୁଁ ଭୋଗଇ ଏଠାରେ । ୨୭ ।

ଖିଆ ନାହିଁ ପିଆ ନାହିଁ ଶୁଆ ନାହିଁ ଶାନ୍ତିରେ
ଦିନ ରାତି ରହିଥାଏ (ମୁଁ) କବିଙ୍କ ପାଖରେ । ୨୮ ।

କବିଙ୍କର ସ୍ନେହ ଆଉ ପ୍ରେମ ଫାନ୍ଦରୁ
ସବୁ କିବା କଷ୍ଟ ଅଟେ ସବୁ ଭବ ବନ୍ଧନରୁ । ୨୯ ।

କିପରି ■ ଭବ ଛିନ୍ନ କରି ମୁଁ ଏଠାରୁ
ଯିବି ସେଇ କଥା ଭବି ନ ତୁଟଇ ମନରୁ । ୩୦

ମଉଳା ଫୁଲ ପରି ଗଲି ମୁଁ ମଉଳି
ପଗଣ ଆବେଗେ ମୋର ଉଠଇ ଉଛୁଳି । ୩୧ ।

● ● ●

## ଭଲ କଥା ଶୁଣି

ଭଲକଥା ଶୁଣି ଭେଲ ହେଲ କିଆଁ
ନ ଦେଖୁତ ମୋର କାର୍ଯ୍ୟ ହୋ

ମିଛ କଥା ଶୁଣି ମିଛୁଆ ହୋଇବ
ନ ହେବ ତ କିଛି ଧାର୍ଯ୍ୟ ହୋ

ମୁହିଁ ହୀନ ଜନ ଆସି ତୁମ୍ଭ ଘରେ
କାଟୁଛି ତ ଦିନ ରାତି ହୋ

ମୋ ମନରେ ଅଭିଳାଷ ଅଛି
ସେବା କାର୍ପଣ୍ୟର ଘଟି ହୋ

ନିଜେ ସବୁ ଦେଖି ଦୁଇ ନୟନରେ
ଆଗ ପଛ ବିଚାରିବି ହୋ

ଭଲକୁ ଉତ୍ତମ ମନ୍ଦକୁ କଠୋର
ଶାସ୍ତି ଆପଣେ ଦିଆଇବ ହୋ

ମୋହଠାରେ ନାହିଁ ଛନ୍ଦ କି କପଟ
ଅତି ନିଃସହାୟ ପିଲା ହୋ

କାହିଁ କାହା ପ୍ରତି କପଟ ରଖିବି
ନବର ଭବେ ମୁଁ କାଲ ହୋ

କାଲ ପରି ସବୁ କର୍ଣ୍ଣରେ ମୁଁ ଶୁଣି
ଆଖରେ ଦେଖିବି ସବୁ ହୋ

କାହାକୁ ଟି କିଛି ନ ଜଣାଇ ମୁହିଁ
ତୁନିଟି ରହିବି ବାବୁ ହୋ

ବିଶ୍ୱକର୍ତ୍ତା ସେହି ଜଗତ ଈଶ୍ୱର
ତାଙ୍କ ପରେ ମନ ରଖି ହୋ

ପରକୁ ନିଜର କରି ମୁଁ ମଣିବି
ଭେଦ ଭବଟି ନ ରଖି ହୋ

ଯିଏ କହେ ମିଛ ତାକୁ ସେ ଈଶ୍ୱର
ରଖିବେ କିଛି କୁଶଳ ହୋ

ମୁହିଁଟି ଅଧମ କାରେ ହେବି କ୍ଷମ
ନାମ ମୋର ପଦ୍ମନାଭ ହୋ
ପର ସେବା କରି କରି ମୋ ଜୀବନ
ଜୀବ ମୁଁ ଲଭିବି ଲଭ ହୋ

• • •

## ସୁଭାଷ ଜୟନ୍ତୀରେ

ଆସିବ ଯେବେଟି ତମେ ଫେରି
କୁହ କେତେ ଆଉ ହେବ ଡେରି ?
ଆମ କଥା ତମ କାନେ ପଶୁ ନାହିଁ
ହେଲୁଣି ଆମେ ତ ଏତେ ସରି । ପଦ ।

( ୧ )

ସ୍ୱାଧୀନତା ଲୋଭେ ହୋଇ ଅସମ୍ଭାଳ
ଦେଶକୁ ତୁମର କଲୁ ଦୁଇଫାଳ
ରାହୁ କେତୁ ପରି ଦ୍ୱିଖଣ୍ଡ ହୋଇଲୁ
ମହାତ୍ମା ଗାନ୍ଧୀଙ୍କି ଦେଲୁ ବଳି ।

( ୨ )

ଦୁନିଆଁ ମନକୁ ନେବା ପାଇଁ ଜିତି
ପଖରିଲୁ ଆମେ ପଞ୍ଚଶୀଳ ନୀତି
ଘର ଆମ ବନ୍ଧୁ ବନ୍ଧୁକ ସାଜିଲେ
ହିମାଳୟ ଗିରି ଗଲ ଅରି ।

( ୩ )

ଶୁଣିଥିବ ତମେ ଏବକା ଖବର
ତମ ଦେଶେ ପୁଣି ଲଗିଛି ସମର
କୋଟି କୋଟି ଟଙ୍କା ଢାଳିଲୁ ନିଆଁରେ
ଭଇ ଭଇ ହେଲୁ ମରମରି ।

( ୪ )

ପଡ଼ିଶାଙ୍କ ପାଖୁ ବୁଦ୍ଧି ପାଇ ଶେଷେ
ମିଛାମିଶା ଲଗି ଗଲୁ ତାଙ୍କ ଦେଶେ
ସଜି ପଡ଼େ ଖଇ ଦେଲେ ଦୁଇ ଘଇ
ଘଲେ ଘୁଲି ଜଣେ ଆଉ ପାରି ।

( ୫ )

ଡ଼ମ ଯୁଗ କଥା ନାହିଁ ଆଜି ଆଉ
ଦୁନିଆଁର ନିଆଁ ଜଳେ ଦାଉ ଦାଉ
ତୋପ ବନ୍ଧୁକତ ହେଲେଣି ଅଚଳ
ଲେଢ଼ା ନାହିଁ ଆଉ ରଣ ଭେରୀ ।

( ୬ )

ହିରୋସୀମା ଯଜ୍ଞ ହେଲ ଯେବେ ପୂର୍ଣ୍ଣ
ନିଷଣ ହୋଇଲେ କୋଟି କୋଟି ସୈନ୍ୟ
ଶଙ୍କିତ ଚିରରେ ଭବିଲେ ଜନତା
ବୃଥା ଏ ପୃଥ୍ୱୀରେ ଦେହ ଧରି ।

( ୭ )

ବିଜ୍ଞାନ ବଢ଼ାଏ ମାନବ ସଭ୍ୟତା
କେ କେତେ ପାରିବ କରି ନରହତ୍ୟା
ଆଣବିକ ବୋମା ଅଛି ଯାହା ପାଖେ
ଅନ୍ୟ ଦେଶ ତାଙ୍କ ଦାଶ ପରି ।

( ୮ )

ଦେଖି ଏ ଯୁଗର ଜଟିଳ ସମସ୍ୟା
ଧ୍ରୁବ ପରି କାହିଁ କର କି ତପସ୍ୟା
ପ୍ରଳୟ ମୁଖରୁ ପୃଥ୍ୱୀ ଉଦ୍ଧାରିବ
(ତମେ) ଆସିଅଛ ସ୍ୱର୍ଗୁ ଅବତରି ।

• • •

## ଆମେ ସବୁ କଣ ଗଲୁଣି ଭୁଲି

ଆମେ ସବୁ କଣ ଗଲୁଣି ଭୁଲି
ଦେଶକୁ ସ୍ୱାଧୀନ କରିବୁ ବୋଲି
ଭିକ୍ଷ ମାଗୁଥିଲୁ ବାର ଦ୍ୱାରେ ବୁଲି
ହାତରେ ଝୁଲଇ ଭିକାରୀ ଝୁଲି । ପଦ ।

ଜନକ ଜନନୀ ତେଜି ସୁତ ଦାର
ବୁଲୁଥିଲୁ ଘର ହୋଇ ବାସହର
ଆମ ଘର ଛାତ ଥିଲା ଏ ଆକାଶ
ଆମ ସୁଖ ଶେଯ ରଗଡ଼ା ବାଲି । ୧ ।

ଗଛତଳେ ଗଣ୍ଢି ପତର ବିଛାଇ
ସାଥି ହୋଇ ଯେବେ ବସୁଥିଲୁ ଖାଇ
ପିଠିରେ ଆମର ଲାଠି ବସୁଥିଲା
ଭତେ ପଡ଼ୁଥିଲା ପାଉଁଶ ଧୂଳି । ୨ ।

ସମୁଦ୍ର ପଟାରେ ଲୁଣ ଛଡ଼ାଛଡ଼ି
ବୁଟ୍ ଜୋତା ମାଡ଼ ଚଳେ ଗଡ଼ାଗଡ଼ି
ଲହୁ ଲେଟ ହୋଇ ସବୁ ସହୁଥିଲୁ
ଲଢ଼ୁଥିଲୁ ଉଠି ଯବାନ୍ ପରି । ୩ ।

ପଥର ପାଚେରୀ ରହିଅଛି ସାକ୍ଷୀ
ରେଗ ନେଲା କେତେ ଯୁବକଙ୍କୁ ଡାକି
ନ ନଇଁଲେ ମଥା ମାଗି କ୍ଷମା ଭିକ୍ଷା
ସରଗ ପୁରକୁ ଗଲେ ସେ ଗୁଳି । ୪ ।

ନିଶା ଦୋକାନରେ ଦିଅନ୍ତେ ଧାରଣା
ବିଦେଶୀ ଲୁଗାକୁ କରିବାକୁ ମନା
ବସୁଥିଲା ବେତ ପିଲାଙ୍କ ଉପରେ
ଫାଟି ଯାଉଥିଲା ହାତ ପାପୁଲି । ୫ ।

ହସି ଫାଶୀ ଖୁଣ୍ଟେ ବସିଲା ଲକ୍ଷ୍ମଣ
ଗୁଳି ଲେଟକଲା ଭରମ ବରଣ
ଜାଉପଡ଼ା ମାଟି ରକ୍ତ ତୀର୍ଥ ହେଲା
ଦେଶକୁ ସ୍ୱାଧୀନ କରିବୁ ବୋଲି ।

● ● ●

## ଅନ୍ତିମ ପରୀକ୍ଷା

ବନ୍ଧୁ !

ତମେ କେତେ ଜଣ
ନ ପାରିଲ ଆଉ ଧୈର୍ଯ୍ୟଧରି
ଭୁଲି ଦଳମତ ମିଳାଇଲ ହାତ
ବୁଲି ବାରଦ୍ୱର ପାଗଳ ପରି
ଦେଖିଲ ଏ ଦେଶ ହୋଇଯିବ ଧ୍ୱଂସ
କିଛି କାଳ ଗତି କଲେ ଏପରି ।

(୧)

ଯେଉଁ ମନ ଯେଉଁ ପ୍ରାଣ ଢାଳି ଦେଇ
ଦେଶ ସ୍ୱାଧୀନତା ଆଣିଲେ ବନ୍ଦେଇ
ସେ ମନ ଫାଟିଲା ସେ ଶିରୀ ତୁଟିଲା
ଦେଖି ତମ ଛାତି ଉଠିଲା ଥରି ।

(୨)

ସେବକ ଶାସନ ଗଢ଼ିବା ପାଇଁକି
ଜାତିର ଜନକ ଯାଇଥିଲେ ଲେଖି
ନିଜ ସ୍ୱାର୍ଥ-ସୁଖୀ ଶାସନ ଚଳାଇ
ଗଲ କଥା ଆମେ ଦେଲେ ପାଶୋରି ।

(୩)

ଉଚ୍ଛଟ ଦୁର୍ନୀତି ଲୁଞ୍ଚ କଲା ଶ୍ୱାସ
ପ୍ରଜାକୁଳ ହେଲେ ଆକୁଳେ ହତାଶ
କର ସଙ୍ଗେ ଦର ବଢ଼ି ବଢ଼ି ଗଲା
ରକତ ଶୋଷିଲେ ଠକ ବେପାରୀ ।

(୪)

ଯୁବକ ଆମର ନୁହନ୍ତି ତ ବକ
ଆମ ଦେଶ ଲୋକ ନୁହନ୍ତି ତ ଠକ
ଗଣତନ୍ତ୍ର କେବେ ନୁହେ ବିକାକିଣା
ଆଖି ଆଗେ ଦେଲେ ପ୍ରମାଣ କରି ।

(୫)

ଯୁଗେ ଯୁଗେ କହେ ଆମ ଇତିହାସ
କାମିନୀ କାଞ୍ଚନ କାଦମ୍ବରୀ ଦାସ
ହେଲେ ସମାଜର ହୁଏ ସର୍ବନାଶ
ହର ବ୍ରହ୍ମା ହେଲେ ପଡ଼ନ୍ତି ଟଳି

(୬)

ଚରିତ୍ର ବଳ ହିଁ ଏକମାତ୍ର ବଳ
ଶାସକ ଶାସିତ ସବୁରି ସମ୍ବଳ
ନ ଥିଲେ ସେ ବଳ ବିଦ୍ୟା ବୁଦ୍ଧିବଳ
ଜଳି ଖସି ପଡ଼େ ହାବେଳୀ ପରି ।

(୭)

ଦିନୁ ଦିନ ପୃଥ୍ୱୀ ଚାଲିଛି ଆଗେଇ
ଆମେ ନ ଚାଲିଲେ ନିଜକୁ ବାଗେଇ
ପଛରେ ପଡ଼ିବା ଧୂଳିରେ ଗଡ଼ିବା
କାଳ-ଚକ ଦେବ ଆମକୁ ଚୂରି ।

(୮)

ଠିକି ଠିକି ଏବେ ପାଇଲେ ଯେ ଶିକ୍ଷା
ପଡ଼ିଛି ତାହାର ଅନ୍ତିମ ପରୀକ୍ଷା
ହଟିଗଲେ ଏଠି ବେଳ ଯିବ କଟି
ବିପ୍ଳବର ନିଆଁ ଉଠିବ ଜଳି ।

● ● ●

## ସ୍ୱାଧୀନତା ଦିବସ ଉପଲକ୍ଷେ

[ଲଳିତ ମୋହନ ଘୋଷଙ୍କ ସ୍ୱଜନରୁ]

ଆମେ ମରିନାହୁଁ କେବେ ନ ଯିବୁ ମରି
ଆମେ ଡରିନାହୁଁ କେବେ ନ ଯିବୁ ଡରି
ଚାଲିଛୁ ଚାଲିବୁ ତମ୍ଭରି ପତାକା ହାତରେ ଧରି । ୦ ।

କେତେ ଝଡ଼ଝଞ୍ଜା ସହିଛୁ ଜୀବନେ
କେତେ ଦୁଃଖ ନିଶି କାଟିଛୁ ସ୍ୱପନେ
କେତେ ରକ୍ତ ନଦୀ ଆସିଛୁ ସନ୍ତରି
ଭେଟି ବାଟେ ଘାଟେ କାଳ ଭଇଁରୀ । ୧ ।

ଆତ୍ମୀୟ ସ୍ୱଜନ କାତର କ୍ରନ୍ଦନ
ଟାଳି ପାରି ନାହିଁ ଆମ ଟାଣ ମନ
ହିମାଳୟ ତୁଲେ ଅଟଳ ରହିଛୁ
ସ୍ମରେ ସବୁ କଥା କାଳିକା ପରି । ୨ ।

ବନ୍ଧୁକର ମୁନ କମାଣର ଗୁଳି
ଲୁହ ବୁହା ବାଷ୍ପ ଗଡ଼ି ମାଡ଼ ଗୁଳି
ହଟାଇ ପାରିନି କେହିତ ଆମକୁ
ପଥର ପାଚେରୀ ପାରିନି ଘେରି । ୩ ।

ମତାନ୍ତର ଅର୍ଥ ନୋହେଁ ମନାନ୍ତର
ଦେଖୁଥିଲେ ଦେଖିବ ଟିକିଏ ଅନ୍ତର
ଜନ୍ମ ଜନ୍ମାନ୍ତର ସାଥୀ ଆମେ ସବୁ
ନ ପାରିବ କାଳ କିଛି ନ କରି । ୪ ।

ସମଝିଛୁ ଆମେ ଦେଖି ହୀରେସୀମା
ଆମ ପରମାଣୁ ବିଦେଶିକ ଜିମା
ଏକା ତଣ୍ଟୀରେ ତ ବସିଛୁ ସମସ୍ତେ
କେହି ନୋହୁଁ ଆମେ କାହା ବଇରୀ । ୫ ।

ପରଖିବ କିଏ ପରଖୁ ରକତ
ସବୁ ଦଳ ଆମେ ବିଶ୍ୱଶାନ୍ତି ଦୂତ
ବିଶ୍ୱବାସୀ ପ୍ରାଣ ବଞ୍ଚାଇବା ଲାଗି
ଦେଇପାରୁ ଆମେ ସର୍ବସ୍ୱ ବଳି । ୬ ।

● ● ●

## ପହଞ୍ଚିବ ଆସି ଘାଟରେ

ସେତ ଚାଲିଗଲା ତା'ର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ [ଘୋଷା]
ଗଲା ଯିବା ବେଳେ କହି ଏତିକି
ତମେ ଭଲ ପାଉଥିବ ସାଥୀକି । ୧ ।

ଯେବେ ବଞ୍ଚାଇବ ଏହି କ୍ଷିତିକି
ତେବେ ମାନୁଥିବ ମୋର ନୀତିକି । ୨ ।

ତମେ ଆଣି ଥିଲ ଦେଶ ଜିତିକି
ମନୁ ଭୁଲିଗଲ ମୋର ପ୍ରୀତିକି । ୩ ।

ସେତ ଚାଲିଗଲା ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୪ ।

ଆମେ କୋଟି କୋଟି ନିଃସ୍ୱ ପୂଜାରୀ
ଘାଟେ ବସିଅଛୁ ସବୁ ବାହାରି । ୫ ।

ନଇ ପାରି ହୋଇ ଯିବୁ କିପରି
ଆଉ ସାହା ନାହିଁ କେହି ଆମରି । ୬ ।

ଆମ ଆଖି ଆଗେ ଖେଳେ ଭଉଁରୀ
ଦେଖି ମଥା ଯାଏ ଜରେ ଘାଉଁରୀ । ୭ ।

ସେତ ଗ୍ଲଲିଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୮ ।

ଜଗି ବସି ଅଛୁ ଜାକି ବୁଜୁଳି
ଆସି ଚମକାଇ ଦିଏ ବିଜୁଳି । ୯ ।

ଖସେ ଆକାଶରୁ ବିଷ ହାବେଳୀ
ପାଣି ଦରିଆରୁ ପଡ଼େ ଉଛୁଳି । ୧୦ ।

ଶୁଣି ଘରିଆଡ଼େ କାନ୍ଦ ବୋବାଳି
ଲୁହ ହେଉ ନାହିଁ ଆଉ ସମ୍ଭାଳି । ୧୧ ।

ସେତ ଗ୍ଲଲିଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୧୨ ।

ବହି ଆସୁଅଛି କାଳ ପବନ
ତା'କୁ ପାରିବକେ କରି ଦମନ । ୧୩ ।

ମେଘ ଘୋଟି ଅଛି ସାରା ଗଗନ
କାହିଁ ଲୁଚିଲେଣି ଯାଇ ତପନ । ୧୪ ।

ଆମେ ବସିବାକି ହୋଇ ମଉନ
ସୁଅ ଟାଣି ନିଏ କୋଟୀ ଜୀବନ । ୧୫ ।

ସେତ ଗ୍ଲଲି ଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୧୬ ।

ପାଣି ଦୁମ୍ ଦୁମ୍ ହୋଇ ପଡ଼ୁଛି
ଗଗେ ବଂଧ ବାଡ଼ କେନେ ତାଡ଼ୁଛି । ୧୭ ।

ମାଟି ଖଣ୍ଡ ଖଣ୍ଡ ଛିଡ଼ି ପଡ଼ୁଛି
ଦେଖି ଜନତାଙ୍କ ହଂସା ଉଡ଼ୁଛି । ୧୮ ।

ନିଜ ନୀତି ଲଗି କିଏ ଲଢ଼ୁଛି
କିଏ ଲୋଭେ ପଡ଼ି ଭୂଇଁ ଲୋଡ଼ୁଛି । ୧୯ ।

ସେତ ଗ୍ଲଲିଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୨୦ ।

ନିତି ଜାତି ସଂଘ ଛାତି ଥରୁଛି
ବୃଥା ଅସ୍ତ୍ରମାରି ଧନ ସରୁଛି । ୨୧ ।

ଧନୀ ବାହୁବଳେ ହେଣ୍ଡି ମାରୁଛି
ତାକୁ ଅହମିକା ନିଶା ଘାରୁଛି । ୨୨ ।

ସୁଖ ଶାନ୍ତି ଲଗି ସଦା ଝୁରୁଛି
ଜାତି ମମତା ନପାରେ ମୁରୁଛି । ୨୩ ।

ସେତ ଗ୍ଲଲିଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୨୪ ।

ଭାଇ ଭାଇ ସ୍ନେହ ଦେଇ ପାଶୋରି
ଯେବେ ବିଷ ବୋମା କଲ ତିଆରି । ୨୫ ।

ଜ୍ଞାନ ବିଜ୍ଞାନରୁ ଗଲ ବାହୁଡ଼ି
ଲଜ୍ଜା ଲଗାଇଲ ବେକେ ଦଉଡ଼ି । ୨୬ ।

ଦୟା ପକାଇଲ ବଣେ ହୁରୁଡ଼ି
ମାୟା ପଡ଼ିଗଲ ମାଟି କାମୁଡ଼ି । ୨୭ ।

ସତ୍ୟ ବିନୋବାଙ୍କୁ ବାଟେ ହାବୁଡ଼ି
ହସି ଧରିଲଣି ତାକୁ ଜାବୁଡ଼ି । ୨୮ ।

ସେତ ଗ୍ଲଲି ଗଲ ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୨୯ ।

ଆମେ ହୋଇ ନାହୁଁ ତିଳେ ହତାଶ
ନିଶ୍ଚେ ହରି ନେବୁ ସବୁ ପରଶ । ୩୦ ।

ଗ୍ଲହିଁ ବସି ଅଛି ଏହି ଧରଣୀ
ପୁଣି ଦେଖିବାକୁ ତା'ର କରଣି । ୩୧ ।

ହିଂସା ଗରଳରୁ ଜାତ ଅମୃତ
ଭୀତ ଜୀବ କୂଳେ କମ୍ପି ଜୀବିତ । ୩୨ ।

ବିଶ୍ୱ ଜନତାକୁ ଦେବୁ ଅଭୟ
କେବେ ନୋହିବ ଏ ସୃଷ୍ଟି ପ୍ରଳୟ । ୩୩ ।

ସେତ ଚାଲିଗଲା ତାର ବାଟରେ
ନାଆ ବାନ୍ଧି ଦେଇ ଆମ ଘାଟରେ । ୩୪ ।

ବିଶ୍ୱ ପଞ୍ଚାୟତ ଗଢ଼ା ହୋଇବ
ସବୁ ଗଢ଼ ଘାଟ ତଳେ ବସିବ । ୩୫ ।

ଶାନ୍ତି ଶତଦଳ ବିଶ୍ୱେ ଫୁଟିବ
ଦେଖି ନାଉରିଆ ହସି ଉଠିବ । ୩୬ ।

ସେତ ଯାଇଅଛି ତାର ବାଟରେ
ଦିନେ ପହଞ୍ଚିବ ଆସି ଘାଟରେ । ୩୭ ।

● ● ●

## ଗାନ୍ଧୀ ବୋଲି ଜଣେ ଆସିଥିଲା କିଏ ?

ଗାନ୍ଧୀ ବୋଲି ଜଣେ ଆସିଥିଲା କିଏ
କଲା, ସ୍ୱାଧୀନ ଆମର ଦେଶ,
ମାଟି ଦେହ ତା'ର ମାଟିରେ ମିଶିଲା
ଗଲା, ଟୁଳି ଗ୍ୱେଟେ ହୋଇ ଶେଷ ।

ହତ୍ୟାକାରୀ ସିନା ଥରେ ଗୁଳି କଲା
ଆମେ, ଗୁଳି କରୁ ତାକୁ ନିତି,
ଗାନ୍ଧୀ ସିନା ନର ଗାନ୍ଧୀ ଠାରୁ ବଡ଼
ଗାନ୍ଧୀର ମନ୍ତ୍ର ଅହିଂସା ନୀତି ।

ଆଖିରେ ଆମର ଆଖିଏ ଅଞ୍ଜନ
ସଫା, ଦେଖାଇ ଦେଇ ସେ ଗଲା
ସବୁ ଇତିହାସ ଘାଣ୍ଟି ଘାଣ୍ଟି ଶେଷେ
ସତ୍ୟ ଅହିଂସାକୁ ସାର କଲା ।

● ● ●

## କହଲେ ଅଲକା

କହଲେ ଅଲକା ପାଇକା'ର ଦେଖା
ଯାଉ ଆଜି କାହା ପୟରେ ଲେଟି
ଶତ ଶତ ସ୍ମୃତି ରହିଛୁ ସାଇତି
ମନେ ପଡ଼େ ପର ଗୋଟିକି ଗୋଟି ।

କେଉଁ ଦେଶୁ ଆସି ଜଣ କେ ସନ୍ନ୍ୟାସୀ
ସାବରମତୀର ତୀରେ ବାଇବଂଶୀ
କୋଟି କୋଟି ପ୍ରାଣ କଲା ଉଚ୍ଚାଟନ
ଗଲିଲ ତୋ ନିଦ ଉଠିଲୁ ବସି ।

ପଦ ପଦବୀକି ପାଦେ ଦେଇ ଫିଙ୍ଗି
କେତେ ବନ୍ଧୁ ତୋର ଛିଣ୍ଡା କନା ପିନ୍ଧି
ଧରି ଭିକ ଝୁଲି ବାର ଦ୍ୱାରେ ବୁଲି
ତୋହ କୂଳେ ଆସି ରଚିଲେ କୁଟୀ ।

ଭରତ ବାସୀଙ୍କି ଦେଇ ସ୍ୱାଧୀନତା
ହରିବାକୁ ଚାଷୀ ମୂଲିଆଙ୍କ ବ୍ୟଥା
କଲେ ଏଠି ପଣ ଚରୁଣୀ ଚରଣ
ଦିହ ଛୁଇଁ ସୂତା ବସିଲେ କାଟି ।

ସାକ୍ଷୀ ଅଛି ପର ଏହି ଆମ୍ର ବନ
ସହି ନ ପାରିଲା ବିଦେଶୀ ଶାସନ
କରିବାକୁ ଧୂଳି ପାଦେ ତାକୁ ଦଳି
ଆପେ ଧୂଳି ହୋଇ ଗଲାତ ଲେଟି ।

ସମୁଦ୍ର ସେ ପାଖ ଆସିଗଲା ଛବି
ବଦଳିଲା ସିନା ଆମ ଦେଶ ଛବି
ଆଣିଦେଲା ଯିଏ ନ ରହିଲା ସିଏ
ଭଅଁସ ଅନ୍ଧାର ଗଲାତ ଘୋଟି ।

ଶୁଣି ତାଙ୍କ କଥା ପଢ଼ି ତାଙ୍କ ଲେଖା
ଦ୍ୱିତୀୟାର ଚନ୍ଦ ଦେଇଣି ଗୋ ଦେଖା
ସାରା ବିଶ୍ୱ ଆଜି ବସିଲଣି ସାଜି
ତାଙ୍କରି ନୀତିକୁ ନେବ ପାଛୋଟି ।

( ଗୋପବନ୍ଧୁ ଚୌଧୁରୀଙ୍କ ପଦଯାତ୍ରା ଉପଲକ୍ଷେ ରଚିତ )

● ● ●

## ବିଶ୍ୱ ସେବକ

ବିଶ୍ୱ ସେବକ ହେ ସତ୍ୟ ପୂଜାରୀ
 ଗଳଘାଟ ଯୋଗୀ ପ୍ରେମ ଭିକାରି
ଆସିଥିଲ ଧରି ମାନବ ଶରୀ
 ବିଶ୍ୱ ସେବକ ହେ ପ୍ରେମ ପୂଜାରୀ ।

ପିତୃ ସତ୍ୟ ପାଳି ରାମ ଗଲେ ବନେ
 ମାତୃ ସତ୍ୟ ରଖି ତମ ମନେ ମନେ
ଯୌବନ ଯୁଆରେ ଗଲ ନାହିଁ ଭସି
 ଯାଇ ବିଲାତକୁ ଆସିଲ ଫେରି ।

ଗୋରା ଜାତି ପାଶ କଳା ଅପମାନ
 ଅଥୟ କଲାକୁ ତମ ମନ ପ୍ରାଣ
ଚଲଚନ ସମ ସହିଲ କଷଣ
 ମଥାରୁ ରକତ ପଡ଼ିଲ ଝରି ।

ବୋଧି ବଟତଳେ ବୁଦ୍ଧ କଲେ ତପ
 (ତୁମେ) ସାବରମତୀର ତୀରେ କଲ ଜପ
ସବୁ ଧର୍ମ ଶାସ୍ତ୍ର ମିଳାଇ ଦେଖିଲେ
 ଅହିଂସା ରହିଛି ସୃଷ୍ଟିକି ଧରି ।

ସତ୍ୟାଗ୍ରହୀ କୃଷ ବଜ୍ର ବାଣ ସହି
 ଦେବରାଜ- ଦର୍ପ ଦେଇଥିଲେ ଦହି
ତୋପ ବନ୍ଧୁକକୁ ପାତି ତୁମେ ବୁକୁ
 ତୁଟାଇଲ ଆମ ଦାସତ୍ୱ ଡୋରି ।

ଭଲ ପାଇ ସଦା ମାନବ ଜାତିକି
 ବଞ୍ଚାଇବା ଲାଗି ମାନବ ପ୍ରୀତିକି
ଯୀଶୁ ପରି ତୁମେ ଦେହ ଢାଳି ଦେଲ
 ଗଗନ ପବନ ଉଠିଲ ଥରି ।

ତମ ଆତ୍ମା ଆଜି ଖେଳେ ଘରେ ଘରେ
 ତମ ଶ୍ୱାସ ବହେ ବିନୋବା ଭିତରେ
ବାହେ ତମ ତରୀ ଭରତ ନାଉରୀ
 ଖେଳେ ଚାରିଆଡ଼େ କାଳ ଲହରୀ ।

● ● ●

## ନ ଯିବୁ ଡରି

କେବେ ହେଲେ ଆମେ ନଯିବୁ ଡରି
ଡରି ଗଲେ ଆମେ ଯିବୁତ ମରି
ସହିବୁ ଲଢ଼ିବୁ ଚମକି ପତାକା
 ହାତରେ ଧରି ।

ଦେଇ ଗଲ ତୁମେ କେଡ଼େ ବଡ଼ ରାଜ୍ୟ
ପୂରଣ କରିବୁ ତୁମ ଅଧା କାର୍ଯ୍ୟ
ପିଲାଏ ଖୋଳିବେ ସପତ ସାଗର
 ବୁଢ଼ା ଟପିଯିବେ ହିମାଦ୍ରି ଗିରି ।

ମନୁଷ୍ୟ ନୀତିକି ମନୁଷ୍ୟ ଜାତିକି
ବଡ଼ କରି ତୁମେ ମନୁଷ୍ୟ ପ୍ରୀତିକି
ମନୁଷ୍ୟ ସେବାରେ ପ୍ରାଣ ଢାଳି ଦେଲ
 ମନୁଷ୍ୟ ହାତରୁ ଖାଇଲ ଗୁଳି ।

● ● ●

## ମଣିଷ ରୂପରେ ହରି

ଆଖିରେ ଦେଖିନୁ ଛବିରେ ଦେଖିଛୁ
 ଆସିଥିଲ ତୁମେ ହରି,
ମଣିଷ ଜାତିକି ବଞ୍ଚାଇବ ବୋଲି
 ମଣିଷ ଶରୀର ଧରି ।

ରାମ ଅବତାରେ ଦଶରଥ ଘରେ
 ଜନମ ହୋଇଲ ଆସି,
ବାପାଙ୍କ କଥାକୁ ସତ କରିବାକୁ
 ହସି ହେଲେ ବନବାସୀ ।

ଦୂର ବିଲାତରେ ଦିନ କଟାଇଲେ
 ମାନିକି ମାଆଙ୍କ କଥା,
ଚରଖା ପଣିଆ କରିବା ପାଇଁକ
 ଖେଳାଇନା ଭିନେ ମଥା ।

କୃଷ୍ଣ ଅବତାରେ ମେଘଗର୍ଜା ରାତ୍ରେ
 ଲଭିଥିଲ ଧରେ ଜନି,

ସକଳ ଜାଲର ଚୂନା କରିଦେଲ
ଜଗତ ପ୍ରଜାଙ୍କୁ ମେଳି ।

ସାରା ଜୀବନଟା ସବୁ ସହି ତୁମେ
ପ୍ରଜାଙ୍କ ମନକୁ ନେଇ,
ବିଦେଶୀ ଶାସନ ଦୂର କଲ, ତାକୁ
ଦେଶରୁ ବିଦାୟ ଦେଇ ।

● ● ●

## ବାପୁଜୀଙ୍କ ଜନମ ତିଥି

ପାହିଲାଣି ରାତି ଉଠ ସାଙ୍ଗସାଥୀ
ଆଜି ବାପୁଜୀଙ୍କ ଜନମ ତିଥି
ତୁଟିଛି ଅନ୍ଧାର ଫୁଟିଛି ମନ୍ଦାର
ଛୁଟିଛି ସରଗୁ ଅମର ଗୀତି ।

ଗଗନ ପବନ ଗିରି ନଦୀ ବନ
ଖେଳର ସବୁଠି ତାଙ୍କରି ପ୍ରୀତି
ତାଙ୍କରି ଗୌରବ ତାଙ୍କରି ସୌରଭ
ଖୋଜେ ଭୂମଣ୍ଡଳ ତାଙ୍କରି ନୀତି ।

ଧରି ତାଙ୍କ ତେଜ ଉଇଁଲାଣି ସୂର୍ଯ୍ୟ
ମାନବ ସମାଜେ କରିବ ଗତି
ଶୋଷକ ଶୋଷିତ ଶାସକ ଶାସିତ
ବଦଳି ଯିବତ ସବୁରି ମତି ।

● ● ●

## ଏଇ ଘାଟେ, ଏଇ ବାଟେ

ଏଇ ଘାଟେ ଏହି ବାଟେ
ଆସିଲ ଦିନେ ସେ ନାଉରୀ
ଜାତ ଭେଦି ହାତ ଧରି
ବସାଇଲ ନାବେ ପଞ୍ଝାରୀ ।

ଘୋର ବର୍ଷା ଘୋର ଝଡ଼ି
ଚାରିଆଡ଼େ ନଈ ବଢ଼ି
ନାଗ ମୁଣ୍ଡ ଯାଏ ଛିଡ଼ି
ଘଡ଼ ଘଡ଼ି ଚଢ଼ ଚଢ଼ି
ନ ଡରି ପ୍ରକୃତି ରଡ଼ି
ବାଟରେ ଭେଟି ଉଇଁରୀ ।

ବିଦେଶୀର ଜ ଲ ଶ ଳ
ନାହା କଲ ଟଳ ମଳ
ଅରିଗଲ ର ସା ତ ଳ
ଶେଷେ ଆମ ମନ ବଳ
ଚଢ଼ି ଦେଲ ତାକୁ ଏଠୁ
ଘାଟରେ ଗଲୁ ଉତୁରି ।

ଖସଡ଼ା ମୁକତି ଘାଟେ
କଚଡ଼ା ଖାଇଲୁ ବାଟେ
ପଣିଏ ସଂପଦ ହାଟେ
ପାଗଳ ହୋଇ ଉଚ୍ଚାଟେ
ଭିନ୍ନେ ହୋଇ ଭାଇ ଭାଇ
ମାଆ ଦେହେ ମାଇଲୁ ଛୁରୀ ।

ଲକ୍ଷ୍ୟ ସିନା ହେଲ ସିଦ୍ଧି
ଲୁଚିଗଲ କୋଟି ନିଧି
ଶୂନ୍ୟ ଆଜି ଆମ ଗାଦି
ସରିଗଲ ସବୁ ପୁଣ୍ୟ
ହଜିଗଲ ଜାତି ଜାଉଁରୀ ।

ପଡ଼ିଛି ପାଦ କଠାଉ
ଅଛି ତା ହାତ ଚିଟାଉ
ସମଝିବ କିଏ ଆଉ
ଗରିବ ସଂସାର ଦାଉ
ମୃତ୍ୟୁ ମଝୁ ମନୁଷ୍ୟକୁ ନେବ ଉଦ୍ଧାରି ।

● ● ●

## ରାଜଘାଟ ଗୁରୁ

ମୋ ରାଜଘାଟ ଗୁରୁ ପୂଜ୍ୟ ଦେବତା
ଘଡ଼ିକ ପାଇଁକି ତମେ ଯେବେ ଆସି
ଅଛି ଏ ବାସରେ କହନ୍ତି କଥା
କୋଟି କୋଟି ଲୋକ ପାଗଳ ପରିତ
ଜଣାନ୍ତେ ତୁମକୁ ପରାଣ ବ୍ୟଥା ।

ଯାଉଥିଲୁ ଆମେ ଯାଇଥାନ୍ତୁ ଭାସି
ପ୍ରଳୟ ଜଳରୁ ଉଦ୍ଧାରିଲ ଆସି
ତୋପ ବଳ ଠାରୁ ତପ ବଳ ବଡ଼
ଦେଖାଇ ଗଲ ତ ଦେଇ ପରୀକ୍ଷା ।

ଆଜି ମୋ ଉଡ଼ଇ ଜାତୀୟ ପତାକା
ସାରା ପୃଥିବୀର ହୋଇ ପ୍ରିୟ ସଖା
ଜଗତ ଦରବାରେ ଆମ ରାଷ୍ଟ୍ରଦୂତ
ସବୁ ସମ୍ମାନର ତମେ ବିଧାତା ।

ବଞ୍ଚାଇବା ଲାଗି ମାନବ ଜାତିକି
ବୁଲି ଆସିଥିଲି ଆମ ଏ ପୃଥ୍ୱୀକି
ଆପଣ ହାତରେ ପ୍ରାଣ ସଂପିଥିଲ
ଜାଳି ଦେଇଗଲ ଜୀବନ୍ତ ଚିତା ।

ତୁମ ନୀତି ବଳେ ଆମେ ହୋଇ ବଳୀ
ତୁଟାଇବୁ ନିଶ୍ଚେ ଦୁନିଆର କଳି
ଆଉ ବଦଳିବ ଆମର ଦୁଆରେ
ନ ରହିବ ନର ହତ୍ୟାର ସତ୍ତା ।

ଜର ଶୁଭାଶୀଷ ଆମ୍ଭଙ୍କୁ ଏତିକି
ଭଲ ପାଇଁ ଆମେ ଅମରି ସାଥୀଙ୍କି
ଧାଇଁ ଯାଉ ଆମେ ଧ୍ୱଂସ ହେଉ ପଛେ
ବିଜୟ ନ ହେଉ ମାନବ ସତ୍ତା ।

● ● ●

## ଆମେ ଯାତ୍ରୀ

ଯାତ୍ରୀ, ଆମେ ଯାତ୍ରୀ
ଆମେ ବିଶ୍ୱପଥର ଯାତ୍ରୀ,
ବିଶ୍ୱ ମାନବ ଗଉରବ
ଆମର ଜାତୀୟ ସଉରଭ
ନିୟୋଜିବୁ ପ୍ରାଣ ନିଃସ୍ୱ ସେବାରେ
ପାଇଛି ଅନ୍ଧାର ରାତ୍ରି
ଯାତ୍ରୀ ଆମେ ଯାତ୍ରୀ ।

ଆମେ ଅଶୋକ ଦେଶର ସନ୍ତାନ
ଚିର ନୂତନ ଆମର ବିଜ୍ଞାନ
ଆମ ଅନୁଭବ ଆମର ବିଭବ
(ଆମେ) ନବଯୁଗ ଛାତ୍ର-ଛାତ୍ରୀ
ଯାତ୍ରୀ, ଆମେ ଯାତ୍ରୀ ।

(ଆମେ) ଗଢ଼ିବୁ ଆଜିର ମର୍ତ୍ତ୍ୟ
ଉଡ଼ାଇ ଅହିଂସା କେତୁ
ସରଗ ସୁଷମା ଆଣିବୁ ଫେରାଇ
(ଏ) ଧରିତ୍ରୀ ଆମର ଧାତ୍ରୀ,
ଯାତ୍ରୀ, ଆମେ ଯାତ୍ରୀ ।

(ଆମ) ଅନ୍ତରେ ଜଳେ ବିପ୍ଳବ
(ଏଠି) ମୃତ୍ୟୁ ଲଭେ ପରାଭବ
ଉଡ଼େ ତ୍ରିଭୁବନେ କେତନ ଆମର
ଭାରତ ଜନମ-ଦାତ୍ରୀ
ଯାତ୍ରୀ, ଆମେ ଯାତ୍ରୀ ।

● ● ●

## ସପନ ପରି ଲାଗଇ ମତେ

ଆସିଥିଲ ତମେ ପୃଥ୍ୱୀକି ସତେ
ସପନ ପରିତ ଲାଗଇ ମତେ
ବିଧ୍ୱଂସ ପଥରେ ବହୁ ଦେଶ ଘୂରେ
ଭାରତ ଚାଲଇ ତୁମରି ମତେ ।

ଲୁଟି ପର ଘର ସୁନାର ସିନ୍ଦୁକ
ଗଢ଼େ କିଏ ବିଷ ବୋମାର କନ୍ଦୁକ
ଆପଣା ମନତ ରଖିବା ପାଇଁକି
କାଠର ଅରଟ ବୁଲେ ଘରତେ ।
ଖଣିକ ବଣିକ ସମ୍ପଦ ଲୋଭରେ
ପର ଦେଶକୁ କେ ରଖେ କବଳରେ
ନିଜ ସ୍ୱାଧୀନତା ରଖିବା ପାଇଁ କି
ଦେଇଛ ପତାକା ଆମରି ହାତେ ।
ଶସ୍ତ୍ରଧରଙ୍କର ଖେଳୁଅଛି ମଥା
ଖେଳିକେ ପାରିବ କେତେ କପଟତା
ଆଗଭର ହୋଇ ଗ୍ଲିଛି ଭରତ
କହି ତାର ମତ ନିର୍ଭୀକ ଚିତ୍ତେ ।
ବିଶ୍ୱ ହିତେ ଗ୍ଲିଯାଉ ତାର ପ୍ରାଣ
ନ ଗ୍ହେଁ ଦେବାକୁ ପରକୁ କଷଣ
ଶତ୍ରୁ ମିତ୍ର ପକ୍ଷ ନାହିଁ କେ ତାହାର
ବନ୍ଧୁତା ରଖିଛି ମାନବ ସାଥେ ।

● ● ●

## ପାରୁନାହିଁ ନିଜକୁ ଠକି

ଲେଖିବାର ଯାହା ଲେଖି ସାରିଛି ମୁଁ
ନୂଆ କିଛି ଆଉ ନ ପାରେ ଲେଖି
ମନ ମୋର ପଡ଼େ ଝାଉଁଳି
ପ୍ରାଣ ମୋର ହୁଏ କାଉଳି
ଆଖି ଆଗେ କାଳ ଗତିକି ଦେଖି
ଚଉଦିଗ ଘୋର ଅନ୍ଧାର
ଦିଶେ ଖାଲି ନାଲି ମନ୍ଦାର
ଭୁଲି ପାରୁ ନାହିଁ ଦୂର ଅତୀତକୁ
ପାରୁ ନାହିଁ ନିଜେ ନିଜକୁ ଠକି ।
ଶୋଇଛନ୍ତି ଭୂଇଁରେ ଶିବ
କେବେ ତାଙ୍କ ନିଦ ଭାଙ୍ଗିବ
ନରମୁଣ୍ଡ ମାଳ ଗଳାରେ ଲମ୍ବାଇ
ନାଚୁଛନ୍ତି କାଳି ଖଡ଼ଗ ଟେକି ।

ବିଲ, ବଣ, ପାହାଡ଼ ଚାଳି
ଆସେ ବର୍ଷା ପକାଇ ରଡ଼ି
ଦୁଇ କୂଳ ଖାଇ ସବୁ ନେଇ ଧୋଇ
ଦେଖି ଏ ଦୁନିଆ ଯାଉଛି ଶଙ୍କି ।
ବସିଥାଇଁ ଯିବା ସେ ପାରି
ଘାଟିଆ ତ ଗଲା ବାହାରି
ଆଉ କେହି ନାଆ ଆଣିବେ ନାହିଁକି
ଭସି ଭସି ଯିବା ପଙ୍କରେ ଲାଗି

● ● ●

## ନାଆ ଛାଡ଼ିଦେଇ ଗଲା ନାଉରୀ

ନାଆ ଛାଡ଼ିଦେଇ ଗଲା ନାଉରୀ
ଆମେ ଜାଣିନାହୁଁ ନଈ ପହଁରି
ଲହରୀ ଉପରେ ଆସୁଛି ଲହରୀ
ଖେଳେ ଆଖି ଆଗେ କଳା ଭଉଁରୀ
ନାଆ ଛାଡ଼ିଦେଇ ଗଲା ନାଉରୀ । (ଘୋଷା)

ରହିଛି ଅନ୍ଧାର ଚଉଦିଗ ଘେରି
ଯାଉଛୁ କୁଆଡ଼େ ପାରୁ ନାହୁଁ ବାରି
ନିଜ କଥା ନିଜେ ଭାବୁଅଛୁ ଖାଲି
ମଉଳେ କିପରି ଯିବୁ ଉତୁରି,
ନାଆ ଛାଡ଼ି ଦେଇ ଗଲା ନାଉରୀ । ୧ ।

ପଶ୍ଚିମ ପବନ ମେଘ ଗରଜନ
ବଧିର କରଇ ସାର ପୃଥୀ କାନ
ମହାସାଗରର କଳିଜା ଥରୁଛି
ଡାକ ଛାଡ଼େ ହୋଇ ବିଷରେ ଘାରି ।
ନାଆ ଛାଡ଼ି ଦେଇ ଗଲା ନାଉରୀ । ୨ ।

ଛାତି ଦମ୍ଭ କରି ନ ଗ୍ଲିଲେ ହାତ
ଅକାତ ଗଣ୍ଡକୁ ଖସିଯିବ କାତ
ଭଙ୍ଗା ଟିରେ ପାଣି ପଶିଯିବ
ହଜିଯିବ ବୁଦ୍ଧି ବଳ ସବୁରି,
ନାଆ ଛାଡ଼ି ଦେଇ ଗଲା ନାଉରୀ । ୩ ।

ମଝି ଦରିଆରେ ପଡ଼ିଅଛି ନାଆ
ଗୁଳ ମିଳିମିଶି ଲଗାଇବା ବାହା
ଲଗି ସବୁ ବଳ ଲଗାଇବ କଳ
ନୋହିବା କାହାର କେହି ବଇରୀ
ନାଆ ଛାଡ଼ିଦେଇ ଗଲ ନାଉରୀ ।୪।

ଥିବା ଯାଏ ଆମ ନାଶାରେ ନିଃଶ୍ୱାସ
ନାଉରିଆ ବୋଲେ କରିବା ବିଶ୍ୱାସ
ପ୍ରଳୟ ମୁଖରୁ ସୃଷ୍ଟି ଉଦ୍ଧାରିବା
ମଣିଷ ଜାତିକି ଦେବତା କରି
ନାଆ ଛାଡ଼ି ଦେଇ ଗଲ ନାଉରୀ ।୫।

● ● ●

## କି ଦେବି ଭେଟି

କି ଆଉ ଦେବି ତତେ ଭେଟି
ଭାବିଲେ ଛାତି ଯାଏ ଫାଟି । (ପଦ)
ଦଦରା ଦେହଟି ମୋହର
ଦଦରା ଅଟଇ ଏ ଘର
ପୂର୍ବ ଜନ୍ମର ତପ ବଳେ
ପୂର୍ବ ଜନ୍ମର କର୍ମଫଳେ
ତତେ ମୁଁ ଅଛି ଆଜି ଭେଟି ।୧।

ଘରେ ଯାହା ମୋ ଥିଲା ଧନ
ସବୁ ମୁଁ କରିଛି ନିଶୂନ
ଋଣ ସାଗରେ ଅଛି ବୁଡ଼ି
ଭୁଲିଲି ବାଟ ଗଲି ବୁଡ଼ି
ତୋର ମାୟାରେ ହୋଇ ଘାଣ୍ଟି ।୨।
ମନଟା ମୋର ବଡ଼ ଧନ
ତୋତେ କରିଛି ସମର୍ପଣ
ଦିଅ ଏତିକି ମୋତେ ଶକ୍ତି
ଥାଉ ତୋ ପାଦେ ସଦା ଭକ୍ତି
ନ ଯାଉ ଚିତ୍ତେ ତାହା ତୁଟି ।୩।

କି ଆଉ ଦେବି ତୋତେ ଭେଟି
ଭାବିଲେ ମୋ ଛାତି ଯାଏ ଫାଟି ।

● ● ●

## କାଇପଡ଼ା ଶହୀଦ

(୧)

ଜୀବନ ଯୌବନ-ପ୍ରୟାଣ ରଚିଲ
ମୁକତି ଦୁଆରେ ମୁକତି ପାଇଁ,
ସେ ସରଗ ଦ୍ୱାର କା ଭାଗ୍ୟେ ଥାଏ କି
ତା' ପାଇଁ ଥିଲା ତ ମୁକୁଳା ହୋଇ ।
ଜୀବନ କରମ ଝଡ଼ ଝଞ୍ଜା ଘାତେ
ଦେଇ ସେ ସାଦିଲ ଜୀବନ ଟିକ,
ଏବେ ପୁଣ୍ୟ କା'ର ଭାଗ୍ୟେ କେ ଅର୍ଜିଛି
ପ୍ରୟାଣ ରଚିଲ ଅମୃତ ସୁଖ ।
ତୋଳିଲ ଉତୁଙ୍ଗ ଇତିହାସ କୀର୍ତ୍ତି
ପାଷାଣେ ରହିଲ ଅଲିଭ ଗାର,
ଯୁଗ ଯୁଗାନ୍ତରେ ଅମର ହେଲ ସେ
ମାଟି ଦେହ ନାଶି ଦୁଇ ଦିନର ।
ଅକାଳରେ ଯିଏ ମରଣ ସମାଧି
ତୋଳି ଉତୁଙ୍ଗ ପୂର୍ଣ୍ଣ ପ୍ରେମର,
ମଣିଲ ଜୀବନ ସ୍ୱପନର ନୀଡ
ଜହର ସାଧିଲ ପୂତ ମନର ।
ଆସିଥିଲ ସିଏ ସପନ ମୁହଁରେ
ସପନରେ ଭାସି ରଙ୍ଗ ମହଲେ,
ଅଭିନୟ ସାରି ଉଜାଣି ଫେରିଲ
ଭବ ଯବନିକା ସେପାର ପଥେ ।
ନୂଆ ଯୁଗାନ୍ତର ସରଜନା କରି
ଆଖି ପଲକରେ ଜଲ ସେ କାହିଁ,
ଦେଶ ପ୍ରୀତି ଦଶ ମମତା ବଳଳି
ନୀର ବୁନ୍ଦ୍ ବୁନ୍ଦ୍ ରଚିବା ପାଇଁ ।

କହ ଥରେ କହ ବ୍ରାହ୍ମଣୀ ନଈ ତୁ
ସେ ଦିନ ସମର ବାରତା ମୋତେ,
କେତେ କାଳପର କଳ୍ପନା ଚେଇଁଛି
କାଲି ପରି ଆଜି ଲାଗୁଛି ମୋତେ ।
କି ସାହାସ ଧରି ଅଦ୍ୟମ ଉତ୍ସାହେ
ହସି ହସି ଗଲେ ରଣକୁ ଧାଇଁ,
ଏଡ଼େ ତା' ହାଇକ ନ ଡରିଲେ ଟିକେ
ରଣ ଥାନ କଲେ ଖେଳର ଭୂଇଁ ।
ଲୋକଙ୍କୁ ଜାର ଉଦ୍ଧାରିବ ବୋଲି
ଗର୍ଜିଲେ ମରଣ ଅମୃତ ଲୀଳା,
ମାଟି ଦେହ ଦେଇ ଯଶ ଦେହ ନେଲେ
କାଳେ କାଳେ ଜୀଇ ହେଲେ ଅମଲେ ।

ଯଶ ମନ୍ଦିରରେ ଆସ୍ଥଷ୍ଟାନ ବୀର
ରହିଲେଣି କେତେ ରକତ ଦେଇ,
ମାଟି ପୂଜା କରି ମାଟିର ସେ ତନୁ
ଉତ୍ସରଗ କରି ମାଟିର ପାଇଁ ।

କରଣୀ ସାଧିଲେ ଚମକାଇ ଦେଲେ
ଗୋଲକୁଣ୍ଡ ବୀର ସେ ମାୟାଧର,
ନିମିଷେ ରଚିଲେ କୋଟି କୋଟି ବୀଚି
ସମର ସାଗରେ କି ଭୟଙ୍କର ।

ଚେତନା ଜାଗିଲା ଜାତି ଦେଶ ମୂଳେ
ଆହ୍ୱାନ ବାର୍ତ୍ତିଲେ ବୀର ହ ତରେ,
ମରିବାର ଆମେ ମରିବା ମୂକର
ଭୀରୁ ନୋହୁଁ ଆମେ ବୀର ଘରରେ ।
କାପୁରୁଷ ଡରେ ମରଣକୁ ସିନା
ବୀର ମଣେ ତାକୁ ଜୀବନ ଲୀଳା,
ଦେଖାଇ ତା' ଟେକ ଦି' ଦିନ ସଂସାରେ
ଯଶ ଧ୍ୱଜା ଟେକି ହୁଏ ଅମର ।

ତୁଚ୍ଛ ମରଣରେ ଭୟ କି କରିବ
ମାୟାଧର ଭୂୟାଁ ବୀର ସନ୍ତାନ,
ଯାବତ ଜୀବନ ବଞ୍ଚୁଥିବ ବାଣ୍ଟ
ତାବତ୍ ତା ଦାସ ତୁଚ୍ଛ ମରଣ ।

ଜୀବନର ଶେଷ ଘଡ଼ି ସନ୍ଧି ବେଳେ
ଆଶା ତା ଅମାପ ରଚିଲା ଖେଳ,
ଚମକାଇ ଦେଲେ ବିଜୁଳି ଚକାଟେ
ଜର୍ମିଲେ ବସୁଧା ବୀରଙ୍କୁ ବୀର ।
ସେ ଦିନ ଦେଖିଛୁ କହଲେ ବ୍ରାହ୍ମଣୀ
ଅତୀତ ଦିନର ତୁହି ତା ସାକ୍ଷୀ,
ମୋ' ବୀର ଭାଇର ସରଗ ପ୍ରତିଭା
ସକଳ ଦେଇଛି ତୋହର ଆଖି ।
କହ କହ ଥରେ ବ୍ରାହ୍ମଣୀ ନଈ ତୁ
ସେ ଦିନ ସମର ବାରତା ମୋତେ,
ସେ ସମରେ କେତେ ସଇନିକ ବୀର
ସେନାପତି ତା'ର କେ ଥିଲେ ସତେ ?

କହ ଲୋ ବ୍ରାହ୍ମଣୀ ସେ ଦିନ କେମିତି
ସମର କରିଲା ମୋ' ଦେଶ ଭାଇ,
ପରାଧୀନା ମାଟି ମା'ଙ୍କୁ ତାହା'ର
ଉଦ୍ଧାରିବା ପାଇଁ ଗଲେ ସେ ଧାଇଁ ।

କି ଆବେଗ ତା'ର ହୃଦେ ପଶିଲା
ମରଣ ଦାସ କଲେ ସେ ବୀର,
ହସି ହସି ରଣେ ଜୀବନ ସାରିଲେ
ସପନ ରଇଲେ ଦୁଇ ଦିନର ।
ବଡ଼ ବାହାଦୁର ଆମ ସରକାର
ବାନ୍ଧି ନେଲେ ମହାତ୍ମାଙ୍କୁ ଯେ ବେଳେ,
ବାଧିଲା ମୋ' ଦେଶ ମଣିଷ ଭାଇଙ୍କୁ
ବିଦ୍ରୋହ ଉଠିଲା ଘରକୁ ଘରେ ।
ସୁପ୍ତ ଅଗ୍ନି ଯଥା ମରୁ ଏ ପରଶେ
ଶିଖା ଟେକି ଜଳେ କାୟା ପ୍ରସାରି,
ମାନବ ବିବେକେ ହିଂସା, ଦ୍ୱେଷ, ଘୃଣା
ଜାଗିଲା ଏସେନ ଉଠିଲା ଧରି ।

ମହାତ୍ମା ଲକ୍ଷଣ ମହାତ୍ମା ବନ୍ଧନ
ମହାତ୍ମା ଲୋଚକ ପାଏ ଲୁଟଣ,
ନୁହେଁ ଲକ୍ଷ ପାଇଁ ଉସ୍ତ କରେ ବିଶ୍ୱ
ଜନ୍ମି କୋଟି କୋଟି ଜଣା ଅନନ୍ତ ।

ସେହି ଅଭିଶାପେ-ମହାତ୍ମା ପ୍ରେରଣା
ତ୍ୟାଗିଲ ମଣିଷ ଚେତନା ଦ୍ୱାରେ,
ମଣିଷ ଜାତିର ବୀର ଭାଇମାନେ
ମୁକତି ସଂଗ୍ରାମେ ଉଠିଲ ଖରେ ।

ଧନ୍ୟ ସହଚରୀ ବିରୂପା ତଟିନୀ
ଯେଉଁଠାରେ ତୋର ଧରିଣ ହାତ,
ରଚିଲ ମିଳନ-କାଇପଡ଼ା କହେ
ସେ ଦିନ ବୀରର ସେ ରଣ କ୍ଷେତ୍ର ।

ଅହିଂସା ସମରେ କେତେ ଯୁଗ ବୀରେ
ଉଠିଲେ ମହାତ୍ମା ଉଦ୍ଧାର ପାଇଁ,
କିଏ ଜାଣିଥିଲ ହିଂସାସୀ ଉଠିବ
ଅହିଂସା କ୍ଷେତ୍ରରେ ବିପକ୍ଷ ହୋଇ ।

କାଇପଡ଼ା ପ୍ରତିବାସୀ ଇନ୍ଦୁପୁର କହେ
ସେ ଦିନର ବିଶେଷି ବ.ଣୀ,
ହିଂସାସୀ ଅଧମେ ଯା' କଲେ ସେ ଯୁଦ୍ଧେ
ଧରିବାର ନୁହେଁ ମୁହଁରେ ପୁଣି ।

ବୀରୋଚିତ ନୁହେଁ ସେ ବୀରର କର୍ମ
ଧରିଲେ ଗ୍ରାସିବ ମୁହଁରେ ପାପ,
କାହାର ନିଗ୍ରହେ ହିଂସା ବନାଇଛି
ତାହାଙ୍କୁ ନିଜର ଜୀବନ୍ତ ରୂପ ।

ପରଙ୍କ ପୁଷ୍ଟକ ଭାଇ ରକ୍ତ ଶୋଷି
ରଙ୍ଗ ମରତରେ କାର କି ହେଲ,
ରତିଟା ପାହିଲେ ମୁହଁ ଗ୍ରହାଁ ଗ୍ରହଁ
କିପରି ସେ ମୁହେଁ ଗ୍ରହାଁନ୍ତି ଭଲ ।

ଚମେ ଗଢ଼ା ନୁହଁ ସେ ମୁହଁ ତାଙ୍କର
ନାହିଁ ଭ୍ରାତୃ ପ୍ରୀତି, ଦେଶ ମମତା,
ହିଂସ୍ର ଜାନୁଆର ନିଜେ ସାଜି ନିଜେ
ହରାଇ ଅଛନ୍ତି ମାନବିକତା ।

କାଠ ଗଢ଼ା ମୁହଁ ଥାଏ କି କାହାର
ଭ୍ରାତୃ ପ୍ରୀତି ଆଉ ଦେଶ ମମତା,
କିଣିଛ ଯାହାକୁ ନଉ କରି ଅର୍ଥ
ଜାଣିବ ସେ କାହୁଁ ଏ ସବୁ କଥା ।

ସେ ଅର୍ଥେ ମିଶିଛି କେତେ ଦୁଃଖୀ ଲୁହ
କେତେ ମୂଲିଆଙ୍କ ଦେହ ରକତ,
ପର କ୍ରୀତଦାସ ସେ ଅର୍ଥ ରକତ
ପିଇ କେତେ ଦିନ ବଂଚି ରହେ ତ ?

ମୁକର ଦିନେ ତା' ଦର୍ପ ଗଉରବ
ଚୂର୍ଣ୍ଣୀଭୂତ ହେବ ଏହି ଧରରେ,
ଧରକୁ ଯେ ସଗ ମଣିଛନ୍ତି ଆଜି
କାଲି ସେ ପଡ଼ିବେ ସେହି ସଗରେ ।

ବିଶ୍ୱଜେତା ବୀର ଆଲେକଜାଣ୍ଡର
ମଲ ଗିତ୍ତ ହସ୍ତେ ସମନପୁର,
ଇତିହାସ କହେ ସାକ୍ଷୀ ତା'ର ଅଛି
ଯେ ହସ୍ତ କାଟିଲ ସହସ୍ର ଶିର ।

ଦୁଇଟି ଦିନକୁ ତୁଛାର ବଡ଼େଇ
ଦେଖାଇ କେତେ ଯେ ନାହାନ୍ତି ଯାଇ,
କାଲ ବକ୍ଷୁ ତାଙ୍କ ନାଁ ଲିଭିଲଣି
କେତେ ଦର ଲିଭ ଗଲେଣି ହୋଇ ।

ପ୍ରିୟ ସେନା ସେ ଯେ ସରକାରଙ୍କର
ହେଲେ ହେଁ ସେ ଯେ ଦେଶ ଭାଇ,
ଅର୍ଥ ପ୍ରଲୋଭନେ ଭୁଲି ହିଂସ୍ର ଅଛି
ନିଜଙ୍କର ନିଜ ଦେଶର ଭାଇ ।

ଧିକ ଶତଧିକ ଉଚ୍ଚ ଆଶା ଧରି
ଭାଇ ରକ୍ତ ପିଇ ବଡ଼ ହେବାର,
ଯା ଠାରୁ ବଳି କି ବଡ଼ ପାପ ଅଛି
ପ୍ରତ୍ୟୟ ହୁଏ ନି ମୋ'ର ବିଶ୍ୱର ।

ଦୀନ ଦୀକ୍ଷା ନେଇ ଭିକ୍ଷା ଜୀବୀ ହୋଇ
ଜୀଇଁ ରହିବା ସଂସାରେ ଭଲ,
ପର ତଣ୍ଡି ଚିପି ବଡ଼ ହେବା ନୁହେଁ
ନିଆଁ ସେ ପୋଡ଼ିବ ଘର ସଂସାର ।

କାଇପଡ଼ା ଠାରେ ବସି ଅଛି ସଙ୍ଘ
ଦେଶ ନେତାଙ୍କର ଉଦ୍ଧାର ପାଇଁ,
ଉଦ୍ଧାର ପ୍ରସ୍ତାବ ଆଗତ ହେଉଛି
କେତେ ବା ମୁହଁରୁ କଳନା ନାହିଁ ।

ସଭିଙ୍କ ମାନସ ଏକତ୍ରିତ ଅଛି
ସେହି ଏକାଗ୍ରତା ସାଧନା ପଥେ,
କିପରି ମହାତ୍ମା ପାଇବେ ଉଦ୍ଧାର
ନେତାଏ କିପରି ଫେରିବେ ସତେ ?

କାଳ ଅନସରି ଦଳ ବଳ ଧରି
ପୋଲିସ ଫଉଜ ଆସିଲ ମାଡ଼ି,
ବନ୍ୟା ପ୍ରପୀଡ଼ିତ ଉଚ୍ଛ୍ୱାସ ଆବେଗେ
ନଦୀ ଯଥା ଧାଏଁ ତା' ପଥ ଭଙ୍ଗି ।

ସଂଖ୍ୟାରେ ସେମାନେ ଦୁଇ-ଦଶ ହେବେ
ସମସ୍ତେ ପ୍ରତାପୀ ଅହିଂସା ଅରୀ,
ମୁହଁରେ ତାଙ୍କର ପ୍ରଳୟର ହସ
ସତେ କି ସାରିବେ ପ୍ରଳୟ କରି ।

ଅଦୂରରୁ ଅସ୍ତ୍ର ରଣ ଝଣ ସ୍ୱର
କମ୍ପାଇ ଥରିଲ ସଙ୍ଘର ଛାତି,
ସଭ୍ୟମାନ ନେତ୍ର ଦେଖିଲ ତାହାକୁ
କେହି ନୁହେଁ ମାତ୍ର ତା'ର ଅଗତି ।

ବୁକୁରେ ଭରିଲ ହର୍ଯ୍ୟକ୍ଷ ସାହାସ
ମନରେ ବାନ୍ଧିଲ ଆଣ୍ଡ ସଂଯମ
ମୃତ୍ୟୁ ଜୟ ନାମ ଯେ ବୀର ଧରିଛି
ତାରେ କି କରିବ ଆସୁନା ଯମ ।

ଅସ୍ତ୍ରଧାରୀ ଫୌଜ ନିକଟେ ପହଞ୍ଚି
ଲଙ୍ଘିଲେ ମୁକତି ଜାତୀୟ ସଙ୍ଘ,
କଳା ପାହାଡ଼ର ବାଇଦ ପରଶେ
ଅଙ୍ଗ ଭଙ୍ଗ ହେଲେ ଯେପରି ଦେବା ।

ସଭିଙ୍କୁ ଘଉଡ଼ି ସେମାନଙ୍କ ମଧ୍ୟୁ
ମାର ସାତୋଟିଙ୍କୁ ଅନର୍ଥ ମଣି,
ଲୁହା କଡ଼ି ଦେଇ ବାନ୍ଧି ଘେନିଗଲେ
କାଗ ଅଭିମୁଖେ ଶୁଣାଇ ବାଣୀ ।

କମ୍ପିଲା ଆକାଶ କମ୍ପିଲା ମରତ
କମ୍ପିଲା ପାତାଳ ଚର ଅଚର,
ଆତଙ୍କ ଜାଗିଲା ପ୍ରାଣୀ ପ୍ରାଣପୁରେ
ସ୍ପନ୍ଦନ ଜାଗିଲା ବୀରଙ୍କୁ ବାର ।

ପୂତ ଅନୁଷ୍ଠାନ ଭର୍ଗ ନାହିଁ କେହି
ବଳ ଦର୍ପ ବିକ୍ରି ଭୂଇଁ ବିଶ୍ୱରେ,
ସମସ୍ତ ମରିଛି ଅଛି ଅନୁଷ୍ଠାନ
ଚିରଞ୍ଜିବୀ ହୋଇ ରଙ୍ଗ ଭବରେ ।

କହବେ ବିରୂପା ଦର୍ଶିନୀ
କି ହେଲ ସେଠାରୁ ସମର କଥା,
ମୋ ଦେଶ ଭାଇଙ୍କ ବନ୍ଧନ ବୃତ୍ତାନ୍ତ
ମୋ' ବୁକେ ଭରିଛି ଅମାପ ବ୍ୟଥା ।

କହ ଥରେ କହ ବ୍ରାହ୍ମଣୀ ନଈ ତୁ
ଭାଇଙ୍କ ଉଦ୍ଧାର ପାଇଁ କି ହେଲ ?
କେଉଁ ବୀର ଭାଇ ଉଦ୍ଧାର ପାଇଁ କି
ସପନ ଜୀବନ ବିସର୍ଜି ଥିଲ ।

ପୁନଃ ସଙ୍ଗଠନେ ଛତର ଯେତେକ
କର୍ତ୍ତବ୍ୟ ମନରେ କଠିଣ ସ୍ଥିର,
ବନ୍ଦୀ ଭାଇଙ୍କର ଉଦ୍ଧାର ନିମିତ୍ତ
ପ୍ରାଣପାତ ଚିନ୍ତା କରିଲେ ସାର ।

ମରତରେ ମୋହ ମରତି ଯେତେଛି
ରହିଛି ବିଶ୍ୱରେ ଜୀବନ ନେଇ,
ହୋଇଥିଲେ ତାହା ବାସନା ନଥାଇ
ଫୁଲ କି ନଥାନ୍ତା ଅଲଗା ହୋଇ ।

ରକତେ ରକତେ ଭେଦିଛି ସେ ମୋହ
ରକତରେ ତା'ର ମିଳିଛି ରୂପ,
ରକ୍ତ ଧରି କେହି ମୋହ ଛାଡ଼ି ନାହିଁ
ଧନୀ-ନିରିଧନ ଦେଶର ରୂପ ।
ସେହି ମୋହ ଧରି ଚାଲିଛନ୍ତି ଆଜି
ଉଦ୍ଧାର କରିବେ ବନ୍ଦୀ ଭାଇଙ୍କୁ,
ଦେଖାଇ ଦେବେ ସେ ସାହାସ କିପରି
ଦେଖାଇ ଦେବେ ସେ ଲୁହାର ବୁକୁ ।
ହାଟ ସାହି ବୀର ମାୟାଧର ଭୂୟାଁ
ସେ ଥାଟେ ହୋଇଛି ଅଗ୍ରଣୀ ସେନା,
ଜୀବନ ଯଜ୍ଞରେ ମୃତ୍ୟୁର ଆହୂତି
ଦେବାକୁ ଟିକେ ସେ ଭୟ କରେନା ।
ସେରପୁର ବୀର ସାଆଁଟି ମଲ୍ଲିକ
ନବ ବିବାହିତା ବଧୂକୁ ଭୁଲି,
ବୀର ମାୟାଧର ସଙ୍ଗ ସେ ରଚିଛି
ଭାଇକୁ ଉଦ୍ଧାରି ଆଣିବ ବୋଲି ।
ଆହା ସେ ବାସ୍ତବ ସୁନ୍ଦରୀ ଲଳନା
ପରଶ ନିଧିକୁ ମୁରୁଛି ଦେଇ,
ଏତେକେ ମରତ ଜୀବନ ଯଜ୍ଞରେ
ଧାଇଁ ଆସେ ମୃତ୍ୟୁ ଆହୁତି ଦେଇ ।
ଏତେ କେ ମରତ ଜୀବନର ମୋହ
ଛାଡ଼ିଅଛି କହ କେଉଁ ଦେଶରେ,
ଥିଲେ ଥାଇପାରେ ସେ ସରସ ଧନ
ମୋର ଏ ଭରତ ଜନମ ଭୂଇଁରେ ।
ଶିଶୁ ସୁକୁମାର ତନୟ, ଭରିଜା
ଛାଡ଼ି ଗଉତମ ପଶିଲେ ବଣେ,
ବିଷ୍ଣୁପ୍ରିୟା ତେଜି ଚୈତନ୍ୟ ମାତିଲେ
ଖୋଳ କରତାଳେ ବିଭୁଙ୍କ ପ୍ରେମେ ।
ଏ ଦେଶର ଧୂଳି ହୋଇଲା ପବିତ୍ର
ଦେଶ ଶ୍ମଶାନ ହୋଇଲା ତୀର୍ଥ,

ମହାତ୍ମା ଧରମ ସାଧୁର କରମ
କେତେବେଳେ ହୋଇ ନାହିଁ ତା' ବ୍ୟର୍ଥ ।
ମନେ ପଡ଼ି ଯାଏ ପୁରୁବର କଥା
ଆଜି ତା' ବିସ୍ମୟ ଦେଉଛି ଆଣି,
ପତି ସଙ୍ଗେ ପତ୍ନୀ ଜୀବନ ବିତାଏ
ଏହି ସେ ଭରତ ମୋ' ପୁଣ୍ୟଭୂମି ।
ଚିତୋରର ରଣା ଭୀମ ସିଂହ ଯେବେ
ଯବନର କରେ ହୋଇଲେ ହତ,
ତାଙ୍କରି ଚିତାରେ ଜହର ସାଧିଲା
ବୀର ସାଧ୍ୱୀ ପଦ୍ମା ହୋଇ ଗର୍ବିତ ।
ଅପୂର୍ବ କୀରତି ହିନ୍ଦୁ ରମଣୀର
ରହିଛି ଭରତ ଶ୍ମଶାନେ ଆଜି,
ସେ କଥା ପଢ଼ିଲେ ବିସ୍ମୟ ସାଗରେ
ବୁଡ଼ିଯାଏ ମୋର ମାନସ ରଜି ।
ଛାର ପକ୍ଷୀ ଲାଗି ରଜା ଶିବି ଦେଲା
ମାଂସ କାଟି ଦେହୁ ଅକାତରେ,
କର୍ଣ୍ଣ ଦେଲା ତାର ପୁଅ ମୁଣ୍ଡ କାଟି
ଅତିଥି ଭୁଞ୍ଜିବ ବୋଲି ତା' ପୁରେ ।
ଏହିପରି କେତେ ଜୀବନ ଆହୂତି
ଦେଇଛନ୍ତି ପର ମଙ୍ଗଳ ପାଇଁ,
ସାମାନ୍ୟ ଏ ମୋହ ଏଡ଼ି ନ ପାରିବ
ତା' ଦେଶ ଭାଇଙ୍କ ଉଦ୍ଧାର ପାଇଁ ।
ସାନନ୍ଦ ସାଇଁ ଓ ହାଡ଼ି ବନ୍ଧୁ ପଣ୍ଡା
କୃଷ୍ଣ ନଗରର ଦିଓଟି ବୀର,
ଦେଶ ଭାଇ ବନ୍ଦୀ ଖବର ପାଇଣ
ଗଗ-ସାଣେ ସେ ହେଲେ ଜର ଜର ।
ମହାପୁଣ୍ୟ ଫଳେ ପ୍ରୟାଣ ରଚିଲା
କ୍ଷୁଦ୍ର ସ୍ରୋତସ୍ୱତୀ ସାଗର ପଥେ,
ଭବ ଭେଦା ଭବ ଭୁଲି ଯାଇ ଚିତ୍ତ
ରଚିଲା ମିଳନ ସାଗର ସାଥେ ।

ମାୟାଧର ଭୂୟାଁ, ସାଉଁଟି ମଳିକ
ସାଙ୍ଗ ଲଭିଣ ଏ ଦିଓଟି ବୀର,
ଉଦ୍ଧାର କରିବେ ବନ୍ଦୀ ଭାଇ ଯାଙ୍କୁ
ନିଶ୍ଚୟ ଶପଥ ନେଲେ ଏ ବାର ।

ଏ ପଥେ ଦିଶୁଛି ପୁଣ୍ୟର ସଙ୍କେତ
ଏ ପଥେ ଫେରିବ ଭାଇ ଆମରି,
ଏ ପଥରେ ରହୁ ନ ରହୁବା ପ୍ରାଣ
ମାଟି ନେଉ ମାଟି ପ୍ରାଣ ଆମରି ।

ପୂର୍ବର ଶୋଣିତ ଭାରତୀୟ ଦେହେ
ଆଜି ମଧ୍ୟ ରହିଅଛି ଜୀବିତ,
ଦେଖନ୍ତୁ ଫଉଜ ଚିହ୍ନନ୍ତୁ ଫଉଜ
ଆମ୍ଭେମାନେ ନୋହୁଁ କେଭେ ଅକୃତ ।

ଲୋଡ଼ା ହେଲେ ପ୍ରାଣ ଦେଇପାରୁ ଆମେ
ଅଜ୍ଞାତରେ ଦେଶ ମଙ୍ଗଳ ପାଇଁ,
ଆମ ପକ୍ଷେ ନୁହେଁ ସେ ଆଶ୍ଚର୍ଯ୍ୟ କିଛି
ଆଗରୁ ଗର୍ଜୁଛି ଦେଶର ଭୂଇଁ ।

ପ୍ରାଣପାତ ପାଇଁ କୁଣ୍ଠିତ ନ ହେବୁ
ସେଥିପାଇଁ ଆମେ ଅଛୁ ତିଆର,
ଜୀବନ ଯେ ଦେଶ ପରପାଇଁ ବିକେ
ଆମ୍ଭେମାନେ ଯେଣୁ ତା'ର କୁମର ।

ଯଉଁ ଯାଉଁ ପଥେ ପଡ଼ିଲକ ପାଟ
ସେହି ପାଟକ କୁଳେ ଫଉଜସେନା,
ଦାବୀ ରଖିଛନ୍ତି ସେ ସାତ ବୀରଙ୍କୁ
ବନ୍ଦୀମାନଙ୍କର ଯେ ଦଶଗୁଣା ।

ପହଞ୍ଚି ମାଗିଲେ ଥାଟର ସେନା ଯେ
ତା' ଭାଇମାନଙ୍କର ମୁକତି ଭିକ୍ଷା,
ତମେ ପର ଆମ ଏ ଦେଶର ଭାଇ
ନେଇଛ ଅର୍ଥର ରାକ୍ଷସ ଦୀକ୍ଷା ।

ମାଗୁ ଆମ୍ଭେମାନେ ବନ୍ଦୀ ଭାଇଙ୍କର
ବନ୍ଧନ ଅଚିରେ ଦିଅ ଫିଟାଇ,

ତୁମ୍ଭେମାନେ ଆଜି ଅର୍ଥର ସେବକ
କାଲି ତୁମେ ହେବ ଆମର ଭାଇ ।
ତୁଚ୍ଛ ଅର୍ଥ ମୋହ ଗ୍ରାସି ଅଛି ଆଜି
କାଲିକି ଥିବ ଆଉ କି ରହି,
ଆଜି ତୁମେ ଅରି ଆମ୍ଭମାନଙ୍କର
କାଲି ତୁମେ ମିତ୍ର ଆମର ଭାଇ ।

ଖାଇଛି ଯାହାକୁ ଅର୍ଥ କାଳକୂଟ
ଶୋଣିତେ ଯାହାର ଭେଦିଛି ତାହା,
ନିଜସ୍ୱ ଆଉ କି ତାହାର ରହିଛି
ସେ ବିଷ କାଟେଣି କାଟୁଛି ଯାହା ।

ଅହିଂସା ମୁକତି ସମରେ ତାଙ୍କର
ନାହିଁ ଚିଳେ ହେଲେ ମନ ମାନେନା,
ହିଂସାର ପ୍ରେରଣା ଯା' ପ୍ରାଣେ ରହିଛି
ହିଂସାର ସମର ସେହି ଲୋଡ଼େନା ?

ରାଗ ରକ୍ତ ଶିର ନୟନ ପିତୁଳା
ନଗ୍ନର ଫଉଜ କହିଲେ ନାହିଁ,
କିପରି ନେବ ହେ ଦେବୁ ନାହିଁ ଆମେ
ମଣି ମୋତିର ଯେ ରାଜ ବୋହି ।

ଜନତା ଫଉଜ ବାଧ୍ୟ କଲେ ତାକୁ
ଦେବାକୁ ହେବ ମୋ' ଦେଶର ଭାଇ,
ଜନତା ଶକତି ପାଖେ ତୁଚ୍ଛ ତୁମ
ଶକତିର କିଛି ଶକତି ନାହିଁ ।

ଏହି ଗିରେ କମ୍ପି ଉଠିଲେ ଫୌଜର
ସର୍ବାଙ୍ଗ ଶରୀର ବୀର ବିକ୍ରମେ,
ଗୁଳି ବାରୁଦର ଜଡ଼ ଶକତିକୁ
ଦେଖାଇ ଦେବାକୁ ହେବ ଏ କ୍ଷଣେ ।

ଶ୍ରାବଣ ଅସର ବରଷାର ଧାରେ
ବନ୍ଧୁକର ଗୁଳି ବର୍ଷିଲେ ଅଟି,
ଅହିଂସାରେ ହିଂସା କ୍ଷଣକେ ଘୋଟିଲା
କ୍ଷଣକେ ଘୋଟିଲା ପ୍ରଳୟ ଘଡ଼ି ।

ସେହି ପାଟ* ସେହି ନାଆଁ ଖଣ୍ଡ ସାକ୍ଷୀ
କହିବ ସେ ଦିନ ସମର ବାଣୀ,
ବଜ୍ର ଗରଜନ ଆକାଶ କମ୍ପନ
ବନ୍ଧୁକ ରଚିଲା ଯେ ପ୍ରତିଧ୍ୱନି ।

ଶକତି ସଂଗ୍ରାମେ ସେନା ମାୟାଧର
ଯେତେ ହେଁ ତାଙ୍କୁ କହିଲା ମନାଇ,
ସାଉଁଟି ମଲ୍ଲିକ, ହାଡ଼ିବନ୍ଧୁ ପଣ୍ଡା
ଆନନ୍ଦ ସ୍ୱାଇଁଙ୍କୁ ସଙ୍ଗରେ ନେଇ ।

ଅହିଂସାର ଗୀତା ମୁକତି ପ୍ରାର୍ଥନା
ନ ନେଇ କାମକୁ ହେଲେ ପ୍ରବୃତ୍ତି,
ସଙ୍ଗିନୀ ବନ୍ଧୁକେ ସନମାନ ଦେଲେ
ମାଟିର ସରକୁ ମାଟିରେ ବଳି ।

ସଙ୍ଗିନୀ ଭୂଷାରେ ରହି ମାୟାଧର
ମାଟି ପାଇଁ ଭୀଷ୍ମ ଶର ଶଯ୍ୟା କରିଲା,
ତାର ସେ ବ୍ରତର ଭୀମ ପରାକାଷ୍ଠା
ଶତ୍ରୁ ମୁଖେ କାଳି ଲଗାଇ ଦେଲା ।

ରେ ଫଉଜ ତୁମେ ମୋ' ଭାଇକୁ ନେଇ
ମୋ' ପ୍ରାଣକୁ ନେଇ କିସ କରିବ,
ହସି ହସି ଯିଏ ମରଣକୁ ବରେ
ତା'ରେ କେ ଅସାଧ୍ୟ ଆଉ ଦୁଷ୍କର ।

ପାପ ପ୍ରାୟଶ୍ଚିତ ଭୋଗିବ ମୁକର
ଦିନେ ହେବ ଆ'ର ସତ ବିଚାର,
ଲଣ୍ଡୁଆ ଓକିଲ ନାହାନ୍ତି ନା ସେଠି
ସତକୁ ମିଛରେ କରିବେ ପାର ।

ସେହି ଦରବାରେ ପୁଣ୍ୟର ବିଚାର
ପାପର ଯେ ଶାସ୍ତି ବିଧାନ ଅଛି,
ସେହି ଦରବାରୁ ମୁକୁଳି ଯିବାକୁ
ଲଣ୍ଡ ଦରକାର ହୁଏନା କିଛି ।

ଧର୍ମ ନିକିତିରେ ତଉଲ ହେଉଛି
ନୂତାଏ ପାକେ ପଡ଼ଇ ଧଗ,
ଅଦୃଶ୍ୟ ନୟନ ଦେଖୁଛି ଶୂନ୍ୟରେ
ଲୁଗ୍ରଇବାକୁ ତୋ' ନାହିଁନା ସ୍ୱର ।

ପୂର୍ଣ୍ଣ ମାଆ ତୋ'ର ଈପ୍‌ସିତ ବାସନା
ଘେନ ମୋର ଶେଷ ବଳି ରକତ,
ଦିଅ ମୋ' ଭାଇଙ୍କୁ ବୀରର ସାହାସ
ତୋତେ ସେ କରନ୍ତୁ ଚିର ଶକତ ।

ଥାଆ ଦେଶ ଭାଇ ଥାଅ ପ୍ରିୟ ପଲ୍ଲୀ
ଥାଆ ଲୋ ବ୍ରାହ୍ମଣୀ ପୂସେ ଲୀଳା,
ଥାଅ ପ୍ରିୟ ପାଟ ଥାଅ ମୋ'ର ସାଥି
ସରିଲେ ଯାଉଛି ଜୀବନ ଲୀଳା ।

ମିଶାଇ ଦିଅ ଏ ମାଟିର ପିଣ୍ଡକୁ
ମିଶୁ ତନୁ ପଦ ଧୂଳି ମାଟିରେ,
ଥାଆନ୍ତୁ ସେ ପଥେ ମୋର ଦେଶ ଭାଇ
ଭସ୍ମୀଭୂତ ମୋ'ର ଭୀଷ୍ମ ଦେହରେ ।

ଏକେ ପରେ ତା' ପ୍ରାଣ ଗହୁଁଥିଲା
ଆଉ କିଛି ମାତ୍ର ହେଲା ନିରୋଧ,
ରକତର ବାନ୍ତି ଚଳାଏ ହୋଇଛି
ପ୍ରାଣବାୟୁ ତା'ର ହେଲା ନିରୋଧ ।

ପଡ଼ିନି ପିନ୍ଧୁଛା ଗ୍ରହିଁଛି ଆଖିରେ
ଅପେକ୍ଷା କରିଛି ସେ ସ୍ୱାଧୀନତା,
ମାଟିର ଦେହକୁ ମାଟିରେ ଦେଇଛି
ସପନେ କରୁଛି ଦେଶର ଚିନ୍ତା ।

ରହୁଁ ରହୁଁ ଗୁଳି ବର୍ଷିଲା ଅପାର
ପଡ଼ିଲା ସାଉଁଟି, ଆନନ୍ଦ ପାଞ୍ଜି,
ହାଡ଼ିବନ୍ଧୁ ପଣ୍ଡା ପ୍ରୟାଣ ରଚିଲା
ତୁଚ୍ଛ ଜୀବନର ମୋହକୁ ଭୁଲି ।

---

* ହଳଦିଆ ପାଟ—କଳାମାଟିଆ

କେତେ ମରତରେ ସ୍ୱର୍ଗର ସପନ
ସପନେ ସପନେ ଚହିଲ ଖାଲି,
ତୁଚ୍ଛ ମରତେ ସ୍ୱର୍ଗର ସପନ
ନିମିଷକେ ଦେଇ ନିଆଁରେ ଢାଳି ।
ମରି ନାହାଁନ୍ତି ସେ ସଶରୀରେ ଚେଳି
ଅଶରୀର ଦେହ କରନ୍ତି ଖେଳା,
ସ୍ୱାଧୀନତା ପଥେ ଶୂନ୍ୟରେ ବୁଲନ୍ତି
ଭାରତେ ଦେଖିବେ ସ୍ୱାଧୀନ ଲୀଳା ।

( ୫ )

ସେ ଯାଇଛି ମରତ ସେପାରେ
ତା' ସାଥିକୁ ସଙ୍ଗରେ ଧରି,
ଆଣିବାକୁ ନବ ଯୁଗାନ୍ତର
ଆଣିବାକୁ ନନ୍ଦନର ଶିରୀ ।
ଭାରତ ମରତ ହେବ ତା'ର–
ପାଇଁ ଅଳକା ନଗରୀ,
ସେ ଯାଇଛି ଆଣିବାକୁ ନବ–
ଯୁଗାନ୍ତର ଆଉ ନନ୍ଦନର ଶିରୀ ।
ଅପେକ୍ଷା କରିଛି ତା'ରେ ତା' ସାଥିକୁ
ଭାରତର ବୀର,
ଦେଉ ସେ ତା'ର ଶକତି
ମୁକ୍ତି ପଥେ ହେଉ ଅଗ୍ରସର ।
ଦେଉ ସେ ସଙ୍ଗିନୀ ମୁନ ଦେଉ
ସେ ତା' ସାଥିର ବନ୍ଧୁକ,
ଯେଉଁଥିରେ ପ୍ରାଣ ଦେଲେ ବୀରେ
ସେହି ହେଉ ଏ ଜାତିର ସ୍ମାରକ ।
ଦେଉ ସେ ତା'ର କାମନା
ଦେଉ ତା'ର ବୁକୁର ସାହାସ,
ଏ ଜାତିର ମୁକତିର ଦ୍ୱାରେ
ଫେରିଆସୁ ପୂର୍ବର ପୌରୁଷ ।

ତା' ଲାଗି ଶ୍ମଶାନ ହେଲା
ଦେବ ଭୂମି ମହାତୀର୍ଥ ସ୍ଥାନ,
ତା' ଲାଗି ସେ ପାଟ ହେଲା
ପୂତ ନୀର ଗଙ୍ଗାର ସମାନ ।
ତା' ଲାଗି ତା' ପ୍ରିୟ ହାଟ ସାହି
ହେଲା ଆଜି ଅମର ଭୁବନ,
ତା' ସାଥିର ଲାଗି ସେ ଦୁଇଟି
ହେଲା ଆଜି ଦେବତାର ସ୍ଥାନ ।
ତା' ଲାଗି ତା' ସାଥି ଲାଗି ଜାଇପଡ଼ା
ହେଲା କୁରୁକ୍ଷେତ୍ର,
ତା' ଲାଗି ତା' ସାଥି ଲାଗି ଗଡ଼ା ହେବ
ନବୀନ ନକ୍ଷେତ୍ର ।
ଧ୍ରୁବର ଯେ ସ୍ତୁତି ହୋଇ ପୂଜା ହେବ
ଶୂନ୍ୟ ଆକାଶରେ,
କିମ୍ବଦନ୍ତୀ ରହିବ କାଳକ ମାଟି ଦେହେ
ମାଟି ମା' ବକ୍ଷରେ ।
ପୁର ପଲ୍ଲୀ ନଗର ପ୍ରାନ୍ତରେ
ଚଳନ୍ତି ଚିତ୍ର ଚତେ ତାର ଛବି,
ଭାରତର ବୀର ଦେଶେ ସ୍ୱପ୍ନ
ଅଛି ନାହିଁ ପୁରେ ପ୍ରାଣ ରବି ।
ତାଙ୍କୁ ସ୍ନେହ ଢାଳୁ ପ୍ରୀତି
ଦେଶ କୁଳେ ଏ ଜାତି ପ୍ରାଣରେ,
ଦେଉ ସେ ବୀର ସାହାସ
ଭରି ଏଇ ଜାତିର ବୁକୁରେ ।
ଦେଉ ସେ ମହତ ଦୀକ୍ଷା
ଅନୁସାରୁ ଏ ଭଗ ଜ୍ୟୋତି,
ପୂରୁ ମା'ର ମହତ କଳ୍ପନା
ତା'ର ଶିକ୍ଷା ମହତରେ ମାତି ।
ଥାଉ ତା'ର ସାଥି ମେଳେ ସେ ଯେ
କି ଦେବି ମା ନାହିଁ କିଛି ଧନ,

|| ବୀର ଗୀତିକା ||

ଶୂନ୍ୟ ଖାଲି କଳନାର ଅଛି
କରୁ ଘେନ ତୋ' ଅଭିନନ୍ଦନ ।
ଆନନ୍ଦରେ ହସୁ ମା' ଭାରତ
ସାଗର କଲ୍ଲୋଳ ଗାଉ ଜୟ,
ଗାଉ ପର୍ବତ-କାନନ-ପଲ୍ଲୀ-ପଦା-ବିଲ
ତା'ରି ନାମେ ଅମୃତର ଜୟ ।
ଅମୃତ ସନ୍ତାନ ମରେ ନାହିଁ
ସଦାବେଳେ ସେ ଅମର ଜ୍ୟୋତି,
ତା'ର ଠାରେ ପୂରୁ ମୋ' ବାସନା
ମରତରେ ମୁଁ ଅମର ଜାତି ।

●●●

## ଭାବ ଭାଇ ଭାରତବାସୀ

ଭାବ ତୁମେ ଭାଇ ଭାରତବାସୀ
ଭାଟ କାରିଗର ମୂଲିଆ ଚାଷୀ
ଆମେ କାହିଁଥିଲେ, କାହିଁ ହେଲେଣି ଆସି
ସବୁ ଗଗନରେ ଆମରି ପତାକା
ଉଡ଼େ ପୃଥିବୀର ହୋଇ ପ୍ରିୟ ସଖା
ସବୁ ଦେଶ ନିଧି ଆସି ଆମ ଘରେ
ଶଙ୍ଖୁଳି ଆମକୁ ହୁଅନ୍ତି ଖୁସି । ୧ ।

ପ୍ରତି ଦରବାରେ ଆମ ଦୂତ ଯାଇ
ଆମ ମନ କଥା କହନ୍ତି ବୁଝାଇ
କରନ୍ତି ବିଚାର, ଆମ ପ୍ରତିନିଧି
ବିଶ୍ୱ ପଞ୍ଚାୟତ ସଭାରେ ବସି । ୨ ।

ଖଣିଜ ବଣିଜ ଉନ୍ନତି ପାଇଁକି
ସବୁ ଜାତି ଲୋକେ ଆସନ୍ତି ଏଠିକି
ଦେଶର ଖବର କରଇ ପ୍ରଚାର
ବେତାର ବାର୍ତ୍ତା ଦିବସ ନିତି । ୩ ।

ଆମ ନୀତି ଯଦି ଆମେ ଯିବା ଭୁଲି
ଅଳସ ବିଳାସ ପଙ୍କେ ଯା'ର ବୁଡ଼ି
ଆମ ସ୍ୱାଧୀନତା ନିଶ୍ଚେ ହେବ ବୃଥା
ମାଟି ତଳେ ଯିବା ସଭିଏଁ ମିଶି । ୪ ।

ଆମ ହାତେ ଆଜି ଆମ ଘର ଚାବି
ଯେ ବଳେ ହାସଲ କଲେ ଆମ ଦାବି
ସେ ବଳେ ପୃଥ୍ୱୀକି ବଞ୍ଚାଇବା ଆମେ
ଭାଟ କାରିଗର ମୂଲିଆ ଚାଷୀ । ୫ ।

ଯୋଜନ ଯୋଜନ ବାଜିଲା ବାଜଣା
ଫଳିଲା ଯା' ଫଳ ସଭିଙ୍କି ତା' ଜଣା
କୋଡ଼ିଏ ବରଷ ଗଲୁଁ ଗଲୁଁ ଗଲା
ନୋହିଲା କୋଡ଼ିଏ ଲାଭ କାହାରି । ୬ ।

ମେଣ୍ଟାଇବା ଲାଗି ପେଟର ଗରଜ
ବଢ଼ି ବଢ଼ି ନିତି ଚାଲିଛି କରଜ
ଋଣର ବନ୍ଧାରେ ପଡ଼ିଲାଣି ଦେଶ
ଆମେ ଦଖଲ ବନ୍ଧାରେ ଯିବା ସରି । ୭ ।

●●●

* ସ୍ୱାଧୀନତାର ୧୦ ବର୍ଷ ପରେ ଏହି କବିତାଟି ରଚିତ ।

## ବନ୍ଦିତ ବିଧାନେ

ବିହିତ ବିଧାନେ ପାରିବୁ କି ଆମେ ତବ ଆଗମନେ ବନ୍ଦାଇ
ଫୁଲ ହାରଟିଏ ଗୁନ୍ଥି ରଖିଥିଲୁ ଦେଲୁ ସିନା ଗଳେ ପିନ୍ଧାଇ
। ପଦ ।

ସତ୍ୟପ୍ରିୟ ତୁମେ ସତ୍ୟର ସେବକ
ସତ୍ୟ ଲାଗି ଫୁଟେ ମର୍ତ୍ତ୍ୟର ଆଲୋକ
ସତ୍ୟ ଲାଗି ରବି ସତ୍ୟ ଲାଗି ଶଶୀ
ଉଠନ୍ତି ଅନ୍ଧାର ତୁଟାଇ । ୧ ।

ପ୍ରଳୟ ମୁଖରୁ ରଖିବାକୁ ଧରା
ସତ୍ୟାଗ୍ରହୀ ଜଣେ ଆସିଥିଲେ ପରା

ସତ୍ୟ ପଥ ତଳେ ପ୍ରାଣ ଢାଳିଦେଲେ
ଗଲେ ନୂଆ ବାଟ ଦେଖାଇ । ୨ ।

ଧନ ବଳଠାରୁ ମନ ବଳ ବଡ଼
ମନରୁ ଜନମ ଦୁନିଆର କଳ
ମନ ବଳେ ବୁଲେ ମହାକାଶଯାତ୍ରୀ
ଶୂନ୍ୟେ ଶୂନ୍ୟେ ଯାନ ଉଡ଼ାଇ । ୩ ।

ମନ ସୁମନର ବାସନା ପାଇଁ କି
ଆମ ଅନୁଷ୍ଠାନ ଅଛି ମଥା ଟେକି
ଯେତେ ନିଃସ୍ୱ ହେଲେ ବିଶ୍ୱ ହିତ ଲାଗି
ଦେବୁ ଛାତି ହାଡ଼ ପଟାଇ । ୪ ।

● ● ●

## ଆସ ସହଯୋଗୀ ଭାଇ

ଆସ ହେ ଆସ ହେ ସହଯୋଗୀ ଭାଇ
ଆସ ସମବାୟ ସାଥି,
ତୁଟିଛି ଅନ୍ଧାର ଫୁଟିଛି ମନ୍ଦାର
ପାହିଛି ଭଉଁସ ରାତି । ୧ ।

ସ୍ୱାଧୀନତା ସୂର୍ଯ୍ୟ କନକ କିରଣ
ଖେଳେ ସବୁଁ ଘରେ ଘରେ,
ଇନ୍ଦ୍ରଧନୁ ରଙ୍ଗା ପତାକା ଆମର
ଦୋଳେ ଆଜି ହର୍ଷ ଭରି । ୨ ।

ଭଟ କାରିଗର ମଜୁରିଆ ଯନ୍ତ୍ରୀ
ହାକିମ ଅମଲ ଯେତେ,
ପୁଲିସି ସିପାହି ସେନାପତି ସୈନ୍ୟ
ଭବି ଦେଖ ବାରେ ଚିତ୍ତେ । ୩ ।

ଜନନୀ ଆମର ଏଇ ଜନ୍ମଭୂମି
ମାଟି ତ ଆମର ମାଆ,
ଜନନୀ ଠାରୁ ଜନମିଲୁ ଦେହକୁ
ଶୁଦ୍ଧ ଭର ଯାକେ ସାହା । ୪ ।

ହୋଇ ଏକ ମନ କରି ଏକ ଧ୍ୟାନ
ଡାକ ଶୁଣ ଆଜି ତା'ର,
ମାନବ ଜନମ ସାର୍ଥକ ହୋଇବ
ହେବା ଭବସିନ୍ଧୁ ପାର । ୫ ।

ସହଯୋଗ ଠାରୁ ନାହିଁ ବଡ଼ ଯୋଗ
ପଡ଼ୋଶୀ ଠୁଁ ନାହିଁ ସାଥି,
କର୍ମ ଠାରୁ ଧର୍ମ ବଡ଼ ନାହିଁ କିଛି
କର୍ମ ଗଢ଼ିଅଛି ଜାତି । ୬ ।

● ● ●

## କାହିଁ ଅଛ ହରି

କାହିଁ ଅଛ ହରି ଆସ ହେ ମୁରାରି
ଆସ ସୁଦର୍ଶନଧାରୀ
ଚକିତ ଅନ୍ତରେ ଗୁହାରିଛି ଭାରତ
ଏ ଘୋର ସଙ୍କଟୁ କର ପାରି
ହେ ମୁରାରି...........

ଆସ ହିମାଚଳେ ଆସ ସୀମାଚଳେ
ଆସ ଗଙ୍ଗାକୂଳେ ଆସ ମେ' ଉହଳେ
କୋଟି କୋଟି ସୁତ
ଚିର କରି ପୂତ
ଦେଖନ୍ତୁ ସେ ରୂପ ଡୋଳେ । (୧)

ଶୁଭୁ ଋଷି ବେଦ ଓଁ କାର ଶବଦ
ଉଠୁ ଯେ ଶକ୍ତି ସଞ୍ଚରି
ପଞ୍ଚ ନଦୀ ଜଳ ହେଉ ସମୁଜ୍ଜ୍ୱଳ
ଛୁଟୁ ସେ ସାମ୍ୟ ଲହରୀ । (୨)

ସତ୍ୟ ପୀର ରୂପ ଦେଖା ସେ ସ୍ୱରୂପ
ଗଦା ଶଙ୍ଖ ଚକ୍ରେ ସାଜି
ଅଗଣିତ ସୁତ ଅଙ୍କ କରି ପୂତ
ପଡ଼ନ୍ତୁ କୋଳରେ ଆଜି । (୩)

ସବୁ ଭେଦାଭେଦ ସୁଦର୍ଶନ ଛେଦ
ବାଉବେଇ ପୂଜା ପାଉ
ଯୀଶୁଙ୍କ କୀରତି ବଢ଼ାଉ ପୀରତି
ପର ପାଇଁ ପ୍ରାଣ ଯାଉ । (୪)

ଆସୁ ସେ ବ୍ରାହ୍ମଣ ଚଢ଼ୁ ପଦ୍ମାସନ
ପୂତ ଉପବୀତ ଅଙ୍ଗେ
ଶୁଭ୍ର ଘଣ୍ଟା ଗେଇ ପୂଜୁ ନଉକୋଇ
ଧୂପ ପୁଷ୍ପ ଝୁଣା ଗନ୍ଧେ । (୫)

ଆସୁ ଆର୍ଯ୍ୟବାଳା ଧରି ପଦ୍ମମାଳା
ପିନ୍ଧାଉ କେଉଁ ଶୁଭ ଫଳେ
ରକ୍ଷ ତା' ସତୀତ୍ୱ ତା' ଜାତି ମହତ୍ୱ
ତବ ସୁଦର୍ଶନ ତଳେ । (୬)

ପଢ଼ୁ ମନୁ ସ୍ମୃତ ଗୀତା ଭଗବତ
କୁ ଶିକ୍ଷା ପ୍ରତନା ଯାଉ
ଧରି ଭୀଷ୍ମ ଧୈର୍ଯ୍ୟ ପାଳୁ ବ୍ରହ୍ମଚର୍ଯ୍ୟ
ଘୁଞ୍ଚୁ ଏ ଦୁର୍ଭିକ୍ଷ ଗହୁ । (୭)

● ● ●

## କନକ ଗିରି

ଆହେ ମୋର କନକ ଗିରି
ଛଡ଼ାଇ ଆଣିଛୁ ସରଗ ଶିରି
କେଉଁ କର୍ମ ଫଳେ କେଉଁ ତପ ବଳେ
ମା'ଙ୍କୁ ବସିଛୁ କୋଳରେ ଧରି । ୧ ।

ସେହି ଅଟେ ଦୁର୍ଗା ସେହି ଅଟେ ଚଣ୍ଡୀ
ଅଶେଷ ଦୁର୍ଗତି ପାରେ ସେହି ଖଣ୍ଡି
ସେହି ସରସ୍ୱତୀ ଦିଏ ଶୁଭ ମତି
ପାପୀ ଜନଙ୍କୁ ସେ ପାରଇ ତାରି । ୨ ।

ତୁ ଅଟୁ ପଥର ମୁଁ ଅଟେ ମନୁଷ୍ୟ
ତୁ ଅଟୁ ତାଙ୍କର ସଦା ପଟ୍ଟ ଶିଷ୍ୟ
ତୁ ତ ଅନୁଭବୀ ଦେଖୁ ତାର ଛବି
ଯୁଗ ଯୁଗ ଧରି ନୟନ ଭରି । ୩ ।

ଆମ ଲାଗି ସେହୁ ଭୋଗଇ ଯାତନା
ଆମ ମୁକ୍ତିଲାଗି କରଇ ସାଧନ ।
ନ ଖାଇ ଆହାର ଧରିଛି ଶରୀର
ଆମେ ଭାବୁ ତାଙ୍କୁ ମନୁଷ୍ୟ ପରି । ୪ ।

ମନେ ମନେ ଯେତେ କରୁଛୁ ପ୍ରତିଜ୍ଞା
ଭାଙ୍ଗି ତୁଟି ସବୁ କରୁଛୁ ଅବଜ୍ଞା
କ୍ଷମାଦିଏ ଦୋଷ, ହୁଏ ନାହିଁ ରୋଷ
ଆମକୁ ଦେଖେ ସେ ସନ୍ତାନ ପରି । ୫ ।

ତାଙ୍କ ପାଦତଳେ ଏତିକି ପ୍ରାର୍ଥନା
ପୂରଣ କରୁ ସେ ଆମର କାମନା
ଜନମେ ଜନମେ ଆସୁ ତାଙ୍କ ସାଥେ
ଖେଳ ଦେଖିଯାଉ ସଂସାରୁ ଫେରି । ୬ ।

● ● ●

## ମାଗୁଣି ମୋହର ଏତିକି

ମାଗୋ
ମାଗୁଣି ମୋହର ଏତିକି.... (ପଦ)
ଦଦରା ଘରକୁ ସଜାଡ଼ି ଦେଏ ମା
ନ ଡ଼ରେ ଆଉ ମୁଁ କାଳ ରାତିକି
ପାଞ୍ଚ ଖଣ୍ଡି କଡ଼ି ପଚିଶି ବରଗା
ସବୁତ ଅଲଗା ସବୁ ଦରଭଙ୍ଗା
ପୁରୁଣା ଚୂନରେ ଗାର ନାହିଁ ଆଉ
ଛାଡ଼ି ରହେ ତଳେ ନେଇ ମାଟିକି । ୧ ।

ଛାତରୁ ପଡ଼ଇ ଟିପି ଟିପି ପାଣି
ଦେଖି ମୋ ହୃଦୟ ହୋଇଯାଏ ହାଣି
ପରଘରେ ମୁଣ୍ଡ ଗୁଞ୍ଜିବି ମୁଁ କେତେ
କେତେ ଦମ୍ଭ ଆଉ ରଖି ଛାତିକି । ୨ ।

ମୋହଠାରେ ଯେବେ ନାହିଁ ତୋର ଦୟା
କି ଲାଗି ଗଢ଼ିଲୁ ମୋର ଏହି କାୟା
ମାୟାରେ ପକାଇ
ଛାୟା ଦେଖାଉଛ
ଭୁଲାଇ ଦେଉଛୁ ଆମ ମତିକି । ୩ ।

● ● ●

## କହ ସ୍ୱାଧୀନତା

କହ ସ୍ୱାଧୀନତା, କହ ମୋତେ ଆଜି ସତକରି
ମୁହଁରେ ତୁମର ନାହିଁ କିଆଁ ହସ
ସରମରେ ସଦା ଯାଅ ସରି (ପଦ)
ଆମ କର୍ମ ଫଳ ଭୋଗୁଛୁ ଆମେ
ମୁହେଁ ଯା' କହିଲୁ କଲୁ ନାହିଁ କାମେ
ଭୋଗ ଲାଳସାରେ କ୍ଷମତା ଆଶାରେ
ନିଜ ବେକେ ନିଜେ ଦେଲୁ ଛୁରୀ । ୧ ।
ପ୍ରକୃତି ଛାତିରେ ମାରିଲୁ ଗୋଇଠା
ଦୁଇ ଫାଙ୍କ କଲୁ ନିଜ ଜନ୍ମଭିଟା
ତୁମରି ମୁଣ୍ଡରେ ଅଠା ବୋଳି ଆମେ
ଭାଇ ଭାଇ ବାଦ ଆଣିଲୁ ବରି । ୨ ।
ମହାମାନବଙ୍କୁ କଲୁ ଆମେ ହତ୍ୟା
ଦେଶରେ ବୁହାଇ ହିଂସା ଦ୍ୱେଷ ବାତ୍ୟା
ତୁମ ଶ୍ୱାସରୁଦ୍ଧ କରିବା ପାଇଁକି
ବିବେକକୁ ଆମେ ଦେଇ ସାରି । ୩ ।
ଦୁଇ ନାବେ ଦେଇ ଆମ ଦୁଇ ପାଦ
ଆମ ନୀତିକି ତ କଲୁ ଆମେ ଶ୍ରାଦ୍ଧ
ଦେଶ ଭବିଷ୍ୟତ ଅନ୍ଧାର ହୋଇବ
ନ ବସିଲେ ତୁମେ ଦମ୍ଭ ଧରି । ୪ ।
ଯେଉଁ ନୀତି ବଳେ ପେଉଁ ତପ ଫଳେ
ଓହ୍ଲାଇ ଆସିଲେ ତୁମେ ଏ ଶୟନେ
ମାନବ ଜାତି ତ ହୋଇବ ବିଧ୍ୱସ୍ତ
ନ ଚାଲିଲେ ସେହି ନୀତି ଧରି ।

● ● ●

## ଆବେଗ ନୟନେ ରହିଛି ଚାହିଁ

କହରେ ମୋତେ କିଏ ସେ ତୋତେ
ଆବେଗ ନୟନେ ରହିଛି ଚାହିଁ,
ସେ ଯେ ମହାତ୍ମା ଯାହାର ଆତ୍ମା-
ଝୁରୁଅଛି ସାରା ପୃଥିବୀ ପାଇଁ । ଘୋଷା ।

ତେସ୍ତରୀବରଷ ଜରଜୀର୍ଣ୍ଣ ଶରୀ
ଭାବିଲେ ଯା' କଥା ଲୁହ ପଡ଼େ ଝରି,
କେଉଁ କାରାଗାରେ ଅଜ୍ଞାତ ଅନ୍ଧାରେ
ରଖିଅଛି ତାଙ୍କୁ ଶତ୍ରୁ ଲୁଚାଇ । ୧ ।

ନେପୋଲିୟନ ପରି ନ ଜାଣେ ସମର
ନୁହେଁ ସେ ତ ଟୋଜ, ନୁହେଁ ହିଟଲର,
ତଥାପି ବ୍ରିଟିଶ ସାମ୍ରାଜ୍ୟ ଥରଇ
ଲଙ୍ଗୁଳି ଫକୀର ବେଶ ଥନାଇ । ୨ ।

ଅହିଂସା ତାହାର ନବ ଯୁଗ ଟ୍ୟାଙ୍କ୍
ସତ୍ୟଟି ତାହାର ଅସରନ୍ତି ବ୍ୟାଙ୍କ
ପ୍ରେମ ବୋଇତଟି ବାହି ଚାଲିଛି ସେ
ଭାରତବାସୀଙ୍କୁ ପାଶେ ବସାଇ । ୩ ।

ଆସୁଛି ସେ ଦିନ ଆସିବ ନିକର
ଭବେ ନ ରହିବେ ନରହନ୍ତା ନର,
ଗୋଟିଏ ଶାସନ ଚାଲିବ ପୃଥ୍ୱୀରେ
ଆମରି ପତାକା ହାତେ ଉଡ଼ାଇ । ୪ ।

● ● ●

## ବିଦାୟ ସଙ୍ଗୀତ

ବନ୍ଧୁ !

ବିଦାୟ ଦଅ ହସି ବିଦାୟ ନିଅ
ଭାଳି ଅତୀତକୁ ବ୍ୟଥିତ ନୁହଁ
ଚାହିଁଲ ବେଳକୁ ସବୁରି ଆଡ଼କୁ
ସମ୍ଭାଳି ନ ପାରୁ ଆଖିରେ ଲୁହ । ପଦ ।

ଦୁନିଆଟା ଗତି ଜୀବନ ସପନ
ଦଣ୍ଡକ ପାଇଁ ତ ଦେଖା ଦରଶନ
କହୁଁ କହୁଁ ଗଲା ସାତୋଟି ବରଷ
ଟାଣିନେଲ କାଳ ଟାଣୁଆ ସୁଅ । ୧ ।

ପଦେ ଅଧେ କେବେ କହି କଡ଼ା କଥା
କାହା ମନେ ଯେବେ ଦେଇଥାଉଁ ବଥା
ଦେବତା ପାଶୋରି ହୃଦରେ ନ ଧରି
ତମେ ଆମେ ଏକା ମାଆର ପୁଅ । ୨ ।

ପରଖିବା ପାଇଁ ଆମ ମନ ମୁନ
ରଚିଲେ ବିଦେଶୀ ଘାୟର ଶାସନ
ସେ ଶାସନ ଏବେ ହେଇ ଅବସାନ
ପଡ଼ିବ ଅଛନ୍ତ ଶାସନ ନିଅଁ । ୩ ।

କଷ୍ଟବଟ ଘୁଗ ଆମ ସ୍ୱାଧୀନତା
ଝୋଳିବ ପୃଥ୍ୱୀରେ ଦିନେ ତାର ମଥା
ମନ ପ୍ରାଣ ଢାଳି ଜାମ ଜଳେ ମିଳି
ଦମ୍ଭ ହେବ ତାର କଅଁଳ ସିଅ । ୪ ।

(ଭଲ) ସଂସାରେ ନ ମିଳେ ଖୋଜଣା ପ୍ରଶଂସା
(ଦେଖ) ଯୀଶୁ ଚଇତନ ଗାନ୍ଧିଜୀଙ୍କ ଯଶା
ତମ ମନ ଦେବ ତମକୁ ହିଁ ଶାନ୍ତି
କର୍ତ୍ତବ୍ୟ ପଥରେ ଆଗୁଆ ହୁଅ । ୫ ।

କହିବାର ଆଜି ନାହିଁ ଆଉ କିଛି
ଘଟିବାର ଯାହା ଘଟିତ ଯାଉଛି
ଯିବୁ ଯେଉଁ ପୁରେ ଥିବୁ ଯେତେ ଦୂରେ
ନ ଭୁଲିବୁ କେବେ ତୁମରି ସ୍ନେହ । ୬ ।

● ● ●

## କଲିଜା କରିବୁ କୋରବାନ୍

ଆମେ ହିନ୍ଦୁ ଆମେ ମୁସଲମାନ
ଆମେ ଭରତୀୟ ଭଗ୍ୟବାନ୍
ଭରତ ଆମର ଜନ୍ମମାଟି
ଭରତ ଆମର ଜୀବନ ସାଥି
ଜବର ଆମର ହିନ୍ଦୁସ୍ଥାନ । ପଦ ।

ବଉଦ୍ଧ ଜଇନ ଶିଖ୍ ଇଶାଇ
ପାରଶୀ ପଠାଣ ଆମେ ଭଇ ଭଇ
ଛପନ କୋଟି ତ ଜନତା ଆମର
କେହି ନୁହେଁ ବଡ଼ କେହି ସାନ । ୧ ।

ମନ୍ଦିର ଯେଉଁ ମାଟିରେ ଗଢ଼ା
ମସ୍‌ଜିଦ୍ ସେହି ମାଟିରେ ଛିଡ଼ା
ଗିରିଜା ଭିତରେ ଗୁରୁଦ୍ୱାର ପରେ
ଅଛନ୍ତି ସବୁଠି ଭଗ୍ୟବାନ । ୨ ।

ଆମ ହିମାଳୟ ଆମରି ଗଙ୍ଗା
ଆମ ସିନ୍ଧୁ ନଦୀ ନୋହିବେ ଭଙ୍ଗା
ମନ ଗଢ଼ା ଚିହ୍ନ ଧ୍ୱଂସ କରିବୁ
ଯାଉ ଏ ଜୀବନ ଯାଉ ଜାନ୍ । ୩ ।

ଆମରି ଏକତା ନାଶିବ ଯିଏ
ଆମରି ବଇରୀ ହୋଇବ ସିଏ
ଦେଶରୁ ତାହାକୁ ତଡ଼ିବା ପାଇଁକି
(ଆମେ) କଲିଜା କରିବୁ କୋରବାନ୍ । ୪ ।

● ● ●

# ଶାନ୍ତ ଦୂତ

ପେଟ ଯେବେ ମୋର ବିପ୍ଳବ କରେ
ଲେଖି ପାରେ ନାହିଁ କବିତା,
ଝିଷିପିତା ଲଗେ ଯେତେ ମିଠା କଥା
କହୁ ଆସି ମତେ ବନିତା ।

ନିଆଁ ପେଟରୁ ଉଠିଲେ ଜଳି
ଗଲ ଖଇ ସଙ୍ଗେ କରେ କଳି
ବାପ ନଗ୍ରହେଁ ପୁଅର ମୁହିଁ
ମା' ନ ଦେଖେ ଝିଅର ଲୁହ
ଶାସିତ ଶାସକକୁ ଦିଏ ନିକାଲି
ମୂଲିଆ ମାଲିକକୁ ଦିଏ ହକାଳି
ପେଟ ଯେବେ ମୋର ବିପ୍ଳବ କରେ
ଲେଖି ପାରେ ନାହିଁ କବିତା
ବିଷିପିତା ଲଗେ ଯେତେ ମିଠାକଥା
କହୁ ଆସି ମତେ ବନିତା ( ଘୋଷା )

ପେଟ କ୍ଷୁଧା ଜ୍ୱାଳା କରିଲେ ପାଗଳ
ମୋର ସର୍ବାଙ୍ଗ ଉଠଇ ଥରି,
ସବୁ ଅଙ୍ଗଯାକ ଚିପି ମୋର ବେକ
ଗଗେ ବସନ୍ତି ବିଗ୍ଭର କରି ।

ହାତ କହେ ପାଦ ଗ୍ଭଲ ଗଲ ଆଗ
ସବୁ ଟ୍ରେଜେରୀ କରିବା ଲୁଟି,
ଅମାର ଖମାର ଯେତେ ଦୁନିଆର
ନିଜ ଦଖଲକୁ ନେବା ଯୁଟି ।

କରିବା ବିଧାନ ସବୁ ଧନ ଧାନ
ଦେବା ଉଚିତ ନ୍ୟାୟରେ ବାଣ୍ଟି,
କାହାକୁ ଯୋଗାଇ ଦିଲ୍ଲୀ ସିଂହାସନ
କାହା ବେକକୁ ନ ଦେବା କାଟି ।

ନିକମା ଲୋକଙ୍କୁ କାମେ ଲଗାଇବା
କେହି କଣେ ନ ରହିବେ ବସି,
ହଳ କାମ କରି ଚଳିବ କିଏ ସେ
କିଏ ଚଳିବ କଲମ ଚଷି ।
ଅନ୍ଧ ଛୋଟା ପଙ୍ଗୁ ବୁଢ଼ା ରୋଗୀଣାକୁ
କେବେ ଅକାଳେ ନଦେବା ମାରି ।
ମନୁଷ୍ୟର ପୁଅ ମନୁଷ୍ୟର ଝୁଅ
ତାଙ୍କୁ ଦେଖିବା ମଣିଷ ପରି ।
ସବୁ ଭେଦା ଭେଦ ସବୁ ବାଦ ଛେଦ
ଆମ ସମାଜକୁ ଦେବା ଗଢ଼ି,
ଗୋଟିଏ ନୀତିରେ ଗୋଟିଏ ଭିତିରେ
ଆମେ ଦୁନିଆଁକୁ ଦେବା ଗଢ଼ି ।

( ୨ )

ହାତର ବୟାନ ଶୁଣି ଶୁଣି କାନ
ତାକୁ ଠଉଲି କରଇ ହସି,
ଗାଲୁଆ ଲୋକର ବାରବାଟୀ ଗ୍ଭଷ
ଖାଲି କଥାରେ ଯାଆନ୍ତି ଚଷି ।
(ତମ) ମରମ କହିଲେ ସରମ ଲଗିବ
କେତେ ରଚନା ଏମିତି ଲେଖ;
ନିଜେତ ନିଜକୁ ବଂଚନା କରିଛ
ଏହି ଆଖି ଗଲ ମୋର ସାକ୍ଷୀ,
ବକ୍ତୃତା କେତେ ବକପରି ବସି
ଏଠି ଶୁଣିଛି ମୁଁ ଏକ ଧ୍ୟାନେ ।
ଛଣା ପିତଳକୁ ସେରେ ଆଉଟିଲେ
କେବେ ସୁନାକି ମିଳିବ ଧାନେ ।
ପ୍ରସ୍ତାବ ପରେ ପ୍ରସ୍ତାବ ମାନ
କେତେ ପରସ୍ତ ପରସ୍ତ ହୋଇ,

ଖବର କାଗଜ କୋଡ଼େ ଆଖି ମେଲି
ଠୁଙ୍ଗା ଭିତରେ ପଡ଼ନ୍ତି ଶୋଇ ।

● ● ●

( ୩ )

ଆଖି କହେ ଭାଇ ଜାଳ ଜଳ ଗୁହିଁ
(ନିତି) ମନେ ମାରେ ମନ ବଥା,
ସତ କହିଲେ ତ ଭାତ ନ ମିଳିବ
ଫାଶୀ ଖୁଣ୍ଟରେ ଝୁଲିବ ମଥା ।
ଆସି ସ୍ୱାଧୀନତା ଆସିଲାତ ନାହିଁ
ରହୁ କେତୁ ପରି ହେଲା ଦେଶ,
ଅମୃତ ଆଶାରେ ଟକ ଟକ ହୋଇ
ଜାଲୁ ମହତ ଆମର ଶେଷ ।
ଜନନୀ ଆମର କାଙ୍ଗାଳୁଣୀ ହୋଇଛି
କିଛି କାନକୁ ନ ଶୁଭେ ତାର,
ଗାନ୍ଧୀ ସୁଭାଷଙ୍କୁ ହଗଇଲା ଦିନୁ
ଛିଣ୍ଡି ଯାଇଛି କଣ୍ଠର ହାର ।
ଯୋଜନା ଯୋଜନା ବାଜଣା ବଜାଇ
ଯାହା ଫଳିଲା ସଭିଙ୍କି ଜଣା,
ବାହାରେ ବାହାରେ ବାରଅଣା ଗଲା
ବାକି ଜାମ ହେଲା ଷୋଳଅଣା ।
ମଣିଷ ଏ ଦେଶେ ଲଙ୍ଗଳା ରହନ୍ତି
ହୋଇ ବଣ ପଶୁଠାରୁ ହୀନ ।
ଦୁନିଆଁ ପାଖରୁ ଅଲଗା ରହିଣ
ରାତ ଭିତରେ କାଟନ୍ତି ଦିନ,
ପାଞ୍ଚ ହଜାରିଆ ହାକିମଙ୍କ ପାଇଁ
ଗଢ଼ା ଚାଲିଛି ବଙ୍ଗଳା ଘର,
ହେଜଣ ଟଙ୍କିଆ ଅମଲାଙ୍କ ପିଲା
ନିତି ବାରଣ୍ଡାରେ ହରବର ।
ସାଆନ୍ତିଆ ବୁଦ୍ଧି ନଗଲା ଯେ ନ ରୁ
ହେଲା ପାହାନ୍ତିଆ ବେଳ ଆସି,
ଧରି ବସିଲାଣି କଷଟି ପଥର
କାଳ ସଭିଙ୍କି ଦେଖିବ କଷି ।
ଭାଗ୍ୟ ଭାଗ୍ୟ କହି ଲୋକକୁ ଭୁଲାଇ
ଲୋକ ଦିଅଇ ଲୋକକୁ ଠକି ।
ଧର୍ମ ବଳ କେତେ ଧର୍ମ ଦୁହାଇ ଦେଇ
ମନ ମୀନଙ୍କୁ ଧରନ୍ତି ଛକି ।
ଜନତା କଷଣ ବେପାରୀ ଶୋଷଣ
ଦକେ ଶୋଷନ୍ତି ଆମର ଲହୁ,
ଗଣତନ୍ତ୍ରୀ ନାମ ଧରି କେତେ ଜଣ
ସେତ ବେପାରୀଠୁଁ ବଳି ପାହୁ ।
କଳିଙ୍ଗ ଦେଶର ଚାଷୀ କାରୀଗର
ଆମ ଅମଲା ମୂଲିଆ ଗୁଟ,
ଉପରକୁ ସିନା ଧୋବ ଧଉଳିଆ
ଚିନ୍ତା ପିଠିରେ ବସାଏ ହାଟ ।
ଶହେ ଲୋକରେତ ଅଠସ୍ତରୀ ଜଣ
ଏଠି ନିପଟ ମୂରୁଖ ଗଣ,
କେତେ ପୁରୁଷରେ ଉଠିବ ଏ ଦେଶ
ଥରେ ମନେ ମନେ ଭାଇ ହେଜ ।
ବେପାର ପାଇଁ କି ବେପାରୀଏ ଆଣି
ଏଠି ବସାଇଥିଲେ ଯେ କଳ,
ପେଟ କଣ୍ଟାଟି ଏ ବଦଳିନି ତାର
ସେତ ଘୂରୁଅଛି ଅବିକଳ ।
ଶୋଷିବା ପାଇଁକି ଯେ ଆଇନି ଗଢ଼ା
ସେ କି ଲାଗିବ ପୋଷିବା କାମେ ।
ଅ ଫ ଳ ନ୍ତି ଗଛ ଫଳିବ କିପରି
ତୁଚ୍ଛା ଲୁଆଁ ବୁଲୁଅଛୁ ଆମେ ?
ଦେଶ ବଜେଟକୁ ଆଖି ପକାଇଲେ
ଆମ କଳିଙ୍ଗ ଉଠିବ ଥରି,
ରହଣ ବନ୍ଧକେ ରହିଅଛି ଦେଶ
ଯିବ ଦଖଲ ବନ୍ଧାରେ ସରି ।

କୋଟି କୋଟି ଟଙ୍କା ଯୁଦ୍ଧ ବର୍ଦ୍ଧିଗଲେ
ମୂକ ରହିଅଛି ପୂର୍ବବ ପରି,
ବଞ୍ଚିରହିବାକୁ ବାରଦ୍ୱାର ହେଲ
ଆମ ପେଟ ଲାଗି ଥାଳ ଧରି ।
ସୈନ୍ୟ ବିଭାଗରେ ଟଙ୍କା ଢଳା ହୁଏ
ପାଖ ପଡ଼ିଶା ଭାଇଙ୍କ ଡରି,
ଆଣବିକ ବୋମ ତିଆରି ଦିନରୁ
ସୈନ୍ୟ ବଞ୍ଚିରହିଛନ୍ତି ମରି ।
ଗାନ୍ଧୀ ବୋଲି ଜଣେ ଆସିଥିଲେ ଲୋକ
ଆମ ଦେଶକୁ ସ୍ୱାଧୀନ କଲେ,
ପ୍ରତି ରକ୍ତ ବିନ୍ଦୁ ଢାଳି ଆମ ଲାଗି
ଶେଷେ ଆମରି ହାତରେ ମଲେ ।
ବିଶ୍ୱ ଭବିଷ୍ୟତ ଲବି ଲବି ସଫା
ବାଟ ଦେଖାଇ ଦେଇ ସେ ଗଲେ ।
ସବୁ ଇତିହାସ ପର୍ଦ୍ଦି ପର୍ଦ୍ଦି ଶେଷେ
ସତ୍ୟ ଅହିଂସାକୁ ସାର କଲେ ।
ଆମ ଯୁବକଙ୍କ 'ଯୁ'ଭ ଅଛି ଭଲ
ସିଏ ପାରନ୍ତେ ପୃଥିବୀକି ଗଢ଼ି,
ଭେକଧାରୀଙ୍କର ଭେଳିକିରେ ଭୁଲି
ଖାଡ଼ି ଢାଲରେ ଯାଆନ୍ତି ପଡ଼ି ।
ଦେଖି ବିଶ୍ୱଦଶା ଉଡ଼ିଯାଏ ହଂସା
ନିତି ଗଢ଼ାଗଲେ ବିଷବୋମା ।
ଜୀବ ଜଗତକୁ ଜାଳିବା ପାଇଁ କି
ରଚି ନାଗାସାକି ହିରୋସୀମା ।
ଜାତିସଂଘ ଛାତି ଥକୁଅଛି ନିତି
ବଞ୍ଚେ ଆପଡ଼ା ଥାପଡ଼ି କରି,
ଯେ ଯାହା ଖଞ୍ଜରେ ବାଟ ଜାଟୁଛନ୍ତି
ସାନ ବଡ଼ଙ୍କୁ ରହିନ୍ତି ଡରି ।
କାଗଜ କଇମେ ଭରି ଦେଉଛନ୍ତି
ଖାଲି ମୁହଁରେ କହନ୍ତି ଶାନ୍ତି,
କାମରେ ତ କାହିଁ ଦେଖାଯାଉ ନାହିଁ
ଏଠି କହାଏ କି ଅବା କ୍ରାନ୍ତି ।

ନିଜ ନିଜ ଜିଦ ନ ଛାଡ଼ନ୍ତି କେବେ
କେହି ଏ ଭବେ ମନୁଷ୍ୟ ପାଇଁ.
ମନୁଷ୍ୟ ଜାତିଟା ଧ୍ୱଂସ ପାଇ ପଛେ
ଯେଝା ନୀତି ଲାଗି ସିଏ ବାଇ ।
ନୀତି ନୀତି କହି ଦୁର୍ନୀତି ନଭଲେ
ସଫା ଯାଆନ୍ତି ସଭିଏଁ ବୁଡ଼ି.
ଝଡ଼ି ପୋକ ପରି ଉଡ଼ନ୍ତି ଆକାଶେ
ଏବେ ଡେଣା ପଡ଼ୁଅଛି ଛିଡ଼ି ।
ଏଭଳି ଦେଶରେ ଏ ଭଳି ପୃଥିବୀରେ
ଆମେ ଚଳିବା କିପରି କହ,
କ'ଣ କରିବା ପଞ୍ଚାକ୍ଷର ମନ୍ତ୍ର
ବସି ଜପିବାକି ଅହରହ ?
ପେଟ ଯେବେ ମୋର ବିପ୍ଳବ କରେ
ଲେଖିପାରେ ନାହିଁ କବିତା,
ବିଷିପିତା ଲାଗେ ଯେତେ ମିଠା କଥା
କହୁ ଆସି ମୋତେ ବନିତା ।

(୪)

କୁହଇ ବିବେକ କିଆଁ ବକ ବକ
ତମେ ହେଉଛ ବକ୍ତା ଦଳ,
କଥା ପରି କଥା ଚିନ୍ତା କଲେ ସିନା
କିଛି ଫଳିବ ସେଥିରୁ ଫଳ ।
ପ୍ରକୃତି କୁହବା ଭଗବାନ କୁହ
ଯିଏ ତିଆରିଛି ଏହି ସୃଷ୍ଟି,
ହାଜିରରେ ତାର ଆମ ନାଆଁ ଅଛି
ଅଛି ଆମଠାରେ ତାର ଦୃଷ୍ଟି ।
ଥରେ ଥରେ କରେ ଆମକୁ ପରୀକ୍ଷା
ସଦା ଆମକୁ ଭବେ ସେ ଗ୍ଲଟ,
ଅନ୍ଧାର ଘୋଟିଲେ ଆଲୁଅ ଜଳାଇ
ସଫା ବତାଇ ଦିଏ ସେ ବାଟ ।
ଆମରି ଭିତରେ ଆମରି ଦେହରେ
ଦିଏ ଆମ ଘରେ ଦେଖା ଆସି,

ଆମ ହିତ ଲାଗି ହୁଏ କେବେ ଦାଗୀ
କେବେ ବେକରେ ପିନ୍ଧଇ ଫାଶୀ ।
ଚରଖ ନୁହେଁ କି ପାଗଳା ନୁହେଁ ସେ
ଯିବ ମନରୁ ଆମର ଭୁଲି,
ନିଜ ଗଢ଼ା ସୃଷ୍ଟି ନିଜେ ଭାଙ୍ଗି ଦେବ
ବିନା କାରଣେ କରିବ ଧୂଳି ।
ଆଦିମ କାଳରୁ ଦେଖ ଇତିହାସ
କେବେ କରି ନାହିଁ ହତାଦର,
ଆମେ ପଛେ ତାକୁ ପର କରି ଥିବୁ
ସିଏ ଭାବେନି ଆମକୁ ପର ।
ବିଜ୍ଞାନ ବଳରେ ବଳି ହୋଇ ଦିନେ
ଆମେ ସାଗର ମନ୍ଥନ କରି,
ପାଇଲୁ ଅମୃତ ପହିଲି ଦଫାରେ
ପରେ ବାହାରିଲା ବିଷ ଝରି ।
ସେ ବିଷ ଜ୍ୱାଳାରେ ଜଳିଯାଇ ଥାନ୍ତେ
ଏଇ ଧରା ପାଇଥାନ୍ତା ଧ୍ୱଂସ,
ସେ ବିଷକୁ ପିଇ ହଜମ କରିଲା
ଜଣେ ଆମରି ଦେଶର ଶିଷ୍ୟ ।
ଆମ ଦେଶ କଥା ନ ଭାବ ଅଲଗା
ଆମେ ଦୁନିଆ ସାଥିରେ ଛନ୍ଦା,
ଦୁନିଆ ଲୋକଙ୍କ ଭାଗ୍ୟ ଡୋରି ସଙ୍ଗେ
ରହିଛି ଆମ ଭାଗ୍ୟ ଡୋରି ବନ୍ଧା ।
ଶଗଡ଼ ଚକର ଆକାର ପୃଥିବୀ
ଆଜି କାଣି ଆଙ୍ଗୁଠିର ମୁଦି,
ବିଜ୍ଞାନ ବଳରେ ପାରିଛି ମନୁଷ୍ୟ
କହୁ ଅସାଧ୍ୟ ସାଧନ ସାଧି ।
ଟିକିଲା କୁଳରେ ଫୁଟିଲେ ଶୋରିଷ
ଜଣା ଚିକାଗୋ ସହର ବାସୀ,
ଦି'ଦିନ ଭିତରେ ଦେଖିବ ଦୁନିଆଁ
ଯେବେ ରକେଟରେ ଯିବା ଭାସି ।
ପେଟ ଯେବେ ମୋର ବିପ୍ଳବ କରେ
ଲେଖି ପାରେ ନାହିଁ କବିତା,
କିଷିପିଟା ଲାଗେ ଯେତେ ମିଠାକଥା
କହୁ ଆସି ପଛେ ବନିତା ।

(୫)

ଉଡ଼ି ଉଡ଼ି ଯିବା ମହାକାଶ ଯାନେ
ଲେଟି ବିଜ୍ଞାନୀ ଭାଇଙ୍କ ଆଗ,
ଆମ ନୀତି ଆମେ ବୁଝାଇ ଲାଗିବା
ସିଏ ବୁଝନ୍ତୁ ପଛକେ ରାଗ ।
ବିଶ୍ୱ ଭବିଷ୍ୟତ ଭାବୁ ନାହିଁ ଭାଇ
ତାକୁ କଲଣି କେଉଁଠି ନେଇ,
ନିଜ ବଂଶ ତୁମେ ନିଜେ ବୁଡ଼ାଇଛ
ହୋଇ ଅପର କଥାରେ ବାଇ ।
ତମେ ଯେବେ ଜ୍ଞାନୀ ବୋଲାଅ ବିଜ୍ଞାନୀ
ତେବେ ପ୍ରଜାପତିଟିଏ ଗଢ଼,
କେତେ ଅଛି ତମ ବିଜ୍ଞାନର ବଳ
ଦେଖା କେତେ ଅଛି ତମ କାଢ଼ ।
ମାରି ମରାଇବା ବଡ଼ କଥା ନୁହେ
ବଞ୍ଚି ଦେଖାଇବା କଥା ବଡ଼,
ମନୁଷ୍ୟ ଆମେଟି ବୁଦ୍ଧି ବୁରି ଅଛି
ନୋହୁ ପଥର ପରାଏ ଜଡ଼ ।
ଜାଣିଲା ଦୁନିଆ ଆମେ ତ ଜାଣିଲୁ
ଆମ ଦେଶର ବିଜ୍ଞାନୀ ଜଣେ,
ବଡ଼ ଜିନିଷରୁ ଧାପେ ନଛୁଇଁ ସେ
ଖାଲି ହାତରେ ପଶିଲା ରଣେ ।
ତୋପ ବନ୍ଧୁକର ବଳ ହଟାଇଲା
ହେଲା ଅହିଂସା ନୀତିର ଜୟ,
ଯୁଗ ଯୁଗ ଲାଗି ମୃତ୍ୟୁ ମରିଗଲା
ଆଉ ନ ରହିଛି ତାର ଭୟ ।
ଆମେ ସବୁ ସବୁରି ସାଥୀ
ଆମେ ସବୁ ଗୋଟିଏ ଜାତି ।

● ● ●

# ସାତ ଦୀପ

## ସାଇବାବାଙ୍କ କଣ୍ଣାଣ

ଶଶୀ ଶେଖର ହେ ଯୋଗୀ ପ୍ରବର
ଗର୍ଜିଲ କି ପୁଣ ଯୋଗ ତୁମର
'ସତ୍ୟ ସାଇ' ନାମେ ଆସିଛ ଏ ଧାମେ
କରିବାକୁ ଏହି ମହା ଉଦ୍ଧାର । ପଦ ।

ଚମକି ଉଠିଲ ତୁମ୍ଭେ ତ୍ରିନୟନ
ଟଳମଳ ହେଲ ତୁମ୍ଭରି ଆସନ
ଡରିଲ ଗଗନ ଥରିଲ ପବନ
ଦେଖି ହିମାଳୟ ହେଲ କାତର । ୧ ।

ଏକ ମନ କରି ଦେବନା ଅସୁର
ମନ୍ଥିଥିଲେ ଦିନେ ସପତ ସାଗର
ବାହାରିଲ ବିଷ ସୃଷ୍ଟି ହେବ ଧ୍ୱଂସ
ଭାବି ଆତଙ୍କିତ ଏ ତିନି ପୁର । ୨ ।

ନୀଳକଣ୍ଠ ତୁମ୍ଭେ ସେ ବିଷ ପିଇଲ
ସୁରସୁର ନର ସଭିଙ୍କି ରଖିଲ
ସଭିଙ୍କର ପ୍ରାଣ ହେଲ ପୁଲକିତ
ସଂକଟ ସବୁରି ହୋଇଲ ଦୂର । ୩ ।

ବଳି ପଡ଼ିଲଣି ତାକୁ ଏ ସଙ୍କଟ
ପୃଥିବୀ ହେଲଣି ପ୍ରଳୟ ନିକଟ
ବିଷ ବାଷ୍ପ ଡରେ ସାର ପୃଥ୍ୱୀ ଥରେ
ଶଂକିତ ଆଜି ତ ନର ଅମର । ୪ ।

ମାରିଲେ ମାରିବ; ତାରିଲେ ତାରିବ
"ସତ୍ୟ ସାଇ" ରୂପେ ଆସି ଅଛ ଶିବ
ଦିଅ ଶୁଭ ବୁଦ୍ଧି ହେଉ ଚିତ୍ତ ଶୁଦ୍ଧି
ବର ଦିଅ ଆମେ ହେଉ ଅଜର । ୫ ।

● ● ●

## "ସତ୍ୟ ସାଇ" ବାବାଙ୍କ ସ୍ତବ

(ପ୍ରଭୁ) ଆସିଅଛ ତୁମ୍ଭେ ଅବତରି
ନର ମନୁଷ୍ୟର ଦେହଧରି
ତୁମର ବିଭୁତି ତୁମର ଶକତି
ବଦଳାଇ ଦେବ ଜନତାଙ୍କ ମତି
ଅଜ୍ଞାନ ଅନ୍ଧାର ନିଶ୍ଚେ ହେବ ଦୂର
ଅବିଶ୍ୱାସ ଯିବ ଅପସରି ।

ଅଣ ବିଶ୍ୱାସୀଙ୍କ ଆସିବ ବିଶ୍ୱାସ
ଅର୍ଦ୍ଧ ବିଶ୍ୱାସୀ ଏ ମାରିବେ ନିଃଶ୍ୱାସ
ବିଷ ବିଜ୍ଞାନରୁ ଅମୃତ ଝରିବ
ନରହନ୍ତା ନର ଯିବେ ଡରି ।

ଅସତ୍ୟ ଅନ୍ୟାୟ ହିଂସା ଅତ୍ୟାଚାର
ରୋଗ ଶୋକ ତାପ ଦୁଃଖ ହାହାକାର
ସବୁ ହେବ ଦୂର ନର ହେବେ ସୁର
କଳ କଳିଯୁଗ ଯିବ ସରି ।

ଉଡ଼ିବ ସତ୍ୟର ବିଜୟ କେତନ
ସାର୍ଥକ ହେବ ଏ ମାନବ ଜୀବନ
ସପ୍ତ ସିନ୍ଧୁ ପ୍ରାଣ ଉଛୁଳି ଉଠିବ
"ସତ୍ୟସାଇ" ପାଦ ଛୁଇଁ କରି ॥

● ● ●

## "ଶ୍ରୀମା" ଓ "ସାଇ ବାବା"

ବାପାଙ୍କୁ ଭେଟିଲି ମା'ଙ୍କୁ ଧରି
ଲଗେ ସବୁ କଥା କାହାଣୀ ପରି ।

ଆମ ହିତ ଲାଗି ହୁଏ କେବେ ଦାଗୀ
କେବେ ଜେଲରେ ପିନ୍ଧଇ ଫାଶୀ ।
ତଗଲ ନୁହେଁ କି ପାଗଳା ନୁହେଁ ସେ
ଯିବ ମନରୁ ଆମର ଭୁଲି,
ନିଜ ଗଢ଼ା ସୃଷ୍ଟି ନିଜେ ଭାଙ୍ଗି ଦେବ
ବିନା କାରଣେ କରିବ ଧୂଳି ।
ଆଦିମ କାଳରୁ ଦେଖ ଇତିହାସ
କେବେ କରି ନାହିଁ ହତାଦର,
ଆମେ ପଛେ ତାକୁ ପର କରି ଅଛୁ
ସିଏ ଭାବେନି ଆମକୁ ପର ।
ବିଜ୍ଞାନ ବଳରେ ବଳି ହୋଇ ଦିନେ
ଆମେ ସାଗର ମନ୍ଥନ କରି,
ପାଇଲୁ ଅମୃତ ପହିଲି ଦଫାରେ
ପରେ ବାହାରିଲା ବିଷ ଝରି ।
ସେ ବିଷ ଜ୍ୱାଳାରେ ଜଳିଯାଇ ଥାନ୍ତେ
ଏଇ ଧରା ପାଇଥାନ୍ତା ଧ୍ୱଂସ,
ସେ ବିଷକୁ ପିଇ ହଜମ କରିଲା
ଜଣେ ଆମରି ଦେଶର ଶିଷ୍ୟ ।
ଆମ ଦେଶ କଥା ନ ଭାବ ଅଲଗା
ଆମେ ଦୁନିଆ ସାଥିରେ ଛନ୍ଦା,
ଦୁନିଆ ଲୋକଙ୍କ ଭାଗ୍ୟ ଡୋରି ସଙ୍ଗେ
ରହିଛି ଆମ ଭାଗ୍ୟ ଡୋରି ବନ୍ଧା ।
ଶଗଡ଼ ଚକର ଆକାର ପୃଥିବୀ
ଆଜି ଜାଣି ଆଙ୍ଗୁଠିର ମୁଦି,
ବିଜ୍ଞାନ ବଳରେ ପାରିଛି ମନୁଷ୍ୟ
ବହୁ ଅସାଧ୍ୟ ସାଧନ ସାଧି ।
ଚିଲିକା କୂଳରେ ଫୁଟିଲେ ଶୋରିଷ
ଜଣା ଚିକାଗୋ ସହର ବାସୀ,
ଦି'ଦିନ ଭିତରେ ଦେଖିବ ଦୁନିଆଁ
ଯେବେ ରକେଟରେ ଯିବା ଭାସି ।
ପେଟ ଯେବେ ମୋର ବିପ୍ଳବ କରେ
ଲେଖି ପାରେ ନାହିଁ କବିତା,
କିଷିପିଚା ଲାଗେ ଯେତେ ମିଠାକଥା
କହୁ ଆସି ପଛେ ବନିତା ।

(୫)

ଉଡ଼ି ଉଡ଼ି ଯିବା ମହାକାଶ ଯାନେ
ଭେଟି ବିଜ୍ଞାନୀ ଭାଇଙ୍କି ଆଗ,
ଆମ ନୀତି ଆମେ ବୁଝାଇ ଲାଗିବା
ସିଏ ହୁଅନ୍ତୁ ପଛକେ ରାଗ ।
ବିଶ୍ୱ ଭବିଷ୍ୟତ ଭାବୁ ନାହିଁ ଭାଇ
ତାକୁ କଲଣି କେଉଁଠି ନେଇ,
ନିଜ ବଂଶ ତୁମେ ନିଜେ ବୁଡ଼ାଇଛ
ହୋଇ ଅପର କଥାରେ ବାଇ ।
ତମେ ଯେବେ ଜ୍ଞାନୀ ବୋଲାଅ ବିଜ୍ଞାନୀ
ତେବେ ପ୍ରଜାପତିଟିଏ ଗଢ଼,
କେତେ ଅଛି ତମ ବିଜ୍ଞାନର ବଳ
ଦେଖା କେତେ ଅଛି ତମ କାଢ଼ ।
ମ ରି ମରାଇବା ବଡ଼ କଥା ନୁହେ
ବଞ୍ଚି ଦେଖାଇବା କଥା ବଡ଼,
ମନୁଷ୍ୟ ଆମେଟି ବୁଦ୍ଧି ବୃତ୍ତି ଅଛି
ନୋହୁ ପଥର ପରାଏ ଜଡ଼ ।
ଜାଣିଲା ଦୁନିଆ ଆମେ ତ ଜାଣିଲୁ
ଆମ ଦେଶର ବିଜ୍ଞାନୀ ଜଣେ,
ବଡ଼ ଜିନିଷରୁ ଧାପେ ନଛୁଇଁ ସେ
ଖାଲି ହାତରେ ପଶିଲା ରଣେ ।
ତୋପ ବନ୍ଧୁକର ବଳ ହଟାଇଲା
ହେଲା ଅହିଂସା ନୀତିର ଜୟ,
ଯୁଗ ଯୁଗ ଲାଗି ମୃତ୍ୟୁ ମରିଗଲା
ଆଉ ନ ରହିଲା ତାର ଭୟ ।
ଆମେ ସବୁ ସବୁରି ସାଥୀ
ଆମେ ସବୁ ଗୋଟିଏ ଜାତି ।

● ● ●

## ସାଇବାବାଙ୍କ କଣାଣ

ଶଶୀ ଶେଖର ହେ ଯୋଗୀ ପ୍ରବର
ଗର୍ଜିଲ କି ପ୍ରଭୁ ଯୋଗ ତୁମ୍ଭର
'ସତ୍ୟ ସାଇ' ନାମେ ଆସିଛ ଏ ଧାମେ
କରିବାକୁ ଏହି ମହା ଉଦ୍ଧାର । ପଦ ।

ଚମକି ଉଠିଲ ତୁମ୍ଭେ ତ୍ରିନୟନ
ଟଳମଳ ହେଲ ତୁମ୍ଭରି ଆସନ
ଡରିଗଲ ଗଗନ ଥରିଲ ପବନ
ଦେଖି ହିମାଳୟ ହେଲ କାତର । ୧ ।

ଏକ ମନ କରି ଦେବନା ଅସୁର
ମନ୍ଥିଥିଲେ ଦିନେ ସପତ ସାଗର
ବାହାରିଲା ବିଷ ସୃଷ୍ଟି ହେବ ଧ୍ୱଂସ
ଭବି ଆତଙ୍କିତ ଏ ତିନି ପୁର । ୨ ।

ନୀଳକଣ୍ଠ ତୁମ୍ଭେ ସେ ବିଷ ପିଇଲ
ସୁରାସୁର ନର ସଭିଙ୍କି ରଖିଲ
ସଭିଙ୍କର ପ୍ରାଣ ହେଲ ପୁଲକିତ
ସଂକଟ ସବୁରି ହୋଇଲ ଦୂର । ୩ ।

ବଳି ପଡ଼ିଲଣି ତାକୁ ଏ ସଙ୍କଟ
ପୃଥିବୀ ହେଲଣି ପ୍ରଳୟ ନିକଟ
ବିଷ ବାଷ୍ପ ଡରେ ସାର ପୃଥ୍ୱୀ ଥରେ
ଶଂକିତ ଆଜି ତ ମର ଅମର । ୪ ।

ମାରିଲେ ମାରିବ; ତାରିଲେ ତାରିବ
"ସତ୍ୟ ସାଇ" ରୂପେ ଆସି ଅଛ ଶିବ
ଦିଅ ଶୁଭ ବୁଦ୍ଧି ହେଉ ଚିତ୍ତ ଶୁଦ୍ଧି
ବର ଦିଅ ଆମେ ହେଉ ଅଜର । ୫ ।

● ● ●

## "ସତ୍ୟ ସାଇ" ବାବାଙ୍କ ସ୍ତବ

(ପ୍ରଭୁ) ଆସିଅଛ ତୁମ୍ଭେ ଅବତରି
ମର ମନୁଷ୍ୟର ଦେହଧରି
ତୁମ୍ଭର ବିଭୂତି ତୁମ୍ଭର ଶକତି
ବଦଳାଇ ଦେବ ଜନତାଙ୍କ ମତି
ଅଜ୍ଞାନ ଅନ୍ଧାର ନିଶେ ହେବ ଦୂର
ଅବିଶ୍ୱାସ ଯିବ ପସରି ।

ଅଣ ବିଶ୍ୱାସୀଙ୍କ ଆସିବ ବିଶ୍ୱାସ
ଅର୍ଦ୍ଧ ବିଶ୍ୱାସୀ ଏ ମାରିବେ ନିଃଶ୍ୱାସ
ବିଷ ବିଜ୍ଞାନରୁ ଅମୃତ ଝରିବ
ନରହନ୍ତା ନର ଯିବେ ଡରି ।

ଅସତ୍ୟ ଅନ୍ୟାୟ ହିଂସା ଅତ୍ୟାଚାର
ରୋଗ ଶୋକ ତାପ ଦୁଃଖ ହାହାକାର
ସବୁ ହେବ ଦୂର ନର ହେବେ ସୁର
କଳ କଳିଯୁଗ ଯିବ ସରି ।

ଉଡ଼ିବ ସତ୍ୟର ବିଜୟ କେତନ
ସାର୍ଥକ ହେବ ଏ ମାନବ ଜୀବନ
ସପ୍ତ ସିନ୍ଧୁ ପ୍ରାଣ ଉଲସି ଉଠିବ
"ସତ୍ୟସାଇ" ପାଦ ଛୁଇଁ କରି ।।

● ● ●

## "ଶ୍ରୀମା" ଓ "ସାଇ ବାବା"

ବାପାଙ୍କୁ ଭେଟିଲି ମା'ଙ୍କୁ ଧରି
ଲାଗେ ସବୁ କଥା କାଳିକା ପରି ।

ବାପାଙ୍କ ସାଥୀରେ ହୋଇ ପରିଚିତ
ମନ ପ୍ରାଣ ମୋର ହେଲା ପୁଲକିତ
ବାହି ଶିଖିଲି ମୁଁ ଜୀବନ ତରୀ ।

ଦୃଢ଼ ବିଶ୍ୱାସରେ ମନ ଉଚ୍ଚାଟରେ
ଖସଡ଼ା ବାଟରେ ଅମଡ଼ା ଘାଟରେ
ମେଲି ଦେଇଛି ମୋ ଜୀବନ ତରୀ ।

ନ ଥରିବି କେବେ ଦେଖି ଝଡ଼ ଝଞ୍ଜା
ପକାଇବି କାତ ଟାଣ କରି ପଞ୍ଝା
ନ ଡରିବି ଦେଖି କାଳ ଭଉଁରୀ ।

ମୁକତି ମୁହାଣେ ଲସିଯିବ ନାଆ
ସାହା ହେବେ ମୋତେ 'ସାଇ' ତଉବାହା
କାମନା ମୋହର ଯିବତ ପୂରି ।

● ● ●

## ସେତ ତୁମ ଆଡ଼େ ଅଛି ଚାହିଁକି

ଜାଣ ମନ "ସତ୍ୟ ସାଇ"ଙ୍କି
ଚାହୁଁଛି ସେ ସଦା ତୁମ ପାଇଁକି
ଯାଅ ଯେତେ ଦୂରେ ଥାଅ ଯେଉଁ ପୁରେ
ତୁମ ଆଡ଼େ ସେ ତ ଅଛି ଚାହିଁକି ।

ଫୁଲ ଚନ୍ଦନରେ ନାହିଁ ମତ ତା'ର
ପୂର୍ଣ୍ଣ ଦିଅ ତାକୁ ପ୍ରୀତି ଫୁଲ ହାର
ଶୟନେ ସପନେ କିବା ଜାଗରଣେ
ଧ୍ୟାନ କର ତାଙ୍କୁ ମନ ଦେଇକି ।

କର ନିଜ କାମ ଡାକି ତାର ନାମ
ହେବ ନାହିଁ କେବେ ତୁମ ମତି ଭ୍ରମ
ମୁକତି ପଥରେ ଗତି କରିଯିବ
ନ ଥକିବ ପାଦ ଚାଲି ଚାଲିକି ।

ଭଜମନ "ସତ୍ୟସାଇ"ଙ୍କି
ସେ ତ ତୁମ ଆଡ଼େ ଅଛି ଚାହିଁକି

● ● ●

## ଚାତକ ପରାଏ ରହିଛୁ ଚାହିଁ

ଚାତକ ପରାଏ ରହିଛୁ ଚାହିଁ
(ପ୍ରଭୁ) ଆମ ଆଡ଼େ କିହେ ଆସିବ ନାହିଁ ?

ଅଗଣିତ ନାରୀ ଅଗଣିତ ନର
ଦେଖିବାକୁ ପ୍ରଭୁ ସ୍ୱରୂପ ତୁମ୍ଭର
ପାଗଳ ହୋଇକି ଆସିବେ ଧାଇଁ ।

ତୁମ୍ଭ ସେବାରେ କି କଲୁ ଆମେ ଊଣା
ଆମଠାରେ କିଆଁ ନୋହିଛି କରୁଣା
ଆମର ବିଶ୍ୱାସ ଆମର ନିଃଶ୍ୱାସ
ସବୁ ସଅଁପିଛୁ ତୁମରି ଠାଇଁ ।

ନାହିଁ ଧନ ବଳ ବଳ ନାହିଁ ଦେହେ ଶକ୍ତି
କିପରି ଫେରିବ ଆମରି ଦୁର୍ଗତି
ଆମ ଆଡ଼େ ଯେବେ ନ ଚାହିଁବ ତୁମେ
ଆମେ ଆଉ ମୁକ୍ତି ପାଇବୁ ନାହିଁ ।

ଚରଣେ ତୁମର ମାଗୁଣି ଏତିକି
ପାଶୋରି ନ ଦେଇ ଆମ ଏ ଜାତିଙ୍କି
ଆମକୁ ନିରାଶ କରିବ ନାହିଁ ।

● ● ●

## ଭୁଲିଗଲ କି ?

ଭୋଳାନାଥ ତୁମେ ଭୁଲି ଗଲକି ହେ
ଓଡ଼ିଶା କଥା
ଏ ସାରା ବିଶ୍ୱର ତମେ ଅଟ ପର
ସୃଷ୍ଟି କରତା । ପଦ ।

ଓଡ଼ିଶାବାସୀ ତ ତୁମରି ଭକତ
ତୁମ୍ଭ ସେବାଲାଗି ଝୁଖାନ୍ତି ରକତ
ମନ୍ଦିରେ ମନ୍ଦିରେ ପ୍ରାଣ ଦୀପ ଜାଳି
ଭକତିରେ ସଦା ନୁଆଁନ୍ତି ମଥା ।

ତୁମେ ପଶୁପତି ପିନାକ ପାଣି
ଆମ କଥା ସବୁ ପାରୁନ୍ତ ଜାଣି
ତେବେ କିଆଁ ଆଜ ନିଷ୍ଠୁର ହେଉଛ
ହରିବ ନାହିଁ କି ଆମରି ବ୍ୟଥା ?

ଅହଲ୍ୟା ପରି ତ ହୋଇଛୁ ପଥର
ମନ ବଳ ନାହିଁ ଜପିବୁ ମନ୍ତର
ଧନ ବଳ ନାହିଁ ଆହେ ବିଶ୍ୱସାଇଁ
ତୁମ ପାଶେ ଯାଇ କହିବୁ କଥା ।

ମନତ ଆମରି ସତତ ଚଞ୍ଚଳ
ପରଖୁଛ ଅବା ଆମ୍ଭ ମନବଳ
ମାପି ଆମ ଧୈର୍ଯ୍ୟ ଦେଖି ଆମ କାର୍ଯ୍ୟ
ଆସିବ ମୁକର ପ୍ରାଣ ଦେବତା ।

● ● ●

## ମୋର ଅଳି

(ପ୍ରଭୁ) ତୁମ ପାଶେ ମୋର ଅଳି ଏତିକି
ପାଶୋରି ନ ଦିଏ ମୁଁ ତୁମ ପ୍ରୀତିକି
ଘେନି ତୁମ ନାମ କରିଯାଏ କାମ
ମାନି ସଦା ଦିନେ ତୁମ୍ଭ ନୀତିକି । ପଦ ।

ମନୁଷ୍ୟର ବଂଶେ ହୋଇ ମୁଁ ଜନମ
ଭୁଲିଗଲି ସବୁ ମନୁଷ୍ୟ ଧରମ
ହେଲି ନାହିଁ ସୁର ନ ହେଲି ଅସୁର
ପଶୁଠାରୁ ହୀନ କଲି ମୁଁ ମତିକି ।

ବଜାଇ ତୁମର ମୋହନ ବଇଁଶୀ
ଦେଖା ଦେଲ ପ୍ରଭୁ ତମେ ଯେବେ ଆସି
ଚିହ୍ନି କରି ମୁଁ ତ ଚିହ୍ନି ନ ପାରିଲି
ହତ୍ୟା କଲି ମୋର ନିଜ ସାଥୀକି ।

ଘାତକ ହୋଇ ଯେ କଲି ମୁଁ ପାତକ
କ୍ଷମା ଦେବା ପାଇଁ ନାହିଁ କାର ଶକ
ଦଣ୍ଡେ ଏକା ସେହି ପାପକୁ ପୋଛିବ
ଭବୁଛି ସେ କଥା ନିଜେ ପରଖି ।

● ● ●

# ଭକ୍ତ ଗୀତିକା

( ୧ )

କାହିଁ ଅଛ ହରି ଆସ ହେ ମୁରରି ଆସ ସୁଦର୍ଶନଧାରୀ
ଚକିତ ଅନ୍ତରେ ଚାହିଁଛି ଭାରତ ଏ ସଙ୍କଟୁ କର ପାରି ।ଘୋଷା।

ଆସ ହିମାଚଳେ ଆସ ସୀମାଚଳେ
ଆସ ମୋ ଏକାମ୍ର କୋଳେ
ତିଂଶ କୋଟି ସୁତ ଚିତ୍ତ କରି ପୂତ
ଦେଖନ୍ତୁ ସେ ରୂପ ଡୋଳେ ।୧।

ଶ୍ରୁତି ଗାଇ ବେଦ ଓଁକାର ଶବଦ
ଉଠୁ ସେ ଶକ୍ତି ସଞ୍ଚରି
ପଞ୍ଚ ନଦୀ ଜଳ ହେଉ ସମୁଜ୍ଜ୍ୱଳ
ଛୁଟୁ ସେ ସାମ୍ୟ ଲହରୀ ।୨।

ସତ୍ୟ ପୀର ରୂପ ଦେଖା ସେ ସ୍ୱରୂପ
ଗଦା ଶଙ୍ଖ ଚକ୍ରେ ସାଜି
ଅଗଣିତ ସୁତ ଅଙ୍ଗ କରି ପୂତ
ପଢ଼ନ୍ତୁ କୋରାନ ଆଜି ।୩।

ସବୁ ଭେଦାଭେଦ ସୁଦର୍ଶନ ଛେଦ
ବାଇବେଲ ପୂଜା ପାଉ
ଯୀଶୁଙ୍କ କୀରତି ବଢ଼ାଉ ପୀରତି
ପରପାଇଁ ପ୍ରାଣ ଯାଉ ।୪।

● ● ●

( ୨ )

ଯେତେ ଅହଙ୍କାର ଅଛି ମୋର ହରି
ହରି ନିଅ ଏହି ପ୍ରାର୍ଥନା
ଦେହର ମୁକତି ଲୋଡ଼ା ନାହିଁ ମୋର
ଦେଶର ମୁକତି ବାସନା ।ଘୋଷା।

ଦେଶ ଲାଗି କରେ ନିତି କିଛି କାମ
ନଖୋଜେ ସମ୍ମାନ ନ ଖୋଜେ ବା ନାମ,
ଜୀବ ସେବାରେ ଦିନ କଟି କଟି ଯାଉ
ଶିବମୟ ହେଉ ଭବନା ।୧।

ନିଜ ଦୋଷ ମୁହିଁ ନିଜେ ପାରେ ଦେଖି
ପର ଗୁଣ ତକ ହୃଦେ ପାରେ ଲେଖି,
ନୂଆ ନୂଆ କଥା ଶିଖିବା ସକାସେ
ସହି ଶିଖେ ସବୁ ଯାତନା ।୨।

ମାନବ ପରଣେ ଦେଖେ ମୁଁ ଦେବତା
ମାନବ ଚରଣେ ଲୋଟୁ ମୋର ମଥା,
ବନ ଫୁଲ ପରି ଝରି ପଡ଼େ ଏଠି
ବନ୍ଧୁ ବାନ୍ଧବଙ୍କୁ ଅଜଣା ।୩।

● ● ●

( ୩ )

ସେ ଯେ ସୁନ୍ଦର, ଚିର ସୁନ୍ଦର
ତା ରୂପ ମାଧୁରୀ ନ ଦେଖିଲି କାହିଁ
ଖୋଜି ଖୋଜି ମୁହିଁ ତିନିପୁର-
ତା ମଧୁର ବାଣୀ ନ ଶୁଣିଲି କାହିଁ
ଅସୁମାରୀ ଜନ୍ମ ଗଲା ମୋର ।ଘୋଷା।

କେବେ ମଉଳେନା ତାର ଯଉବନ
କାମ କାମନା ନ ଛୁଏଁ ତାର ମନ
ରବି ଶଶୀ କେତେ ପ୍ରେମେ ପଡ଼ି ତାର
ହସୁଛନ୍ତି ସଦା କର କର ।୧।

ପିନ୍ଧି ଫୁଲବାସ-ନିତି ସଦାଗତି
ପାଦେ ପଡ଼ି ତାର-ପ୍ରଫୁଲ୍ଲିତ ମତି

ତା ରୂପ ମୋହରେ ପାଗଳ ହୋଇଣ
ଝରୁଛି ଝରଣା ଝରଝର । ୨ ।

ଚିତ୍ର ପଖା ଟେକି ନାଚି ଉଠେ କେକୀ
ନୀଳ ମେଘ କୋଳେ ଛବି ତାର ଦେଖି
ଢାଳି ଦିଏ ସିନା ତା ପଦ ପଙ୍କଜେ
ପିକବର ମଧୁ କୁହୁ ସ୍ୱର । ୩ ।

କେବେ ବଜାଇବ ଆସି ପୁଣି ବଂଶୀ
ସତେ ବରି ନେବି ତାକୁ ହସି ହସି
ମାନ ମହତକୁ ପିଙ୍ଗି ଦେଇ ସବୁ
ବୁଲିବି ହୋଇ ତା ଅନୁଚର । ୪ ।

● ● ●

( ୪ )

ମୋର ସାହା ଏକା ସେହି ଭଗବାନ
ଯାର ଶକ୍ତିରେ ଯାର ଭକ୍ତିରେ
ରବି ଶଶୀ ତାରା ତେଜିୟାନ । ପଦ ।

ଗଗନ ଯାହାର ବିଜୟ ପତାକା
ସମୀରଣ ଯାର ଗଉରବ ଢକା
ସନ୍ଧାନେ ଯାହାର ଶତନଦ ନଦୀ
ସାଗର ସମୀପେ ଧାବମାନ । ୧ ।

ମନ୍ଦିର ଯାହାର ମାନବ ଅନ୍ତର
ଚିର ସତ୍ୟ ଯାର ମଣ୍ଡପ ସୁନ୍ଦର
ପ୍ରବିମଳ ପ୍ରେମ ଚରଣ ଉଦଳ
ଏ ବିଶ୍ୱ ମହିରେ ଭାସମାନ । ୨ ।

ମରିଲେ ମରିବି ତରିଲେ ତରିବି
ତାଙ୍କରି ଇଙ୍ଗିତେ ପଥ ମୁଁ ଚାଲିବି
ଜାତି ଲାଗି ମୋର ଛାତି ହାଡ଼ ଦେବି
ଦେଶ ଲାଗି ଦେବି ନିଜ ଜାନ । ୩ ।

● ● ●

( ୫ )

ଆରେ ମୋର ଭାଇ ନାଉରୀ
ମୁହିଁ ତ ତମରି ମାଆ ପଚାରୀ
ନପାରୁ ଚିହ୍ନିକି ମୋତେ
ଯହିଁ ଦେଲ ମାଳେ ଚିହ୍ନିଲି ମୁଁ ତୋତେ
ତୁତ ମୋର ଆପଣାର ମୁହିଁ ତୋହରି । ପଦ ।

ବୁଲି ବୁଲି ପଥେ ହୋଇଛି ମୁଁ ଥକ୍କା
ଖୋଜି ଖୋଜି କେତେ ପାଇ ନାହିଁ ଦେଖା
ବାରେ ବାରେ ଠକି ଖଟିଛି ମୁଁ ବେଠି
ପୂରି ନାହିଁ ଆଶା କାହିଁ ମୋହରି । ୧ ।

ବେଳ ଗତ ରତ ଦିନ ଘଣ୍ଟ ଘଡ଼ି
ଯାଏ ଖର ସ୍ରୋତେ ନାଗ ମୁଣ୍ଡ ଛିଡ଼ି
ଏତେ ବଡ଼ ନଈ ଆଖି ପାଉ ନାହିଁ
ନେଇ ପାରିବୁ କି ମୋତେ ସେ ପାରି । ୨ ।

କେତେ ଲୋଭ ମାୟା ଭେଟିବୁ ଭଉଁରୀ
କ୍ଷଣକେ ନେବେ ସେ ତରୀ ଚୂନା କରି
ମନ କରି ଟାଣ ହାତର ନିଶାଣ
ରକ୍ଷି ପାରିଲେ ତୁ ଯିବା ଉତୁରି । ୩ ।

ବୁଡ଼ି ଯିବ ଜଙ୍ଘା ହୁଡ଼ିଲେ ତୁ ବାଟ
କିମ୍ଭୀରିଆ ନଈ ବହୁ ଦୂର ବାଟ
ପ୍ରବୀଣ ବୟସ ଅଛି ତୋ ବହପ
ଯିବୁ ତୁ ପହଁରି ମୁଁ ଯିବି ସରି । ୪ ।

● ● ●

( ୬ )

କାନେ କାନେ ଏତେ ଶିଖାଉଛ ନିତି
ହେଉ ନାହିଁ ପର ଆମରି ଶିକ୍ଷା
ମନେ ମନେ ଲୁଚି ପରୀକ୍ଷା କରୁଛ
ପଢ଼ ନାହିଁ ଆମ ଶେଷ ପରୀକ୍ଷା । ପଦ ।

ହାତ ଧରି ଖାତା ଦେଇଛ ଲେଖାଇ
ଦେହି ଧରି ଛବି ଗଢ଼ିଛି ଦେଖାଇ
ବୁଦ୍ଧି ଦେଇ ଯେତେ ବୁଝିଆ କରୁଛ
ଭୁଲି ଯାଇ ସେତେ ହେଉଛୁ ବୋକା । ୧ ।

ଅରଜିଲୁ ବ୍ୟାଧି ସୃଜିଲ ଔଷଧି
ଜଳ ନଷ୍ଟ କଲୁ ଭରିଲ ଜଳଧି
ଅନ୍ଧାର ପାଇଁକି ଦେଇ ରବି ଶଶୀ
ଆଖି ଥାଇ ଥାଇ ଆମେ ଜଳକା । ୨ ।

କଳ କେତେ ଗୋଟା ହାତରେ ତିଆରି
ଭାବିଲୁ ନିଜକୁ ସୃଷ୍ଟି ଅଧିକାରୀ
ତମକୁ ଭୁଲିକି ନିଜେତ ମଲୁଣି
ତମେ ପରବତ ଆମେ ତ ଟେକା । ୩ ।

ଧନ ବଳ ଠାରୁ ବଡ଼ ମନ ବଳ
ବଳ ଠାରୁ ଆହୁ ଶକତି ଅଟଳ
ଆଖି ଆଗେ ଆସି ବୁଝାଇ ଦେଉଛ
ତୁମ ଯୋଗେ ଆମେ ପାଇବୁ ରକ୍ଷା । ୪ ।

● ● ●

( ୭ )

## ପ୍ରାର୍ଥନା

ତମରି ପତାକା ତୁମେ ଉଡ଼ାଇବ
ଆମେ କି ପ୍ରାର୍ଥନା କରିବୁ
ତମରି ଭକତ କୁସୁମ ପରଶେ
ପଟ ହୋଇ ସିନା ତରିବୁ । ପଦ ।

ତମେ ପଠାଇଛ ତମରି ଦୂତକୁ
ଗଣ ସେବା କରି ଗୁଣ ଗାଇବାକୁ
ତୁମରି ଗୀତ ସେ ଗାଇ ଚାଲିଅଛି
ତାହା ସଙ୍ଗେ ତାନ ଧରିବୁ । ୧ ।

ହତ୍ୟାବାଦ ହାତୁ ରକ୍ଷିବାକୁ ପୃଥୀ
ହୃଦେ ତାର ଦେଲ ଅହିଂସାର ନୀତି
ସେ ନୀତି ପଥରେ ଦୁନିଆ ଚାଲିବେ
ଆମେ ପଥ ଧୂଳି ହୋଇବୁ । ୨ ।

ହାଣି ହଣାଉଛ ତମେ ହିଁ ହାତ
କରି କରଉଛ ତମେ ହିଁ କୃତ
ମାକୁ ପାଅ ଭଇ କର କଇବଇ
ସେ ମର୍ମ ଆମେ କି ବୁଝିବୁ । ୩ ।

● ● ●

( ୮ )

## ଗାନ୍ଧିଜୀଙ୍କ ଅନଶନ ସମୟେ

ଭକତ ତୁମର ରକତ ଶୁଖାଇ
ଡାକଇ ଜଗତ ପାଇଁକି
ଜଗତର ନାଥ ତୁମେ ଜଗନ୍ନାଥ
ତା ଡାକ ଶୁଣବ ନାହିଁକି । ପଦ ।

ଯୋଗୀ ନୁହେଁ ସେତ ଅସଲ ଯୋଗୀ
ଭୋଗୀ ନୁହେଁ ସେତ ସର୍ବସ୍ୱ ତ୍ୟାଗୀ
ଯୌବନ ପ୍ରଭାତୁ ଯୋଗ କରଇ ସେ
ଜଗତ ମଙ୍ଗଳ ଚାହିଁକି । ୧ ।

ମାନବ ଜାତିକି ମାନବ ନୀତିକି
ବଡ଼ କର ସଦା ମାନବ ପ୍ରୀତିକି
ଅନୁସରି ଚାଲେ ମାନବଙ୍କ ପନ୍ଥା
ବଦଳାଇ କାଳ ଗତିକି । ୨ ।

ସତ୍ୟ ଯେବେ ଧରା ରବି ଶଶୀ ତାରା
ସତ୍ୟ ଯେବେ ଶୀତ ଗ୍ରୀଷ୍ମ, ବର୍ଷା ଧାରା
ସତ୍ୟର ମହିମା ନିର୍ଗୁଣ ରଖ ହେ
ଚରଣେ ମାଗୁଣି ଏତିକି । ୩ ।

( ୯ )

ତମ ମାୟା ପ୍ରଭୁ ଗୋଚର–ତୁମକୁ
ଆମ ଆଖିକି ତା ଘୋର ଅନ୍ଧାର
ପ୍ରଳୟ ତୋଫାନେ ଥରଇ ଆକାଶ
ମରଣ ଢେଉରେ ମହା ସାଗର । ପଦ ।

ସତ୍ୟର ଆଲୋକ ଥାଣି ତୁମ ପାଖୁ
ସକଳ ଘଟରେ ଦେଖେ ଯେ ତୁମ୍ଭକୁ
ଆଳତୀ କରଇ ପ୍ରାଣଦୀପ ଜାଳି
ତଉଷରୀ ବର୍ଷ ଜଗ ଶରୀର । ୧ ।

ଜାଣ ଅନ୍ତର୍ଯାମୀ–ସବୁରି ଅନ୍ତର
ସାର ବିଶ୍ୱ ଆଜି ତା ଲଗି କାତର
ସବୁରି ଆଶା ସେ ଆମରି ଭରସା
ଭକ୍ତ ବନ୍ଧ୍ ସେତ ବନ୍ଧୁ ତୁମର । ୨ ।

ଘଡ଼ିକ କଥା ତ ଘଡ଼ିକି ଅନ୍ତର
ତୁମ୍ଭ ଇଛା ବିନା ନ ହେଲେ ପତର
ତମେ ଇଛା କଲେ ହସିବ ସେ ଭଲେ
ଅଗ୍ନି ପରୀକ୍ଷାରୁ ହୋଇ ବାହାର । ୩ ।

●●●

( ୧୦ )

## ପ୍ରାର୍ଥନା

ହରି ହେ ! ଛପି ଛପି ରହ କାହିଁକି
କେତେ ଦିନ ଆଉ ଛପି ବା ରହିବ
(ଆମର) ଦୁଃଖ ଦୁର୍ଦ୍ଦଶା ଦେଖିକି । ପଦ ।

ଅସତ୍ୟ ଅନ୍ୟାୟ ହିଂସା ଅତ୍ୟାଚାର
ଅଭାବ ଅଶୁଭ ଚିନ୍ତା ଅନାହାର
ଝଡ଼ି ବର୍ଷ ପରି ମାଡ଼ି ଆସିଲାଣି
ହଟି, ଭାଙ୍ଗିବାକୁ ତବ ସୃଷ୍ଟି କି । ୧ ।

ଯୀଶୁ ମହମ୍ମଦ ବୁଦ୍ଧ ଚଇତନ
କବୀର ନାନକ ସବୁରି ବଚନ
ହୋଇଲାଣି ବ୍ୟର୍ଥ ସରିଆଡ଼େ ସ୍ୱାର୍ଥ
ଗ୍ରାସେ ଦୟାମୟ ସ୍ନେହ ପ୍ରୀତିକି । ୨ ।

ତୁମ ଲକ୍ଷ୍ମୀ ଆଜ ଅଛନ୍ତି କେଉଁଠି
ଦିନିପୁରେ ହତ୍ୟା ଦିନିପୁରେ ଲୁଟି
ବିଷ ମାଇନରେ ସପ୍ତସିନ୍ଧୁ ଥରେ
ଦେଖି ଚକ୍ରଧର ଛପି ଗଲକି । ୩ ।

କେତେ ସ୍ୱପ୍ନକଳା ନିତି ହୁଏ ଚୂର୍ଣ୍ଣ
ଅନାଥ ବାଳକ ବାଳିକା ରୋଦନ
ଶୁଣି ବୀଣାପାଣି ଶଙ୍କିତ ହେଲେଣି
ତାଙ୍କ ବୀଣା ଖଣ୍ଡି ତଳେ ଥୋଇକି । ୪ ।

ଦେବତା ଯେତେକ ହେଲେଣି ପଥର
ଡାକିବ କେ ଆଉ ହୋଇଣ କାତର
ତାକୁ ସିନ୍ଧୁ କୂଳେ ଆମେ ବନ୍ଦୀ ଦଳେ
(ହରି) ଅନନ୍ତ ଶୟନେ ଶୋଇଥିବ କି । ୫ ।

ପରାଧୀନ କାହୁଁ ଦେବୁ ଫୁଲ ହାର
ସଜାଇ ରଖିନ୍ତୁ ହୃଦ ହାଡ଼ ମାଳ
ଅନୁସରି ନିତି ଦିନ ସନ୍ଧ ନାହିଁ
ଅଛୁ ଘାତକ ପରଶେ ଘୁଞ୍ଚିକି । ୬ ।

(ବ୍ରହ୍ମପୁର ସେଣ୍ଟ୍ରାଲ ଜେଲରେ ୧୯୪୩ ମସିହାରେ ରଚିତ)

●●●

( ୧୧ )

ଭଇ ନାଭରୀ.........ଆ.........
ନାହା ବାହି ଆଣ କତିକି
ବେଳ ଥାଉଁ ଥାଉଁ ହେବି
ପାରି ଏ ଭବ ନଈକି । ପଦ ।

ସେ ପାରିରେ ମୋହର ଘର
ଆସିଥିଲି ଏ ପାରିକି
ଦିନକ ମାତର
ହାଟ ସଉଦା ନେବାକୁ ଭଲ ଭେଲ ଚିହ୍ନିକି
ନାହା ବାହି ଆଣ କତିକି । ୧ ।

ଦୂରବାଟ ଯିବାକୁ ହେବ
ଡେରି କଲେ ଦ୍ଵିତୀୟାର
ଘର ବୁଡ଼ି ଯିବ
ସାହା ମୋର କେହି ନାହିଁ
ମୁଁ ଡରେ ନିଶା ରତିକି
ନାହା ବାହି ଆଣ କତିକି । ୨ ।

ଡରିଲେ ମୁଁ ଯିବିଟି ସରି
ବୁଣିଯିବ ଆଣିଛି ଯା
ମୋର ପଶରା ଭରି
ବସିଥିବେ ପ୍ରିୟତମ
ମୋର ପଥ ଚାହିଁକି
ନାହା ବାହି ଆଣ କତିକି । ୩ ।

ନାହିଁ କିଛି ଦେବାକୁ ତୋତେ
ସବୁତ ଯାଇଛି ସରି
ମୋ ପାଖେ ଥିଲା ଯେତେ
ନାଇ ଦେବି ଗଳେ ତୋର
ହୃଦ ରତ୍ନ ହାରଟି
ନାହା ବାହି ଆଣ କତିକି
ଭାଇ ନାଉରୀ ..........ଆ । ୪ ।

(ବ୍ରହ୍ମପୁର ସେଣ୍ଟ୍ରାଲ ଜେଲରେ ୧୯୪୩ ମସିହା ରେ ରଚିତ)

● ● ●

(୧୨)

ହେ ଆମ ମାଆ......ହେ ଆମ ମାଆ
ଏ ଘୋର ସଙ୍କଟେ ହୁଅ ଗୋ ସାହା [ପଦ]

କେତେ କଳି ଯୁଗ ଯାଉଅଛି ସରି
କାଳି ଅନ୍ଧାରତ ରହିଅଛି ଘେରି
କାହିଁ ଯାଇଁ ଘାଟ ଆଉ କେତେ ବାଟ
ଯିବାକୁ ପଡ଼ିବ ଜାଣିନୁ ତାହା । ୧ ।

ଲହରୀ ଉପରେ ଉଠୁଛି ଲହରୀ
ଜଣେ ହେଲେ ଆମେ ଜାଣିନୁ ପହଁରି
ଯେଝା ବୋଝ ନେଇ ବସିଛୁ ଅନାଇ
ଦୋହଲୁଛି ଆମ ଦଦରା ନାହା । ୨ ।

କେତେ ଝଡ଼ି ବର୍ଷା ସହିଛୁ ଜୀବନେ
ହୋଇନୁ ହତାଶ କେବେହେଲେ ଦିନେ
ଦିଶେ ତୋର ହାତ ମାରୁଅଛୁ କାତ
ଭରସା ଆମର ତୋହରି ବାହା । ୩ ।

ଚାହୁନା ମୁକତି ଚାହୁଁ ଆମେ ଗତି
ଭେଟିବାକୁ ଚାହୁଁ ତୋହର ସପତି
ଦେଖି ତୋର ଖେଳ କଟୁ ଆମ ବେଳ
ତୁ ଆମ ଚୁମ୍ବକ ଆମେ ତ ଲୁହା
ହେ ଆମ ମାଆ...... ହେ ଆମ ମାଆ

● ● ●

(୧୩)

ମାଗୋ,
ଜୀବନଟା ଗଲା ଖଟି ବେଠି
ଏ ନୂଆ ବରଷେ ମନର ହରଷେ
କେଉଁ ଚିଜ ତୋତେ ଦେବି ଭେଟି । ପଦ ।
ଭାବଇ ଯାହାକୁ ମୁହିଁ ମୋର ମୋର
ତାକୁ ନେଇ ଯାଏ ସବୁ କାଳ ସ୍ରୋତ
କାଳ ସଙ୍ଗେ ତାଳ ପକାଇବା ବଳ
ଅଛିକି କାହାର କହ ଏଠି । ୧ ।

ରବି ଶଶୀ ତାରା ଶସାଗରା ଧରା
ସଭିଙ୍କର ଦିନେ ଝସିବ ତ ଜରା

କାଳ ହାତେ ସର୍ବେ ହୋଇବେ ନିଧନ
କାଳକୁ ପାରିବ କିଏ କାଟି । ୨ ।
ଦୁନିଆ ଭିତରେ ଯେତେ ଅଛି ଧନ
ସବୁଠାରୁ ବଡ଼ ଅଟେ ସିନା ମନ
ସେହି ମନ ତୋତେ ଅରପି ଦେଇଛି
ଭାବି ନାହିଁ କିଛି ଭଲ ତ୍ରୁଟି । ୩ ।

● ● ●

(୧୪)

ଭଜମନ ଦୁର୍ଗା ଦେବୀଙ୍କି
ଡର ନାହିଁ ଆଉ ଏଣିକି
ଅସୁରଙ୍କୁ ମାରି ଦଶଭୁଜ ଧରି
ରଖିବେ ଆମର ଏହି ପୃଥ୍ୱୀକି । (ପଦ)
ଫୁଲ ତୋଳି ହାର ଦିଅ ପିନ୍ଧାଇ
ଭକତିରେ ନିଅ ତାଙ୍କୁ ବନ୍ଦାଇ
ଦେହେ ବୋଳି ହୁଅ ତାଙ୍କ ପାଦଧୂଳି
ତାଙ୍କ ପାଦଧୂଳି ହାତେ ନେଇ କି
ତୁମ ଆଡ଼େ ସେତ ଛନ୍ତି ଚାହିଁକି । ୧ ।
ନ ଡରି ଚାହାଁନ୍ତୁ ସେ ତୁମ ମାଆ
ସବୁବେଳେ ହେବେ ତୁମକୁ ସାହା
ଲବୁଛନ୍ତି ସଦା ତମ ପାଇଁକି ସେ
ଲବୁଛନ୍ତି ସଦା ତମ ପାଇଁକି । ୨ ।
ଦିଅ ଧୂପ ଦୀପ ବାସ ଚନ୍ଦନ
ମହକି ଉଠୁ ଏ ଗାଁ ଘର ବନ
ହୁଅ ତୁମେ ଧନ୍ୟ ତାଙ୍କ ଗୀତ ଗାଇ
ହୁଅ ଧନ୍ୟ ତାଙ୍କ ଗୀତ ଗାଇକି । ୩ ।
ରୋଗ ଶୋକ ଦୁଃଖ ସବୁ ହେବ ଶେଷ
ବଦଳି ଯିବତ ତୁମର ଏ ଦେଶ
ଗଗନ ପବନ ଉଠିବ ମହକି
ଗଗନ ପବନ ଯିବ ମହକି । ୪ ।

● ● ●

(୧୫)

କେତେ ରଙ୍ଗେ ମୋତେ ନଚାଉଛୁ ମାଗୋ
ନଷ୍ଟ ତୁ ମାଆ
ଏହି ଦୁନିଆରେ କେହି ନାହିଁ ମୋର
ଅଟୁ ତୁ ମୋହର ଜୀବନ ସାହା (ପଦ)
କରିବାର ଯେତେ କର କଉବଲ
ଯେବେ ତୋତେ ମାଗୋ ଲାଗୁଅଛି ଭଲ
ଅଗାଡ ପାଣିରେ କାତ ପାଲ ନାହିଁ
ଭସାଇ ଦେଇଛି ମୋହର ନାଆ । ୧ ।
ଦେହକୁ ମୋହର ଦେଇ ତୋର ଜିମା
ତୋ ପାଖେ ଜୀବନ କରି ଅଛି ବୀମା
ଇଛା ତୋ'ର ଯା'ହା ପୂର୍ଣ୍ଣ ହେଉ ତାହା
ଇଛା ତୋର ଯା'ହା କର ତୁ ତାହା । ୨ ।

● ● ●

(୧୬)

ଆହେ ପ୍ରିୟତମ
ତମେ ପରି ମୋର କେହି ନାହିଁ ତ
କାନ ଡେରି ତୁମେ ଭଉ ଶୁଣ ତ
ଭାଷା ନାହିଁ ମୋର ଭାବ ପ୍ରକାଶିବି
ମୋର ଜୀବନାର ତୁମେ ଅତୀତ । ପଦ ।
ତୁମେ ମୋର ନିଶ୍ୱ ତମେ ମୋର ବିଶ୍ୱ
ତମେ ମୋର ଚିର ଜୀବନ ସର୍ବସ୍ୱ
ମୋ ଟାଣ ପଥର ବନ୍ଧ ଭାଙ୍ଗି ଗଲା
ତମରି ପାରତି ଦେଇ ବାଜି ତ । ୧ ।
ତୁମେ ଅଗ୍ନି ଶିଖା ମୁହିଁ ଅଗ୍ନି କଣା
ସବୁ ଅଭିମାନେ ହୁଏ ବାଟ ବଣା
ତୁମେ ପଦ୍ମନାଭ ମୁହିଁ ପଦ୍ମ ଫୁଲ
ରହିଅଛ ତୁମେ ମୋ ସହିତ । ୨ ।

ବିଶ୍ୱ ଚରାଚର କୋଟି ସର୍ବହର
ଉକତ ଦେଇ ଯେ ଗଢ଼ିଲେ ଏ ଧରା
ବିନ୍ଦୁକି ପରଏ ସଞ୍ଚିତ ହେଲେଣି
ତୁମରି ଇଙ୍ଗିତ ସୁଧା ପାଇତ । ୩ ।

ତୁମ ପଦ ଶେଷ କିସ କରିବି ଜ୍ଞାପନ
ବାରେ ବାରେ ଦିଅ ମାନବ ଜନମ
ମାନବ ସେବାରେ କଟିଯାଉ ପ୍ରାଣ
ମାନବ ସେବାରେ ସ୍ୱର୍ଗ ଉକତ । ୪ ।

● ● ●

(୧୭)

ମୂଳାଧାର ସେହି ନିରାକାର
ଆଖି ଆଗେ ଗତି କରେ କିଏ ନିତି
ସାର ସୃଷ୍ଟି ତାର ଗଳାହାର । ପଦ ।
ମୂଳ ପାଣି ଲଗି କଅଁଳିବ ଡାଳ
ମୂଳ ଶୁଖିଗଲେ ନ ଧରିବ ଫଳ
ସବୁ ପୂଜା ପାଠ ହେବ ସିନା ବ୍ୟର୍ଥ
ମନୋଭବ ତୁମେ ନାହାଁସର । ୧ ।
ରବି ଶଶୀ ତାରା ସସାଗର ଧରା
ତାର ପାଦ ପଦ୍ମେ ଲୋଟୁଛନ୍ତି ପରା
ଅନ୍ତରଯାମୀ ସେ ଅନ୍ତର ଜାଣଇ
କେହି ନାହିଁ ତାର ଜଣେ ପର । ୨ ।
ତାହା ସାଥେ ଯିଏ ରଖେ ନିତି ଭବ
ଦୁନିଆରେ ତାର ନ ରହେ ଅଭାବ
ପାପୀ ତାପୀ ତପୀ ସଭିଙ୍କୁ ଉଦ୍ଧାରେ
ପାତର · ଅନ୍ତର ନାହିଁ ତାର । ୩ ।
ମାୟା ଜାଲ ତାର ପାରିବ ଯେ କାଟି
ପାରି ହୋଇ ଯିବ ଏ ପରୀକ୍ଷା ଘାଟି
ମହାକାଳ ସ୍ରୋତ ମାଡ଼ି ଆସୁଅଛି
ଘୁରି ଯୁଗ ମଧ୍ୟେ କଳି ସାର । ୪ ।

● ● ●

(୧୮)

ତୁମ୍ଭ ପାଦ ପଦ୍ମ ତଳେ ଆଜି ପ୍ରଭୁ
ଶପଥ କରୁଛି ଏତିକି
ଥାଏ ଯେବେ ଦୂରେ ଯାଏ ଯେଉଁ ପରେ
ନ ଭୁଲିବି ମୋର ସାଥିକି । ପଦ ।
ମରେ ଗୁଳି ସ୍ରୋତେ ଅବା ଫାଶି କାଠେ
ନ ଛାଡ଼ିବି ମୋର ନୀତିକି
ଯେ ନୀତିରେ ମୁହିଁ ମୋ ଜନମ ଭୂଇଁ
ଘେନି ଆଣିଥିଲି ଛିଟିକି । ୧ ।
ସବୁ ଅହଂକାର ମନୁ ପୋଛ ମୋର
ସଫା ରଖିବି ମୋ ମତିକି
ଧନ ଜନ ମନ ଦେଇ ମୋ ଜୀବନ
ଗଢ଼ିବି ମନୁଷ୍ୟ ଜାତିକି । ୨ ।
ତୁମ ପାଦ ପଦ୍ମ ତଳେ ଆଜି ପ୍ରଭୁ
ଶପଥ କରୁଛି ଏତିକି ।

● ● ●

(ସନ ୧୯୫୭-୫୮ ମସିହାରେ କବି ଜଗତସିଂହପୁର ଗୋବିନ୍ଦପୁର ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ତରଫରୁ ପ୍ରତିନିଧି ରୂପେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ତରଫରୁ ବିଧାନ ସଭା ଗୃହକୁ ଆସିବା ପୂର୍ବରୁ ଏହି କବିତାଟି ରଚନା କରିଥିଲେ ।)

(୧୯)

କି ଆଉ ଦେବି ତୋତେ ଭେଟି
ଉଠିଲେ ଛାତି ଯାଏ ଫାଟି । ପଦ ।
ଦଦରା ଦେହଟି ମୋର
ଦଦରା ଅଟଇ ଏ ଘର
ପୂର୍ବ ଜନ୍ମର ତପ ବଳେ
ପୂର୍ବ ଜନ୍ମର କର୍ମ ଫଳେ
ତତେ ମୁଁ ଅଛି ଆଜି ଭେଟି । ୧ ।

ଘରେ ଯାହା ମୋ ଥିଲା ଧନ
ସବୁ ମୁଁ କରିଛି ନିସ୍ବନ
ଋଣ ସାଗରେ ଅଛି ବୁଡ଼ି
ଘଲିଲା ବାଟ ଗଲି ଛୁଡ଼ି
ତୋର ମାୟାରେ ହୋଇ ଘାଣ୍ଟି । ୨ ।

ମନଟି ମୋର ବଡ଼ ଧନ
ତୋତେ କରିଛି ସମର୍ପଣ
ଦିଅ ଏତିକି ମୋତେ ଶକ୍ତି
ଥାଉ ତୋ ପଦେ ସଦା ଭକ୍ତି
ନ ଯାଉ ତିଳେ ତାହା ତୁଟି । ୩ ।

କି ଆଉ ଦେବି ତୋତେ ଭେଟି
ଭାବିଲେ ମୋ ଛାତି ଯାଏ ଫାଟି

● ● ●

(୨୦)

କାହିଁ ଅଛ ହରି ଆସ ହେ ମୁରାରି
ଆସ ସୁଦର୍ଶନଧାରୀ
ଚକିତ ଅନ୍ତରେ ଚ୍ଛହିଁଛି ଭାରତ
ଏ ଘୋର ସଙ୍କଟୁ କର ପାରି, ହେ ମୁରାରି ।ପଦ।
ଆସ ହିମାଚଳ ଆଉ ସାମାଚଳ
ଆସ ଗଙ୍ଗା କୂଳେ ଆସ ମୋ ଭକ୍ତଙ୍କେ
କୋଟି କୋଟି ସୁତ
ଚିତ କରି ପୂତ
ଦେଖନ୍ତୁ ସେ ରୂପ ଡୋଳେ । ୧ ।
ଶୁଣୁ ଘରିବେଦ ଓଁକାର ଶବଦ
ଉଠୁ ସେ ଶକ୍ତି ସଞ୍ଚରି
ପଞ୍ଚନଦୀ ଜଳ ହେଉ ସମୁଜ୍ଜ୍ୱଳ
ଛୁଟୁ ସେ ସାମ୍ୟ ଲହରୀ । ୨ ।
ସତ୍ତାପାର ରୂପ ଦେଖାଇ ସ୍ୱରୂପ
ଗଦା ଶଙ୍ଖ ଚକ୍ରେ ସାଜି
ଅଗଣିତ ସୁତ ଅଙ୍କକରି ପୂତ
ପଢ଼ନ୍ତୁ କୋରାନ ଆଜି । ୩ ।
ସବୁ ଭେଦାଭେଦ ସୁଦର୍ଶନ ଛେଦ
ବାଇବେଲ ପୂଜା ପାଉ
ଯୀଶୁଙ୍କ କୀରତି ବଢ଼ାଇ ପୀରତି
ପର ପାଇଁ ପ୍ରାଣ ଯାଉ । ୪ ।
ଆସୁ ସେ ବ୍ରାହ୍ମଣ ରଚୁ ପଦ୍ମାସନ
ପୂତ ଉପବୀତ ଅଙ୍ଗେ
ଶୁଭୁ ଘଣ୍ଟା ଶେଳ ଦୂରୁ ନଉ କୋଳ
ଧୂପ ପୁଷ୍ପ ଝୁଣା ଗନ୍ଧେ । ୫ ।
ଆସୁ ଆର୍ଯ୍ୟବାଳା ଧରି ପଦ୍ମମାଳା
ପିନ୍ଧାଉ କେଉଁ ଶୁଭ ପଳେ
ରଖନ୍ତା ସତୀତ୍ୱ ତା ଜାତି ମହତ୍ତ୍ୱ
ତବ ସୁଦର୍ଶନ ତଳେ । ୬ ।
ପଢ଼ୁ ମନୁ ସୁତ ଗୀତା ଭାଗବତ
ଦୂ ଶିକ୍ଷା ପୁତନା ମାର
ଧରି ଭୀଷ୍ମ ଧୈର୍ଯ୍ୟ ପାଳୁ ବ୍ରହ୍ମଚର୍ଯ୍ୟ
ଘୁଞ୍ଚୁ ଦୁର୍ଭିକ୍ଷ ରହୁ । ୭ ।

● ● ●

(୨୧)

ଆହେ ମୋର କନକଗିରି
(ତୁଡ, ଛଡ଼ାଇ ଆଣିଛ ସରଗ ଶିରୀ
କେଉଁ କର୍ମ ଫଳେ କେଉଁ ତପ ବଳେ
ମାକୁ ବସିଛୁ କୋଳରେ ଧରି । (ପଦ)
ସେହି ଅଟେ ଦୁର୍ଗା ସେହି ଅଟେ ଚଣ୍ଡୀ
ଅଶେଷ ଦୁର୍ଗତୀ ପାରେ ସେହି ଖଣ୍ଡି
ସେହି ସରସ୍ୱତୀ ଦିଏ ଶୁଭମତି
ପାପୀ ଜନକୁ ସେ ପାରଇ ତାରି । ୧ ।

ଆମ ଲଗି ସେହୁ ଲୋଡଇ ଯାଚନା
ଆମ ମୁକ୍ତି ଲଗି କରଇ ସାଧନା
ନଖାଇ ଆହାର ଧରିଛି ଶରୀର
ଆମେ ଭବୁ ତାକୁ ମନୁଷ୍ୟ ପରି ।୨।

ମନେ ମନେ ଯେତେ କରୁଛୁ ପ୍ରତିଜ୍ଞା
ଭଙ୍ଗି ଚୁରି ସବୁ କରୁଛୁ ଅବଜ୍ଞା
କ୍ଷମା ଦିଏ ଦୋଷ ହୁଏ ନାହିଁ ଶେଷ
ଆମକୁ ଦେଖେ ସେ ସନ୍ତାନପରି ।୩।

ତୁ ଅଟୁ ପଥର ମୁଁ ଅଟେ ମନୁଷ୍ୟ
ତୁ ଅଟୁ ତାଙ୍କର ସଦା ପଟ ଶିଷ୍ୟ
ତୁ ତ ଅନୁଭବି ଦେଖୁ ତାର ଛବି
ଯୁଗ ଯୁଗ ଧରି ନୟନ ଭରି ।୪।

ତାଙ୍କ ପାଦ ତଳେ ଏତିକି ପ୍ରାର୍ଥନା
ପୂରଣ କରୁ ସେ ଆମର କାମନା
ଜନମେ ଜନମେ ଅସୁ ତାଙ୍କ ସାଥେ
ଖେଳ ଦେଖି ଯାଉ ହସାରୁ ଫେରି ।୫।

• • •

(୨୨)

ମାଗୋ !

ମାଗୁଣି ମୋହର ଏତିକି
ଦଦରା ଘରକୁ ସଜାଡ଼ି ଦେଏ ମା
ନ ଡ଼ରେ ଆଉ ମୁଁ କାଳ ରତିକି ।ପଦ।

ପାଞ୍ଚ ଖଞ୍ଜି କଡ଼ି ପଟିଣି ବରଗା
ସବୁତ ଅଲଗା ସବୁ ଦରଭଙ୍ଗା
ପୁରୁଣା ଚୂନରେ ଗଠ ନାହିଁ ଆଉ
ଛାଡ଼ି ପଡ଼େ ତଳେ ନେଇ ମାଟିକି ।୧।

ଛାତରୁ ପଡ଼ଇ ଟିପି ଟିପି ପାଣି
ଦେଖି ମୋ ହୃଦୟ ହୋଇଯାଏ ହାଣି
ପର ଘରେ ମୁଣ୍ଡ , ଗୁଞ୍ଜିବି ମୁଁ କେତେ
କେତେ ଦମ୍ଭ ଆଉ ରଖି ଛାତିକି ।୨।

ମୋହଠାରେ ଯେବେ ନାହିଁ ତୋର ଦୟା
କି ଲଗି ଗଢ଼ିଲୁ ମୋର ଏହି କାୟା
ମାୟାରେ ପକାଇ
ଛାୟା ଦେଖାଉଛୁ
ଭୁଲଇ ଦେଉଛୁ ଆମ ମତିକି ।୩।

• • •

(୨୩)

ଡର ନାହିଁ ଆଉ ନାହିଁତ ଡେରି
କଳି କଳି ଯୁଗ ଯାଉଛି ଫେରି
ଆସିଲେଣି ସତ୍ୟ ହସିବ ଏ ମର୍ତ୍ତ୍ୟ
ଆସିଲେଣି ସବୁ ଦେହଧରି । (ପଦ)

ମନୁଷ୍ୟ ଦେହରେ ନେଲେଣି ଜନମ
ଦେଖାଇବେ ଶକ୍ତି ଦେଖାଇବେ କର୍ମ
ଏକତରୀ ସରି ବାଆତରୀ ପାଇଁ
ବଜାଇବେ ସତ୍ୟ ବିଜୟ, ଭେରୀ ।୧।

ଛାଡ଼ି ଦିଅ ହିଂସା ଛାଡ଼ି ଦିଅ ମିଥ୍ୟା
ଆଖରେ ଦେଖିବ ସକଳ ଦେବତା
ଯିବ ନିଦ ଭଙ୍ଗ ହେବ ତାଙ୍କ ସଙ୍ଗ
ତମ ଘରିପାଖେ ରହିବେ ଘେରି ।୨।

ମାଆ ଶ୍ରୀଚରଣେ ଦିଅ ଆଜି ଧ୍ୟାନ
ତୁଟି ଯିବ ମନ ସକଳ ଅଜ୍ଞାନ
କଟିଯିବ ଘାଟି ଯମ ଯିବ ହଟି
ମନବାଞ୍ଛା ଯିବ ନିଶ୍ଚୟ ପୂରି ।୩।

• • •

# ନୀତି ବାଣୀ

ଯେ କରେ ଧୂର୍ତ୍ତର ବ:କ୍ୟେ ବିଶ୍ୱ ସଂସ୍ଥାପନ
ନିଶ୍ଚୟଟି ପ୍ରତାରିତ ହୁଏ ସେହୁ ଜାଣ । ୧ ।

ଧର୍ମ ଗୁରୁ ନାମେ କେତେ ଭଣ୍ଡ ଏ ଜଗତେ
ଧର୍ମ ପ୍ରଚାରି ଲୋକଙ୍କୁ ନ୍ୟନ୍ତି ନର୍କ ପଥେ । ୨ ।

ଧନ ଜନ ଯୌବନର ତେଜ ଅହଂକାର
ଅଳ୍ପ କାଳ ରହି ପରେ ହୁଅଇ ଅନ୍ତର । ୩ ।

କାଟି ଇକ୍ଷୁଦଣ୍ଡ କଲେ ଖଣ୍ଡ ଖଣ୍ଡ
ମଧୁର କି ହୋଏ ଦୂର
ପ୍ରାଣାନ୍ତକ ହେଲେ ସୁଜନ ସ୍ୱଭବ
କେବେହେଁ ନୁହେଁ ଅନ୍ତର । ୪ ।

ଯୌବନ କାଳରେ ଯେହୁ ଧନ ଅରଜଇ
ବା:ର୍ଦ୍ଧକ୍ୟେ ବହୁତ ତାର ଉପକାର ହୋଇ । ୫ ।

ସର୍ବଦା ଗମନ ପରିଚିତ ହେତୁ
ନିନ୍ଦା ଅନାଦର ପାଏ
ଯଥା ଶବରୁଣୀ ମଳୟ ଚନ୍ଦନ
କାଷ୍ଠକୁ ଜଳି ପକାଏ । ୬ ।

ବିଳାସ ବାସନା ଭବ ଯେ ତ୍ୟାଗ ନ କରେ
ଶାନ୍ତି ଜାଣ ତାହାରିଟି ନାହିଁ ଏ ସଂସାରେ । ୭ ।

ଦିନକୁ ଦିନ ଊଣା ହୁଏ ଆୟୁଷ
ଦମ୍ଭ ଗରବ ଅଟେ ବୃଥା ପ୍ରୟାସ ।-୮ ।

ଜୀବନ ବାରେକ ଧର୍ମ କରିନାହିଁ ଯେହି
ପଶୁଠାରୁ କେଉଁ ଗୁଣେ ବଢ଼ ଅଟେ ସେହି । ୯ ।

ପ୍ରୌଢ଼ ଚତୁରତା ଯୌବନର ବଳ
ଅଟେ ଭଳ କ୍ଷଣସ୍ଥାୟୀ
ବା:ର୍ଦ୍ଧକ୍ୟ ବନ୍ୟାର ଫେନୋଦ୍‌ଗାରୀ ନୀରେ
ଯାଏ ତାର ମୂଳ ଧୋଇ । ୧୦ ।

ଏ ଜୀବନ ସିନା ବୁଦ୍ ବୁଦ୍ ପରଯେ
ଅଟଇ କ୍ଷଣ ଭଙ୍ଗୁର
କେଉଁ ଲଭ ଲୋଭେ ଏ ଭ୍ରାନ୍ତ ମାନବ
କରେ ଅପବ୍ୟବହାର । ୧୧ ।

ବିପଦେ କାତର ସଂପଦେ ଗ୍ୱତର
ଅଟେ ମୂର୍ଖତାର ପୂର୍ଣ୍ଣତା ମାତର । ୧୨ ।

ନ ହୁଅରେ କ୍ରୀତଦାସ କାମିନୀର ପଦେ
ସାଧକ ହୋଇବୁ ଯେବେ ବିଶ୍ୱକ୍ଷେତ୍ର ମଧ୍ୟେ । ୧୩ ।

ଜଗତେ ସରବେ ମୃତ୍ୟୁର ଅଧୀନ
ନ ଦିଏ ସେ କାହୁ ସମନ
ହଠାତ୍ ସେ ଆସି କରଇ ବନ୍ଧନ
ନ ଜାଣେ ସେ ଦିନ ଅଦିନ । ୧୪ ।

ଗୁଣି ଧନହୀନ ହେଲେ ହୁଅଇ ପୂଜିତ
ବିପୁଳ ସଂପତ୍ତି ଥିଲେ ଅଗୁଣି ଘୃଣିତ । ୧୫ ।

ପ୍ରିୟ କଥା ଆସି ଯେବେ ଦୁର୍ଜନ କୁହଇ
ଅକା:ଳ କୁସୁମ ସମ ସେ ଶୁଭ ନୁହଇ । ୧୬ ।

ସନ୍ତୋଷ ଅମୃତ ପାନ କରେ ଯେଉଁ ଲୋକ
ସବୁବେଳେ ସବୁଠାରେ ହୁଏ ତାର ସୁଖ । ୧୭ ।

ଜନ୍ମ ହେଲେ ମୃତ୍ୟୁ ହୁଏ ମୃତ୍ୟୁ ହେଲେ ଜନ୍ମ
ଅବଶ୍ୟ ଅଟଇ ଏହା ପ୍ରକୃତିର କର୍ମ । ୧୮ ।

ଆସକ୍ତିରେ ଜନ୍ମେ କାମ କାମୁଁ କ୍ରୋଧ ଜାତ
କ୍ରୋଧରୁ ଜନ୍ମଇ ମୋହ ମୋହୁଁ ବୁଦ୍ଧି ନଷ୍ଟ ।୯ ।

ଏ ସଂସାରେ ସୁଖ ନାହିଁ ଦୁଃଖଟି ସକଳ
ଅନୁଭବ ହୁଅଇଟି ଦୁଃଖ ଯେ କେବଳ । ୨୦ ।

ହୃଦୟେ ଦୁଃଖର ଶକ୍ତି ହେବ ଯେତେବେଳେ
ସୁଖ ଏହି ନାମ ତାର ହେବ ସେତେବେଳେ । ୨୧ ।

ଜନ୍ମ ଜରା ରୋଗ ଶୋକ ମରଣର କ୍ଲେଶ
ଏ ଛାର ସଂସାରେ ନାହିଁ ଜାଣ ସୁଖ ଲେଶ । ୨୨ ।

ତେବେ କିମ୍ପା ମରଦ ହେ ଏତେ ଅହଂକାର
ଚିରସ୍ଥାୟୀ ନୁହେଁ କିଛି ସମୟ ଅଟାର । ୨୩ ।

ପାଞ୍ଚରେ ନିର୍ମିତ ଦେହ ମିଶାଇ ପାଞ୍ଚରେ
କିମ୍ପାଇଁ ବଢ଼ାଇ ଭଲ କର ଧର ପରେ । ୨୪ ।

ଆପଣା ଶରୀର ଦେଖ ଆପଣାର ନୁହେଁ
କିଛି ଦିନ ରହି ଥାଏ ପୁଣି ନାଶ ଯାଏ । ୨୫ ।

ଆତ୍ମାଟି ପବିତ୍ର ନଦୀ ଜମ ତାର ଘଟ
ସତ୍ୟ ଯେ ସଲିଳ ତାର ଶୀତଳ ତାର ତଟ । ୨୬ ।

କଟାଇ ପାରଇ ଯେହୁ ଏ ଭବ ବନ୍ଧନ
ଜଗତେ ପ୍ରକୃତ ସୁଖୀ ଅଟେ ସେହି ଜନ । ୨୭ ।

ବିଶ୍ୱପ୍ରେମେ ମାତି ବିଶ୍ୱବାସୀଙ୍କୁ
ଭାଇ ବୋଲି ସମ୍ବୋଧିଲେ .
ବିଶ୍ୱକର୍ତ୍ତା ନିଶ୍ଚେ ତୁମ୍ଭ ପ୍ରତି ଭାଇ
ଶୁଭ ଦୃଷ୍ଟି ଦେବେ ଭଲେ । ୨୮ ।

ଦୁଃଖ ଭୋଗିବାକୁ ନ ହୁଅ କାତର
ଛାୟା ପ୍ରାୟ ସୁଖ ଅଛି ତା ପଛର । ୨୯ ।

ଧନୀଙ୍କୁ ନ ଦେଇ ଧନ ଦରିଦ୍ରଙ୍କୁ ଦିଅ
ଯଶ ରହିଥାଉ ଭଲ ଥିବା ଯାଏ ଦେହ । ୩୦ ।

ଦରିଦ୍ରେ ସାହାଯ୍ୟ ବୃତ୍ତି ହୋନ୍ତି ନାରାୟଣ
ଏ ହେଉଛି ମନିଷୀର ମନୁଷ୍ୟତ୍ୱ ଜାଣ । ୩୧ ।

ସମୟ ରୂପ ଧନଟି ମୂଲ୍ୟବାନ ଅତି
ଥରେ ଗଲିଗଲେ ଆଉ ନ ଫେରଇ ଜତି । ୩୨ ।

ସବୁ ଧର୍ମ କର୍ମେ ସେବା ଉତ୍କୃଷ୍ଟ ଅଟଇ
ସେବକର ଅନୁଗତ ଭଗବାନ ହୋଇ । ୩୩ ।

ସାହସ ଧୈର୍ଯ୍ୟ ଏ ଦୁଇ ଭୂଷଣ
ନ ଛାଡ଼ କଦାପି ହେ ନରଗଣ । ୩୪ ।

ଦଇବ କେଉଟ ସମୟ ଜାଲେ
ମାଛ ପରି ଏହି ମନୁଷ୍ୟ ଗଲେ । ୩୫ ।

ଜନମ ସଂଗତେ ବନ୍ଧାଟି ମରଣ
ନ ବିଚାରୀ ରଜା ଭିକାରୀ
ନିଏ ସମସ୍ତଙ୍କୁ ଅଜଣା ରାଇଜେ
ନ ଶୁଣେ କାହାରି ଗୁହାରୀ । ୩୬ ।

ବିମଳ ବନ୍ଧୁତା ଯାର ଜୀବନେ ବିରଳ
ତା ପକ୍ଷେ ମୃତ୍ୟୁଟି ଶ୍ରେୟ ଭକ୍ଷିଣ ଗରଳ । ୩୭ ।

ଏ ସଂସାରେ କେହି କାର ଶତ୍ରୁ ମିତ୍ର ନୁହେଁ
ବ୍ୟବହାରେ ଉଭୟର ପରିଚୟ ହୁଏ । ୩୮ ।

ନିଜ ଇଚ୍ଛା କରି ନିଜ ଶତ୍ରୁ ଉପୁଜାଏ
ଧୀର ସଂଯମୀ ହୋଇଲେ ଶତ୍ରୁ ଜୟ ପାଏ । ୩୯ ।

ଅନନ୍ତ ମହାସାଗର ପରି ଏ ସଂସାର
ଜୀବ ଭାସୁଛନ୍ତି ତହିଁ ସୋପାନ ପ୍ରକାର । ୪୦ ।

ମାୟାର ସମ୍ବନ୍ଧ ଭବେ
ଯେ କରିବ ଯେତେ
ଆପଣାର ହୃଦେ ସ୍ନେହ
ସେ ମାରିବ ତେତେ । ୪୧ ।

ନିଜର ମରଣ ଦୁଃଖ କର ଅନୁମାନ
ସେହି ଅନୁମାନେ ରକ୍ଷା କର ପର ପ୍ରାଣ । ୪୨ ।

ଆଜିକାଲି ହୋଇ ଦିନ ଯାଉଅଛି ବହି
ମରଣ କାଳ କ୍ରମଶଃ ଆସୁଅଛି ଧାଇଁ । ୪୩ ।

ବିପଦ ସଂପଦ ଯେତେ ଦୈବର କାରଣେ
ଦୈବ ପରାୟଣ ଏହା ଭବେ ମନେ ମନେ । ୪୪ ।

ସଂପୂର୍ଣ୍ଣ ସରଳ ମନେ ଯେ କରେ ବିଶ୍ୱାସ
ତାକୁ ଠକିବାର ନୁହେଁ ବୁଦ୍ଧିର ପ୍ରକାଶ । ୪୫ ।

ପ୍ରଣୟେ ଶୋଷଣ ଲୋକେ ନିନ୍ଦିତ ଯେ ଜନ
ତହିଁକି ପୌରୁଷ ତାର ନାହିଁରେ ଜୀବନ । ୪୬ ।

ନିଜ ବଳ ପର ବଳ ନ ଭାବିଣ ମନେ
ସହସା ଉଚିତ ନୁହେଁ ପଶିବାଟି ରଣେ । ୪୭ ।

ଶତ୍ରୁର ଭଲ ଗୁଣ ଦେଖିବ ଯେବେ
ପ୍ରଶଂସା ତାହାକୁ କରିବ ତେବେ । ୪୮ ।

ମିତ୍ର ହୋଇ ଯେବେ ଦୋଷ କରିବ
ନିନ୍ଦା କରି ତାକୁ ସତ ଶିକ୍ଷା ଦେବ । ୪୯ ।

ଅତିଶୟ ଲୋଭ କରିବ ନାହିଁ
ପାଇଥିବା ଦ୍ରବ୍ୟ ନ ଛାଡ଼ କାହିଁ । ୫୦ ।

ଯେଉଁ ଲୋକ ଗୁଣବାନ ତେଜିଯ'ନ ଅଟି
ସୁଗନ୍ଧ କୁସୁମ ପରି ତାର ଦୂର ଗତି । ୫୧ ।

ପ୍ରକୃତ ବନ୍ଧୁ ଜାଣିବ ବିପଦ କାଳରେ
ଶୂରପଣ ଜଣାଯାଏ ଯୁଦ୍ଧ ସମୟରେ । ୫୨ ।

ସତ୍‌ଲୋକ ଜଣାଯାଏ ଋଣ ବ୍ୟବହାରେ
ଧନ ଶେଷ ହେଲେ ସିନା ଚିହ୍ନିବ ଭାର୍ଯ୍ୟାରେ । ୫୩ ।

ଘରେ ବାହାରେ ଥାଉ ଧନୀ ଭୟପାଏ
ଶାନ୍ତି ହୀନ ପ୍ରାଣେ ସୁଖ ନ ଘଟେ ନିଶ୍ଚୟେ । ୫୪ ।

କାର୍ଯ୍ୟର ବ୍ୟବସ୍ଥା ଜ୍ଞାନେ ଅତି ବିଚକ୍ଷଣ
ଏ ପରି ଲୋକଙ୍କୁ ଲକ୍ଷ୍ମୀ ହୁଅନ୍ତି ପ୍ରସନ୍ନ । ୫୫ ।

ଯେ ଅଟେ ଉତ୍ସାହୀ ଶୁଭ କାର୍ଯ୍ୟେ ଅନଳସ
କୌଣସି ବ୍ୟସନ ତାକୁ ନ କରେ ପରଶ । ୫୬ ।

ଦୟାବନ୍ତ କ୍ଷମାଶୀଳ ଅଟେ ଜ୍ଞାନବାନ୍
ନିଷ୍ଫଳ ହୁଅଇ ଜ୍ଞାନ ମୋହ ହେଲେ ଛିନ୍ନ । ୫୭ ।

ଅତି ଗର୍ବେ ଅଟେ ଧ୍ରୁବ ପତନ ସୋପାନ
ଅତି ଲୋଭ ମନୁଷ୍ୟର ବିନାଶ କାରଣ । ୫୮ ।

ଅସାଧ୍ୟ ଯେ ସାଧ୍ୟ କେବେ ନୁହେଁ ଧରାତଳେ
ଜଳରେ ଶକଟ ନାବ ସ୍ଥଳରେ କି ଚଳେ । ୫୯ ।

ତୃଷ୍ଣା ଅଗ୍ନି ତୃଷ୍ଣା ଚିନ୍ତା ଆଶା କରି
ଦୁଃଖ ସ୍ରୋତ କିଏ ପାରିଛି ସନ୍ତରି । ୬୦ ।

ମର୍ମକଥା ବଳାବଳ ଗୃହର ଦୂଷଣ
ନ ଦେବଟି ଅନ୍ୟ ଲୋକେ ଏହାର ସନ୍ଧାନ । ୬୧ ।

ମଣି ମୁକ୍ତା ମୁଖେ ଦେଲେ କ୍ଷୁଧା ହିଁ ନ ଯାଏ
ଶସ୍ୟ ଗ୍ରାସ ଥିଲେ ପ୍ରାଣେ ରକ୍ତ ପୂର୍ଣ୍ଣ ଥାଏ । ୬୨ ।

ଶସ୍ୟର ସଂଗ୍ରହ ଆଗେ କରିବ ଯତନେ
ଶସ୍ୟଠାରୁ ଶ୍ରେଷ୍ଠ ନାହିଁ କିଛିଟି ଭୁବନେ । ୬୩ ।

ନୃପତିର କାର୍ଯ୍ୟ ମେଘ ପରି ଲୋକାଶ୍ରୟ
ଛାୟା ଶାନ୍ତି ଦାନେ ସୁଖୀ କରେ ପ୍ରଜାଚୟ । ୬୪ ।

କାମନାର ବିନାଶରେ ଦୁଃଖର ବିନାଶ
କାମନା ବଢ଼ାଏ ଯେହୁ ତାର ସର୍ବନାଶ । ୬୫ ।

ଯେବେଟି ହୋଇବ ଶତ୍ରୁ ବିପଦେ ପତିତ
ଆକ୍ରମଣ କର ତାକୁ ନୁହଇ ଉଚିତ । ୬୬ ।

ଲଜ୍ଜାଶୀଳା ଗଣିକାକୁ ଅନ୍ନଟି ନ ମିଳେ
କୁଳନାରୀ ନଷ୍ଟ ହୁଏ ଲଜ୍ଜାଟି ନ ଥିଲେ । ୬୭ ।

ଧନ ମାନ ହରାଇଲେ ବୁଦ୍ଧି ଲୋପ ହୁଏ
କଠୋର ନିଦାଘେ କ୍ଷୁଦ୍ର ତଟିନୀର ପ୍ରାୟେ । ୬୮ ।

ସୌରଭ ନ ଥିଲ ଫୁଲ ଲୋଡ଼ା ନ ହୁଅଇ
ଗୌରବ ନ ଥିଲେ ଜନେ କେହି ନ ପୂଜଇ । ୬୯ ।

ଜୀବନ ନ ରହେ ଭଲ ସବୁ କାଳ ପାଇଁ
ସୁକାର୍ଯ୍ୟେ ତେଜିଲେ ପ୍ରାଣ ସାର୍ଥକ ହୁଅଇ । ୭୦ ।

ଖଳ ଲୋକ ପରି ମଶକ ଅଟେ
ରନ୍ଧ୍ର ଦେଖି ରକ୍ତ ଖାଏ ସେ ପଟେ । ୭୧ ।

ଯହିଁ କାର୍ଯ୍ୟ ସିଦ୍ଧି ନୁହଇ ବଳେ
ଜାଣିଥାଅ କାର୍ଯ୍ୟ ସିଦ୍ଧି ହେବ କୌଶଳେ । ୭୨ ।

ଏକ ପାଦ ବଢ଼ାଇବା ପୂର୍ବେ ବୁଦ୍ଧିମାନ
ପରସ୍ଥାନ ନ ଦେଖିଲେ ନ ଛାଡ଼ିବ ସ୍ଥାନ । ୭୩ ।

ଖଳ ଯଦି ହୁଏ ପାଠରେ ପୁର
ତଥାପି ବିଶ୍ୱାସୀ ନୁହଇ ପର । ୭୪ ।

ସାଧୁ ପାଇ ଥାଏ ସବୁ ଅର୍ଚ୍ଚନା
ଦୁଷ୍ଟ ଭୋଗ କରେ ସବୁ ଭର୍ତ୍ସନା । ୭୫ ।

ଜ୍ଞାନ ପ୍ରେମ ପୁଣ୍ୟ କରି ଉପାର୍ଜନ
ଜଗତେ ବଢ଼ାଅ ନିଜର ସମ୍ମାନ । ୭୬ ।

ଚଢ଼ି ଦେଇ ହୃଦୟର କୁ ପ୍ରବୃତ୍ତି ଗଣ
ସଦଗୁଣ ବର୍ଦ୍ଧନ ଚିନ୍ତା କରନ୍ତି ସୁଜନ । ୭୭ ।

ପର ଦୁଃଖ ମୋଚନରେ ଯେ ଅଟେ ତତ୍ପର
ଜଗତରେ ସାଧୁ ନାମ ଅଟଇ ତାହାର । ୭୮ ।

ଜନମ ହୋଇଲେ ମରଣ ନିଶ୍ଚୟ
ବିଧିର ଏହି ବିଚାର
ଯାବତ୍ ଚନ୍ଦ୍ରାର୍କେ ସ୍ୱାର୍ଥ ତ୍ୟାଗୀ ନର
ନାମ ହୁଅଇ ଅମର । ୭୯ ।

ଶତ ଶତ ସ୍ୱାର୍ଥ ତ୍ୟାଗ କରିଣ ସ୍ୱୀକାର
ବିଜ୍ଞ ଜନ ବିବାଦକୁ କରେ ପରିହାର । ୮୦ ।

ଯେ ଅଟଇ ମୂର୍ଖ ଲୋକ ସେହୁ ଅକାରଣ
ବିବାଦ ପ୍ରବୃତ୍ତ ହୁଏ ଅପର ସଙ୍ଗେଣ । ୮୧ ।

ରମଣୀର ଲଜ୍ଜା ଗୁଣ ଭୂଷଣ ଯେସନ
ପୁରୁଷର କ୍ଷମା ଗୁଣ ସେପରି ଭୂଷଣ । ୮୨ ।

ମନର ଉତ୍ତାପ ଅତି ଦୋଷର ବିଷୟ
ସର୍ବସିଦ୍ଧି ନାଶ ହୁଏ ଜାଣିବ ନିଶ୍ଚୟ । ୮୩ ।

ନୀଚ ଯଦି ଉଚ୍ଚ ପଦେ କରେ ଆରୋହଣ
ତଥାପି ନିଜ ସ୍ୱଭାବ ନ ଛାଡ଼େ ସେ ପୁଣ । ୮୪ ।

ଆଦର୍ଶ ପୁରୁଷ ହୋଇବ ଯେବେ
ପୂର୍ଣ୍ଣ କରେ ହୃଦଜ୍ଞାନ ବିଭବେ । ୮୫ ।

ଅଳସୁଆ ଜନେ ତେଜି ବିରସେ
ଲକ୍ଷ୍ମୀ ଚାଲି ଯାନ୍ତି ଉଦ୍‌ଯୋଗୀ ପାଶେ । ୮୬ ।

ଧନୀ ଲୋକ ପାଶେ କଣ୍ଟକ ବାଜିଲେ
ସରବେ ପୁଚ୍ଛନ୍ତି ବ୍ୟଥା
ଦରିଦ୍ର ପାହାଡ଼ୁ ଗଡ଼ି ପଡ଼ିଲେ ହେ
କେହି ନ କହନ୍ତି କଥା । ୮୭ ।

ବାଞ୍ଛଇ ଅଧମ ନିଶି ଦିନ ଧନ
ମଧ୍ୟମ ଧନ ସମ୍ମାନ
ଉତ୍ତମ ବାଞ୍ଛଇ କେବଳ ସମ୍ମାନ
ନ ଇଚ୍ଛଇ କିଛି ଧନ । ୮୮ ।

ଅନୁକୂଳ ଯାକୁ ଈଶ୍ୱର ହୁଅନ୍ତି
ସେ ଯେବେ ପଶଇ ସିନ୍ଧୁ
ଖୁଜି ଯାଏ ସେହି ଆନନ୍ଦ ମନରେ
ନ ଲାଗେ ସଲିଳ ବିନ୍ଦୁ । ୮୯ ।

ଏକ ଭୋଗ ପରେ ଆସିବଟି ଆନ
ନିଶି ଶେଷେ ଯଥା ଦିବା ଆଗମନ । ୯୦ ।

ଜୀବନ ନ ରହେ ରହେ ଜୀବନୀ
ଇତିହାସ ଏହା ସାକ୍ଷିଟି ପୁଣି । ୯୧ ।

ପର ଦୁଃଖେ ଯାର ହୃଦୟ କାନ୍ଦେ
ନ ପଡ଼େ ଅକାଳେ ମରଣ ଫାନ୍ଦେ । ୯୨ ।

ମନ୍ଦ ପ୍ରକୃତିଟି ଅଟେ ଯାହାର
ପରଶ୍ରୀ ଦେଖି ସେ ହୁଏ କାତର । ୯୩ ।

ପର ପାଇଁ ଯେହୁ ଖୋଳଇ ଗାତ
ସେ ଗାତରେ ସେହୁ ପଡ଼େ ନିଶ୍ଚିତ । ୯୪ ।

ଶୁଭ ଉଦ୍ଦେଶ୍ୟଟି ବିଫଳ ନୁହେଁ
କାଳେ ଅବଶ୍ୟ ତା ଫଳକୁ ଦିଏ । ୯୫ ।

ଦୁଃଖ ବେଳେ ମନ ରଖିବ ସ୍ଥିର
ସୁଖ ଦୁଃଖ କେବେ ନୁହଁଇ ଚିର । ୯୬ ।

ଅବୁଝା କେବେ ହେଁ ନ ପାଏ ଯଶ
ମସ୍ତକ ଜାଣେ କି ନଳିନୀ ରସ । ୯୭ ।

ଯାଇଛି ଯା ତାହା ପାଇଁ ଭାବି କିବା ଫଳ
ବର୍ତ୍ତମାନ କର୍ତ୍ତବ୍ୟଟି ଭାବି ସ୍ଥିର ହେଉ । ୯୮ ।

ସଂସାରେ ଜନମି ବୃଥା ଦମ୍ଭ ଅଭିମାନ
ଏକା ଦିନେ କାଳବଳେ ହେବ ତା ବିଲୀନ । ୯୯ ।

କ୍ରୋଧରେ ସମ୍ମୋହ ଜାତ ହୋଇଣ
ସ୍ମୃତି କି କରେ ବିନାଶ

ସ୍ମୃତି ନାଶ ହେଲେ ବୁଦ୍ଧି ନାଶ ହୁଏ
ବୁଦ୍ଧି ବିନୁ ସର୍ବନାଶ । ୧୦୦ ।

ପ୍ରସନ୍ନତା ବଳେ ଦୁଃଖର ବିନାଶ
ବୁଦ୍ଧିଟି ହୁଅଇ ସ୍ଥିର

ଅପ୍ରସନ୍ନ ଦୀନ ଏକାଗ୍ରତା ହୀନେ
ଲଭଇ ସେ ଦୁଃଖ ଘୋର । ୧୦୧ ।

ରାଗ ଦ୍ୱେଷ ହୀନ ଇନ୍ଦ୍ରିୟ ଦମନ
କରିଣ ଅଛି ଯେ ଜନ

ବିଷୟ ତାହାକୁ ପ୍ରାପତ ହୋଇଲେ
ଭୋଗୀ ଲଭେ ଶାନ୍ତି ଜାଣ । ୧୦୨ ।

ଅନିତ୍ୟ ଅସତ୍ୟ ଏହି ମାୟାର ସଂସାର
ମୃଗତୃଷ୍ଣା ସମ ଏହା ଜାଣିବ ଅସାର । ୧୦୩ ।

ସମସ୍ତ ଇନ୍ଦ୍ରିୟ ଯାର ବଶରେ ରହଇ
ଗୃହେ ଥାଇ ମଧ୍ୟ ତାର ତପ ସିଦ୍ଧି ହୋଇ । ୧୦୪ ।

ଉପକାର ଅପକାର ଏ ଦୁଇ କାରଣେ
ମିତ୍ର ଆଉ ଶତ୍ରୁ ହୁଏ ଜାଣିବ ଧୀମାନେ । ୧୦୫ ।

ଉପକାରୀ ଶତ୍ରୁ ସଙ୍ଗେ ହୋଇଣ ମିଳନ
ଅପକାରୀ ଶତ୍ରୁକୁଟି କରିବ ବର୍ଜନ । ୧୦୬ ।

ସମସ୍ତଙ୍କ ପ୍ରାୟ ସେହି
ଯାର ନାହିଁ ଅଭିମାନ

କ୍ରୋଧହୀନ ଲୋକ
କେବେ ନ କରେ କ୍ରନ୍ଦନ । ୧୦୭ ।

ବିପାକେ ପଡ଼ିଲେ ମୂଢ଼ ଦୈବ ନିନ୍ଦା କରେ
ଆପଣାର କର୍ମ ଦୋଷ ବୁଝି ସେ ନ ପାରେ । ୧୦୮ ।

କ୍ଷମାଠାରୁ ସଂସାରରେ ନାହିଁ ଭଲ ଗୁଣ
ନିଷ୍କାମ ଦାନରୁ ନାହିଁ ଅଛି ବଡ଼ ପୁଣ୍ୟ । ୧୦୯ ।

ନିଜ ଶିର ପୋଡ଼ି ବୃକ୍ଷ ଛାଇ ଦାନ କରେ
ମହତ ପ୍ରାଣବଳୀରେ ପରହିତ କରେ । ୧୧୦ ।

ଅନୁଷ୍ଠାନ ବିନା ଫଳ କିବା ମନ୍ତ୍ରଣାରେ
ଔଷଧ ନାମ ଶୁଣିଣ କେବେ ରୋଗ ତରେ । ୧୧୧ ।

ବିଶେଷ ଦୁଃଖର ଭାର କରିଣ ବହନ
ନାହିଁ ତହିଁ ଥାଇ କର୍ମ କରିବ ସାଧନ । ୧୧୨ ।

ଭେକଧାରୀ ହେଲେ କିନ୍ତୁ ଧର୍ମ ନ ହୁଅଇ
ସର୍ବଭୂତେ ସମତା ଯେ ଧର୍ମକୁ ବୁଝାଇ । ୧୧୩ ।

ପ୍ରାଣ ପଣେ କାମ ରିପୁ କରିବ ବର୍ଜନ
କାମଠାରୁ ହୁଏ ସବୁ ଅନର୍ଥ ଘଟନ । ୧୧୪ ।

ଶରଦେ ମେଘର ଡାକ ବୃଥାଟି ଯେପରି
କଥାରେ ବଡ଼ାଇ କଲେ ନିଷ୍ଫଳ ସେପରି । ୧୧୫ ।

କାମନା ତ୍ୟାଗ କରିଲେ ଶାନ୍ତିହୀନ ହୋଇ
ଲୋଭହୀନ ବ୍ୟକ୍ତି କେବେ ଦୁଃଖ ପାଏ ନାହିଁ । ୧୧୬ ।

କ୍ଷୁଧା ତୃଷ୍ଣା ନିଦ୍ରା ଆବର କାମ
ଏମାନେ ଚିତ୍ତକୁ କରନ୍ତି ଭ୍ରମ । ୧୧୭ ।

କାମକୁ ଆତୁରି ଯେଉଁ ଲୋକ ହୋଇ
ଲଜ୍ଜ୍ୟାକୁ ତାହାର ଭୟ ନ ଥାଇ । ୧୧୮ ।

ମାଆ ପରି ମଣେ ପର ନାରୀକି
ଢେଲା ପରି ପରଧନକୁ ମଣେ

ନିଜ ପରି ମଣେ ସବୁ ପ୍ରାଣୀଙ୍କି
ତାହାକୁ ଜାଣିବ ମନୁଷ୍ୟ ଗଣେ । ୧୧୯ ।

ଜନତାର ଯଶ ପାଣର ଫୋଟକା
ହୀରା ଭ୍ରମେ ଗଲ ଲୈତ୍ କରନା । ୧୨୦ ।

ବୃଥା କର ନହିଁ ଅସାର ଅଟୋପ
ବୁଦ୍ ବୁଦ୍ ପ୍ରାୟେ ଯାଉଛି ଜଳେ ଲେପ । ୧୨୧ ।

ବଳବାନ ହୋଇ ଦୈବ ବିଧାନକୁ
କିଏ କରିପାରେ ଆନ
ମହାବଳୀ ଠାରୁ ବଳିୟାନ ଅଟେ
ଦଇବର ଯେ ବିଧାନ । ୧୨୨ ।

ଭବିତବ୍ୟ ଯାହା ଅବଶ୍ୟ ଘଟିବ
କିଏ ତା କହିବ ଆନ
ଜ୍ୟୋତି ଶୁକ୍ର ଗତି ରୋଧିବାକୁ କେହି
ସଂସାରେ ନୁହଁଇ ଭାଜନ । ୧୨୩ ।

ଭବିଷ୍ୟତ ଭାବି କେବା ବର୍ତ୍ତମାନ ମରେ
ଜନ୍ମ ଭୟେ ନାରୀ ପତି ସଙ୍ଗ କି ନକରେ । ୧୨୪ ।

ଧର୍ମ ଏକ ମାତ୍ର ଶ୍ରେୟଃ
କ୍ଷମା ଏକ ମାତ୍ର ଶାନ୍ତି
ଅହିଂସା ଏକମାତ୍ର ସୁଖ
ବିଦ୍ୟା ଏକମାତ୍ର ତୃପ୍ତି । ୧୨୫ ।

ତମ ରଜସ ସତ୍ତ୍ୱ ଗୁଣ
ସଙ୍ଗୀ ନୁହଁଇ ଜ୍ଞାନବାନ । ୧୨୬ ।

ମନର ବିକାଶ ଜଗତେ
ଗଗନେ ବିଜୁଳି ଯେମନ୍ତ । ୧୨୭ ।

ହିତାହାରୀ ମିତାହାରୀ ପରିଶ୍ରମୀ ଜନ
ହରାଏ ନାହିଁ କଦାପି ସ୍ୱାସ୍ଥ୍ୟ ରୂପ ଧନ । ୧୨୮ ।

ନିଜ ଦୋଷ ଯାକ ଆଗ ଦେଖିବ
ପର ଦୋଷ ସବୁ ପଛେ ଭାବିବ । ୧୨୯ ।

ଲକ୍ଷ୍ୟ ରେଖା ସୀମା ନୁହେଁ ଲଘି କେବେ
ଅଳ୍ପ ଜୀବା ଛାର ପରଭୃତ ଦେବେ । ୧୩୦ ।

ପ୍ରାଣୀ ମନେ କଷ୍ଟ ଦେବା ନୁହଇ ଉଚିତ
ମହାପାପ ଭାବେ ତାହା ଅଛଇ ବିଦିତ । ୧୩୧ ।

କର୍ତ୍ତବ୍ୟ ଜ୍ଞାନ ଯା ହୃଦରେ ନାହିଁ
ଜଗତେ ଅଧର୍ମୀ ଅଟଇ ସେହି । ୧୩୨ ।

ଜଗତରେ ପୁଣ୍ୟବାନ ଅଟେ ସେହି ଜନେ
ଦୁଃଖୀ ଜନ ଦୁଃଖ ଯେହୁ କରଇ ହରଣ । ୧୩୩ ।

ମନ ସିନା ସର୍ବ ସୁଖ ମୂଳାଧାର
ମନଟି ଦୁଃଖ କାରଣ
ଯେବେ ଏ ସଂସାରେ ମନେ ସୁଖ ନାହିଁ
ସବୁ ହୁଏ ଅକାରଣ । ୧୩୪ ।

ବିହି ଦେଇ ନାହିଁ ବଡ଼ ପଣ ଭାବେ
କରିବାକୁ ପର ପୀଡ଼ନ
ବଡ଼ ପଣ ଭାବେ ଅଢ଼େଇ ଦିନିଆ
କାଳତ ବସିଛି ଟାକିଣ । ୧୩୫ ।

ସ୍ନେହରେ ଦମନ କର ଶତ୍ରୁକୁ
ମିଷ୍ଟ କଥା କହି ତୋଷ ମିତ୍ରକୁ । ୧୩୬ ।

ସର୍ବଦା ଯେ କରେ ପରର ହିତ
ଭଗବନ୍ତଙ୍କେ ଅଟେ ତାର ଜାତ । ୧୩୭ ।

ପର ପୁରୁଷ ରତ ଯେଉଁ ନାରୀ
ସଂସାରେ ଅନିଷ୍ଟ ଘଟେ ତାହାରି । ୧୩୮ ।

ସଂସାରେ ଅନିତ୍ୟତା ରଖିକରି ମନେ
ଅହୋରାତ୍ରେ ପୁଣ୍ୟକର୍ମେ ଲାଗିପଡ଼ ଜନେ । ୧୩୯ ।

ବିପକ୍ଷ ଅକାଳେ ଯେବେ ଆକ୍ରମଣ କରେ
ନିତାନ୍ତ ନିର୍ବୋଧ ତାକୁ ଗଣିବ ଲୋକରେ । ୧୪୦ ।

ନାହିଁ ଯାହା ପିଣ୍ଡେ ନାହିଁ ତା ବ୍ରହ୍ମାଣ୍ଡେ
ସୃଷ୍ଟି ମନ ଅନୁଯାୟୀ
ସାଗ ସୁବର୍ଣ୍ଣ ଶୂନ୍ୟ ଶୁଷ୍କ ମରେ ସମ
ମନେ ଯେବେ ସୁଖ ନାହିଁ । ୧୪୧ ।

ଯେ ପର୍ଯ୍ୟନ୍ତ ହୋଇ ନାହିଁ ସାଧୁ ଇଚ୍ଛା ଜାତ
ନୀଚମନା ବୋଲି ସେହୁ ଅଟଇ ବିଦିତ । ୧୪୨ ।

ପରିଶ୍ରମ ଅଟେ ମନ ପ୍ରହରୀ
ମନ ଧନକୁ କେ ନ ପାରି ହରି । ୧୪୩ ।

ଖାଦ୍ୟ ଶରୀରକୁ କରେ ସବଳ
ଶରୀରକୁ ଆସେ ମନକୁ ବଳ । ୧୪୪ ।

ଶାସ୍ତ୍ରଜ୍ଞ ହେଲେବି ଲୋକ ହତବୁଦ୍ଧି ହୁଏ
କାର୍ଯ୍ୟ ତାର ଯଦ୍ୟପିବି ଅଭ୍ୟାସ ନ ଥାଏ । ୧୪୫ ।

ଦେହର ମଳି ଧୋଇଲେ ଯାଏ
ମନର ମଳି ମରିବା ଯାଏ । ୧୪୬ ।

ଫଗୁଣେ ଚଷ ସୁନାରେ ଭଷ
ଚଇତ୍ରେ ଚଷ କୁଟୁମ୍ବ ପୋଷ

ବୈଶାଖେ ଚଷ
ଜ୍ୟେଷ୍ଠେ ଚଷ ବେଳୁ ହୁଁ ଷଷ । ୧୪୭ ।

କକଡ଼ା ହଟା ସିତା ଚଉଣ
କନ୍ୟା ନିଗଞ୍ଜନ ଖୋଇବ

ତୁଳରେ ରେପିଲେ ମୂଳରେ ଖାଇବ
ବିଡ଼ି ବିଡ଼ି କରି ଥୋଇବ । ୧୪୮ ।

ଭଇ ମୁଠି ଆଢ଼ ଦି ମୁଠି
କିଆରୀ ମଝିରେ ପୋତିବୁ କାଠି

ଚଷା ଭଇ ମାନରେ
ଯହିଁ ପାଣି ତହିଁ ଧାନରେ । ୧୪୯ ।

ଜଳର ବାସି ଗୁଷ ତିଲ
ଫଳ ପାଇବୁ ସୁନାର ତୁଲ । ୧୫୦ ।

ଘରଢ଼ିଷ, ଘରଣୀ ଟିଷ୍
ତିନି ବରଷରେ ମାଗଇ ଭିକ୍ଷ । ୧୫୧ ।

ମଙ୍ଗଳ ଗତି ବୁଧ ପାହାଡି
ଯେଣେ ଇଚ୍ଛା ହୁଏ ତେଣେ ଯାଅତି । ୧୫୨ ।

କ୍ରମେ କର ଅଧ୍ୟୟନ
ଜ୍ଞାନ ହେବ ଉପାର୍ଜ୍ଜନ । ୧୫୩ ।

ଅଞ୍ଜନ ଘେନୁଥିଲେ ନିତ୍ୟେ
ମଳି ନ ରହେ ଯେସନେ ନେତ୍ରେ । ୧୫୪ ।

ନୁହେଁ ବୃଦ୍ଧ ସେହି ଜନ
ଶୁକ୍ଳ କେଶ ଅଟେ ଯାର ଶିର

ଯୌବନେ ଯେ ଜ୍ଞାନେ ରତ
ଦେବେ ତାକୁ ବୋଲନ୍ତି ସ୍ଥବିର । ୧୫୫ ।

କ୍ଷୁଦ୍ର କୀଟ ଉଇ ଅଳ୍ପ ଅଳ୍ପ ଧରି
ରଚଇ ବାଲ୍ମୀକ ଘର

ମୁହିଁ ସେହି ପରି ସଞ୍ଚିବି ଯତନେ
ପୁଣ୍ୟଧନ ନିରନ୍ତର । ୧୫୬ ।

ଈର୍ଷା ଦ୍ୱେଷ ଭେଦ ଭାବ ଉଚ୍ଚ ନୀଚ ନୀତି
ଯେ ଛାଡ଼ିଛି ପ୍ରକୃତରେ ସେ ସାଧୁ ଅଟନ୍ତି । ୧୫୭ ।

ସର୍ବ ଭୂତେ ସମଭାବ ଭାବ ନିରନ୍ତର
ଈଶ୍ୱର କରୁଣା ଯଦି ବାଞ୍ଛେହେ ମନର । ୧୫୮ ।

କଟାଇ ପାରଇ ଯେହୁ ଏ ଭବ ବନ୍ଧନ
ଜଗତେ ଯଥାର୍ଥ ସୁଖୀ ହୁଏ ସେହୁ ଜାଣ । ୧୫୯ ।

ଦେହଠାରୁ ବଡ଼ ନାହିଁଟି ଧନ
ମନ ଯାନ ଠାରେ ନାହିଁଟି ଯାନ । ୧୬୦ ।

ସଙ୍ଗମରେ ନାହିଁ ବଡ଼ ଶକତି
ସତ୍ୟ ସେବାଠାରେ ନାହିଁ ଭକତି । ୧୬୧ ।

ଚିତା ପୋଡ଼ିଦିଏ ନିର୍ଜ୍ଜୀବ ଜାଣ
ଚିନ୍ତା ସଜୀବକୁ କରେ ଦହନ । ୧୬୨ ।

ସ୍ୱେଚ୍ଛାଚାର ଇନ୍ଦ୍ରିୟ ଆଶକ୍ତ ଯେଉଁ ନର
ବିଶ୍ୱାସ ନ ରଖ କେହି ସେମାନଙ୍କ ଠାରେ । ୧୬୩ ।

ବାସନା ତ୍ୟାଗ ନିର୍ମମ ନିଃସ୍ପୃହ ଭାବରେ
ନିରହଙ୍କାରେ ରହିଲେ ମୋକ୍ଷ ମିଳେ ତାର । ୧୬୪ ।

ଦୁର୍ଜନର ସଙ୍ଗ କରି ବର୍ଜନ
ସାଧୁ-ସଙ୍ଗେ କର ଦିନ ଯାପନ । ୧୬୫ ।

ବନ୍ଧ ଭାଙ୍ଗିଗଲେ କେ ରୋଧିବ ପାଣି
କାଳ ବହିଗଲେ ଆସଇ କି ପୁଣି । ୧୬୬ ।

ସଂସାରେ ନାହିଁ ଦିଅଁ ବାପା ମାଆ ପରି
ଧନ୍ୟ ସେ ଯେ ସେବା ପୂଜା କରଇ ତାଙ୍କରି । ୧୬୭

କରିଦିଅ ଦୂର ବିଳାସ କାମନା
ଛାଡ଼ିଦିଅ ମନୁ ଅସାର ଭାବନା । ୧୬୮ ।

ଚରମ ପାପୀ ନୁହେଁ କେହି ସକଳ ଅସାର
ଧନ ଜୀବନ ଯୌବନ ବୁଦ୍ ବୁଦ୍ ପ୍ରକାର । ୧୬୯ ।

ମୁଁ ଜାଣେ ଏ ଭବ ନ ଭବ ଚିରେ
ସଂସାରେ ଅଛନ୍ତି କେଜାଣି କେତେ । ୧୭୦ ।

ମାଟିର ଏ ଦେହ ନିଶ୍ଚେ ଯିବଟି ମିଳାଇ
କେତେ ଦିନ ପାଇଁ କରେ ଏ ଛାର ବଡ଼ାଇ । ୧୭୧ ।

ନିଅତିର ଗତି ଦିନେ କରିବ ଆନ
ବ୍ରହ୍ମା ଶିବ ଯାର କଟାକ୍ଷେ ପାଷାଣ । ୧୭୨ ।

ଆପଣାର ଧର୍ମେ ରହି ମୃତ୍ୟୁଲଭେ ପୁଣି
ଅନ୍ୟର ଧର୍ମ ନ ଆସ୍ଥର ଏହା ଶାସ୍ତ୍ର ବାଣୀ । ୧୭୩ ।

ସ୍ନାଣ କରେ ଛୁମନ ସବୁ ମୋହରି
ଟଳି ପଡ଼ିଲେ କେହି ନୁହେଁ କାହାରି । ୧୭୪ ।

ଥିଲେ ଏ ସଂସାରେ କେତେ ନୃପତି
ଥାଏ କରି କେ ଭୋଗ କଲ ଏ ପୃଥ୍ୱୀ । ୧୭୫ ।

ରୂପ ପ୍ରତିମାକୁ ତୁ ପରତେ ନ ଯା
ରହିବ ନାହିଁ କେହି ରଜା ପରଜା । ୧୭୬ ।

ନାମ ହୋଇଛି ଶ୍ରେଷ୍ଠ ଏହାର ଜୀବ
ନିଶ୍ଚେ ସଂସାରେ କ୍ଷେତ୍ର ଦିନେ ଏ ଯିବ । ୧୭୭ ।

କି ଅର୍ଥ ଅଛେ ଏହି ନଶ୍ୱର ଦେହ
ବିଷୟ ବିଶେଷ ଆଉ କୁଟୁମ୍ବ ସ୍ନେହ । ୧୭୮ ।

ବୋଜାନି ଯେତେବେଳେ ହେଲ କାମୁଡ଼ା
ଜାଣିଥା ତାହାକୁ ନ ମିଳେ ଖଡ଼ା । ୧୭୯ ।

ପର ଅନୁରୋଧେ ଖାଏ ଯେ ନିଶା
ଜାଣିବ ତାହାର ପଡ଼ିଲା ଦଶା । ୧୮୦ ।

ମୂଳିଆ ମୂଳ ଯେ ନିଏ ଠକାଇ
ତିନି ପୁରେ ଠାବ ତାର ନାହିଁ । ୧୮୧ ।

ଚିପି ଖୁପି କରି ଦୁହେଁ ଯେ ଦୁଧ
ସାତ ଜନ୍ମ ଯାଏ ହୁଏ ସେ ଅନ୍ଧ । ୧୮୨ ।

ପର ବଦନରେ ଯାହାର ଆଖି
ତା ଜୀବନରୁ ଛାଡ଼ି ଯାଆନ୍ତି ଲକ୍ଷ୍ମୀ । ୧୮୩ ।

ପାଉତି ନ ନେଇ ଦିଏ ଯେ କର
ପ୍ରବେଶ ଟପିଲେ ହୁଏ ଯେ ଘର । ୧୮୪ ।

ଅଟକ୍ତି ଉପରେ ଡରେ ଯେ ପର । ୧୮୪ ।
ହରବର ତାର ଭାଗ୍ୟ ମୁକର । ୧୮୫ ।

ଗୋଚର ଭୂଇଁ କି କରେ ଯେ ଗ୍ରାସ
ଆନ୍ତ ଥାଇଁ ଥାଇଁ ହୁଏ ଯେ ସେ ନାଶ । ୧୮୬ ।

ନିଜ ଦେଶକୁ ଯେ କରଇ ହୀନ
ତାହା ଠାରୁ ବଳି ଅଛି କେ ହୀନ । ୧୮୭ ।

ଭେଣ୍ଡାପୁଅ ଯେବେ ଠାପୁଆ ହେବ
ଅଳ୍ପ ଦିନେ ତା ଘର ନାଶ ଯିବ । ୧୮୮ ।

ଗଞ୍ଜାଇ ନିଶାରେ ନ ଥାନ୍ତି ହରି
ଭସ୍ମାମୀ ନର୍କକୁ ନିଏ ଓଟାରି । ୧୮୯ ।

ଗୋବର ପିଣ୍ଡୁଳା ପଡ଼ିଲେ ତଳେ
ମାଟି ଘେନି ନିଶ୍ଚେ ଉଠିବ ପଳେ । ୧୯୦ ।

ହାଟୁଆ କଇଦ ନାଟୁଆ ପେଷା
ମୂର୍ଖ ଘେର ହେଲେ ପଥର ଫସା । ୧୯୧ ।

ମଉଳ ନ ହେଲେ ମୂନୀ ବ୍ରହ୍ମଚାରୀ
ଲୋକ ବ୍ୟବସାୟ ବୃଦ୍ଧେ ଅଟକ । ୧୯୨ ।

ପେଟ ଠାରୁ ବଡ଼ ହାକିମ ନାହିଁ
ହାତ ଘୋଡ଼ ଠାରୁ ଘକର ନାହିଁ । ୧୯୩ ।

ଯୁବା ବେଳେ ଥୟ ରଖେ ଯେ ମତି
ଏହି ଜନ୍ମେ ତାର ହୁଏ ମୁକତି । ୧୯୪ ।

ନୂତନ କାକର ଖଗ ଅଜିନ
ଏ ସବୁ ଶରଦ ଜର ବିହୀନ । ୧୯୫ ।

ରସିକ ତାହାକୁ କହନ୍ତି ସିନା
ରସିକ ହୃଦେ ଯେ ଜଗି ବାସନା । ୧୯୬ ।

ଯୁଆଡ଼େ ବର୍ଷିବ ବରଷା ପାଣି
ସେହି ଦିଗେ ଧର ଛତାକୁ ଟାଣି । ୧୯୭ ।

ଯେଉଁ ଗ୍ରାମେ ନାହିଁ ଦଣ୍ଡା ଗୋଚର
ଯମପୁରୀ ବୋଲି ତାହାକୁ ବୋଲ । ୧୯୮ ।

ହାକିମ ଯେବେଟି ହେଇ ଗଞ୍ଜୁଆ
ନିନ୍ଦା ବୋଝ ମୁଣ୍ଡରେ ଥୁଆ । ୧୯୯ ।

ପଇସା ଲୋଭରେ ଦେଇ ଯେ ଭେଟ
ଆପଣା ବେକରେ ମାରେ ସେ ଘେଟ । ୨୦୦ ।

ଦୁଆର ସୁନ୍ଦର ଯୋଡ଼ି କବାଟ
ପୋଖରୀ ସୁନ୍ଦର ଗାଧୁଆ ଘାଟ । ୨୦୧ ।

ଖବର କାଗଜ ପଢ଼େ ଯେ ନିତି
ନ୍ୟାୟରେ ତାହାକୁ ପାରେ କେ ଜିତି । ୨୦୨ ।

ଘର ପୋଡ଼ି ପୁଣି ଝଡ଼ି ବଢ଼ିରେ
ମିଳିମିଶି ଯାନ୍ତି ବୁଦ୍ଧିଆ ନରେ । ୨୦୩ ।

ବଡ଼ ବାବୁଙ୍କର ଖାଇବା ଠାଣି
ଫାଳେ ସନ୍ଦେଶର ଗିଳସେ ପାଣି । ୨୦୪ ।

ଅଜା ଗଜା ବୁଢ଼ା ମେଷ
ଦଧିର ଅଗ୍ର ଘୋଳର ଶେଷ । ୨୦୫ ।

ଅଜି ସର୍ଜ କୁମ୍ଭକ ମଲେ
ଗୁଡ଼ ମାଠିଆ ମହୁଆ ମାରେ । ୨୦୬ ।

ଅସତୀ ଲୋଗଇ ପରଙ୍କ ସୁପାରି
କୁଳବତୀ ହୁଏ ଦାସୀ । ୨୦୭ ।

ଘର ଘର ହୋଇ ବୁଲଇ ଗୋରସ
ମଦ ବିକା ଯାଏ ବସି । ୨୦୮ ।

ଅଣ୍ଡା ଭଙ୍ଗା ହୋଇ ଯେ ବଣଦାରି
ପୁଣି ହୋଇ କରି ଯେଉଁ କଷାରି । ୨୦୯ ।

ଯେଉଁ ଷାଙ୍କର ଅଣ୍ଡାରେ କାରି
ତିନି ଯାକ ଅଟନ୍ତି ମାରି । ୨୧୦ ।

ଅଙ୍କେ ମାରନ୍ତି ଯେ ନେକଛାପ
କେହି ନ ଜାଣେ ଭିତର ପାପ । ୨୧୧ ।

ପର ଘରେ ଖାଇ ମାଗଣା ରଷ ।
ଭିକ ମାଗି ଯାଇ ଖେଳିବା ପଶା
ବାସି ଧୋବ ଲୁଗା ପିନ୍ଧଇ ଚଷା
ସାନ୍ଧୁ ବାପୁଡ଼ାକୁ ଡୁକାର ଭଷା
ଏ ସବୁ ପଛକୁ ଫସର ଫସା । ୨୧୨ ।

ଷକଟା ଯୁଆ ଗଣିକା
ନଟ ନାରୀ ମୁଳେ
ଏ ମାନଙ୍କେ ଚିର ଦେଲେ
ଯଶ ଯାଇ ହେଲେ । ୨୧୩ ।

ବିପୁଳ ସମ୍ପତ୍ତି ଥିଲେ ଶ୍ରୀବନ୍ତ ନହିଁଇ
ଦୟା ଧର୍ମ ଥିବା ଲୋକ ଶ୍ରୀବନ୍ତ ବୋଲଇ । ୨୧୪ ।

ଭୂତ ଭବିଷ୍ୟ ବର୍ତ୍ତମାନ
ଏ ଜୀବ ଥାଇ ସର୍ବସ୍ଥାନ । ୨୧୫ ।

ମାଇପ ଆଗରେ ପାଇକ ପଣ
ଦାଣକୁ ଯିବାକୁ ନ ପାଏ ଟାଣ । ୨୧୬ ।

ମୂର୍ଖ ପୁଅ ବିଧବା ଝିଅ
ବିନା ଅଗ୍ନିରେ ଦହନ୍ତି ଦେହ । ୨୧୭ ।

ସ୍ନେହକୁ ଖର ଭଚ୍ୟ ମୃଗର
ଇଣ୍ଡିତା ନାରୀ ଗୋଦାବରୀ ଦାରୀ
ଏହାଙ୍କ ଗାରିମା କହି ନ ସରି । ୨୧୮ ।

ଲଜୁଆ ବାହ୍ମଣ ଲାମୁଆ ଘେର
ଗାଁ ମଝିରେ ଯେବେ ଥାଇ ଯୋର
କମାର ସୁନାରୀ ମୁହଁରେ ଧୋର
ଏହିମାନଙ୍କର ମୁହଁକୁ ପୋଡ଼ ।୨୧୯।

ନ ମିଳେ ଋଣ ପିତା ତିଋଣ
ଝିଅ ମରଣ, ହଜ କଥା କରେ
ଆଗେ ଦୁଃଖ ପଛେ ସୁଖ
ଯେହୁ ବଖାଣ ।୨୨୦।

ହଜାରେ ଗଧରେ ବାନ୍ଧିଲେ ଭଲ
ବଣାରେ ନୁହନ୍ତି ଘୋଡ଼ାର ତୁଲ ।୨୨୧।

ପରର ପୁଅକୁ ପୁଅ କରି ଆଣି
ତାକୁ ନ କହିବ ବାଲକ ।

ଅଡ଼ୁଆ ସୂତାକୁ ଖିଏ ପାଇଲେ
ତାକୁ ନ ବୋଲିବ ସଲଖ ।୨୨୨।

ଚୋଗଣୀ କଂସାରେ ଗୁଣ୍ଡାଏ ପଡ଼ିଲେ
ତାକୁ ନ ବୋଇବ ବେଳକ ।

ଟୋପି ଟୋପି ହୋଇ ମେଘ ବରଷିଲେ
ତାକୁ ନ ବୋଲିବ ପାଳକ ।୨୨୩।

ପରଠେ ନ ଯିବ ଦାରୀ ସୁନାରୀ
ପରଠେ ନ ଯିବ ବୀଟପୀ ନାରୀ ।
ପରଠେ ନ ଯିବ ଚର୍ଣ୍ଣିକଟାକୁ ।
ପରଠେ ନ ଯିବ ଚୁଟିକଟାକୁ ।
ପରଠେ ନ ଯିବ ଭଣ୍ଡାର ପୂତା ।
ଖାଏ ବାଣ ପୁଣି ଖେଗଏ ସୂତା ।୨୨୪।

ବାଡ଼ ହୋଇ ଯେହୁଁ ଖାଏ ବେଉଷା
ବିରଡ଼ି ହୋଇ ଯେ ନ ମାରେ ମୂଷା
ରଜା ହୋଇ ଯେବେ ଚଷଇ ଚଷା
କହ କି ହେବ ସେ ଦେବାର ଦଶା ।୨୨୫।

ହାତ ଲଡ଼ବଡ଼ କହୁଣୀ ଖାଏ
ଜିର ଲଡ଼ବଡ଼ ହରିଣ ଧାଏଁ ।୨୨୬।

ଟକ୍‌ଜା ଗୁଡ଼ିଆ ଧଇଁଆ ତେଲୀ
ଛୋଟା ଦଣ୍ଡୁଆସି ହେଡ଼ିଙ୍ଗ ମାଳି
ଅନ୍ଧର ବ୍ରାହ୍ମଣ କୁଷ୍ଠରୁ ଧୋବା
ଏ ସବୁ ଜଗତେ ଖାଆନ୍ତି କୋବା ।୨୨୭।

ଖିରରେ ଧୋଇବ ଖଣ୍ଡରେ ମୋହିବ
ଲିମ୍ବ କି ମଧୁର ହୋଇବ
ଶତବାର କରି ବୁଝାଇ କହିଲେ
ଖଳ କି ସୁଧୁରି ରହିବ ।୨୨୮।

ସାଲୁ ପତ୍ର ଆଲୁ ପତ୍ର
ସେ କି ହୋଇବ ପାନ
ପଛରେ ଯାହାକୁ ଘଇତା କରିବ
ସେ କି ବୁଝିବ ମନ ।୨୨୯।

ଗଣ୍ଡକୁ ନ ଥାଏ · ଲଗା
ବିରଡ଼ିକୁ ନାହିଁ ପଘା
ହାତୁଁ ଦେଇ ପରେ ନୋହିବ ଲଗା
ମାଗତା ପାଖରେ ନୋହିବ ମଗା ।୨୩୦।

ଶନି ଶୁପଟା ଶୁଭ ଚଳନରେ
ଖୁଆଏ ପାନ ଧରଏ ଛତା
ଅଶୁଭ ଭଙ୍ଗେ ହାଡ଼ ଗୋଡ଼
ଖୁଆଏ ଯୋତା ।୨୩୧।

ବାମୁଠା କଲି ବାମୁଠା କଲି
ବାକି ମୁଠାରେ ରହିବ
ଶତବାର କରି ବୁଝାଇ କହିଲେ
ପର କି ଆପଣା ହୋଇବ ।୨୩୨।

ତେଲ, ତମାଖୁ ମଇଦା
ଯାକୁ ଯେତେ ରଗଡ଼ିବ
ତେତେ ଫାଇଦା ।୨୩୩।

ଯେ ପ୍ରାଣୀ ସଂପଦ ଇଚ୍ଛଇ
ଅନ୍ତେ ନରକେ ସେ ପଡ଼ଇ

ଯେ ନର ଲୋଭେ ବଶ ହୋଇ
ଇଷ୍ଟ ଦେବତା ନ ପୂଜଇ
ତାହାର ନାହିଁ ସୁଖ ଲେଶ
ବିପଦେ ହୁଏ ସେ ପ୍ରବେଶ । ୨୩୪ ।

ଯେ ପ୍ରାଣୀ ନିଜ କର୍ମ ଛାଡ଼ି
ଅନ୍ୟ ଜୀବିକା କରେ ଲୋଡ଼ି
ଦୁର୍ଗତି ପଥ ଆବୋରନ୍ତି
ଯେସନେ ବିଟପୀ ଯୁବତୀ । ୨୩୫ ।

ଯାହାର ବନ୍ଧୁ ପଦ୍ମନାଭ
ତାକୁ ଜଗତେ କି ଦୁର୍ଲଭ । ୨୩୬ ।

ଅକ୍ଷମ ଦେଖି ପରେ ଦିଏ ଯେ ପୀଡ଼ା
ତାପାଇଁ ବିଧି ସାଜେ ଦଣ୍ଡର ବିଡ଼ା । ୨୩୭ ।

ଯା ଅଙ୍ଗେ ସଦା ଘାରେ ଅନଙ୍ଗ ବାଣ
ଚେତନ ଅଚେତନ ତାର ସବୁ ସମାନ । ୨୩୮ ।

ଅଜ୍ଞାନେ ଏ ଘୋର ସଂସାରେ
ଜୀବ ଭ୍ରମଇ ଅହଂକାରେ । ୨୩୯ ।

ଅଧର୍ମ କୂଟ ମାୟା ଯହିଁ
କେବେ ହେଁ ନ ଯିବ ସେଠାଇଁ । ୨୪୦ ।

ଗଲ୍ଲ ଧର୍ମେ ଆତ୍ମତତ୍ତ୍ୱେ ଦେଇ ମତି
ଉଚ୍ଚ ହୋଇ ଲଭ ଉଚ୍ଚତର ଗତି । ୨୪୧ ।

ଇଚ୍ଛା ଯାହା ଯେବେ ହୁଅନ୍ତା ପୂରଣ
ଦୁଃଖ ବୋଲି ଭବେ ଥାଆନ୍ତା କି ପଣ । ୨୪୨ ।

ଆୟୁଷ, ବଳ, ଯଶ, ଧର୍ମ
ଲୋକ ଆଶୀଷ ଶୁଭ କର୍ମ
ଏ ଆଦି ସର୍ବନାଶ କରେ
ହିଂସା କରନ୍ତି ଯେହୁ ନରେ । ୨୪୩ ।

ମାତୃଭୂମି ଲୋଡ଼େ ସୁରେଟି ଫଳ
ଧର୍ମ ଧନବିଦ୍ୟା ବାହୁର ବଳ । ୨୪୪ ।

ଦଇବ ଦଉଡ଼ି ମନୁଷ୍ୟ ଗାଈ
ଯେଣିକି ଟାଣଇ ତେଣିକି ଯାଇ । ୨୪୫ ।

ଘଇ ନ ଚିହ୍ନି ତା ଲେଟ ଦିଅନା
ଘୋଡ଼ା ଚଢ଼ି ମୋହବଟେ ପଡ଼ି
ବେକକୁ ଭୁଗଡ଼ୀ ନିଅନା । ୨୪୬ ।

ହତାରେ କାତାରେ ବଢ଼ିଣ ମାରେ
କୁଟୁମ୍ବ ପୋଷି ନ ପାରେ
ଏ ସ୍ତରି ଜାତି ବଇଷମ ହୁଅନ୍ତି ସଂସାରେ । ୨୪୭ ।

ଭଇ ଭଇ ମଧ୍ୟେ ଲଗିଲେ ବିବାଦ
ପଡ଼ିଶାଏ ତାହା ସଂପତ୍ତି
ଖଳ ଲୋକମାନେ ମଚାଇ ବଚାଇ
ଭଜନ୍ତ ଦଶାକୁ ଅଣାନ୍ତି । ୨୪୮ ।

ହଂସା ବିକାଉଛି ମଟର ଚଢ଼ା
ମକଦମା ନିଶା ବିକାଏ ହଡ଼ା । ୨୪୯ ।

ପ୍ରଜାରକ୍ତ ଶୋଷୀ କେତେ ଜମିଦାର
ହରନ୍ତି ସର୍ବସ୍ୱ ବଢ଼ାଇ ପ୍ରହାର । ୨୫୦ ।

ପାଳିଲି ନାଳିଲି ନୋହିଲି କିଛି
ଅଧିକାର କଲ ଗୁହାଳ ପୋଛି । ୨୫୧ ।

ହାଟ ମଧ୍ୟରେ ବ୍ରହ୍ମଜ୍ଞାନ
ପ୍ରକାଶଯୋଗ୍ୟ ନୁହେଁ ସ୍ଥାନ । ୨୫୨ ।

ପଇସା କ୍ୟା ନ କରଇ କାମ
ଆବେ ପରଶୁ ଯାବେ ପରଶୁଆ
ଏବେ ବାବୁ ପରଶୁରାମ । ୨୫୩ ।

ଜାଇ ବ୍ରାହ୍ମଣ, ଜାଟା ଶୁଦ୍ର
ଭେଣ୍ଡିଏ ମୁସଲମାନ
ଦାରୀର ପୁତ୍ର ପୋଷ୍ୟ ପୁତ୍ର
ଏ ପଞ୍ଚ ସମାନ । ୨୫୪ ।

ଜିତି ପଢ଼ୁଥିବ ଗୀତା
ନିତି ଖାଉଥିବ ପିଠା

ଚିତ୍ର ସୁନ୍ଦି ହେବ ଶେଷ ନାଶ ଯିବ
ହୋଇବ ଜଗତ ଜିତା । ୨୫୫ ।

ଗାଁ ଜଳଡିଅ ବିକାଏ ନାହିଁ
ଯେବେ କିଛିଏ ଜଳଡ଼ି ନାହିଁ । ୨୫୬ ।

ମନ ଟାଣ ରକ୍ଷି ଧରିବ ଦେହ
ଟାଳିବ ନାହିଁଟି ବୃଥା ସମୟ । ୨୫୭ ।

ଧନ୍ୟ କହିବା କିପରି କି
ଯା ଲାଗି ଭଜ ଶ୍ରୀପତିକି । ୨୫୮ ।

ନ ବର୍ଷଇ ଜଳ ମେଘ ବର୍ଷଇ ଧଉଳିଆ
ନ ପୋଷଇ ଛାପ ବିକଣିଆ ପୋଷଇ ଖଉରିଆ । ୨୫୯

ଯେବେ ବରଷଇ ଜଳ ମେଘ ଜଳିଥାଏ ଆଣ ଆଣି
ଯେବେ ପୋଷିଥାଏ ଛାପ
ବିକଣିଆ କରିଥାଏ ସାଆନ୍ତାଣି । ୨୫୯ ।

ଯେଭି ଗଉଡ଼କରେ କରିବ ଘର
ଅଧେ ଆପଣା ଅଧେ ପର । ୬୦ ।

ପାହାନ୍ତି ଘଡିରେ ମା ବୀଣାପାଣି
ସୁମରିଲେ ବିଦ୍ୟା ଦେବେ ବଖାଣି । ୨୬୧ ।

ସଂସାରର ଆଡ଼ମ୍ବର ବୁଦ୍ ବୁଦ ଆକାରେ
ସକଳ ଗ୍ରାସଇ କାଳମୁଖ ନିର୍ବିଘ୍ନରେ । ୨୬୨ ।

ଉର୍ବର ହୀନ ଯେ ମାଟି
ମେଘ ବରଷିଲେ ଦହଲ ଉଠଇ
ଖର ଜଳେ ଯାଏ ଫାଟି । ୨୬୩ ।

ମହୁଆ ଆଳୁ
ପାଏ ଛେପିଦେଲେ ଆଉଠି ପଳୁ । ୨୬୪ ।

ପୂର୍ବେ ଇନ୍ଦ୍ର ଧନୁ ପଶ୍ଚିମେ ରବି
ତିନି ଦିନ ପ୍ରହରେ କରେ ଏକାଲବୀ । ୨୬୫ ।

ଧନ୍ୟରେ ସଂସାର ପରକାଳ ପଛି
ସବୁ କଥାରେ ସୁଯୋଗ

ଦୁର୍ବଳର ସିନା ଇଲଟ ଲିଖନ
ନୀରବେ ଯନ୍ତ୍ରଣା ଭୋଗ । ୨୬୬ ।

ଗଜ କଚ୍ଛପର କଳି ପ୍ରାୟ ନର
ଦମ୍ଭେ କରିଥାନ୍ତି ଲୀଳା
ମନେ ନାହିଁ ଦିନେ କାଳ ପକ୍ଷୀଗଣ
ଉପରୁ ମାରିବ ଚିହ୍ନା । ୨୬୭ ।

ବଡ଼ ହେଲେ କିସ ହେବ
କର୍ମ ସିନା ଅଟେ ସବୁଠାରୁ ବଡ଼
କର୍ମହୀନ ଲୋକ ନୁହଁଇ କି ସତେ
ପାଷାଣଠୁ ବଳି ଜଡ଼ । ୨୬୮ ।

ଦେଶ ହିତ ଆନ ବାଞ୍ଛା
ତୋ ଘର ବୁଡ଼ିବ ତା ଘର ବୁଡ଼ିବ
ମୋ ଘର ବଢ଼ିଲେ ଆଛା । ୨୬୯ ।

ମହାଜନ ଦେବ ଟଙ୍କା
ଅସୁଲ ବେଳକୁ ଆଇନ ମୋଡ଼ରେ
ସବୁ ହୋଇଯିବ ବଙ୍କା । ୨୭୦ ।

ସଦ୍‌ଗୁରୁ ଯେବେ ମାରେ ଗୋଇଠା
ଅନ୍ଧାର ଘରରେ ଜଳେ ଦୀପ ଉଠା । ୨୭୧ ।

ସାମନ୍ତ ସିଂହାର କାଣ୍ଡ ଖଣ୍ଡା ଧରି
ପଟ୍ଟନାୟକଙ୍କ ସଦନେ
କୁଣ୍ଡା ମିଶା ଭାତ ଗୁଣ୍ଡାଏ ଖାଆନ୍ତି
ପିଣ୍ଡା ବସା ଅବଧାନେ । ୨୭୨ ।

କେଶରୀ ସମାଜେ ନୃପତି ପ୍ରବଣକି
ଶୃଗାଳ ହେବ ଗଜନ
ପଣ୍ଡିତ ସମାଜେ ମୂର୍ଖ ସଭାପତି
ଦିଶଇ କି ଶୋଭନ । ୨୭୩ ।

ଘୁଷରୀ କଣ୍ଠରେ ନବ ରତ୍ନମାଳା
ମର୍କଟ ଶାଳଗ୍ରାମ

ସୁନା ପିଞ୍ଜରରେ ପେଚକ ରଖିଲେ
ପଢ଼ିବ କି ହରିନାମ । ୨୭୪ ।

ତିଅଣ ମିଶାଣ ମୁଗ ବାଇଗଣ
ଜାତିରେ ଟେକୁଆ କରଣ ବ୍ରାହ୍ମଣ । ୨୭୫ ।

ଚଅଳ କାମକୁ ମଠୁଆ ଗ୍ଭଲି
ତାକୁ ମନେ କର ପର
ଦି ପହରିଆ କତର ଘୋଡ଼ା
ତାକୁ ଜାଣିଥିବ ଜର । ୨୭୬ ।

ବୋଝ ବଡ଼ ଗ୍ଭଲି ଖର ତାକୁ ଜାଣିଥିବ କପା
ଏ ଘରେ ସେ ଘରେ ନଅର ପଅର ତାକୁ
ମନେ କର ଯପା । ୨୭୭ ।

ଗଣ୍ଡେ ସେଇ ଘଇତା କରନ୍ତି
ବୟସ ଗଡ଼ାଇ ମରନ୍ତି । ୨୭୮ ।

ଗ୍ଭଷୀ ତାମସିଆ ଦାସୀ ଓ ଘାଷି
ବର୍ତ୍ତମାନ ପାଇଁ ହୁଅନ୍ତି ସନ୍ନ୍ୟାସୀ । ୨୭୯ ।

ବଡ଼ ହେବ ଯେବେ ହୁଅ କର୍ମବୀର
ବାକ୍ୟ ବୀର ହୋଇ ନ ବୁଡ଼ ସଂସାର । ୨୮୦ ।

ଆଗ କୁହା ଆଗ ଚଲ
ପର ପାଣି ବୁହା ପଛ ପେଲ
ଜୀବ ଥାଉଁ ଥାଉଁ ଆଗେ ମଲ । ୨୮୧ ।

ସମତା ବୁଦ୍ଧି ସତ୍ୟ ଭଷା
ନିତ୍ୟେ କରିବ ଏଣେ ଆଶା । ୨୮୨ ।

ବେଦୁଁ ହୋଇଲ ନାନା ଗତି
ତା ତତ୍ତ୍ୱ କେହି ନ ଜାଣନ୍ତି । ୨୮୩ ।

ସାଧୁ ସଙ୍ଗ ସାଧୁ ସଙ୍ଗ ସର୍ବ ଶାସ୍ତ୍ର କହେ
ଆଖୁ ବଣେ ଅଣଖୁଆ ମଧୁର କି ହୁଏ । ୨୮୪ ।

ଘରର ସୋନା ଶାମକୁ ଖାନା
ଭଗ୍ନେ ଲକ୍ଷ୍ମୀ ବନେ ବନେ ଗେନା । ୨୮୫ ।

ବିପଦରେ ଧୈର୍ଯ୍ୟ ଅଭ୍ୟୁଦୟେ କ୍ଷମା
ସଭରେ କହିବା ଗୁଣ
ଯୁଦ୍ଧରେ ବିକ୍ରମ ଯଶରେ ଇଚ୍ଛା
ଶାସ୍ତ୍ରଜ୍ଞ ମହାତ୍ମା ଗୁଣ । ୨୮୬ ।

ଯେ ଯାହା ପ୍ରତିଜ୍ଞା କରେ ସ୍ୱଳକ
ପାଳନ ନ କଲେ ବଡ଼ ପାତକ
ସଂସାରେ ହୁଅଇ ନିନ୍ଦିତ ସେହି
ଭଲ ବୋଲି ତାକୁ ନ କହେ କେହି । ୨୮୭ ।

ଯାହା ନ କରିବ ଆପ୍
ତା ନ କରିବ ସାର ବାପ୍ । ୨୮୮ ।

ପ୍ରତିଜ୍ଞାରୁ ଶିବ ବିଷ ପିଇଲେ
ତେଣୁକରି ଶିବ ନୀଳକଣ୍ଠ ହେଲେ । ୨୮୯ ।

ବାଛି ବିଭା ହେବ କୁଳର ନାରୀ
ମରନ୍ତେ ଜିଅନ୍ତେ ହେବ ଉପକାରୀ । ୨୯୦ ।

ବେଳ ଥାଉଁ ଥାଉଁ ବାଟ ଗ୍ଭଲୁଥିବ
ଲଗା ନ ରଖିବ ପରେ
ଆଗ ଚଲ ପୁଅ ଥୋଇଲି ମାଇପ
ଯାକୁ ନ ରଖିବ ଘରେ । ୨୯୧ ।

ବରଷା ରତି ଶୀତ ପାହାନ୍ତି ଦି ପହରିଆ ଭଗ
ଏ ସମୟେ ଝାଡ଼ା ଫେରିଗଲ
ଚିରି ଥାଉ ଥାଉ ମଲ । ୨୯୨ ।

ଏ ସଂସାରେ ନିଜର ଭଲ ଭଳ ଡାଲି ତର୍କାରୀ
ଆଉ ଯାହା ଦେଖ ରଖ ସବୁ ଅଟେ ସର୍କାରୀ । ୨୯୩ ।

ମାଲି ମକଦମା କରିବ ରଫା
ଗୁଣ୍ଡେ ହେଲେ ଜମି କରିବ କପା
କ୍ଷତି ହେଉ ପଛେ ମଣିଷ ଲଫା । ୨୯୪ ।

ଖାଇବ ପିଇବ ରହିବ ଘରେ
ବୃଥା ବୁଲ ନାହିଁ କାକରଟାରେ । ୨୯୫ ।

ପୁତେ ବଣିଜ ଆପେ ଋଷ
ଗୁଡ଼ି କରଇ ସର୍ବନାଶ । ୨୯୬ ।

ଲେଖା ବଣିଜ ଅଲେଖା ଋଷ
ଖଏର ହିସାବେ ସର୍ବନାଶ । ୨୯୬ ।

ସୁଜନ ପୀରତି ସୁବର୍ଣ୍ଣ ନଉଡ଼ି
ଦିନକୁ ଦିନ ବିଗଳେ
କୁଜନ ପୀରତି କୁମ୍ଭାର ନଉଡି
ହାତରୁ ପଡ଼ିଲେ ଭଙ୍ଗେ । ୨୯୮ ।

ଆୟ ଥୋଡ଼ା ବ୍ୟୟ ବଢ଼ା
ଘେରି କରିନେବା ଭେଇ
ଘର ବଢ଼ା ଯୋର ଥୋଡ଼ା
ଯୋଝା ଖାନେକା ଡ଼ଭଇ । ୨୯୯ ।

ଅଖ ଚଳୁଥିଲେ ଚକ ଚଳୁଥାଏ
ବୁଲି ପଡ଼ୁଥାଏ ମହି
ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି । ୩୦୦ ।

ଅତି ଭଲ ନୁହେଁ କହିବା
ଅତି ଭଲ ନୁହେଁ ସହିବା
ଅତି ଭଲ ନୁହେଁ ଚବର ଚବର
ଅତି ଭଲ ନୁହେଁ ଶୋଇବା । ୩୦୧ ।

ମହାର୍ଘ୍ୟ ସମୟ ଯାଉଛି ବହି
ବୃଥା କାଟି ନିଅ କି ଭବେ ରହି । ୩୦୨ ।

ଜଗନ୍ନାଥଙ୍କର ବଢ଼େଇ
କାହାକୁ ଦିଅନ୍ତି ଖିରି ଖେଚୁଡ଼ି
କାହାକୁ ମାରନ୍ତି ଗଡ଼େଇ । ୩୦୩ ।

କାହା କପାଳରେ ଖିରି ଆରିଷା
କାହା କପାଳରେ ଲଡ଼ୁ
କାହା କପାଳରେ ଖାରିଆ ଖଡ଼ା
ଘେବାଇ ଗେବାଇ କାଢ଼ୁ । ୩୦୪ ।

ଯାହାକୁ ସହିବ କନିଆ ଶାଶୁ
ଖିରି ଉପରେ ଖଣ୍ଡ ବରଷୁ । ୩୦୫ ।

ଅହିଂସା ପରମ ଧର୍ମ ସର୍ବ ଧର୍ମେ ସାର
ଏକଥା ଜଗତେ ଜନେ କରିବେ ପ୍ରଚାର । ୩୦୬ ।

ସାକର ଯୋଗେ କି ହୋଇ ପାରେ ଲିମ୍ବ ମଧୁ
ମହାକାଳ ଗନ୍ଧିଲେ କି ହେବ ସେହୁ ସ୍ୱାଦୁ । ୩୦୭ ।

ଗୁଆ ମୂଳେ ଗୋବର କଦଳୀ ମୂଳେ ମାଟି
ନଡ଼ିଆ ଯେବେ ଫଳ ନ ହେବ ଦେଇ ଦେବ କାଟି । ୩୦୮ ।

ତେଲିର ବଳଦ ଗଉଡ଼ ଗାଈ
ବୁଝି ସୁଝି କରି ନେଉ ଭାଇ । ୩୦୯ ।

ଜାଣେ ନ ଜାଣେ ଝାମ୍ପୁଲି ଆଣ
ଖାଡ଼ିଆ ଶିଙ୍ଘା ସବୁଠାରେ ଟାଣ ।

କୃଷଳୀ ଶିଙ୍ଘାକୁ ଦେଖିବୁ ଯେବେ
ଅଣ୍ଟାରୁ ପଇସା କାଢ଼ିବୁ ତେବେ । ୩୧୦ ।

ଆଣିଥିବୁ ମୂଳା ଶିଙ୍ଘାକୁ ରସି
କାନ୍ଦୁଥିବୁ ହିଡ଼ ମୁଣ୍ଡାରେ ବସି । ୩୧୧ ।

ଶିଙ୍ଘଟି ସରୁଆ ଲଙ୍ଗୁଡ଼ ମୋଟା
ମାଗଣା ପାଇଲେ ଭାଇ ଲେଉଟା । ୩୧୨ ।

ଶୟନ ଉତ୍‌ଥାନ ପାଣ୍ଡ ମୋଡ଼ା
ଚାର ମଧ୍ୟେ ଭୀମା ଛଡ଼ା
ପାଗଲ ଚଉଦ ପାଗଲି ଆଠ
ଜା ନେଇଁ ଦିନ କାଟ । ୩୧୩ ।

ଖାଇବ ବଗଡ଼ା ଛାଡ଼ ପିନ୍ଧିବ ରଗଡ଼ା
ରହିବ ସତ୍ୟରେ ଭାଇ ତେଜିବ ଝଗଡ଼ା । ୩୧୪ ।

ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ
ହାବୁଡ଼ି ଯିବଟି ଆଚମ୍ବିତେ ଆସି । ୩୧୫ ।

ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ ଡୋରି

ନିଜ ଭଗ୍ୟ ଚୋରି କାଳହସ୍ତେ ଏହା
ପକାନ୍ତି ହେଲେ ପାଶୋରି । ୩୧୬ ।

ବିଶ୍ୱାସ ନଯିବୁ ରକ୍ଷିତା ମାଇ
ଦୁଧ ଖାଉଥିଲେ ରଖିବୁ ଗାଇ । ୩୧୭ ।

ବାକ୍ୟରେ ମନରେ କି ଅବା କର୍ମରେ
ନ କରିବୁ ପାପାଗ୍ଧର
ତେଜିବୁ ଅସତ୍ୟ ହିଂସା କପଟତା
ଲୋଭ କ୍ରୋଧ ଅହଂକାର । ୩୧୮ ।

ସତ୍ୟେ ମନେ ରଖି ସତ୍ୟକୁ ବୁଝିବୁ
ଗାଇବୁ ସତ୍ୟର ଜୟ
ମଙ୍ଗଳ କାର୍ଯ୍ୟରେ ଲାଗିଥିବୁ ସଦା
ଛାଡ଼ିଣ ସକଳ ଭୟ । ୩୧୯ ।

ଓଲଟିବି ରାଜ୍ୟ ସୁଖୀ ହେବ ପ୍ରଜା
ଭକ୍ଷୁନା ଧାନ କି ସତେ ହେବ ରଜା । ୩୨୦ ।

ଫଟା ମୃଦଙ୍ଗକୁ ଜଡ଼ା ଗାୟକ
ତହିଁ କାଣୀବାଇ ନାଚୁଛି
ଅବୁଝା ରଜାକୁ ପାଜି ବିଣ୍ଡା ମନ୍ତ୍ରୀ
ଯାହା ଇଚ୍ଛା ତାହା କରୁଛି । ୩୨୧ ।

ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର ବାରିଧି । ୩୨୨ ।

ଚଲନା ନାହିଁ କୋଶ ଭର
ବେଟି ଭଇ ନାହିଁ ଏକ
ମାଗନା ନାହିଁ ସାର ବାପ୍‌କୋ
ଯଦି ରଘୁବୀର ରଖେ ଟେକ । ୩୨୩ ।

ଖାଇବା ପାଇଁକି ପଡ଼ିଛି ଦେଶ
ଲେଟି ପୋଟି କରି ମୋଡ଼ୁଥା ନିଶ । ୩୨୪ ।

କୁଳ କନ୍ୟା କାଳି ନୁହେଁ
ତୀର୍ଥଜଳ ଘୋଳି ନୁହେଁ । ୩୨୫ ।

ଦିନେ ଜମ୍ବୁରଣ ନେଇ ଯିବ ପ୍ରାଣ
ବୃଥାରେ ବହିଛୁ ମନେ ମନେ ଟାଣ । ୩୨୬ ।

କେତେ ଜମାଦାର ଗଲେଣି ଏ ଫାଣ୍ଡି ପଡ଼ିଛି
କେତେ କନା ଗଲଣି ଏ ଗାଣ୍ଡି ପଡ଼ିଛି । ୩୨୭ ।

ବାସେ ଯାଇଥିଲେ ଫାଣ୍ଡିକି
କିବା ଆଣିଛନ୍ତି ଗାଣ୍ଡିକି । ୩୨୮ ।

ସୁଜନ କୋ ସୁଜନ ମିଲେଗା କ୍ୟା ମିଲେଗା ମୁଢ଼
ଚନ୍ଦନ ମେ ମକ୍ଷି ନାଇ ବୈଠେ ଦିଲ୍ଲୀ ନ ଖାଏ ଗୁଢ଼୍
। ୩୨୯ ।

ପରତେ ନ ଯିବ ପଡର କଟା
ପରତେ ନ ଯିବ ଅନ୍ତଲ ପେଟା
ପରତେ ନ ଯିବ ଖଣ୍ଡର ବେଟା
ପରତେ ନ ଯିବ ଦାରୀ ସୁନାରୀ
ପରତେ ନ ଯିବ ଧନୁଆ ନଈ
ମନେ ରଖି ସବୁ ଚଳିବୁ ଭଇ । ୩୩୦ ।

ମାଂସେ ମାଂସ ବୃଦ୍ଧି ହୁଏ ଦୁଗ୍ଧେ ବୃଦ୍ଧି ବଳ
ଘୃତେ ବିନ୍ଦୁ ବୃଦ୍ଧି ହୁଏ ଶାକେ ବୃଦ୍ଧି ମଳ । ୩୩୧ ।

ପଖେ ଖଇ ମାଘେ ଦହି
ଚଇତେ ଲିମ୍ବ ଚକୁଳି ଖାଇ । ୩୩୨ ।

ଅକ୍ଷର ବଙ୍କା ଅର୍ଜଇ ଟଙ୍କା
କରଣ କୁଳର କୁଳ କଳଙ୍କା
ଅକ୍ଷର ନିକ, ମାଗଇ ଭିକ
କରଣ କୁଳର କୁଳ ନାୟକ । ୩୩୩ ।

ଗଜ ବାଜି ମିଗ ଯାହା ହାତେ ଥାଇ
ତା କୁଳ ଛାଡ଼ିବ କ୍ଷଣେ
ଶତ୍ରୁକୁ ଅଣ୍ଡଳ ପାଣିକି କଣ୍ଡଇ
ସଙ୍ଗେ ହୋଇଥାଏ ଜଣେ । ୩୩୪ ।

କୃଷ୍ଣ ରସିଆ ପ୍ରେମ ବିଳାସିଆ
ଯମ ତରସିଆ ସର୍ବ ନାଶିଆ
ଏ ଗ୍ରରି ଜାତି ବଇଷମ ଭୂପୃଷ୍ଠ ବାସିଆ । ୩୩୫ ।

ମାଳା ଜପେ ଘର ଘର ଠକେ
କରେ ଠକାଇ କାମ
ଏ ଲୋକ ଯବ୍ ବୈକୁଣ୍ଠ ଯାଏ
ଭକୁଆ କି ଭଗବାନ । ୩୩୬ ।

ବ୍ରାହ୍ମଣ ରଜା ଖଣ୍ଡ ପରଜା
ଜହ ଜହ ଆର୍ଗିକ ଶୀତଳ ଭଜା
କହ ଦଳେଇ ଏ କାହିଁ ମଜା । ୩୩୭ ।

ଅମାବାସ୍ୟା ହୋଇଛି ଜାହିଁକି
ପୂର୍ଣ୍ଣିମାର ଶ୍ରୀ ଚୁଦ୍ଧି ପାଇଁକି । ୩୩୮ ।

ଆମର ପଣ
ଆମ ସରିଗଲେ ଟାକୁଆ ବଣ । ୩୩୯ ।

ମଠ ଗ୍ଭକିରିଆ ହୋଇବ
ପେଟ ଅଭରିଆ ନୋହିବ
ମଠା ଘୋଡ଼ି ହୋଇ କାଠୁଁଟି ମଗଏ
କୋଠାଟି ଭିତରେ ଶୋଇବ । ୩୪୦ ।

ସୀତା ଘେରଇଲ ରାବଣ ନେଲ
ସାତୁଟା ଗ୍ରନ୍ଥ ଏଥିପାଇଁ ହେଲ । ୩୪୧ ।

ବିଧିର ବିଧାନ କେ କରିବ ଆନ
ଯାହା ଥାଏ କର୍ମେ ଲେଖା
ଅତି ଟାଣ ବନ୍ଧୁ ହୋଇଲେ କି ହେବ
ବିପଦେ ନ ହେଲେ ଦେଖା । ୩୪୨ ।

ଦୁଃଖୀ ଉଙ୍କୀ ତଣ୍ଡି ଚିପି ବାରବାର
ଦାତା ପଣ ଲଇ ନ କର ପ୍ରଘ୍ରର । ୩୪୩ ।

ମର୍ତ୍ତେ କେତେ ଆସି କେତେ ଗଲେ ଭାଇ
କିଏ ନେଇ ଗଲେ କି ଧନ ମୁଣ୍ଡାଇ । ୩୪୪ ।

ଭଗ୍ନ ଘଟୁଁ ଆହା ସଳିଳ ଯେସନ
ସରିଯାଉ ଅଛି ଆୟୁ ପ୍ରତିକ୍ଷଣ । ୩୪୫ ।

ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ଲୁଚି ବସେ । ୩୪୬ ।

ମୋତି ମୂଲ୍ୟ କାହୁଁ ଜାଣିବ ସବର
ମୋତି ଫିଙ୍ଗି କରି ଗୁଞ୍ଜାରେ ଆଦର । ୩୪୭ ।

ଘୋଟିଛି ନରକୁ ଉଚ୍ଚୋ ରୂପି ବ୍ୟାଧି
ଔଷଧ ନ ଖୋଜି ଖୋଜୁଛି ଉପାଧି । ୩୪୮ ।

ଚିହ୍ନିବାକୁ ଶିଖିନାହିଁ ପରମନ
ସେ କି କେବେ ପ୍ରଭୁ ପଣକୁ ଭଜନ । ୩୪୯ ।

ପ୍ରେମଟି ଅଟଇ ସାଧୁମାନଙ୍କର ମୁଖ୍ୟ ଧର୍ମ ଧରାତଳେ
କି ଇତର ବଡ଼ ଛୋଟ ଯେତେ ପ୍ରାଣୀ ସମାନ
ତାଙ୍କୁ ସକଳେ । ୩୫୦ ।

ସାହାସେ ଯେହୁ ବାନ୍ଧେ କକ୍ଷ
କାର୍ଯ୍ୟ ଭୂମିରେ ସେ ହର୍ଯ୍ୟକ୍ଷ । ୩୫୧ ।

ସର୍ବେ ଏକତ୍ର ହୋନ୍ତି ଯେବେ
ଅସାଧ୍ୟ ସାଧ୍ୟ ହୁଏ ତେବେ । ୩୫୨ ।

ସ୍ୱଦେଶ ଦ୍ରୋହୀ ସ୍ୱାର୍ଥ ରଙ୍କ
ଦେଶର ଅଟଇ କଳଙ୍କ । ୩୫୩ ।

ସମ୍ପଦ ବେଳେ ସର୍ବେ ସଖା
ବିପଦେ ନ ଦିଅନ୍ତି ଦେଖା । ୩୫୪ ।

ଖଳ କି ଜାଣଇ ଧର୍ମର ବାଟ
ବନ୍ଧ୍ୟା କି ଜାଣେ ପ୍ରସବ କଷ୍ଟ । ୩୫୫ ।

ସ୍ତ୍ରୀ ନାୟିକା ଗୃହ ଯାଏ ନାଶ
ବହୁ ନାୟକରେ ମୂଳୁ ବିନାଶ । ୩୫୬ ।

ଦେଶ ଶ୍ମଶାନ ପରଦେଶ ନଇ
ଅସାବଧାନେ ବିପଦ ଘଟଇ । ୩୫୭ ।

ସଞ୍ଚିତ ଧନେ ବିପଦୁଁ ଉଦ୍ଧାର
ବୃଦ୍ଧ କାଳକୁ ହୁଏ ଉପକାର । ୩୫୮ ।

ସାଧୁ ନ ଚିହ୍ନିବ ଖାଲି ଚିତାରେ
ଲୋକ ନ ଚିହ୍ନିବ ଜାମା ଜୋତାରେ । ୩୫୯ ।

ଅତି ସ୍ନେହେଁ ଝିଅ ଦାଣ୍ଡରେ ଠିଆ
ଅତି ସ୍ନେହେଁ ପୁଅ ମନ ମୋଟୁଆ । ୩୬୦ ।

ଗୁଳି ଅନ୍ୟ ନାମ ଅଟଇ ଗୁଳି
ଅଫିମ ନୁହେଁ ସେ ଜୀବନ ଶୂଳୀ । ୩୬୧ ।

ଗୁଳି ଅଫିମ ଯେ ଅଭ୍ୟାସ କଲ
ଜିଇଁ ଜିଇଁ ଥାଉ ଜୀବନେ ମଲ । ୩୬୨ ।

ଲକ୍ଷପତି ଏଠି କହନ୍ତି ତାଙ୍କୁ
ଲକ୍ଷ ଯାହାଙ୍କର ପରଧନକୁ । ୩୬୩ ।

ବଡ଼ ବୁଦ୍ଧିମାନ ଏ ଯୁଗେ ସେହି
ପରକୁ ପାରିଲ ଯେହୁ ଭୁଲାଇ । ୩୬୪ ।

ଜୋକ ଶୋଷି ନିଏ ଦେହୁଁ ରକତ
ଋଣ ନାଶ କରେ ମାନ ମହତ । ୩୬୫ ।

ବିଟପୀ ହାତରେ ପ୍ରେମ ବାରତା
ଟଙ୍କା ମଧ୍ୟସ୍ଥରେ ଯେଉଁ ବନ୍ଧୁତା
କାଚ ଚିଜ ମଧ୍ୟେ ଲୁହା ଖଣ୍ଡତା
ଜାରବାର ନିଷେ ଉଙ୍କିବା କଥା । ୩୬୬ ।

ଦିଗ୍‌ବିଜୟୀ ବୀର ତାଙ୍କରି ନାମ
ସବୁ ଅତ୍ୟାଚାର ଯାହାଙ୍କ କାମ । ୩୬୭ ।

ଦେଶ ଠାରୁ ନାହିଁ ବଡ଼ ଦେବତା
ମାଆ ଠାରୁ ନାହିଁ ମଧୁର କଥା
ବଣିକଠୁ ନାହିଁ ବଡ଼ିଆ ଯନ୍ତା । ୩୬୮ ।

ସାଧୁ ସଙ୍ଗେ ମେଳେ ଯେ ରହେ ନିତି
ମନ୍ଦ ଛାଡ଼ି ଭଲ ଶିଖଇ ନିତି । ୩୬୯ ।

ମନ ମେଳ ଥିଲେ ଦୂର ନିକଟ
ପଦ୍ମ ସଙ୍ଗେ ଯିତି ,ସୂର୍ଯ୍ୟଙ୍କ ଭେଟ । ୩୭୦ ।

ଉଦ୍‌ଯୋଗୀ ବାଧା ଭ୍ରୂକୁଟୀଙ୍କି
ନ ଗଣି ଯିବି ଆଗେ ଝିଙ୍କି । ୩୭୧ ।

ଅସାଧ୍ୟ ମଣେ ଯେ ଅଳସ
କର୍ମବୀର ତା କରେ ବଶ । ୩୭୨ ।

ଜାତିର ଇଚ୍ଛିବ କଲ୍ୟାଣ
ତୁଚ୍ଛ ମଣିବ ନିଜ ପ୍ରାଣ । ୩୭୩ ।

ଉଚ୍ଚ ନୀଚ ଜାତି ମନେ ନ ଘେନ
କାର୍ଯ୍ୟ ଅନୁମାନେ ମନୁଷ୍ୟ ଚିହ୍ନ । ୩୭୪ ।

ଅଙ୍ଗାର ଖଣିରୁ ହୀରକ ଜାତ
ପୁରାଣର ମୁନୀ କେଳୁଣୀ ସୁତ । ୩୭୫ ।

ଭାଗ୍ୟକୁ ନିନ୍ଦନ୍ତି ନିକମା ବସି
କାମିକା ତୁଳନ୍ତି ଉଦ୍‌ଯୋଗେ ଲସି । ୩୭୬ ।

ମଣିଷ ବଡ଼େଇ ପାଣିର ଗାର
ଆଜି ଯେ ଗଜେନ୍ଦ୍ର କାଲି ଫକୀର । ୩୭୭ ।

ଚଷା ଠାରୁ ନାହିଁ ବଡ଼ିଆ ଜାତି
ତାଙ୍କ ଲାଗି ସର୍ବେ ଫୁଲନ୍ତି ଛାତି । ୩୭୮ ।

ଘରକୁ ସୁନ୍ଦର ଢିଙ୍କି ଅରଟ
ଗ୍ରାମକୁ ସୁନ୍ଦର ଦେଉଳ ମଠ । ୩୭୯ ।

ସାଧୁ କରମ କଲେ ଭବେ
ଦେବତା ହୁଅନ୍ତି ମାନବେ । ୩୮୦ ।

ଶାନ୍ତି ଆନନ୍ଦ ଖୋଜେ ଯାହା
ସତ୍ୟ ପାଳନେ ମିଳେ ତାହା । ୩୮୧ ।

ମାନବ କଲେ ପାପାଚାର
ବୋଲନ୍ତି ତାହାକୁ ଅସୁର । ୩୮୨ ।

ଶୁର କୁଶଳ ଯେ ଅସୁର
ଏ ତିନି ଭେଦରେ ସଂସାର । ୩

କୃଷ୍ଣ ରସିଆ ପ୍ରେମ ବିଳାସିଆ
ଯମ ତରସିଆ ସର୍ବ ନାଶିଆ
ଏ ଘରି ଜାତି ବଇଷମ ଭୂପୁଷ୍ପ ବାସିଆ । ୩୩୫ ।

ମାଳା ଜପେ ଘର ଘର ଠକେ
କରେ ଠକାଇ କାମ
ଏ ଲୋକ ଯବ୍ ବୈକୁଣ୍ଠ ଯାଏ
ଭକୁଆ କି ଭଗବାନ । ୩୩୬ ।

ବ୍ରାହ୍ମଣ ରଜା ଖଣ୍ଡ ପରଜା
ଡହ ଡହ ଆର୍ମି କ ଶୀତଳ ଭଜା
କହ ଦନେଇ ଏ କାହିଁ ମଜା । ୩୩୭ ।

ଅମାବାସ୍ୟା ହୋଇଛି କାହିଁକି
ପୂର୍ଣ୍ଣିମାର ଶ୍ରୀ ବୃଦ୍ଧି ପାଇଁକି । ୩୩୮ ।

ଆମର ପଣ
ଆମ୍ବ ସରିଗଲେ ଟାକୁଆ ବଣ । ୩୩୯ ।

ମଠ ଗୁଳିକିରିଆ ହୋଇବ
ପେଟ ଅଜୀରିଆ ନୋହିବ
ମଠା ଘୋଡ଼ି ହୋଇ କାଠୁଁଟି ଗଢ଼ଏ
କୋଠାଟି ଭିତରେ ଶୋଇବ । ୩୪୦ ।

ସୀତା ଗ୍ଲେଗଇଲ ରବଣ ନେଲ
ସାତୁଟା ଗ୍ରନ୍ଥ ଏଥିପାଇଁ ହେଲ । ୩୪୧ ।

ବିଧିର ବିଧାନ କେ କରିବ ଆନ
ଯାହା ଥାଏ କର୍ମେ ଲେଖା
ଅତି ଟାଣ ବନ୍ଧୁ ହୋଇଲେ କି ହେବ
ବିପଦେ ନ ହେଲେ ଦେଖା । ୩୪୨ ।

ଦୁଃଖୀ ରଙ୍କୀ ତର୍ଣ୍ଣି ଚିପି ବାରବାର
ଦାତା ପଣ ଭଇ ନ କର ପ୍ରସ୍ତର । ୩୪୩ ।

ମର୍ତ୍ତ୍ୟେ କେତେ ଆସି କେତେ ଗଲେ ଭଲ
କିଏ ନେଇ ଗଲେ କି ଧନ ମୁଣ୍ଡାଇ । ୩୪୪ ।

ଭଗ୍ନ ଘଟୁଁ ଆହା ସଳିଳ ଯେସନ
ସରିଯାଉ ଅଛି ଆୟୁ ପ୍ରତିକ୍ଷଣ । ୩୪୫ ।

ଦୂରବର୍ତ୍ତୀ ଜାଣି କାଳକୁ ଯେ ହସେ
ହସି ସେ ତା ପଛେ ଆସି ଲୁଚି ବସେ । ୩୪୬ ।

ମୋତି ମୂଲ୍ୟ କାହୁଁ ଜାଣିବ ସବର
ମୋତି ଫିଙ୍ଗି କରି ଗୁଞ୍ଜାରେ ଆଦର । ୩୪୭ ।

ଘୋଟିଛି ନରକୁ ରଜୋ ରୂପି ବ୍ୟାଧି
ଔଷଧ ନ ଖୋଜି ଖୋଜୁଛି ଉପାଧି । ୩୪୮ ।

ଚିହ୍ନିବାକୁ ଶିଖିନାହିଁ ପରମନ
ସେ କି କେବେ ପ୍ରଭୁ ପଣକୁ ଭଜନ । ୩୪୯ ।

ପ୍ରେମଟି ଅଟଇ ସାଧୁମାନଙ୍କର ମୁଖ୍ୟ ଧର୍ମ ଧରତଳେ
କି ଇତର ବଡ଼ ଛୋଟ ଯେତେ ପ୍ରାଣୀ ସମାନ
ତାକୁ ସକଳେ । ୩୫୦ ।

ସାହାସେ ଯେହୁ ବାନ୍ଧେ କକ୍ଷ
କାର୍ଯ୍ୟ ଭୂମିରେ ସେ ହର୍ଯ୍ୟକ୍ଷ । ୩୫୧ ।

ସର୍ବେ ଏକତ୍ର ହୋନ୍ତି ଯେବେ
ଅସାଧ୍ୟ ସାଧ୍ୟ ହୁଏ ତେବେ । ୩୫୨ ।

ସ୍ୱଦେଶ ଦ୍ରୋହୀ ସ୍ୱାର୍ଥ ରଙ୍କ
ଦେଶର ଅଟଇ କଳଙ୍କ । ୩୫୩ ।

ସମ୍ପଦ ବେଳେ ସର୍ବେ ସଖା
ବିପଦେ ନ ଦିଅନ୍ତି ଦେଖା । ୩୫୪ ।

ଖଳ କି ଜାଣଇ ଧର୍ମର ବାଟ
ବନ୍ଧ୍ୟା କି ଜାଣେ ପ୍ରସବ କଷ୍ଟ । ୩୫୫ ।

ସ୍ତ୍ରୀ ନାୟିକା ଗୃହ ଯାଏ ନାଶ
ବହୁ ନାୟକରେ ମୂଳୁ ବିନାଶ । ୩୫୬ ।

ଦେଶ ଶ୍ମଶାନ ପରଦେଶ ନଈ
ଅସାବଧାନେ ବିପଦ ଘଟଇ । ୩୫୭ ।

ସଞ୍ଚିତ ଧନେ ବିପଦୁଁ ଉଦ୍ଧାର
 ବୃଦ୍ଧ କାଳକୁ ହୁଏ ଉପକାର । ୩୫୮ ।

ସାଧୁ ନ ଚିହ୍ନିବ ଖାଲି ଚିତାରେ
 ଲୋକ ନ ଚିହ୍ନିବ ଜାମା ଜୋତାରେ । ୩୫୯ ।

ଅତି ସ୍ନେହେଁ ଝିଅ ଦାଣ୍ଡରେ ଠିଆ
 ଅତି ସ୍ନେହେଁ ପୁଅ ମନ ମୋଟୁଆ । ୩୬୦ ।

ଗୁଳି ଅନ୍ୟ ନାମ ଅଟଇ ଗୁଳି
 ଅଫିମ ନୁହେଁ ସେ ଜୀବନ ଶୂଳୀ । ୩୬୧ ।

ଗୁଳି ଅଫିମ ଯେ ଅଭ୍ୟାସ କଲା
 ଜିଇଁ ଜିଇଁ ଥାଉ ଜୀବନେ ମଲା । ୩୬୨ ।

ଲକ୍ଷପତି ଏଠି କହନ୍ତି ତାଙ୍କୁ
 ଲକ୍ଷ ଯାହାଙ୍କର ପରଧନକୁ । ୩୬୩ ।

ବଡ଼ ବୁଦ୍ଧିମାନ ଏ ଯୁଗେ ସେହି
 ପରକୁ ପାରିଲା ଯେହୁ ଭୁଲାଇ । ୩୬୪ ।

ଶୋଷ ଶୋଷି ନିଏ ଦେହୁଁ ରକତ
 ଋଣ ନାଶ କରେ ମାନ ମହତ । ୩୬୫ ।

କିଟପୀ ହାତରେ ପ୍ରେମ ବାରତା
ଟଙ୍କା ମଧ୍ୟସ୍ଥରେ ଯେଉଁ ବନ୍ଧୁତା
କାଚ ଚିଜ ମଧ୍ୟେ ଲୁହା ଖଣ୍ଡତା
 କାରବାର ନିଷ୍ଠେ ଭାଙ୍ଗିବା କଥା । ୩୬୬ ।

ଦିଗ୍‌ବିଜୟୀ ବୀର ତାଙ୍କରି ନାମ
 ସବୁ ଅତ୍ୟାଗ୍ର ଯାହାଙ୍କ କାମ । ୩୬୭ ।

ଦେଶ ଠାରୁ ନାହିଁ ବଡ଼ ଦେବତା
ମାଆ ଠାରୁ ନାହିଁ ମଧୁର କଥା
 ବଣିକଠୁ ନାହିଁ ବଡ଼ିଆ ଯନ୍ତା । ୩୬୮ ।

ସାଧୁ ସଙ୍ଗେ ମେଳେ ଯେ ରହେ ନିତି
 ମନ୍ଦ ଛାଡ଼ି ଭଲ ଶିଖଇ ନିତି । ୩୬୯ ।

ମନ ମେଳ ଥିଲେ ଦୂର ନିକଟ
 ପଦ୍ମ ସଙ୍ଗେ ନିତି ,ସୂର୍ଯ୍ୟଙ୍କ ଭେଟ । ୩୭୦ ।

ଉଦ୍‌ଯୋଗୀ ବାଧା ଭ୍ରୂକୁଟୀଙ୍କି
 ନ ଗଣି ସିଦ୍ଧି ଆଣେ ଝିଙ୍କି । ୩୭୧ ।

ଅସାଧ୍ୟ ମଣେ ଯେ ଅଳସ
 କର୍ମବୀର ତା କରେ ବଶ । ୩୭୨ ।

ଜାତିର ଉନ୍ନତି କଲ୍ୟାଣ
 ତୁଚ୍ଛ ମଣିବ ନିଜ ପ୍ରାଣ । ୩୭୩ ।

ଉଚ୍ଚ ନୀଚ ଜାତି ମନେ ନ ଘେନ
 କାର୍ଯ୍ୟ ଅନୁମାନେ ମନୁଷ୍ୟ ଚିହ୍ନ । ୩୭୪ ।

ଅଙ୍ଗାର ଖଣିରୁ ହୀରକ ଜାତ
 ପୁରାଣର ମୁନୀ କେଉଣୀ ସୁତ । ୩୭୫ ।

ଭାଗ୍ୟକୁ ନିନ୍ଦନ୍ତି ନିକମା ବସି
 କାମିକା ତୁଳନ୍ତି ଉଦ୍‌ଯୋଗେ ଭସି । ୩୭୬ ।

ମଣିଷ ବଢ଼େଇ ପାଣିର ଗାର
 ଆଜି ଯେ ଗଜେନ୍ଦ୍ର କାଲି ଫକୀର । ୩୭୭ ।

ଚଷା ଠାରୁ ନାହିଁ ବଢ଼ିଆ ଜାତି
 ତାଙ୍କ ଲାଗି ସର୍ବେ ଫୁଲନ୍ତି ଛାତି । ୩୭୮ ।

ଘରକୁ ସୁନ୍ଦର ଢ଼ିଙ୍କି ଅରଟ
 ଗ୍ରାମକୁ ସୁନ୍ଦର ଦେଉଳ ମଠ । ୩୭୯ ।

ସାଧୁ କରମ କଲେ ଭବେ
 ଦେବତା ହୁଅନ୍ତି ମାନବେ । ୩୮୦ ।

ଶାନ୍ତି ଆନନ୍ଦ ଖୋଜେ ଯାହା
 ସତ୍ୟ ପାଳନେ ମିଳେ ତାହା । ୩୮୧ ।

ମାନବ କଲେ ପାପାଚାର
 ବୋଲନ୍ତି ତାହାକୁ ଅସୁର । ୩୮୨ ।

ଶୂର କୃଷ୍ଣ ଯେ ଅସୁର
 ଏ ତିନି ଭେଦରେ ସଂସାର । ୩୮୩ ।

ଏମନ୍ତ ମଜାରେ ବାଟ ଚାଲୁଥିବ
କେହି ନ ବୋଲିବେ ଝୁଟ । ୩୮୪ ।

ଏମନ୍ତ ଖଞ୍ଜାରେ ଗହଳେ ବସିବ
କେହି ନ ବୋଲିବେ ଉଠ । ୩୮୫ ।

ଅନ୍ତେ ଚିଲ୍ଲ ଦାନ୍ତେ ଲୁଣ
ପେଟ ପୂରିବ ତିନି କୋଣ
ଶିରରେ ପଗଡ଼ି ପାଦରେ ତେଲ
ବଇଦ ସଙ୍ଗରେ କରିବ ଗେଲ
ଯୁଆ ଶକଟା ପାଶ ରଙ୍ଗ
ପଶା ନ୍ୟାୟବନ୍ତ ବେଶ୍ୟା ସଙ୍ଗ
ଏ ଷଡ଼ କର୍ମେ ଯେଉଁ ପୁଅ ଥାଏ
ଯେବେ ମରି ସେ ଟାକର ଖାଏ । ୩୮୬ ।

ତୋତେ ଯେ ମାଇଲା ତୁ ତାକୁ ନ ମାରେ
ମାରୁଥିବ ତାକୁ ଆନ
ଦେଖୁ ଥାଉ ତୋର ଦୁଇ ନୟନ
ଶୁଣୁଥିବ ବେନି କାନ । ୩୮୭ ।

ଜ୍ୟେଷ୍ଠେ କଦଳୀ ଆଷାଢ଼େ କିଆ
ପୋତ ନ ପୋତ ହୁଅଇ ଠିଆ
ହାତେ ଗ୍ରୁଖଣ୍ଡେ ଖୋଳିବ ଗାତ
ପତର ଖଣ୍ଡରେ ନ ଦେବ ହାତ
ସୁଖଣ୍ଡେ ଛାଡ଼ି ଭର୍ଗିବ ଭଣ୍ଡା
ତେବେ ଦେଖିବ କଦଳୀ ପେଣ୍ଡା । ୩୮୮ ।

ପଟ ଯେସନେ କୁସୁମ ସଙ୍ଗରେ
ପବିତ୍ର ହୁଅଇ ଦେବତାଙ୍କ ଶିରେ । ୩୮୯ ।

ଯେ ଯାର ନ ଜାଣେ ଗୁଣ ଚରିତ
ସେ ତାର ନିନ୍ଦା କରଇ ସତତ । ୩୯୦ ।

ହୁଡ଼ଇ ଯେତେ ଜନ ହରି ନାମକୁ
ହୀନ ଗତିକୁ ଗଲେ ବୁଡ଼ି ତଳକୁ । ୩୯୧ ।

ସୁବର୍ଣ୍ଣ ମୃତ୍ତିକା ପାଷାଣ
ସମ ମଣଇ ସାଧୁଜନ । ୩୯୨ ।

ନିନ୍ଦିତ କର୍ମ କଲେ ନିନ୍ଦା ମିଳଇ
ନରକେ ପଡ଼ି କେତେ ଦୁଃଖ ଭୋଗଇ । ୩୯୩ ।

ଆଗେ ଚେନ୍ଥଲି ପଛେ ଚାଳ
ଘର ମାଲିକର ପୁଚ କାଳ । ୩୯୪ ।

ଦୁଃଖୀ ଲୋକଙ୍କୁ ଆଶ୍ୱାସନା ଦେନା ମାଗିବଟି
କଅଁଳା ପିଲଙ୍କୁ କୋଳ କରନା ଲଗିବଟି । ୩୯୫ ।

ଷାଠିଏ ଓଡ଼ ଚୂଳା ତାର ଅଧ ମୂଳା
ଚାର ଅଧ ଗୁଜା
ଚାର ଅଧା ପାନ
ଚଷା ଖାଏ ତଙ୍ଗଳା ପାନ । ୩୯୬ ।

ପ୍ରଭତରେ ଉଠି ହାତ ମୁହଁ ଧୋଇ
ବୁଲିବ ଯାଇ ବାହାରେ
ପ୍ରଭାତ ପବନ ଦେହରେ ଲଗିଲେ
ବଡ଼ ଉପକାର କଲେ । ୩୯୭ ।

ମକଦମାଠାରୁ ନାହିଁଟି ନିଶା
ନିଶା ଶେଷେ ପୁଣି ଉଡ଼ଇ ହଂସା । ୩୯୮ ।

ଗୁଣ ମଧ୍ୟେ ବଡ଼ ସହିବା ଗୁଣ
ସହିବା ଜନିଟି ମହତ ଜନ । ୩୯୯ ।

ମର୍ବଲୋ ପଠ ପୋ ଦାସୀ ଗ୍ରାମେଣ ପଶୁପାଳକ
ନାବଦଣ୍ଡ ଗୋପାଳଞ୍ଚ ଷଡ଼ୟତେ ମାରଣଂ ଜୟେ ।୪୦୦।

ଫୁଟେ କି ଶିଶିରେ ପୁଷ୍ପ ବିନା ବରଷଣେ
ଲୁଲେ କି ପତ୍ତରେ ମନ ବିନା ଦରଶନେ । ୪୦୧ ।

କର୍ତ୍ତବ୍ୟ ନ ଦେବ ଟାଳି
ନିଖିଳ ଭୁବନ ବିଜୁ ଉପବନ
ମାନବ ତହିଁରେ ମାଳି । ୪୦୨ ।

ଯେବେଟି ଦେଖିବ ଅତିଥି
ଆଗ ହୋଇବ ଦଣ୍ଡବତ
ଶକତି ଥିଲେ କିଛି ଦେବ
ନ ଥିଲେ ବିନୟେ ଭକ୍ଷିବ । ୪୦୩ ।

ନ ସହେ ସେବକ ବେଦନା
ଏହି ନିମନ୍ତେ ଚଳେ ବାନା । ୪୦୪ ।

କୋଟିଏ ସନ୍ତାନ ମାତ ଧରିଥାନ୍ତୁ କୋଳେ
ଗୋଟିଏ ମନୁଷ୍ୟ ମାତ୍ର ଦେଖିନ୍ତୁ କି ତୋଳେ । ୪୦୫ ।

ଥୋଡ଼ ବତିଶା ଫୁଲ ବିଂଶା
ଘୋଡ଼ା ମୁଖା ତେର ଦିନେ
ଚଷା ବୁଝି କାଟେ ଧାନେ । ୪୦୬ ।

ଡାକି କରି କହେ ଖନା ବଚନ
ଖରରେ ଧାନ ଛାଇରେ ପାନ
ଏକ ମାର୍ଗଶିରେ ପାଚଇ ଧାନ
ତିନି ମାର୍ଗଶିରେ ଫଳଇ ପାନ । ୪୦୭ ।

ଦିନରେ ଖର ରାତ୍ରକୁ ପାଣି
ଏ ପରିରେ ଧାନ ବଢ଼ଇ ପୁଣି । ୪୦୮ ।

ପ୍ରଥମ ବୈଶାଖେ ଯଦି ଧାନ ଭଲ ହେବ
ପ୍ରଚୁର ବିଆଳି ଧାନ ସେ ବର୍ଷ ଫଳବ । ୪୦୯ ।

ତୁଳ ମାସେ ଯଦି ହେବ ପ୍ରଚୁର ବରଷା
ତୁଳା ଫସଲକୁ ଚଷା କରିବ ଭରସା । ୪୧୦ ।

ଶୋରିଷ ବୁଣିବ ବିଶେଷ ଘନ
ରଇବୁଣା ବେଳେ ରଖିବ ଧାନ । ୪୧୧ ।

କପା ବୁଣଥିବ ସକଳ ଭବେ
ଛିଡ଼ା ହୋଇ ତାହା ତୋଳିବ ଯେବେ । ୪୧୨ ।

ଯେଉଁ ବର୍ଷ ବୁଧ ରଜା ଶୁକ୍ର ହେବ ମନ୍ତ୍ରୀ
ସେହି ବର୍ଷ ପୂର୍ଣ୍ଣ ଶସ୍ୟା ହୋଇବ ଧରିତ୍ରୀ । ୪୧୩ ।

ଶ୍ରାବଣ ମାସରେ ପୋତିବୁ ପାନ
ରକ୍ଷସ ଖାଇଲେ ନ ସରେ ପୁଣ । ୪୧୪ ।

ପୋଟଳ ରୋପିବୁ ଫଗୁଣେ
ଫଳ ପାଇବୁ ଦିଗୁଣେ । ୪୧୫ ।

ଯେଉଁ ବର୍ଷ ଶନି ରଜା ମନ୍ତ୍ରୀଟି ମଙ୍ଗଳ
ଆଶା ନାହିଁ ସେହି ବର୍ଷ ଧାନ ଜନ୍ମିବାର । ୪୧୬ ।

ମାର୍ଗଶିରେ ଯଦି ନ ହୁଏ ବର୍ଷା
ପଣସ ଫସଲ ଫସରେ ଫସା । ୪୧୭ ।

ଗୋଲ୍ଲ ମୁହିଁ ତାଳ ଗଛେ ନ ଲଗିଲେ
ବାର ବର୍ଷ ମଧ୍ୟରେ ସେ ଗଛେ ଫଳ ଧରେ । ୪୧୮ ।

ଭଦ୍ରବ ଚଇତ ମାସ ଦୁଇଟି
କଦଳୀ ନ ଲଗା ଭଇ କେଉଁଠି ।
ଫଗୁଣ ମାସରେ ରୋଇବୁ ଯେବେ
ଆଶାତୀତ ଫଳ ପାଇବୁ ତେବେ । ୪୧୯ ।

ନଡ଼ିଆର ଫଳ ଯଦି ଶୀଘ୍ର ଶୀଘ୍ର ଚାହିଁ
ଗଛ ମୂଳେ ଲୁଣ ମାଟି ଅଗାଡ଼ିକୁ ଦିଅ । ୪୨୦ ।

ଯେଉଁ ବର୍ଷ ଆମ୍ବ ଫଳ ହୋଇଥିବ ବେଶୀ
ସେହି ବର୍ଷ ପୁରଧାନ ହୋଇଥାଏ ପୃଥ୍ୱୀ । ୪୨୧ ।

ଯେଉଁ ବର୍ଷ ତେନ୍ତୁଳି ଅଧିକ ଫଳ ହୁଏ
ସେ ବର୍ଷ ପ୍ରବଳ ବନ୍ୟା ହୋଇବ ନିଶ୍ଚୟ । ୪୨୨ ।

ଚୈତ୍ରେ କୁଝଟିକା ଭଦ୍ରବେ ବନ୍ୟା
ସେ ବର୍ଷ ମଡ଼କ ନିଶ୍ଚିତ ସିନା । ୪୨୩ ।

ପୂର୍ବେ ଇନ୍ଦ୍ରଧନୁ ପଶ୍ଚିମେ ରବି
ତିନି ଦିନ ଦି ପ୍ରହରେ କରେ ଏକାନ୍ତବି । ୪୨୪ ।

● ● ●

# ଶିଶୁ କବିତା

## ଅକ୍ଷର ଶିକ୍ଷା

ଅଟା ଜଳରେ ବେଶି
ଗହମ ହୁଏ ପେଷି ।

ଅଦା ମୂଳରେ ଫଳେ
ଗାଛରେ ପାଚି ଜଳେ ।

ଆମ ଦେଶ ଖଣିରେ
ଟଙ୍କା ଝୁଲେ ମୁଣିରେ ।

ଆଖୁ ଦୋଳୁଅ ମିଠା
ଗୁଡ଼ରେ ହୁଏ ପିଠା ।

ଇଲେଟ୍ରିକ୍ ବତୀରେ
ଦିନ ହୁଏ ରାତିରେ ।

ଇଟା ହୁଏ ମାଟିରେ
ପୋଡ଼ା ହୁଏ ଭାଟିରେ ।

ଇଞ୍ଜିନ୍ ଖାଏ ପାଣି
ଗାଡ଼ି ନିଅଇ ଟାଣି ।

ଈଶର ଜଟା ଗଛ
ନାଲିଆ ଖଡ଼ା କଛ ।

ଉଡ଼ାଜାହାଜ ଚଢ଼ି
ବିଦେଶ ଯିବା ଉଡ଼ି ।

ଉଇ ଖାଏ ବାଉଁଶ
ବାଘ ଖାଏ ମାଉଁସ ।

ଊଲ ଆଣି ମୋଡ଼ାଏ
ମୋଜା ବୁଣେ ଯୋଡ଼ାଏ ।

ଋଷିଙ୍କର ବୁଢ଼ିଆ
ଦିଶେ ବଡ଼ ବଢ଼ିଆ ।

ଏରୋଡ୍ରମ୍ ଦେଖିବା
ଏରୋପ୍ଲେନ୍ ଚଢ଼ିବା ।

ଏଣ୍ଡୁରି ପିଠା ଖିରି
ଖାଏ ପତର ପାରି ।

ଐରାବତ ହାତୀ
କେହି ନାହିଁ ତା ସାଥୀ ।

ଓଟ ପିଠିରେ କୁଜ
ବାଲିରେ ବୁହେ ବୋଝ ।

ଓଉ ପାଞ୍ଚ ଫଡ଼ିଆ
ଝୋଳ ତାର ବଢ଼ିଆ ।

ଔଷଧ ବୋତଲ.........
ଠିପି ଖୋଲେ ଅଟଳ ।

କରତ କଲେ ଭରି
କାଠ ପକାନ୍ତି ଚିରି ।

କଙ୍କଡ଼ା କରେ ଗାଡ
ପେଟରେ ତାର ଦାନ୍ତ ।

ଖଜୁରୀ ଗୁଡ଼ ମିଠା
ଖାଆନ୍ତି କରି ପିଠା ।

ଖତ ପକାଇ ବୁଣ
ଫଳିବ ଦୁଇ ଗୁଣ ।

ଗଇନ୍ତି ହାତେ ତୋଳି
ପକାଏ ମାଟି ଖୋଳି ।
ଗରା ମଥାରେ ଥୋଇ
ପାଣି ଆଣନ୍ତି ବୋହି ।

ଘଣ୍ଟା କହେ ଟିକ୍ ଟିକ୍
କାମ କର ଠିକ୍ ଠିକ୍ ।

ଚ ଉ ଦୁ ଆ ର ଜଲ
ବୁଣଇ ଲୁଗା ଭଲ ।

ଚକ ଭିତରେ ଅଖ
ବୁଲଇ କେମିତି ଦେଖ ।

ଛତା ଧରି ହାତରେ
ବାଟୋଇ ଚାଲେ ବାଟରେ ।

ଛଣ ଛପର ଘର
ନିଆଁକୁ ସଦା ଡର ।

ଜର ମାପନ୍ତି ନେଇ
ଥ ର୍ମୋ ମି ଟ ର ଏହି ।

ଜମି କରିବା ଚଷ
ରଖିବା ନାହିଁ ଘାସ ।

ଝର କଲମ ଧରି
କାଳି ଦିଅଇ ଭରି ।

ଝରକା ଦିଅ ମେଲି
ପବନ ଯାଉ ଖେଳି ।

ଟ ଙ୍କା କି ଆ ନୋ ଟ୍
ସ ବୁ ଠା ରୁ ଛୋ ଟ୍ ।

ଠ' ଚେହେର ଗୋଲ
ଭିତରେ ତ ହାର ପୋଲ ।

ଡକ୍ ପାଖେ ଜାହାଜ
ର ହି ବା କୁ ସ ହ ଜ ।

ଡଙ୍ଗା କରେ ବୋଝେଇ
ରଖେ ସବୁ ସଜେଇ ।

ଢମା ଭିତରୁ ଗାଇ
ତୋରଣି ଦିଏ ପିଇ ।

ଢମଣା ଖାଏ ମୂଷା
ଗଛ ଖୋଲରେ ବସା ।

କେନ୍ଦୁ ଝ ର ବଣ
ହାତୀ ପଣ ପଣ ।

ତଉଲେ କିଣେ ନେଇ
ଅଡୁଆ କିଛି ନାହିଁ ।

ତନ୍ତ ପକାଇ ନିତି
ବୁଣନ୍ତି ଶାଢ଼ୀ ଧୋତି ।

ଥଣ୍ଡା ପାଣି କଳରେ
ବରଫ ହୋଇ ବାହାରେ ।

ଥଣ୍ଟ ମେଲି ଛୁଆର
ମାଆ ଦିଏ ଅଧାର ।

ଦମ କଳରେ ପାଣି
ନିଆଁ ଲିଭନ୍ତି ଆଣି ।

ଦଉଡ଼ି ଧରି କଷି
ଦୋଳି ଖେଳନ୍ତି ବସି ।

ଧଳା ଭାଲୁ ଶୀତରେ
ରହେ ଗାତ ଭିତରେ ।

ଧନିଆଁ ପତ୍ର ବାସେ
ଚଟଣି ରହେ ମାସେ ।

ନଳ କୂଅରୁ ପାଣି
ବାହାରେ ହୋଇ ଛାଣି ।

ନଡ଼ିଆ କଲେ ଚଷ
ଫଳଇ ବାର ମାସ ।

ପଥର ନିମ ଘୋଡ଼ା
କୋ ଣା ର କେ ଛିଡ଼ା ।

ପଣସ ବାସ ପାଇ
ବିଲୁଆ ଆସେ ଧାଇଁ ।

ପଙ୍ଖା ବିଜୁଳି ବଳେ
ଘରର ତାତ ଟଳେ ।

ଫଟୋ ଉଠା କ୍ୟାମେରା
ଫୁଟି ଉଠେ ଚେହେରା ।

ଫଳ ଉପରେ ପଟର
ସପୁରୀ ନାଆଁ ତାହାର ।

ବ ଟୀ ଘ ର ସୁ ନ୍ଦ ର
ପା ର ଦ୍ୱୀ ପ ବ ନ୍ଦ ର ।

ବ ଣ ଭେ ଣ୍ଡି ମ ଜ ଜ
ମି ଳି ବା କି ସ ହ ଜ ।

ବଗିଷ୍ଠ ଅଛି ଯା'ର
ଅଭାବ ନାହିଁ ତାର ।

ବଳଦ ଲାଗି ଘାସ
ବତକ ପାଇଁ ବାସ ।

ଭର ନଈରେ ନାହା
ନାଉରୀ ତାର ସାହା ।

ଭଅଁର କରେ ବଢ଼େଇ
ନେଇ ଗୋଟେ ସଢ଼େଇ ।

ମଟର୍ କାର୍ ଗର୍ଜି
ବୁଲିବା ଆମେ ଚଢ଼ି ।

ମହୁମାଛି କି ଯୋଷ
ଆଣିବେ ଫୁଲ ରସ ।

ମୟୂର ମେଘ ଦେଖି
ନାଚଇ ଲଞ୍ଜ ଟେକି ।

ଯନ୍ତା ଭିତରେ ମୂଷା
ଉଡ଼ଇ ତା'ର ହଂସା ।

ଯଅ ଜାତିଏ ଧାନ
ଗହମ ପରି ସାନ ।

ବିଜୟ ବଡ଼ ଘଟ
ପଢ଼ାଏ ବସି ପାଠ ।

ସତ୍ୟର ସଦା ଜୟ
ନାହିଁ କାହାକୁ ଭୟ ।

ରକେଟ ଆସେ ଫେରି
ଜହ୍ନ ଗଗନ ଘୁରି ।

ରବର ଗଛ ଅଠା
ବାଗିରେ ହେଇ ନଟା ।

ମହାବଳ ବାଘର
ନିଶ ଦିପଟା ବାଘର ।

ଦିହରେ ଥିଲେ ବଳ
ଚଳିବ ସବୁ କଳ ।

ଲଙ୍ଗର ହେଲେ ଭିଡ଼ା
ବୋଇତ ହୁଏ ଛିଡ଼ା ।

ଲବଙ୍ଗ ଗୋଟେ ଫୁଲ
ବେଶୀ ତାହାର ମୂଲ ।

ଶଗଡ଼ି ଲାଗି ପାଣି
ଦଉଡ଼ି ଆଣେ ଟାଣି ।

ଶଙ୍ଖରେ ଦେଇ ଫାଣି
ଶଙ୍ଖ ବଜାଏ ଆଣି ।

ଷଣ୍ଢ ଫୁଲଇ ବେକ
ଲଢ଼ନ୍ତି ଆଗେ ଦେଖ ।

ଷଣ୍ଢ ତାଡ଼ଇ ମାଟି
ନଙ୍କରେ ଜମା ପାଟି ।

ସପ ଜାତି ଏ ଘାସ
କରନ୍ତି ଲୋକେ ଚାଷ ।

ସକାଳେ ହେଲେ ଉଠ
ନ କର ଆଉ ମଠ ।

ହଳ କରଇ ଚାଷୀ
ଆମେ ଭାରତବାସୀ ।
ହଳ ବଳଦ ନେଇ
ଆସଇ ଚାଷୀ ଭାଇ ।

● ● ●

## ସତ୍ୟର ଜୟ

ଯାହା ମୁଁ ଦେଖଇ ଯାହା ମୁଁ ଶୁଣଇ
ଯାହା ମୁଁ ଭାବଇ ମନେ,
କରେ ଯାହା ମୁହିଁ ଲୁଚାଇବି ନାହିଁ
ନ କହିବି କଥା ଭିନେ ।

ସତ ମୁଁ କହିବି କେବେ ନ ଭୁଲିବି
ସତ ମୋ ଜୀବନ ସାଥି,
ସତ ଯିଏ କୁହେ ଶାନ୍ତିରେ ସେ ରୁହେ
ସୁଖେ କାଟେ ଦିନ ରାତି ।

ଜୀବନରେ ଥରେ କାହାକୁ ନ ଡରେ
ସଭିଏଁ ପାଆନ୍ତି ଭଲ,
ସତ ଯେ ନ କୁହେ ଡରି ମରୁ ଥାଏ
ନିତି ହୁଏ ଜଳବଳ ।

ସତ କହି ଯେବେ ମୁଣ୍ଡକଟେ ତେବେ
ନାହିଁ ମୋ ତିଳେ ଭୟ,
ଯେତେ ବହି ଯେତେ ପୁରାଣ ସମସ୍ତେ
ଗାଆନ୍ତି ସତ୍ୟର ଜୟ ।

ସତ କହି ସଦା ନ ମାନିଲେ ବାଧା
ରେଗ ସାଥେ ସଫା ଲଢ଼ି,
ଆଣିଲେ ସାବିତ୍ରୀ ଆପଣା ପତିଙ୍କି
ମରଣ ହାତରୁ କାଢ଼ି ।

ସୀତା ହସି ହସି ଯାଇଥିଲେ ପଶି
ଜଳନ୍ତା ନିଆଁର କୁଣ୍ଡେ,
ସତକୁ ଲୁଚାଇ କେବେ ହେଲେ ନାହିଁ
ନ ଧରନ୍ତି କଥା ତୁଣ୍ଡେ ।

ସଦା ସତ କହି ଆମ ଗାନ୍ଧୀ ଭାଇ
ବିଦେଶୀଙ୍କ ସାଥେ ଲଢ଼ି,
ଆମ ଏ ଦେଶକୁ ଆଣିଲେ ଶେଷକୁ
ଦେଲେ ଆମ ହାତେ ଛାଡ଼ି ।

● ● ●

## ପ୍ରାର୍ଥନା

ହେ ମହାପ୍ରଭୁ ଭବଗ୍ରାହୀ
ଭାବୁଛ ସଦା ଆମ ପାଇଁ
ତମେ ସଙ୍ଗାତ ତମେ ମିତ
କରି ଚାଲିଛ ଆମ ହିତ
ସକାଳେ ସୂର୍ଯ୍ୟଙ୍କୁ ପଠାଇ
ଦେଉଛ ଆମ୍ଭକୁ ଉଠାଇ
ମାନି ଆକାଶ ତମ ବୋଲ
ହସି ସଭିଙ୍କି କରେ କୋଳ
ତମ ଆଦେଶେ ଜହ୍ନ ତାରା
ଦୀପ ଜାଳନ୍ତି ରାତି ସାରା
ମେଘ ତୁମର କଥା ମାନି
ଆସି ବରଷି ଦିଏ ପାଣି
ତମ ସଜାଣେ ଏ ପବନ
ରଖିଛି ଆମର ଜୀବନ

ଦେଇଛ ତମେ ଏଇ ମାଟି
କରି ଫସଲ ଖାଉ କାଟି

ଆକାଶ ଆଲୁଅ ପବନ
ଜଳ ପୃଥିବୀ ତୁମ୍ଭ ଦାନ

ତୁମ୍ଭକୁ ମନରେ ପ୍ରଣମି
ଯେ ଯାହା କାମ ଯିବୁ କରି

ସଞ୍ଜେ ସକାଳେ ଚିନ୍ତି ମନେ
ନମିବୁ ନିତି ଏକ ଧ୍ୟାନେ ।

• • •

## ଅହିଂସା

ଥିଲା ଏକ ଭେକୁଆ
ନାଁଟି ତାର ଠେକୁଆ
ଦିହ ତାର ଗରମ
ତୁଳା ପରି ନରମ
ମୁହଁ ତାର ଗୋଜିଆ
କାନ ଛେଳି ଖୋଜିଆ
ବୁ ଲୁ ଥି ଲା ଏ କେ ଲା
କେଜା ବଡ଼ ଚଗଲା
ଫାଶ ଗୋଟେ ଲଗେଇ
ଧରି ନେଲା ବାଘେଇ
ମୁଣି ଖୋଲି ପୁରେଇ
ଥାଳା କରି ଗୁରେଇ
ନେଇ ଗଲା ଘରକୁ
ଦେଇ ଝିଅ ସରକୁ
କହେ ଏକୁ ବନେଇ
ଜିର ଲଙ୍କା ଅଣେଇ
ଗୋଳି ଲୁଣ ହଳଦୀ
ତିଅଣ କର ଜଲଦି
କେଜା ଗଲା ନଈକି
ଗାଧୋଇବ ପାଇଁ କି
ସର କଅଣ କଲା
ଶେଷ ଘରକୁ ଗଲା
ଛୁ ରୀ ଟି କି ପଜେଇ
ପା ଟି ଆ ଟା ସଜେଇ
ମୁଣି ଦେଖେ ଫିଟେଇ
ଭେ କୁ ଆ କୁ ଉଠେଇ
ଉହିଁ ଦେଲା ଯେମିତି
କେ କହିବ କେମିତି
ମନ ଗଲା ବଦଳି
ଗେଲ କଲା ଆଦରେ
ରଖି ଛାତି ପାଖରେ
ସିଧା ଗଲା ବାରିକି
ଏଣେ ତେଣେ ଉହିଁ କି
ଛାଡ଼ିଦେଲା ପଦାରେ
ପାଖ କିଆ ବୁଦାରେ
ଠେକୁଆ ଗଲା ଚଲ୍
କେଜା ଝିଅ ଭଲ ।

• • •

## ଜୀବେ ଦୟା

ଥରେ ଗୋଟିଏ ନାଲି ପିମ୍ପୁଡ଼ି
ପାଦ ଯେମିତି ଯାଇଛି ପଡ଼ି
ଝଅଟ କରି ଆସିଲା ଚଢ଼ି
ଉଅଟ୍ କିନା ଦେଲା କାମୁଡ଼ି
କାମୁଡ଼ା ଯାଗା ଜଳିଲା ପଡ଼ି
ରଗରେ ତାକୁ ଆଣିଲି ଭିଡ଼ି
ଭାବିଲି ମନେ ଦେବି ରଗଡ଼ି
ରଗଡ଼ି ଦେଲେ ଯିବ ଏ ଛିଡ଼ି
ଦେଖିଲି ପୁଣି ନିରିଖି କରି
ଛଟ ପଟ ସେ ହେଉଛି ଡରି
ଭାବିଲି ତାକୁ ଦେବି ମୁଁ ମାରି
ତା ଠାରୁ ବେଶୀ ବଳ ମୋହରି
କୋଟିଏ ଟଙ୍କା ଖରଚ କରି
ଖଟିଲେ ମୋର ଜୀବନ ଭରି
ଗୋଟିଏ ଜୀବ ଏହାରି ପରି
ପାରିବି କେବେ ତିଆରି କରି ?

• • •

## ଶିକ୍ଷକ

ଶିକ୍ଷକ ସାକ୍ଷାତ ଈଶ୍ୱର
ଗଢ଼ନ୍ତି ଜୀବନ ଆମର
କରି ଆମ୍ଭକୁ ବିଦ୍ୟମାନ
ବଢ଼ାନ୍ତି ସଦା ଆମ ଜ୍ଞାନ
ଜ୍ଞାନ ବଳରେ ହୋଇ ଜ୍ଞାନୀ
ସକଳ କଥା ପାରୁ ଜାଣି
ଆଜି ଯେ ପଢ଼ୁଅଛି ବହି
ଶିଖିଛୁ ଭଲ କଥା କହି
ଲେଖୁଛୁ ସୁନ୍ଦର ଅକ୍ଷର
ଏ ସବୁ ଦାନ ତାହାଙ୍କର
ପିଲାରୁ ବଡ଼ ହେବା ଯାଏଁ
ପଢ଼ିବୁ ପାଠ ଯାହା ପାଖେ
ସେମାନେ ଧର୍ମର ଶିକ୍ଷକ
ଆମର ଜୀବନ ରକ୍ଷକ
ପୃଥ୍ୱୀରେ ଯେତେ ଜ୍ଞାନୀ ଲୋକ
ସବୁରି ମୂଳରେ ଶିକ୍ଷକ
ମନେ ନ ରଖି ଟିକେ ଡର
ପାଳିବୁ ଆଜ୍ଞା ତାହାଙ୍କର
କଟିଲେ କଟି ଯାଉ ମଥା
କହିବୁ ତାଙ୍କୁ ସତ୍ୟ କଥା
ଶିକ୍ଷକ ସାକ୍ଷାତ ଈଶ୍ୱର
ତାଙ୍କ ଚରଣେ ନମସ୍କାର ।

● ● ●

## ଜନକ ଜନନୀ

ଯାହାଙ୍କ ଠାରୁ ଦେହ ପାଇ
ଜନମ ହୋଇ କ୍ଷୀର ଖାଇ
ପହିଲେ ଦେଖିଲି ଦୁନିଆ
ଜାହିଲି ହୋଇ କୁଆଁ କୁଆଁ ।
ସେ ମୋର ଜନନୀ ଜନକ
ମୁଁ ତାଙ୍କ ଜୀବନ ସତକ
ତାଙ୍କ ସ୍ନେହରେ ବଢ଼ି ନିତି ।
ପାଇଲି କେତେ ସାଙ୍ଗ ସାଥି
ଦେଖି ମୋର ମୁହେଁ ହସ
ହୁଅନ୍ତି ସେମାନେ ହରଷ
ଭାବନ୍ତି ସଦା ମୋହ ପାଇଁ
ଖୁସି ହୁଅନ୍ତି ମୋତେ ଚାହିଁ
ଆଖିରେ ମୋର ଦେଖି ଲୁହ
ତାଙ୍କ ପ୍ରାଣରୁ ଉଠେ କୋହ
ଅଭାବେ ନିଜେ ଅଧା ଖାଇ
ଖୁଆନ୍ତି ମୋ ପେଟ ପୂରାଇ
ନିଜେ ପିନ୍ଧନ୍ତି ଛିଣ୍ଡା ଜନା
ଆଣନ୍ତି ମୋ ପାଇଁ କୁର୍ତ୍ତା ।
ମୁଣ୍ଡରେ ଝାଳ ତୁଣ୍ଡରେ ମାରି
କେତେ ବା ଆଣି ଋଣ କରି ।
ଯୋଗାନ୍ତି ଆମକୁ ପଇସା
ଆମଠି ରଖନ୍ତି ଭରସା ।
ଦିନେ ହୋଇବୁ ବଡ଼ ଲୋକ
ଯିବ ତାଙ୍କର ସବୁ ଦୁଃଖ
କରନ୍ତି ମୋତେ ସେ ଆଶିଷ
କୁହନ୍ତି ହୁଅ ସେ ମଣିଷ
ନଈରେ ବାଲି ଅଛି ଯେତେ
ତୋର ଆୟୁଷ ବଢ଼ୁ ସେତେ
ପଢ଼ି ତୁ ହୁଅ ବଡ଼ ଲୋକ
ଯାଉ ଆମର ସବୁ ଦୁଃଖ
ଧନ ଅରଜି ଧର୍ମ କର
ଧର୍ମରେ ଚାଲିଛି ସଂସାର ।
ସବୁ ବେଳେ ତୁ କହ ସତ
ସତରେ ଥିଲେ ମିଳେ ଭାତ ।

ଆମର ଦିନ ଯାଉ ସରି
ତୋ ଆଗେ ଆମେ ଯାଉ ମରି
ଚେତା ଥାଇ ଏ ଜୀବ ଯାଉ
ତୋ ହାତେ ଆମେ ନିଆଁ ପାଉ ।
ପିତା ମାତାଙ୍କ ଶେଷ କଥା
ପ୍ରାଣରେ ମୋର ଆଣେ ବଥା
ମନରେ କରେ ମୁଁ ପ୍ରତିଜ୍ଞା
ମାନି ଚଳିବି ତାଙ୍କ ଆଜ୍ଞା ।

ନିଜ ବତୀରେ ଚଳୁଲେ ତୁହି
ନ ଦେଉ କାହିଁ ମନ
ନିଜ ଧନରେ ହେଉ ତୁ ଧନୀ
ନ ଚାହୁଁ ପରଧନ
ତୋହରି ପରି ପର ଦରବେ
ରଖିବି ନାହିଁ ଆଶା
ନିଜ ବଳରେ ଖଟିବି ମୁହିଁ
ନ ଭୁଲି ନିଜ ଭାଷା ।

● ● ●

## ଜୁଳୁଜୁଳିଆ ବୋହୂ

ଜୁଳୁଜୁଳିଆ ବୋହୂଟି କିଲେ
ଜୁଳୁଜୁଳିଆ ଶାଶୁ
ବଡ଼ି ସକାଳୁ କୁଆଡ଼େ ଯାଉ
ବେଳ ବୁଡ଼ିଲେ ଆସୁ
ଗହିରୀ ବିଲ ମଶାଣି ପଦା
ନଈ ପୋଖରୀ ଘାଟେ
ବୁଲୁ ତୁ ନିତି ରାତି ଅନ୍ଧାରେ
ମଡ଼ା ଅମଡ଼ା ବାଟେ
ଛାନିଆ ଟିକେ ନୋହୁ ତୁ କେବେ
ପାରୁଲେ ତୁହି ଜାଣି
ଡାଆଣୀ ଭୂତ ନାହାନ୍ତି ଜମା
ନାହାଁନ୍ତି ଚିରୁଗୁଣୀ
ଜୁଳୁଜୁଳିଆ ମାଆଟି କିଲେ
ଜୁଳୁଜୁଳିଆ ବୋଉ
ରାତି ଯାକତ ଆଲୁଅ ଜାଳୁ
ଦିନ ସାରା ତୁ ଶୋଉ
ଜଳଇ ଏତେ ଦୀପ ଢୁହୁଡ଼ି
ଜଳେ ବିଜୁଳି ବତୀ
ଦୁନିଆ ସାରା ହୁଅନ୍ତି ଜୁଳି
ଦେଖିଲେ ଜନ୍ତୁ ରାତି

● ● ●

## ଏକତାର ବଳ

ଟୋପି ଟୋପି ପାଣି ମିଶି ସାଗର
ଟିକି ଟିକି ବାଲି ମିଶି ଭୂଧର
ଇଟା ଖଣ୍ଡି ଖଣ୍ଡି ଯୋଡ଼ିଲେ କୋଠା
ଗଛ ଗୋଟି ଗୋଟି ମିଶିଲେ ତୋଟା
କୁଟା ଖିଏ ଖିଏ ମିଶି ଛପର
ସୂତା ଖିଏ ଖିଏ ମିଶି ଚାଦର
ପୃଷ୍ଠା ପୃଷ୍ଠା ମିଶି ହୁଅଇ ବହି
ସାନ ସାନ ନାଳ ମିଶିଲେ ନଈ
ଘଣ୍ଟା ଘଣ୍ଟା ମିଶି ବରଷ ମାସ
ଗୁଣ୍ଡ ଗୁଣ୍ଡ ହୋଇ ଚାଟିଏ ଘାସ
ଗ୍ରାମ ଗ୍ରାମ ମିଳି ହୁଅଇ ଦେଶ
ଏକତାର ବଳ ଅଟେ ଅଶେଷ ।

● ● ●

## ଆ ଖରା ମାଆ

ଆ ଖରା ମାଆ ଖରେଇ ଦେଏ
ଝଡ଼ି ବରଷାକୁ ଫେରେଇ ନେଏ
ହେଂସ ମସିଣା ପରେଇ ଦେଏ
(୧)
ଘ ସବୁ ପାଣି କି ଝରେଇ ଦେଏ
ଝରିଆ ପୋକକୁ ଉଡ଼େଇ ଦେଏ

ମୁଳିଆକୁ ବିଲ ବଣ୍ଟେଇ ଦେଏ
ଛାଇକି ତୋହର ପଠେଇ ନେଏ

(୨)

ବୋହୂକୁ ବାସନ ମଜେଇ ଦେଏ
ବାରି ବଗିଚାକୁ ସଜେଇ ଦେଏ
ମାଆକୁ ଚାଉଳ ଉଜେଇ ଦେଏ
ମୋ ପେଁ କାଳି ବଜେଇ ଦେଏ
ଗଛରୁ ନଡ଼ିଆ ପରେଇ ଦେଏ
କଳା ବଳଦକୁ ଫେରେଇ ନେଏ

(୩)

କିଆ ଗଛେ ଫୁଲ ଫୁଟେଇ ଦେ
ବଗ ବଗୁଲୀଙ୍କି ବାଟେଇ ଦେ
ବିଲୁଆ ପୁଅକୁ ଉଠେଇ ଦେ
ଚାହାଳୀ କି ମୋତେ ପଠେଇ ଦେ

(୪)

ଉଷୁନା ଧାନକୁ ଶୁଖେଇ ଦେ
ବିଜୁଳି ଝିଅକୁ କାଖେଇ ନେ
କାଉ ଛୁଆ ଡେଣା ଶୁଖେଇ ଦେ
ତା ନାଲିଆ ପାଟିକି ଦେଖେଇ ଦେ

(୫)

ଗୁଣ୍ଡୁଚି ମୂଷାକୁ ଚିଆଁଇ ଦେ
ବଣିକି ଆଧାର ଖୁଆଇ ଦେ
ନଈ କି ପାହାଡ଼ ଡିଆଁଇ ଦେ
ମୋ ସାନ ଭଇକି ଶୁଆଇ ଦେ ।

● ● ●

## ଏହି ତ ମୋର ହାତ

ଏହି ତ ମୋର ହାତ
ବାଆଁ ହାତରେ ପାଣି ସାରେ ମୁଁ
ଡାହାଣେ ଖାଏ ଭାତ ।

ଏହି ତ ମୋର ନାକ
ଯିବା ଆସିବା କରେ ପବନ
ଏଠି ଜୀବନ ଯାକ ।

ଦୁଇଟି ମୋର ଆଖି
ମେଲେଇ ଦେଲେ ଦେଖେ ମୁଁ ସବୁ
ରହେନି କିଛି ବାକି ।

କାନ ଦିଅଟି ପୁଣି
ପଚରଟିଏ ପଡ଼ିଲେ ତଳେ
ପାରଇ ମୁହିଁ ଶୁଣି ।

ଏହି ତ ମୋର ମଥା
ଖରା ବରଷା କାଟିଲେ ମୋତେ
ଧରଇ ତହିଁ ଛତା ।

ଦିଓଟି ମୋର ବାହା
ସବୁ କାମରେ ଆଗୁଆ ସିଏ
ହୁଅନ୍ତି ମୋତେ ସାହା ।

ଏହି ତ ମୋର ଛାତି
ଚମକେ ନାହିଁ କେବେ ମୁଁ କାହିଁ
ଆସୁ ପଛକେ ହାତୀ ।

ଏହି ତ ମୋର ଦାନ୍ତ
ଚକି ପରିତ ବୁଲନ୍ତି ନିତି
ହୁଅନ୍ତି ନାହିଁ କ୍ଳାନ୍ତ

ଦାନ୍ତ ମୋହର ଚକି
ଖାଇବା ଚିଜ ପେଷି ଦିଅନ୍ତି
ପଡ଼ନ୍ତି ନାହିଁ ଥକି ।

ଜିଭ କୁହଇ କଥା
ସବୁ ଦରବ ଜାଣି ପାରେ ମୁଁ
କଷା ମଧୁର ପିତା ।

ପାଦ ଯୋଡ଼ିକ ଏହି
ଯୁଆଡ଼େ ଚଞ୍ଚା ସିଆଡ଼େ ଯାଏ
ନିଅନ୍ତି ମୋତେ ବୋହି ।

ଏହିତ ମୋର ପେଟ
ଯାହା ମୁଁ ଖାଏ ଯାହା ମୁଁ ପିଏ
ସବୁ ଏଇଠି ଭେଟ ।

● ● ●

## କୋଇଲି ଭାଇ

କୋଇଲି ଭାଇରେ କୋଇଲି ଭାଇ
ବୁଲୁଥିଲୁ କାହିଁ ମୁହଁ ଲୁଚାଇ
ଶୀତ ବରଷାରେ ଥିଲୁ ମଉନ
ଲଗୁ ତ ନଥିଲା କାହିଁ ତୋ ମନ
ଆସିଲା ତୋ ସାଥି ଫଗୁଣ ମାସ
ଗୀତ ଗାଇଲୁ ତୁ ହୋଇ ହରଷ

କୋଇଲି ଭାଇରେ କୋଇଲି ଭାଇ
ଯେବେ ତୋର ଡାକ କାନେ ପଡ଼ଇ
ଇଚ୍ଛା ହୁଏ ମୋତେ ଆଣନ୍ତି ଧରି
ଗାଆନ୍ତି ତୋ ସାଥେ ତୋହରି ପରି
ଖାଆନ୍ତେ ବନରୁ ପାଚିଲା କୋଳି
କଅଁଳ ଲତାରେ ଖେଳନ୍ତେ ଦୋଳି ।

କୋଇଲି ଭାଇରେ କୋଇଲି ଭାଇ
କହିବୁ କଥା ଏ ମନ ଫିଟାଇ
କେଉଁ ଚଟଶାଳୀରେ ପଢ଼ିଲୁ ପାଠ
କୋଉ ଗୁରୁଙ୍କର ହେଲୁ ତୁ ଛାଟ
ଏ ଭଳି ସ୍ୱର କେ ଦେଲା ଶିଖାଇ
ଦେ ମୋତେ ତାର ନାଁ ବତାଇ ।

● ● ●

## ଡାକ

କାଉ ବୋବାଏ କାଆ କାଆ
କୋଇଲି କୁ କୁ
ବେଙ୍ଗ ବୁଡ଼ିଲେ ବିଲୁଆ ଡାକେ
ହୁକେ ହୁକେ ହୁ ।
ଗାଈ ବଳଦ ହମା ହମା
ଛେଳି ଅଡ଼ର ମେଁ
ହନୁ ମାଙ୍କଡ଼ ଖିଙ୍କାରି ହୁଏ
ଘୋଡ଼ା ହେଁ ହେଁ
ବିରେଇ ଡାକେ ମ୍ୟାଉଁ ମ୍ୟାଉଁ
ମୂଷା ଚେଁ ଚେଁ
ମାଆ ଆମର ବଗାରେ ଡାକି
ଡାକ ଶୁଭେ ଛେଁ ।
ମୋ ପେଁ ଡାକି ବଜେଇ ଦେଲେ
ବାଜି ଉଠେ ପେଁ
କୁନିଆ ଯେବେ ମାଡ଼ ଖାଏ ସେ
କାନ୍ଦି ଲଗେଟେ ଭେଁ ।

● ● ●

## ରଙ୍ଗ

ବୋଉ ଡାକନ୍ତି ଆ ଜହ୍ନ ମାମୁଁ
ଆ ସରଗ ଶଶୀ,
ଶୀଘ୍ର ସାଙ୍ଗରେ ଖିରି ଖେଚେଡ଼ି
ଖାଇବୁ ଏଠି ବସି।
କାଉ ତ କଳା କୋଇଲି କଳା
କଳା ଜଙ୍ଗଲପାତୀ,
ହନୁ ମାଙ୍କଡ଼ ମୁହଁଟା କଳା
କଳା ବନର ହାତୀ ।
କାଳୀ ଗାଈର ଓଞ୍ଚର ଧଳା
ଧଳା ବିରେଇ ଶଙ୍ଖି,

ବଡ଼ ଧୋବଲ୍ଲ ପୁନେଇ ଜହ୍ନ
ଧୋବଲ୍ଲ ବଗପକ୍ଷୀ ।
ନୂଆ ବୋହୂର ନାଲିଆ ଶାଢ଼ି
ନାଲି ସିନ୍ଦୂର ଟୋପା
କୁକୁଡ଼ା ମୁଣ୍ଡେ ନାଲି ମୁକୁଟ
ନାଲି ମନ୍ଦାର ଥୋପା ।
ହଳଦି ବନ ଗୋଖର ସାପ
ହଳଦୀ ସୁନା ଚୁଡ଼ି
ହଳଦୀ ରଙ୍ଗ କଦଳୀ କାନ୍ଧି
ରହିଲେ ଯିବ ସଢ଼ି ।

● ● ●

## ଘଡ଼ି କହେ ଟିକ୍ ଟିକ୍

ଘଡ଼ି କହେ ଟିକ ଟିକ୍ ଟିକ୍
ଠିକ୍ ବେଳେ କାମ କଲେ ସବୁ ହେବ ଠିକ୍
ଶେଯରୁ ଉଠ ଠିକ୍ ବେଳେ
ଠିକ୍ ବେଳେ ଶୁଅ
ଗାଧୋଇ ସାରି ଠିକ୍ ବେଳେ
ଯାହା ମିଳେ ଖାଅ
ଇସ୍କୁଲକୁ ହସି ହସି
ବହି ଧରି ଯାଅ ।
ମିଳିଲେ ଛୁଟି ପଢ଼ା ଶେଷେ
ଠିକ୍ ରୂପେ ଖେଳ
ଘରକୁ ଗଲ ସଞ୍ଜ ହେଲେ
ଭଙ୍ଗି ଦେଇ ମେଳ ।
ଯାଆନା ଜମା ଅବାଟକୁ
ଠିକ୍ ବାଟେ ଗଲ
ଅଜିଆ ଗଦା କଣ୍ଟା ଝଣ୍ଟା
ଦେଖି ଡିପ ଖାଲ ।
ଲଗାଇ ମନ ଠିକ୍ ବେଳେ
ଠିକ୍ ଠିକ୍ ପଢ଼
ପଢ଼ିବ ନାଆଁ ଦେଶ ସାରା
ହେବ ତମେ ବଡ଼
କହେ ଘଡ଼ି ଟିକ୍ ଟିକ୍
ଠିକ୍ ବେଳେ କାମ କଲେ ସବୁ ହେବ ଠିକ୍ ।
ବୁଲୁଅ ହଳ ଠିକ୍ ବେଳେ
ବିଲ କର ଚଷ
ବିହନ ବୁଣି ଗଛ ହେଲେ
ବାଛ ସବୁ ଘାସ ।
ଦୋଅଟ ବଛା ବେଲକ୍ଷଣ
କର ବେଳ ଦେଖି
ମଡ଼ାଅ ପାଣି ଠିକ୍ ବେଳେ
ନିଅ ଆସି କାଟି
ଉଜୁଡ଼ି ଯିବ ଡେରି କଲେ
ହେବ ସବୁ ମାଟି ।
ଅମଳ କର ଠିକ୍ ରୂପେ
ଗଦା ମାରି ଧାନ
ସବୁଠୁଁ ଏତ ବଡ଼ ଧନ
ଜବ ନାହିଁ ସାନ ।
ଓଳିଆ ବାନ୍ଧି କୋଠି ଭରି
ରଖ ଠିକ୍ କରି
ଖରଚ କର ଜଗି ରଖି
ସୁନା ରୂପା ପରି
ଘଡ଼ି କହେ ଟିକ୍ ଟିକ୍ ଟିକ୍
ଠିକ୍ ବେଳେ କାମ କଲେ ସବୁ ହେବ ଠିକ୍ !

● ● ●

## ପରିଷ୍କାର ପରିଚ୍ଛନ୍ନତା

ସକାଳୁ ଉଠି ମୁଁ ଘଷିବି ଦାନ୍ତ
ଖାଇବା ଆଗରୁ ଧୋଇବି ହାତ

ବଢ଼ାଇବି ନାହିଁ ନଖ ମୋହର
ନଖର ମଇଳା ରୋଗର ଘର
ଆସନ ଉପରେ ଖୁସିରେ ବସି
ମା'ଆ ଯାହା ଦେବେ ଖାଇବି ହସି ।
ନ ଦେବି ଖାଇବା ଚିଜ ପକାଇ
ବେଶି ଥିଲେ ଆଉ ଦେବି ଫେରାଇ ।
ଗୋଲିଆ ପଚୁଆ ମଇଳା ପାଣି
ଭୁଲି ନ କରିବି କେବେ ମୁଁ ଆଣି
ବାସନ ବସାଇ ନ ଦେବି ମାଛି
ଚଟକା ଚିଜ ମୁଁ ଖାଇବି ବାଛି
ଖାଇ ପିଇ ସଫା ପିନ୍ଧିବି ଯେବେ
ସଦା ଦିନେ ସୁସ୍ଥ ରହିବି ତେବେ ।

● ● ●

## ଦଉଡ଼ି ଓ ନୋଟା

ଦଉଡ଼ି ସଙ୍ଗେ ନୋଟାର ଦିନେ
ଲାଗିଲା ଘରି କଳି
ନୋଟା କହିଲା ଛୁଉଁନା ମୋତେ
ଦିହରେ ତୋର ମଳି ।
କେଡ଼େ ଉଜଳ ରୂପ ମୋହର
ସୁନା ଭଳି ରଙ୍ଗ
ଇଜତ ମୋର ହୁଏ ଦି କଡ଼ା
କଳାରୁ ତୋତେ ସାଙ୍ଗ ।
ପିଅନ ଠାରୁ ହାକିମ ଯାଏ
କିଏ ନ ଖୋଜେ ମୋତେ
ପାଣି ଦେଲେ ମୁଁ ପୂଜା ପାଆନ୍ତି
ଦିଅଁ ଦେବତା ଯେତେ ।
ନେଇ କଡ଼ାର ମୁଣ୍ଡ ଚୁହିରେ
କେତେ ବା ମୂଲ ତୋର
ଶହେରେ ନେଇ ଗୁଣିଲେ ତତେ
ହେବେ ବି ବେଶି ମୋର ।

କୂଅ ପାଢ଼ରେ ଲେଟୁ ତୁ ସଦା
ଖାଇ କାକର ଖାଇ
କେହି କି କେବେ ଡାକନ୍ତି ତୋତେ
ସାଙ୍ଗରେ ନେବା ପାଇଁ
ଡାକିଲେ ମୁହିଁ ଉଠୁ ତୁ ଚେଇଁ
ମୋତେ ଭରସା ଧରୁ
ଖୋଜିବି ନାହିଁ ମୁଁ ଯେବେ ତୋତେ
ନିକାଳି ଦେବେ ଘରୁ ।
ଏତିକି କହି ନୋଟା ଯେମିତି
ହଲେଇ ଦେଲା ମୁଣ୍ଡ
କୂଅ ପନ୍ଦରୁ ପଡ଼ିଲା ଖସି
ଆଉ ନ ଫିଟେ ତୁଣ୍ଡ ।
ଆମେ ସମସ୍ତେ ପଦାରେ ଏଣେ
କଲୁ ଖାଲି ପାଟି
ନୋଟିଆ ତେଣେ ଝୁରେ ଆମକୁ
ହୋଇ କାଦୁଅ ମାଟି ।
କୂଅ ବିଲେଇ ଲାଗିଲା ଖୋଜା
ଗାଁ ରେ ମିଳିଲା ନାହିଁ
ଦୂର ଗାଁରୁ ଆସିଲା ଜଣା
ଦି ଦିନ ବାଦେ ଯାଇ ।
ଦୁଇ ଗରିଟା କୂଅ ଦଉଡ଼ି
ଏକାଠି ହୋଇ ଛନ୍ଦି
କୂଅ ଭିତରେ ପଶିଲେ ଯାଇ
ଖୋଜିଲେ ସବୁ କନ୍ଦି ।
ପଙ୍କ ଭିତରେ ଲୁଖିଛି ନୋଟା
ତଳକୁ କରି ମଥା
ବିକଳ ମନେ ଭାବୁଛି ପଡ଼ି
ଗଲା କହିଆ କଥା ।
ସାଙ୍ଗ ଦଉଡ଼ି ଚିହ୍ନିଲା ତାକୁ
କଣ୍ଢା ନେଲା ତା ପାଖେ

ହାତରେ ତାକୁ ଆଉଁସି ଦେଇ
ଆଣିଲ ଆମ ପାକେ ।
ସେହି ଦିନଠୁଁ ମନ ମିଳାଇ
ଚଲିଲେ ଦୁହେଁ ଯାକ
ନୋଟିଆ ଆଉ ଛାଡ଼ିଲ ନାହିଁ
କେତେ ଦଉଡ଼ି ପାଖ ।

● ● ●

## ବୋଲେ ହୁଁଟି

ବାଇଧନ ଶୋଇ ପଢ଼ିବୁ—ବୋଲେ ହୁଁଟି
ଉଠିସାରି ପାଠ ପଢ଼ିବୁ—ବୋଲେ ହୁଁଟି
କେତେ ନୂଆ କଥା ଶିଖିବୁ—ବୋଲେ ହୁଁଟି
ରେଲ ଷ୍ଟିମ ଗାଡ଼ି ଚଢ଼ିବୁ—ବୋଲେ ହୁଁଟି
କେତେ ଜାତି କଳ ଗଢ଼ିବୁ—ବୋଲେ ହୁଁଟି
ବୁଡ଼ା ବୋଇଚରେ ବୁଡ଼ିବୁ-ବୋଲେ ହୁଁଟି
ଉଡ଼ାଜାହଜରେ ଉଡ଼ିବୁ—ବୋଲେ ହୁଁଟି
ପୃଥ୍ୱୀଯାକ ବୁଲି ଦେଖିବୁ—ବୋଲେ ହୁଁଟି
ନୂଆ ନୂଆ ସାଥି ପାଇବୁ—ବୋଲେ ହୁଁଟି
ଯେତେ ପଡ଼ୁ ଦୁଃଖ ସହିବୁ—ବୋଲେ ହୁଁଟି
ନିଜ ରୁଚି ଖାଦ୍ୟ ଖାଇବୁ—ବୋଲେ ହୁଁଟି
ଧିନ୍ନ କଥା ସଦା କହିବୁ—ବୋଲେ ହୁଁଟି
ଦୁଃଖୀଙ୍କର ଦୁଃଖ ହରିବୁ—ବୋଲେ ହୁଁଟି
ରୋଗୀଙ୍କର ସେବା କରିବୁ—ବୋଲେ ହୁଁଟି
ହୀରା ନୀଳା ଯେତେ ଆଣିବୁ—ବୋଲେ ହୁଁଟି
ସବୁ ଏ ଦେଶର ଜାଣିବୁ—ବୋଲେ ହୁଁଟି

● ● ●

## ଟପ୍ ଟପ୍ ପଡ଼େ ଟୋପେ ବରଷା

ଟପ୍ ଟପ୍ ପଡେ ଟୋପି ବରଷା
ଚିଙ୍କି ଚଢ଼େଇଟି ଖୋଜୁଛି ବସା
ଖପ୍ ଖପ୍ ଡିଏଁ ବେଙ୍ଗୁଲୀ ନାନୀ
ଝିଙ୍କିା ନାଚଇ ବଜାଇ ଝିଣି ।

ଝୁଲ ଝୁଲ କରି ବହେ ବତାସ
ଢଳି ଢଳି ଖେଳେ ନେଳିଆ ଘାସ ।
ମାଡ଼ି ଆସୁଅଛି ପାଣି ପବନ
ଖଜା ଖାଇବାକୁ ହେଉଛି ମନ ।

ଚମକି ଚମକି ଖେଳେ ବିଜୁଳି
ଆଇ ବୁଢ଼ୀ ଖାଏ ସବୁ ଚକୁଳି
କାଲି ଗାଇ କରେ ଘାସ ପାକୁଳି
ଛୁଆକୁ ନ ଦେଖି ଛାଡ଼େ ବୋବାଳି

ଟପ୍ ଟପ୍ ପଡ଼େ ଟୋପି ବରଷା
ଚିଡ଼ି ଚିଡ଼ି କାମ କରୁଛି ଚଷା
ଟପ୍ ଟପ୍ ପଡ଼େ ବରଷା ଟୋପା
ସ ରୁଗଛ ଖୋଳେ ବେଙ୍ଗୁଲୀ ଅପା ।

● ● ●

## ସବୁଠୁ ମିଠା

ଯେତେ ଡାକ ଅଛି ଦୁନିଆ ଭିତରେ
ମାଆ ଡାକ ବେଶି ମିଠା
ଯେତେ ପିଠା ହୁଏ ସୁଆଦିଆ ଘରେ
ସବୁଠୁ ଭାଜନ୍ତ ପିଠା ।

ପିଲଙ୍କ ଭିତରେ ଭଲପାଏ ତାକୁ
କହେ ଯିଏ ନିତି ସତ
ମିତ ମୋର ସିଏ ସାଙ୍ଗଙ୍କ ଭିତରେ
କରେ ଯିଏ ପର ହିତ ।

ସହର ବଜାର ଯେତେ ଯହିଁ ଯାଏ
ଭଲ ଲାଗେ ଆମ ଗାଆଁ
ବଡ଼ ହେଲେ ମୁହିଁ କରିବି ତା ସେବା
ରଖିବି ତାହାରି ନାଆଁ ।

● ● ●

## ଅଟଷ୍ଟ ପନ୍ଦର

ବଜାରେ ବଜାରେ ବାଇଦ ବଜା
ଆମେ ହିଁ ପରଜା ଆମେ ହିଁ ରଜା ।

ଆମ ସରକାର ଗଢ଼ିବୁ ଆମେ
ଲଗାଇବା ତାକୁ ଆମରି କାମେ ।

ଆମରି ହାକିମ ଆମ କଚେରୀ
ଆମରି ପୁଲିସ ଅଛନ୍ତି ଘେରି ।

ଆମରି ଜାହାଜ ଯାଉଛି ଉଡ଼ି
ନୀଳ ଆକାଶର ନେଳିରେ ବୁଡ଼ି ।

କୋଟି କୋଟି ଟଙ୍କା ଚିଜ ନେଇତ
ଯା ଆସ କରେ ପାଣି ବୋଇତ ।

ଇସ୍କୁଲ କଲେଜ ଗଲିଛି ଗଢ଼ା
ନୂଆ ନୂଆ ପାଠ ହେଲଣି ପଢ଼ା ।

ହେବ ଗଢ଼ି ଆଉ ବିଜୁଳିମୟ
ଗୃହ ବାସ ସ୍ୱର୍ଗ ଆଉ କି ଭୟ ।

ଉଡ଼େ ସବୁ ଦେଶେ ଆମ ପତାକା
ପୃଥ୍ୱୀର ଖବର ପାଉ ଚଟକା ।

ଖଜଣା ଟିକସ ଆଦାୟ ଯେତେ
ଖରଚ ସବୁ ତ ଆମରି ହାତେ ।

ସବୁ ଦରବାରେ ଆମରି ଦୂତ
ସବୁ ଜାତିଙ୍କର ଆମେ ତ ମିତ ।

କାହାଠାରେ ନାହିଁ ଆମରି ହିଂସା
ଭଲରେ ରୁହନ୍ତୁ ସାଇ ପଡ଼ିଶା ।

ଆଦିମ କାଳରୁ ଆମର ନୀତି
ପରୋପକାର କରିବା ନିତି ।

ଆମେ ପିଇଯାକ ମାରିବା ମଜା
ଗରମ ପୁରୀ କି ନରମ ଭଜା ।

ଦୁନିଆର ପିଲ ଆମର ସାଥି
ବିଶ୍ୱ ହିତେ ଯାଉ ଜୀବନ ବିତି ।

ବଜାରେ ବଜାରେ ବାଇଦ ବଜା
ଗଛି ପଖାଳକୁ କଦଳୀ ଭଜା ।

● ● ●

## ବିଶ୍ୱ ସେବକ

ବିଶ୍ୱ ସେବକ ହେ ସତ୍ୟ ପୂଜାରୀ
ଗଡଘାଟ ଯୋଗୀ ପ୍ରେମ ଭିକାରୀ
ଆସିଥିଲ ଧରି ମାନବ ଶରୀ
ବିଶ୍ୱ ସେବକ ହେ ପ୍ରେମ ପୂଜାରୀ । ପଦ ।

ପିତୃ ସତ୍ୟ ପାଳି ରାମ ଗଲେ ବନ
ମାତୃ ସତ୍ୟ ରଖି ତବ ମନେ ମନେ
ଯୌବନ ଯୁଆରେ ଗଲ ନାହିଁ ଭସି
ଯାଇ ବିଲତକୁ ଆସିଲ ଫେରି । ୧ ।

ଗୋରା ଜାତି ପାଖେ କଳା ଅପମାନ
ଅଥୟ କଲଲୁ ତମ ମନପ୍ରାଣ
ଚଇତନ ସମ ସହିଲ କଷଣ
ମଥାରୁ ରକତ ପଡ଼ିଲ ଝରି । ୨ ।

ବୋଧି ବଟତଳେ ବୁଦ୍ଧ କଲେ ତପ
(ତୁମେ) ସାବରମତୀର ତୀରେ କଲ ଜପ
ସବୁ ଧର୍ମଶାସ୍ତ୍ର ମିଳାଇ ଦେଖିଲ
ଅହିଂସା ରଖିଛି ସୃଷ୍ଟିକି ଧରି । ୩ ।

ସତ୍ୟାଗ୍ରହୀ କୃଷ୍ଣ ବଜ୍ରବାଣ ସହି
ଦେବଗଜ ଦର୍ପ ଦେଇଥିଲ ଦହି
ତୋପ ବନ୍ଧୁକକୁ ପାଚି ତୁମେ ବୁଢ଼
ତଟାଇଲ ଆମ ବାସତ୍ୱ ତୋଟି । ୪ ।

ମହମଦ ସମ ଅସୀମ ସାହସ
ଦେଖାଇଲ ରଖି ଅଟଳ ବିଶ୍ୱାସ

ଏକଶ୍ୱର ବାବା ଏକ ନିଷ୍ଠ ହେଇ
ସଦା ସମବେତ ପ୍ରାର୍ଥନା କରି । ୫ ।

ଭଲ ପାଇ ସଦା ମାନବ ଜାତିକି
ବଢ଼ାଇବା ଲାଗି ମାନବ ପ୍ରୀତିକି
ଯୀଶୁ ପରି ଜନ୍ମ ଦେହ ଢାଳି ଦେଲ
ଗଗନ ପବନ ଉଠିଲା ଥରି । ୬ ।

ତମ ଆତ୍ମା ଆଜି ଖେଳେ ଘରେ ଘରେ
ତମ ଶ୍ୱାସ ବହେ ବିନୋବା ଭିତରେ
ବାହେ ତମ ତରୀ ଭରତ ନାଉରୀ
ଶୋକେ ଘୁରିଆଡ଼େ କାଳଭଉଁରୀ । ୭ ।

• • •

## ମୂଷା ଛୁଆ ଛୁ

ଆମ ବିଲେଇ କରିଲା ଛୁଆ
ଗୋଟିଏ ମାଇ ଆରଟି ଭୁଆ
ଫିଟି ନଥାଏ ଛୁଆଙ୍କ ଆଖି
ମାଆ ତାହାଙ୍କୁ ପାଟିରେ ଯାକି
ଠାଆକୁ ଠାଆ ଆସଇ ଥୋଇ
ଜଗଇ ତାଙ୍କୁ ପାଖରେ ଶୋଇ
ଗାଡ଼ି ସନ୍ଧିରେ ଅମାର ତଳେ
ଠାକୁର ଘରେ ଭଙ୍ଗା ଗୁହାଳେ
ଭୁଆର ଡରେ ଥାଏ ସେ ରଖି
ତାଙ୍କର ଯହୁଁ ଫିଟିଲା ଆଖି
ଘରେ ବାହାରେ ବୁଲିଲେ ଆସି
ଛୁଆଙ୍କୁ ଦେଖି ସଭିଏଁ ଖୁସି
କିନ୍ତୁ ଦିନ ସେ ଉଠିଲେ ବଢ଼ି
ମନକୁ ତାର ଯିବାକୁ ଛାଡ଼ି
ମାଆ ବିଲେଇ ଶିକାର କରି
ଘରକୁ ଆଣେ ମୁହଁରେ ଧରି
କେବେ ଜିଅନ୍ତା, କେବେ ବା ମଲା
ଯା' ଯେତେବେଳେ ତାଙ୍କୁ ମିଳିଲା
ବଡ଼ ପାଟିରେ ଛୁଆଙ୍କୁ ଡାକେ
ଦଉଡ଼ି ଯାଇ ମାଆର ପାଖେ
ଖୁସି ମନରେ ଖାଆନ୍ତି ବସି
ଦେଖି ତା' ମନ ହୁଅଇ ଖୁସି
ଦିନେ ଗୋଟିଏ ମୂଷାକୁ ଧରି
ପିଲଙ୍କୁ ଦେଇ ଗଲା ବାହାରି
ଛୁଆଏ ଥିଲେ ଭରି ଭୋକିଲା
ତାଙ୍କ ଭିତରେ କଳି ଲାଗିଲା
ବଡ଼ କହେ ମୁଁ ଖାଇବି ଆଗ
ସାନର ତହୁଁ ଉଠିଲା ରାଗ
କଡ଼କୁ ଯାଇ ଦେଲା କାମୁଡ଼ି
ବଡ଼ ବି ତାକୁ ଦେଲା ଆମ୍ପୁଡ଼ି
ଗାଲେଇ ପଡ଼ି ଥାଏ ସେ ମୂଷି
ମନ ଭିତରେ ବହୁତ ଖୁସି
କହିଲା ଉଠ ଦି ହାତ ଯୋଡ଼ି
'ମୋ' କଥା ମାନ ଯିବି ମୁଁ ଛାଡ଼ି
ଶେଷ ଘରକୁ ଯାଇ ପନିକି—
ଆଣ ଯା' ଦିହେଁ ମଥାରେ ଟେକି
କାଟିଲେ ମୁହିଁ ହେବି ଦି' ଖଣ୍ଡ
କପାଳେ ଅଛି ମୋର ଏ ଦଣ୍ଡ
ମୂଷି କଥାରେ ମାନିଲା ମନ
ଶେଷ ଘରକୁ ଗଲେ ଦି' ଜଣ
ଝରକା ବାଟେ ପଶିଲେ ଘରେ
ତାଙ୍କ ଶିକାର ଏ ଅବସରେ
ଅମାର କଣେ ଗାତରେ ପଶି
(ମୂଷି) ନିଜ ଘରକୁ ଗଲା ସେ ଖସି ।

• • •

## ପର ଉପକାର

ମେଘ ଦେଖ ଅସିଲାଣି ବରଷଇ ପାଣି,
ଗଛ ଦେଖ ଆମ ଲାଗି ନିତି ହୁଏ ହାଣି ।

ସୁନା ରୂପା ହେଉଛନ୍ତି ନିଆଁରେ ଉଜ୍ଜ୍ୱଳ,
ସୁବାସ ଦିଅଇ ଫୁଲ ଆମ ଲାଗି ଫୁଟି ।
ଆମ ହିତ ଲାଗି ସଦା ବୁଲଇ ପବନ,
ସୂର୍ଯ୍ୟ ଉଠେ ଆମପାଇଁ ଆସେ ପୁଣି ଜହ୍ନ ।
ବଡ଼ ହେଲେ ଆମେ ହେବୁ ପର ଉପକାରୀ
ପରପାଇଁ ଦେବୁ ଆମେ ମନ ପ୍ରାଣ ଢାଳି ।

• • •

## ହରିଆ ମୁଣ୍ଡେ ପାଟ ଶିରିପା

ଆମ ଗାଁ ପାଖ ବଣୁଆ ସାହି ମାଡ଼ିଲା ସେଠି ବାଘ
ବଣରୁ ଆସି ଗୁହାଳେ ପଶି ଗୋରୁଙ୍କୁ ନେଲା ଖାଇ ।
ବୋହୂ କି ଝିଅ ଆସିଲେ ଯେବେ ନେବାକୁ ନଈପାଣି
ଜୀବନେ ତାଙ୍କୁ ପକାଏ ମାରି ଲଟାକୁ ନେଇ ଟାଣି ।
ବେଳ ବୁଡ଼ିଲେ ତାଟି କବାଟ ପଡ଼େ ପଡ଼ୁଛି ଘରେ
କିଏ ଲୋକଟିଏ ପଦାକୁ ସୁଦ୍ଧା ବାହାରେ ନାହିଁ ଡରେ ।
ବଡ଼ ଝକଟା ମହାବଳଟା ତା'କୁ ମାରିବା ପାଇଁ
ଶିକାରୀ ଆସି ଖୋଜିଲେ ଯେତେ ପାଇଲେ ନାହିଁ କାହିଁ ?
ଥରେ ଗୋଟିଏ ଭଣ୍ଡାରୀ ପୁଅ ଲୋକଙ୍କ ସେବା କରି
ବଣ ଭିତରେ ଚଲା ବାଟରେ ଯାଉଛି ଘରେ ଫେରି ।
ବାଘ ହାବୁଡ଼େ ପଡ଼ିଲା ଟୋକା ହୋଇଲେ ମୁହାଁମୁହିଁ
ଆଖି କି ଆଖି ଯୋଖି ଦେଇକି ବାରିକ ରହେ ଚାହିଁ ।
ଡାହାଣ ହାତେ ବାଗେଇ କରି ଆଇନାଟିକି ଧରି
ମହାବଳକୁ ଦେଖାଇ ଦେଲା ନ ଯାଇ ଟିକେ ଡରି ।
ପକେଟୁ ତା'ର କାଗଜ ଖଣ୍ଡେ ବାଆଁ ହାତରେ କାଢ଼ି
ଚଟପଟ୍‌କିନା ଜନ୍ତୁ ଆଡ଼କୁ ଯୋଥରେ ଦେଲା ଛାଡ଼ି ।
କହିଲା ଭାଇ ଭଲକି ପଢ଼ ହୁକୁମ ଅଛି ଯାହା
ମୁଁ କି କରିବି ପିଥଇ ଛାର ମାନିବି ନିଶ୍ଚେ ତାହା ।
ନ ହେଲେ ଗୁଡ଼ିମାଡ଼ରେ ମରି ଦେଖିବି ମଡ଼ା ଭୂଇଁ
ଯୋଡ଼ିଏ ବାଘ ଆଣିବାପାଇଁ କାଗଜେ ଅଛି ଲେଖା
ଭାଗ୍ୟ ମୋହର ତମ ସାଙ୍ଗରେ ପଡ଼ିଲା ଆଜି ଦେଖା ।
ଗୋଟିଏ ବାଘ ଆଣିଛି ଧରି ଦେଖୁଛ ଆଖି ଆଗେ
ପୋଷା ମାନି ସେ କୁକୁର ପରି ବୁଲଇ ମୋ'ର ସାଙ୍ଗେ
ଯୋଡ଼ି ଯାଉଁଳି ଅଡ଼େଇ ନେବି ଭାବୁଛି ମନେ ମନେ
ମହା ମଜାରେ କାଟିବ ଦିନ ରହି ନନ୍ଦନ ବନେ ।
କଟକ ପାଖେ ବାରଙ୍ଗ ଠାରେ ଷ୍ଟେସନ ନାଁ ତାର
କାଚର ଚିଜ ତିଆରି ହୁଏ କିଣନ୍ତି ଦେଶଯାକ ।
କଟକ ପାଖୁ ଅଳପ ଦୂରେ ଅଛି ଚିଡ଼ିଆଖାନା
ବସିକି ସେଠି ଖାଇବ ତମେ କେତେ ଜାତିର ଖାନା ।
କଥା ଶୁଣିକି ଗୁନିଆ ବାଘ କହୁଛି ହାତ ଯୋଡ଼ି
ଦୋହି ସାଆନ୍ତ ପିଲା ଧୁଆଟି ମରିବେ ଲୋକେ ଗଡ଼ି ।
ସୁନା ରୂପାର ଗହଣା ଯେତେ ଲୁଚିଛି ମୁହିଁ କାଢ଼ି
ସବୁ ମୁଁ ଦେବି ସାଆନ୍ତ ପାଖେ ଦିଅନ୍ତୁ ମୋତେ ଛାଡ଼ି ।
ଦିଶୁଛି ଯୋଉ କନକ ଗିରି ରହିଛୁ ଆମେ ସେଠି
ଆସନ୍ତୁ ରଜା ଆମ ଘରକୁ ଦବୁ ତୁମକୁ ଭେଟି ।
ହସି ହସିକା କୁହଇ ଟୋକା ଯାଆ ମୁଁ ଦେଲି ଛାଡ଼ି
କାଲିକି ଆସି କୁଣିଆ ହେବି ରଖିବ ଘଡ଼ ବାଢ଼ି ।
କହିବ ନାହିଁ କେବେ କା' ଆଗେ ଏଠିକି ଥିଲି ଆସି
କହିବ ଯେବେ ଦହିଁକି ଦିହେଁ ଚଢ଼ିବ ନିଶ୍ଚେ ଫାଶୀ ।
ନିଶ୍ଚିତ ହୋଇ ମହାବଳଟା ଘରକୁ ଗଲା ଫେରି
ଆର ଦିନକୁ ଗାଁର ଲୋକେ ଆସିଲେ ସବୁ ଘେରି ।
ଜଗାଇ ଥିଲେ ବନ୍ଧୁକିଆକୁ ଫାଏର୍ କଲା ଗୁଳି
କାନ ମୁଣ୍ଡାରେ ବାଜିଲା ବାଘ ପଡ଼ିଲା ତଳେ ଟଳି ।
ହରିକୁ ଦେଲେ ପାଟ ଶିରିପା ତା' ମାଆକୁ ଦେଲେ ଶାଢ଼ି
ସେହି ଦିନଠୁଁ ବାଘର ଭୟ ଗାଁରୁ ଗଲା ଛାଡ଼ି ।

• • •

## ଏଇ ମାଟି ମୋର ମାଆ

ଆ ରେ ଆଜି ଆ
ତୋ' ମାଆ ଡାକୁଛି ଆ

ଏଇ ମାଟି ତୋ'ର ମାଆ
ମା' ଡାକୁଛି ଆ । ପଦ ।
ମାଆର ମନ ବୁଝୁଛୁ ଯେବେ
ସରଗ ସୁଖ ପାଇବୁ ତେବେ
ସାରା ଜୀବନ ହେବ ତ ତୋତେ
ସବୁ କଥାରେ ସାହା । ୧ ।
ମାଆର ପିଲା ଅସୀମ କୋଟି
ପାହିଲେ ରାତି ସକାଳୁ ଉଠି
ମାଆ ପୟରେ ଯାଆନ୍ତି ଲୋଟି
ଗୁ ନ୍ଧି ଆ ଡ ବୁ ଗ୍ନହଁ । ୨ ।
ଖୋଳି ପୋଖରୀ କୂଅ ଖାଡ଼ିଆ
ନରଖ କେବେ ଜମି ପଡ଼ିଆ
ସଜାଇ ଦିଅ ତା' ବାଡ଼ି ବଗିଚ୍ଚ
ଖଟାଇ ଗ୍ନ ରି ବା ହା । ୩ ।
ଜାହା ପାଖରେ ନୋହେ ସେ ଋଣୀ
ପାରେ ଯୋଗରେ ପାରିଲେ ଜୁଣି
ଗୋଟିଏ ମଣ୍ଡି କୋଟିଏ ହେବ
ଖାଇବୁ କେତେ ଖାଆ । ୪ ।

● ● ●

## ସୈନିକ

ଆମେ ସୈନିକ ଆମେ ସୈନିକ
ଆମ ଦେଶରକ୍ଷା କାମ ଦୈନିକ
ଦେଶଲାଗି ଆମେ ଜୀବନ ଦେଇଛୁ ଦେଶ ଲାଗି ଖଟୁ ଦୈନିକ ।
ଆମ ଘର ଛାତ ନୀଳ ଅମ୍ବର
ଆମ ସୁଖ ଶେଯ ନୀଳ ପ୍ରାନ୍ତର
ମୃତ୍ୟୁକୁ ଆମେ ଡରି ନାହୁଁ କେବେ
ଆମେ ଖେଳୁ ତାହା ସାଥେ ଦୈନିକ ।
ଅନୀତି ଅନ୍ୟାୟ ବଇରି ଆମର
ପୃଥ୍ୱୀରୁ ତାହାକୁ ତଡ଼ିବୁ ମୂଳର
ଛାତି ହାଡ଼ ଦେଇ କରିବୁ ସମର
ଆମ ଦେଶକୁ ଗଢ଼ିବୁ ଦୈନିକ ।
ଆମେ ଜଣାକୁ ଜାଡ଼ିବୁ ଜଣାରେ
ଆମେ ଶାନ୍ତି ଆଣିବୁ ସସାରେ
ବିଶ୍ୱ ଜନତା ରାଷ୍ଟ୍ର ଗଢ଼ିବ ଆମ ବନ୍ଧୁ ବଡ଼ ଏକା ନୈତିକ ।
ଆମେ ସୈନିକ ଆମେ ସୈନିକ ।

● ● ●

## ଆମେ ସବୁ ଛପନ କୋଟି

ଯୋଉଦିନ ହେଲେ ଆମେ ସବୁ ମିଶି ହେବୁ ଏକାଠି
କଲମ କାଳିରେ ବନ୍ଧୁକ ଗୁଳିରେ
କେହି ନପାରିବେ ଆମକୁ ବାଣ୍ଟି ।

(୧)

ବନ୍ଦିଶାଳେ ପଡ଼ି ଫାଶି କାଠେ ଚଢ଼ି
ଛବିଶି ବରଷ କାଳ ଲଢ଼ି ଲଢ଼ି
ସ୍ୱାଧୀନତା ଲାଗି ସର୍ବସ୍ୱ ସାରିଲୁ
କେବେ ହେଲେ ମନ ନଥିଲା ଫାଟି ।

(୨)

ପଢ଼ି ସମର୍ପିଲୁ ସବୁ ଧର୍ମନୀତି
ସତ୍ୟ ହିଁ ଅଟଇ ସବୁ ଧର୍ମଭିତ୍ତି
ଯୁଗେ ଯୁଗେ ଧର୍ମ ରଖିଛି ସୃଷ୍ଟିକି
ସତ୍ୟର ତ ନାହିଁ କ୍ଷୟ କେଉଁଠି ।

(୩)

ଆଦ୍ୟରୁ ଆମକୁ ଏହି ଭଗବଣ୍ଟା
କଲଣି କରୁଛି କେତେ ହଟହଟା
କେତେ ରକ୍ତନଦୀ ବହିତ ଗଲଣି
ଭାବିଲେ କଲିଜା ହୁଅଇ ଫାଟି ।

(୪)

ନିଜ ବେଳେ ନିଜେ ମାରିବାକୁ ଛୁରୀ
ବିଦେଶୀ ଦୁଆରେ ଭଲପେ ଭିକାରୀ

ଘରେ ନାହିଁ ଭାତ ପାଖେ ନାହିଁ ଅର୍ଥ
ସବୁ ଭବିଷ୍ୟତ କଲୁଣି ମାଟି ।

(୫)

ପ୍ରକୃତି ଗଢ଼ିଛି ଆମକୁ ଏପରି
ତିନି ପାଖେ ସିନ୍ଧୁ ପାଖେ ହିମଗିରି
ଆମ ଗଙ୍ଗା ଆମ ବ୍ରହ୍ମପୁତ୍ର ସିନ୍ଧୁ
ଆଉନ୍ ବଳରେ ନ ହେବେ ଜାଟି ।

(୬)

ଜାତି ବର୍ଣ୍ଣ ଭେଦ ମନ୍ ପାଶୋରି
ଚଳିଥିଲୁ ଏକା ପରିବାର ପରି
ଏକା ପଙ୍ଗତ ଖାଉଥିଲୁ କରି
ସାକ୍ଷୀ ଖଗ ତଗ ସାକ୍ଷୀ ଏ ମାଟି ।

(୭)

କୃଷକ ଶ୍ରମିକ ଗ୍ୱଟ କାରିଗର
ଜାତି ମେରୁଦଣ୍ଡ ଅଟନ୍ତି ଆମର
ଏହି ଗ୍ୱରି ଜାତି ମନ ବଳାଇଲେ
ଯିବ ସବୁ କଳି ଅଚିରେ ତୁଟି ।

● ● ●

## ସେଇ ଗାଇକର ପୁଅ

ଆମେ ସେଇ ଗଇଜର ପୁଅ
ପାଣି ପଥରରୁ ଅଧିକ ଟାଣ ଆମରି କାଳିଆ ଦେହ ।
ଆମରି ଦେଶର ପଠାଣି ସାମନ୍ତ
ଗର୍ଜିଲେ ବିଶ୍ୱର ବିଜ୍ଞାନ ତରୁ
ଜାଠ ଖଣ୍ଡିକରେ ମାପି ଯାଇଛନ୍ତି
ଅଶେଷ ନକ୍ଷତ୍ର ଗ୍ରହରେ । ୧ ।

ଆମରି ଦେଶର ବାଳୁତ କୁମର
ଗଢ଼ିପାରଇ କୋଣାର୍କ ମନ୍ଦିର
ଧଉଳି ଏକାମ କାନନେ
ଖୁଉଇ ଯାହାର କୀର୍ତ୍ତି ସମୁଦ୍ରରେ । ୨ ।

ଜାଗରେ ଓଡ଼ିଆ ଜାଉଁରିଆ ଜାତି
ଲହୁ ନାହିଁ ଯାର ପଛେ ମୁଣ୍ଡ କାଟି
ଜାତିଯୋଗ୍ର ବିଶ୍ୱ ସବୁ କରିପାରେ
ଆମର ଏ ଦେଶ ପୁଅ
ଆମେ ସେଇ ଗଇଜର ପୁଅ । ୩ ।

● ● ●

## ଆମେ ଜବାନ୍

ଆମେ ଜବାନ୍ ଜବାନ୍
ଆମ ଜାତି ଆମେ ବଡ଼ ଜବାନ୍
ଭାରତ ଆମର ଜନ୍ମମାଟି
ଜବର ଆମର ହିନ୍ଦୁସ୍ଥାନ ।
ସତ୍ୟ ପୀରତି ଆମର ଧର୍ମ
ନିତ୍ୟ କୀରତି ଆମର କର୍ମ
ଜଗତ ସହତି ଆମର ଲକ୍ଷ୍ୟ
ଆମେ ଦୁର୍ଗ ଦୁଆର ଦରୁଆନ୍ ।
ହିମାଦ୍ରି ଆମର ଗଉରବ
ସୀମାଦ୍ରି ବିନ୍ଧଇ ସଉରଭ
ସାଗର ଆମର ଚରଣ ସେବକ
ଆମେ ମରଣ ବିଜୟୀ ସନ୍ତାନ୍ ।

ଆମ ସୁଖ ଶେଯ ଶ୍ୟାମ ପ୍ରାନ୍ତର
ଆମ ଘର ଛାତ ସୁନୀଳ ଅମ୍ବର
ରବି ଶଶୀ କୋଳେ ଜନମ ଆମର
ଆମେ ତାଙ୍କରି ତେଜରେ ତେଜିୟାନ ।

● ● ●

## ବଜାରେ ବଜାରେ ବାଇଦ ବଜା

(୧)

ବଜାରେ ବଜାରେ ବାଇଦ ବଜା
ଗରମ ପୁରୀକି ନରମ ଭଜା ।

ଗଣିତ ବଣିଜ ଶିଳ୍ପ ଜ୍ଞାନ
ସବୁଠି ଉନ୍ନତ ଆମରି ମାନ ।
ବିଦେଶୀ ଶକ୍ତି ହେଲଣି ଶେଷ
ଆମେ ଚଳାଇବା ଆମରି ଦେଶ ।
ଆମ ଦେଶେ ନାହିଁ ବିଦେଶୀ ରଜା
ବଜାରେ ବଜାରେ ବାଇଦ ବଜା ।

[୨]

ବଜାରେ ବଜାରେ ବାଇଦ ବଜା
ସ୍ୱରାଜ୍ୟ ଯାକ ହୋଇଛି ସଜା ।
ଆମ ପ୍ରତିନିଧି ଲୋକ ସେବକ
ସାରା ପୃଥ୍ୱୀକି ଦେବେ ଆଲୋକ ।
ଆମ ଦୂତ ଯାଇ ସବୁ ରାଇଜେ
ରାଜ ସଭା ତଳେ କହନ୍ତି ବୀଜେ ।
ଉଡ଼େ ସ୍ୱରିଆଡ଼େ ଆମରି ଧ୍ୱଜା
ବଜାରେ ବଜାରେ ବାଇଦ ବଜା ।

[୩]

ବଜାରେ ବଜାରେ ବାଇଦ ବଜା
ଲୋକେ ଲାଗିଲେଣି ଦାଣ୍ଡକୁ ପଜା ।
ଆମ ଗଁଆଲୋକ କରନ୍ତି ଚାଷ
ବିଲରେ ମୁଣ୍ଡିଆ ବାଛନ୍ତି ଘାସ
ହାକିମ ଅମଲା ପିଅନ ସଭେ
ସଭିଏ ଖଟନ୍ତି ଆମରି ପାଇଁ ।
ବଜାରେ ବଜାରେ ବାଇଦ ବଜା
ନଡ଼ିଆ ପାଚିକି ଗୁଡ଼ଭଜା ଭଜା ।

[୪]

ବଜାରେ ବଜାରେ ବାଇଦ ବଜା
ଆମେ ପିଲଯାକ ମାରିବା ମଜା ।
ଉଡ଼ି ଉଡ଼ି ଯିବା ଉଡ଼ାଜାହାଜେ
ନୀଳ ଆକାଶର ନୀଳ ରାଇଜେ
ଦରିଆ ଭିତରେ ବୋଇତ ବାହି
ଖେଳିବା ଦୂର ସାଥିଙ୍କ ଯାଇ ।
ତାଙ୍କ ସଙ୍ଗେ ଆମ ପତାକା ଧରି
ବୁଲିବା ଜଗତେ ବାପୁଜୀ ପରି ।
ବଜାରେ ବଜାରେ ବାଇଦ ବଜା
ଉଡ଼େ ସ୍ୱରିଆଡ଼େ ଜାତୀୟ ଧ୍ୱଜା ।

● ● ●

## ଗଢ଼ିଛି କିଏ ?

ଏହି ନେଳିଆ ଆକାଶ ଦେହେ
ଖଞ୍ଜିଛି କିଏ ବସି,
ମିଟି ମିଟିକା ସରଗ ତାରା
କେଡ଼େ ସୁନ୍ଦର ଶଶୀ ।
କିଏ ଗଢ଼ିଛି ପାହାଡ଼ ନଈ
କିଏ ଗଢ଼ିଛି ହାତୀ,
ଗଢ଼ିଛି କିଏ ଟିକି ପିମ୍ପୁଡ଼ି
ଭଲ ପରଜାପତି ।
ଚଢ଼େଇ ଗଢ଼ି ଉଡ଼ାଇ ଦିଏ
କାହାର କଥା ମାନି,
ହୁଅଇ ଦିନ ହୁଅଇ ରାତି
ବରଷେ ମେଘ ପାଣି ।
ଫୁଟେଇ ପୁଣି ନାନା ଜାତିର
ଫୁଲ ବଗିଚା କଣେ
ଅନ୍ଧାର ହେଲେ ବାଘ ଭାଲୁଙ୍କ
ଶୁଭଇ ପାଟି ବଣେ ।
ଗଢ଼ିଛି ଯିଏ ମୋହର ଏହି
ଛୋଟିଆ ଦେହଖୋଟି,
ସେହି ଈଶ୍ୱର ପାଦରେ ମୋର
ଜୁହାର କୋଟି କୋଟି ।

● ● ●

## ମୋ ଗାଁ

ଜନନୀ ଜନମଭୂଇଁ ଏଇ ମୋର ଗାଁ
ମହୁରୁ ମଧୁର ଲାଗେ ମୋତେ ତାର ନାଁ ।

ଛାତିରେ ପକାଇ ଯାର କେତେ ଧୂଳି ବାଲି
କୋଡ଼ରେ କସରି ଗୋଡ଼ ରଖିଛି ମୁଁ ଖେଳି ।

ବଗିଚାରେ ପଶି ତାର ଖାଇ ମିଠାକୋଳି
ବରଗଛ ଓହଳରେ ଖେଳିଛି ମୁଁ ଦୋଳି ।

ଧରିଛି ତା ପ୍ରଜାପତି ଛପି ଛପି ଯାଇ
ଫିଙ୍ଗିଦେଇ ଫୁଲ ତୋଳି ମହୁତକ ଖାଇ ।

ଜମାଇଛି ଦେହେ ତାର ଯେତେକ ଅଳିଆ
ନଈ ନାଳ ବନ୍ଧ ପାଣି କଲି ମୁଁ ଗୋଳିଆ ।

ପଦେହେଲେ ଦିନେ ମୋତେ ଦେଇନାହିଁ ଗାଳି
ପିଲଦିନୁ କରିଛି ସେ ଜୀବନ ଶଙ୍ଖାଳି ।

ଖାଇ ତାର ଦେଲା କ୍ଷୀର ନଈ ଦେଲା ନୀର
ମାଟି ତାର ମୋହଲାଗି ତୋଳିଦେଲା ଘର ।

ବିଲ ଦେଲା ଧାନ ମୁଗ ଆଖୁ କପା ବିରି
ଚଖାଇଲା ଚୁଡ଼ା ମୁଢ଼ି କେତେ ପିଠାଖିରି ।

ଜୀବଥିବା ଯାଏ ମୁହିଁ ନେଇ ସାଙ୍ଗ ସାଥି
ସେବିବି ଚରଣେ ତାର ଖଟି ଦିନ ରାତି ।

ଜଣେ ହେଲେ ମୋ ଗାଁରେ ନ ରଖିବି ଦୁଃଖୀ
କୁଟି ଖାଇ କାଟି ପିନ୍ଧି ହେବେ ସବୁ ସୁଖୀ ।

ରଖିବି ତା ଦେହ ସଦା କରି ମୁଁ ଶ୍ୟାମଳ
ଘୁଞ୍ଚାଇବି ତାହାର ଶୋକ ମରଣ ଅକାଳ ।

ପାଖ ପଡ଼ିଶାଙ୍କ ସାଥେ ଭାଇ ଭାଇ ରଖି
ଶତ୍ରୁ ଦେଖି କେବେହେଲେ ଯିବିନାହିଁ ଶଙ୍କି ।

ପ୍ରହଲ୍ଲାଦ ପରି ମୁହିଁ ଅଟଳ ପାଷାଣ
ବାଳିଆ ସମାନ ତୋଳି ଧରିବି ନିଶାଣ ।

● ● ●

## ମୋ ଦେଶ

ସେହି ତ ମୋର ଜନମ ଭୂଇଁ ସେହି ତ ମୋର ଦେଶ
ରଜାଘରର ପୁଅ ଯେଉଁଠି ଧରିଲା ଯୋଗୀ ବେଶ ।

ରାତି ଅଧରେ ନଅର ଛାଡ଼ି ଗହନ ବନେ ପଶି
ଦୁନିଆ ଦୁଃଖ ହରିବାପାଇଁ ଯୋଗେ ରହିଲା ବସି ।

ଯେଉଁ ଦେଶର ଭକତ ଜଣେ ଖପର ମାଡ଼ ଖାଇ
ହସି ହସିକା ଗାଇଲା ଗୀତ ସଭିଏଁ ମୋର ଭାଇ ।

ମାଇଲା ଲୋକ ଧଇଲା ଗୋଡ଼ ବଦଳିଗଲା ମନ
ଗର୍ବିଛି ମୋତେ ସେହି ଦେଶର ସୁତ୍ରକତାର ଜନ୍ମ ।

ଯେଉଁ ଦେଶର ଶିଳ୍ପୀ ପିଲା ବଢ଼ାଇଦେଲା ବେକ
ଯୁଗ ଯୁଗକୁ ରଖିବାପାଇଁ ଆପଣା ଜାତି ଟେକ ।

ଦଧିନଉତି ଚଢ଼ାଇଦେଇ କୋଣାରକର ଚୂଳେ
ହସିହସିକା ଡେଇଁ ପଡ଼ିଲା ଅକାତ ନୀଳ ଜଳେ ।

ବାଳକ ବେଳୁ ନାନକ ଯହିଁ ଖେଳାଇ ନିଜ ମଥା
କାଳକାଳକୁ ଦେଖାଇ ଗଲେ ଆମକୁ ନୂଆ ପନ୍ଥା ।

ହିନ୍ଦୁ ସଙ୍ଗେ ମୁସଲମାନ ମିଳାଇଗଲେ ଶିଷ୍ୟ
ଜୟ ଗୁରୁଜୀ ଶବଦେ ଗଲା ଚମକି ମୋର ଦେଶ ।

ଯେଉଁ ଦେଶର ଯୁବକ ଜଣେ ଖୋଜିଲା ଜ୍ଞାନ ଗୁରୁ
ଖୋଜି ଖୋଜିକା ପାଗଳ ହେଲା ବଞ୍ଚିଲା ମରୁ ମରୁ ।

କାଳୀମନ୍ଦିର ସେବକ ଜଣେ ଦେଲା ତା ଆଖି ଖୋଲି
ସାରା ଜଗତେ ଜାଣିଲେ ତାକୁ ବିବେକାନନ୍ଦ ବୋଲି ।

ଯେଉଁ ଦେଶର ଜନନୀ ତାର କୋଳରୁ ପିଲା ନେଇ
ଜନମଭୂମି ମୁକତି ଲାଗି ପଡ଼ିଲା ରଣେ ଡେଇଁ ।

ଗୁଳି ଚୋଟରେ ମରିବାପାଇଁ ହୋଇଲା ଆଗଭର
ସେହି ଦେଶରେ ଜନମ ମୋର ସେହି ମାଟିରେ ଘର ।

ଯେଉଁ ଦେଶରେ ସୁଭାଷ ମୋର ଆଇ. ସି.ଏସ୍.ପଢ଼ି
ମାତୃଭୂମିର ମୁକ୍ତିଲାଗି ତୁଟାଇ ହାତ କଡ଼ି ।

ଲଢ଼ିବାପାଇଁ ତିଆର ହେଲା ସଜାଇ ନିଜ ଦଳ
ଥରି ଉଠିଲା ଟେମସ୍ ଥରିଲା ହିମାଚଳ ।

ଯେଉଁ ମାଟିରେ ବାପୁଜୀ ମୋର ପିଇଟି ଦିନୁ ବର୍ଦ୍ଧି
ସତ୍ୟ ସାଥେ ବସିଲେ ମିତ ମିଥ୍ୟା ସାଥେ ଇର୍ଦ୍ଧି ।
ବଜାଇ ଦେଇ ପୃଥ୍ୱୀସାରା ଅହିଂସାର ଭେରୀ
ସଜାଇଦେଲେ ଶାନ୍ତି ସେନା ପାଇଲେ ଦେଶ ଫେରି ।
ସେହି ଦେଶରେ ଜନମ ମୋର ସେହି ମାଟିରେ ଘର
ଦୁନିଆଁ ଲୋକ ଭାଇ ଭଉଣୀ କେହି ନୁହଁନ୍ତି ପର ।

● ● ●

## ସେବକ ସେନା

ଆମେ ଭାରତର ସେବା ସୈନିକ
ଆମ ଲୋକସେବା କାମ ଦୈନିକ ।
ଆମ ମୁଖ୍ୟ ଶ୍ରେୟ ଶ୍ୟାମ ପ୍ରାନ୍ତର
ଆମ ଘର ଛାତ ନୀଳ ଅମ୍ବର ।
ଆମେ ଡରୁ ନାହିଁ କେବେ ମରଣେ
ମନ ରଖିଥାଉଁ ବିଭୁ ଚରଣେ ।
ବିଶ୍ୱ ହିତ ହିଁ ଆମର ମନ୍ତ୍ର
ନିଃସ୍ୱ-ସେବା ହିଁ ଆମର ଯନ୍ତ୍ର ।
ତିଳେ ଭେଦଭାବ ନାହିଁ ଆମର
ଆମେ ଏକ ବସୁମାତା କୁମର ।
ଭାବୁ ଶରୀରକୁ ଦେବ-ମନ୍ଦିର
ଆମେ ବିପଦରେ ନୋହୁଁ ଅଧୀର ।
ସଦା ଉଚ୍ଚ ଆଶା ପୋଷି ମନରେ
ଆମେ କାମ କରୁ ଏକ ଧ୍ୟାନରେ ।
ଆମେ ନିୟମରେ ଚଳୁ ବିଶେଷ
ସଦା ପାଳି ଦଳପତି ଆଦେଶ ।
ଆମ ଜୀବନରେ ନାହିଁ ବିରାମ
ଆମେ ନିୟମିତ କରୁ ବ୍ୟାୟାମ ।
ଆମେ ବିପନ୍ନର ଚିର ବାନ୍ଧବ
ଆମ ମନେ ନାହିଁ ତିଳେ ଗରବ ।

ଆମେ ବେଶ ରଖୁ ସଫା ସୁତୁରା
ସଦା ଆନନ୍ଦିତ ଆମ ଅନ୍ତର ।
ଦୁଃଖୀ ବଡ଼ଲୋକ ସବୁ ଜୀବନ
ଆମ ଆଖିରେତ ଏକା ସମାନ ।
ଘୋଟୁ ବିସୂଚିକା ଅବା ବସନ୍ତ
ଆମେ ସେବା କରି ଯାଉ ତୁରନ୍ତ ।
ଆ'ମେ ରତି ଜାଗି ଦେଉଁ ଔଷଧ
ରୋଗୀ ଶେଯ ପାଖେ ହୋଇ ଆବଦ୍ଧ ।
ଆମେ ଲୋଡ଼ୁ ନାହିଁ କେବେ ସମ୍ମାନ
ଆମେ ଶବ ଘେନି ଯାଉ ଶ୍ମଶାନ ।
ଆମେ ଚଢ଼ିଯାଉଁ ଗିରି ଶିଖରେ
ଯଦି ମରୁ ମରୁ କେହି ଉଧୁରେ ।
ଆମେ ସନ୍ତରଣ କରୁଁ ସାଗର
ଯେବେ ପ୍ରାଣରକ୍ଷା ହୁଏ କାହାର ।
କାହା ଯାନ ଯଦି ପଡ଼େ ଲେଉଟି
ଆମେ ସେବ କରୁ ଲୋଟି ସାଉଁଟି ।
ନେଇ ଯିବାକୁ ଜରୁରୀ ଖବର
ଆମେ ଡରୁ ନାହିଁ ବାଆ ବଜର ।
ପାଣି କାଦୁଅକୁ ଯାଉ ଚକଟି
ଆମେ ବୋହି ନେଉ ଆମ ବୋଝଟି ।
ଆମେ ଶ୍ରମଦାନ କରି ସାଦରେ
ମାଟି ସଡ଼କ ପକାଉଁ ଗ୍ରାମରେ ।
ଆମେ ବେଳ ଦେଖି କାମେ ବାହାରୁ
ଆମେ ବଳରେ ତ କାହିଁ ନ ହାରୁ ।
କାନ୍ଧେ ବୋହି ନେଉ ପାଣି-କଳସ
ଆମ ଦେହେ ନାହିଁ ତିଳେ ଅଳସ ।
ଝାସ ପରଲଗି ଦେଉ ଅନଳେ
ନିଆଁ ଲିଭାଉ ଯାଇ ସଅଳେ ।

ଜାତି ବିଚାରରେ କେବେ ନ ବୁଡ଼ୁଁ
କେବେ ନ୍ୟାୟ କଥା ମନୁ ନହୁଡ଼ୁ ।

ମେଳା ମଉଛବେ ଯାଇ ବାହାରେ
ଖଗ ଚଗ ସହି ଲଗୁଁ ସେବାରେ ।

ନବ ଅତିଥିଙ୍କି କରୁ ସାହାଯ୍ୟ
ଆମେ ବାଛୁନାହିଁ ଆର୍ଯ୍ୟ ଅନାର୍ଯ୍ୟ ।

ଆମେ ଅନ୍ଧ ଦେଖି ବାଟ ବତାଉଁ
ଆମେ ଦୁଃଖୀ ଲଗି ହାତ ପତାଉଁ ।

ଭଦ୍ର ଆଗମନ ଅବା ଗମନେ
ସଦା ଯୋଗ ଦେଉଁ ଅଭିନନ୍ଦନେ ।

ନିତି ପିତାମାତା ଗୁରୁ ସ୍ୱଜନେ
ଦେଇ ପୂଜାକରୁ ଭକ୍ତି ଚନ୍ଦନେ ।

ନଈ ବଢ଼ି ଯେବେ ହୁଏ ପ୍ରବଳ
ଆମେ ବାଣ୍ଟୁ ନେଇ ଚୂଡ଼ା ଗୁଡ଼ଳ ।

ପଙ୍ଗୁ ଅନାଥଙ୍କୁ କାହିଁ ଭେଟିଲେ
ବାଟ ତାଙ୍କପାଇଁ କରୁ ପହିଲେ ।

ଆମେ ଖରଚରେ ରଖୁ ହିସାବ
ଆମେ ଲଘୁ ନାହିଁ କେବେ ଜବାବ ।

ଆମ ପରେଟ୍‌ରେ ପୁଣ ଶିକ୍ଷିତ
ସଦା ଲଙ୍ଗିତରେ ହେଉ ଗ୍ରଥିତ ।

ଜଳ ପାଣି ପିଉଁ ରଖି ନିଜର
ଭୁଞ୍ଜୁ ପରିମିତ ଖାଦ୍ୟ ଆମର ।

ଚିହ୍ନି ଚାଲିଯାଉଁ ଦଳ ସଙ୍କେତ
ଜାତି ପତାକାର ବୁଝୁ ମହତ ।

ଜଳ ଭଉଁରୀର ପାଖେ ଖେଳାଇ
ଆମେ ଜାଣୁ ଭଲ ନାଆ ଚଳାଇ ।

ଦିଗ ବାଛି ନେଉ ଦେଖି ତାରକା
ଆମେ କଥା କହୁଁ ମୁହଁ ସଳଖା ।

ଆମେ ନିଜ ପାଇଁ ଭିକ୍ଷା ନଗ୍ରହୁଁ
କାହିଁ କାମକରି କିଛି ଭିଆଉଁ ।

ଆଖୁ ଚେର ଚଣା କପା କଦଳୀ
ରକ୍ଷେ ଉଦ୍ୟୋ ଯାଏ ଆମ ବଦଳି ।

ଗୋରୁ ଚରପାଇଁ ଛାଡ଼ୁ ପଡ଼ିଆ
ଗେଲ ତାଡ଼କରି ଆଣ ନଡ଼ିଆ ।

ଧାନ ଗହମତ ବଡ଼ ଫସଲ
ଆମେ ଶିଖିଥାଉଁ ତାର ଅମଳ ।

କରୁ ଦେଶର ଜିନିଷ ଆଦର
ଲକ୍ଷ୍ମୀ ମୂଳିଆ ଦେବତା ଆମର ।

ଆମେ ନିତିକରୁଁ କିଛି ସଞ୍ଚୟ
ତେଣୁ ସୁଖେ କାଟେ ଭବି ସମୟ ।

କୋଠ କାରବାରେ ଦେଉଁ ସାହାଯ୍ୟ
ଆମେ ଖରଚ ନକରୁ ଅନ୍ୟାର୍ଯ୍ୟ ।

ଆମ ଗୋରୁ ବାଛି ଥାନ୍ତି ସୁଖରେ
ଆମ ମନ ବନ୍ଧା ତାଙ୍କ ପାଖରେ ।

ଆମେ ପୋଖରୀରେ ଛାଡ଼ୁ ଯାଆଁଳ
ପୋଷୁ ପାତିହଂସ ବର୍ଦ୍ଧ ମରଳ ।

କରି ନାନା ଜାତି ଫୁଲ ବଗିଚା
ପାରୁ ବନଦେବୀ ଚିତ୍ତ ଗାଲିଚା ।

ଆମେ ଶିଖୁ ଲୁଗା ବୁଣା ଆଦରେ
କରୁ ବଢ଼େଇଙ୍କ କାମ ହାତରେ ।

ନିତି ଦରକାରୀ କାମେ ବାହାର
ଆମେ ଖୋଜୁନାହିଁ କେବେ କମାର ।

କଳ-କାମ ନାହିଁ ଯାଏ ବଳେଇ
ଆମେ ଜାଣୁ ସବୁ ଯାନ ଚଳେ ।

ଗିରି ବନଭୂମି ଯାଉ ହରଷେ
କେବେ ବଣଭୋଜି କରୁ ସରସେ ।

କେତେ ବାସଫୁଲ ତୋଳି କାନନେ
ହାର ଗୁନ୍ଥୁ ଆମେ ଅତି ଯତନେ ।
ଶୁଣି କୋଇଲିର କୁହୁ ନିଃସ୍ୱନ
ସେବୁ ମଧୁକାଳ ସୁଖ ପବନ ।
ବଂଶୀ ବାଜିଗଲେ ଆମ ହୃଦୟ
କାର୍ଯ୍ୟେ ଲାଗିବାକୁ ଆମେ ଅଥୟ ।
ଯୁଦ୍ଧେ ଲଢ଼ନ୍ତୁ ପଛକେ ଅମରେ
ଆମେ ଦଳବାନ୍ଧି ଯାଉ ସମରେ ।
ଯହିଁ ଗରଜଇ ତୋପ କମାଣ
ତହିଁ କାମକରି ହୋଇ ମଗନ ।
ଛାତି କରୁଦେଉଁ ସଦା ଜବର
ଆମେ ବୋହି ଆଣୁ ଯୁଦ୍ଧ ଖବର ।
ଆମେ ଆହତର କରୁ ଶୁଶ୍ରୂଷା
ଆମ ବାହୁ ବଳ ଆମ ଭରସା ।
ମନୁ ଘୃଣାଭାବ ସବୁ ଛଡ଼ାଇ
ଦେଉ କ୍ଷତ ସ୍ଥାନେ ପଟି ଚଢ଼ାଇ ।
ପଢ଼ି ଦୈନିକ ସମ୍ବାଦ ପତର
ରଖୁଁ ସାରା ଦୁନିଆର ଖବର ।
ଆମେ ବାଜେ ବହି ହାତେ ଧରୁନା
ଯାହା ଦିଏ ନାହିଁ ଉଚ୍ଚ ଭାବନା ।
ତ୍ୟାଗି ଗୋପବନ୍ଧୁ ଜାର କବିତା
ସ୍ୱାମୀ ବିବେକାନନ୍ଦଙ୍କ ବାରତା ।
ଯୋଗୀ ଅରବିନ୍ଦ ସାଧୁ ବଚନ
ସନ୍ଥ ବିନୋବାଙ୍କ ନୂଆ ଦର୍ଶନ ।
ରମା ହରିହର ସେବା ଭକତି
ମନେ ଆଣିଦିଏ ଜାତି ସହତି ।
ଆମେ ଭାରତର ସେବା ସୈନିକ
ଆମ ଲୋକସେବା କାମ ଦୈନିକ ।

• • •

## ରାସ୍ତା

ରାସ୍ତା ମୋ' ନାଁ ରାସ୍ତା
ଦୁନିଆ ସାରା ଜାଣନ୍ତି ମୋତେ
ସବୁରି ପାଖେ ମୁଁ ଶସ୍ତା ।
ବାଡ଼ ଦେଇ ମୋତେ ବନ୍ଦୀ କରିବା
ନାହିଁ ଏଠି କା'ର ଅଧିକାର,
ବନ୍ଦ କଲେ ତ କରିପାରେ ଏକା
ତମ ଦେଶର ଯେ ସରକାର ।
ଗାଡ଼ି ଶୁନ ଗାଡ଼ି ମଟର ବଗି
ଦୁଃଖେ ସୁଖେ ମୋ'ର ହୁଅନ୍ତି ସାଥି ।
ଯୁଗ ଯୁଗ ଧରି ପଡ଼ି ରହିଛି ମୁଁ
ପତାଇ ମୋହର ଛାତି,
ଆଲୁଅ ଅନ୍ଧାର ପାଣି ପବନ ତ
ସଭିଏଁ ମୋହର ସାଥି ।
ସହର ବଜାର କେତେ ନଗର
ସବୁରି ପାଖୁ ମୁଁ ପାଏ ଆଦର
ପାହାଡ଼କୁ ରାହିଁ ରହିଛି ଫୁଟାଇ
ନଈ ନାଳ ଉପରେ ଦେଇଛି ଫିଟାଇ
ଆଖି ଥାଉଁ ଥାଉଁ ମତେ ଯେ ହୁଡ଼ଇ
ପଡ଼ଇ ଯାଇ ସେ ଖାଲେ
ସତ ମୋର ମିତ ସତକୁ ହୁଡ଼େ ଯେ
ପଡ଼ଇ ବିପଦ ଜାଲେ ।
ବନସ୍ତ ଭିତରେ ବାଘ ଭାଲୁ ଦେଖି
ମାଡ଼େ ନାହିଁ ମୋତେ ଡର
ସଭିଙ୍କି ସମାନ ଆଖିରେ ଦେଖେ ମୁଁ
ନ ଭାବେ କାହାକୁ ପର ।

• • •

## ବୀର ଲକ୍ଷ୍ମଣ ନାୟକ

ଲକ୍ଷ୍ମଣ ଲଳରେ ଲକ୍ଷ୍ମଣ ଲଳ
ଫାଶିରେ ଚଢ଼ିଲୁ ଆମରି ପାଇଁ ।

ମୁକତି ଲଢ଼େଇ ଡକରା ପାଇ
ଆଗଭର ହୋଇ ଆସିଲୁ ଧାଇଁ ।

ଜାତିକୁ କରି ତୁ ଗଳାର ମାଳି
ଦେଶ ଲାଗି ଦେଲୁ ଜୀବନ ଢାଳି ।

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
କୋରାପୁଟେ ଥିଲୁ ଜନମ ପାଇ ।

କୋରାପୁଟ ଜିଲ୍ଲା ଜଙ୍ଗଲ ଭରା
ଦିନରେ ଯେଉଁଠି ନ ପଡ଼େ ଖରା ।

ଜଙ୍ଗଲେ ଥାଆନ୍ତି ଆମର ଭାଇ
ଛନ୍ଦ କପଟ ସେ ଜାଣନ୍ତି ନାହିଁ ।

ମଠ ମସଜିଦ୍ ଗୀରିଜା ଗଢ଼ି
ଦିଅନ୍ତି ନାହିଁ ସେ ଦିଅଁକୁ ପଢ଼ି ।

ଖାଆନ୍ତି ନାହିଁ ସେ ଭତରେ ଘିଅ
ଜୁହି ହେଲା ପରି ତାଙ୍କରି ଦେହ ।

କିଏ ସରକାର କିଏ ସେ ଘଜା
ଜାଣନ୍ତି ନାହିଁ ସେ କାହା ପରଜା ।

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଏ ଭଳି ଜାଗାରେ ଜନମ ପାଇ ।

କିଏ ଶିଖାଇଲା ଦେଶର କଥା
ଫାଶିକାଠେ ଦେଲୁ ପତାଇ ମଥା ।

ମାଆ କିଏ ତୋର ଖୋଇଲା ଧାର
(ତା) କ୍ଷୀର ଖାଇ ହେଲୁ ଜାତୀୟ ବୀର

ଜାହା ସାଥେ ମିଶି ଖେଳିଲୁ ଧୂଳି
ଭରିଗଲା ତୋତେ ବନ୍ଧୁକ ଗୁଳି ।

କେଉଁ ଚାହାଳିରେ ପାଠ ତୁ ପଢ଼ି
ଜାତି ଇତିହାସ ଗଳ୍ପରେ ଗଢ଼ି ।

ହାତ ହତିଆର ନ ଥିଲା ତୋର
କେଉଁ ଗୁରୁ ଆସି ଦେଲା ମନ୍ତର ।

ଭରତ ଜନନୀ ମୁକତି ପାଇଁ
ଜଳନ୍ତା ନିଆଁକୁ ପଡ଼ିଲୁ ଡେଇଁ ।

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ଯୁଦ୍ଧରେ ପଶିଲୁ ଆମରି ପାଇଁ ।

ଦେଶ ସାରା ଯେବେ ଲାଗିଲା ଗୋଳ
ସାରା ଓଡ଼ିଶା ତୁ କରିଲୁ ଠୁଳ ।

ଗରବେ ଟେକି ତୋ' ବିଜୟୀ ମଥା
ଆଗୁଆ ହୋଇରେ କହିଲୁ କଥା ।

କହିଦେଲୁ ଆଖି ନ କରି ନାଲି
ବିଦେଶୀ ଏ ତମେ ଯାଅରେ ଚାଲି ।

ଶୋଷି ଆମ ଲହୁ ନ କର ଶେଷ
ଆମେ ଚଳାଇବୁ ଆମରି ଦେଶ ।

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ତୋର କଥା ସିଏ ଶୁଣିଲେ ନାହିଁ ।

କୋରାପୁଟ ସାରା ପଡ଼ିଲା ଡାକ
ଥରି ଉଠିଲା ଏ ଓଡ଼ିଶା ଯାକ ।

କୋରାପୁଟ ବାସୀ ଉଠିଲେ ତାତି
ମେଳ ବାନ୍ଧି ଗଲେ ମେଳିଆ ଜାତି ।

ସରକାରୀ ଘର ଜଙ୍ଗଲ କୋଠି,
ଚଢ଼ାଉ କରିଲେ ଗୋଟିକୁ ଗୋଟି ।

ଚଉକିଦାରର ଜୀବନ ଗଲା
କିଏ ଜାଣେ ସିଏ କେମିତି ମଲା ?

ଲକ୍ଷ୍ମଣ ଭାଇରେ ଲକ୍ଷ୍ମଣ ଭାଇ
ବିନା ଦୋଷେ ତୋତେ କରିଲେ ଦାୟୀ

ରାଗରେ ତୋତେରେ ଆଣିଲେ ଧରି
ନିଜ ମନ ମୁର୍ଖି ବିଚାର କରି ।

ଶୁଣାଇଲେ ରାୟ ପାଇବୁ ଫାଶୀ
ଜିଅଲା ଜିତରେ ରହିଲୁ ଥାସି ।

ରହିଲ ତୋ' ପାଖେ କଡ଼ା ପହର
କାଳେ କିଛି କଥା ଘଟିବ ପର
ମାଗିବା ପାଇଁକି ଜୀବନ ଭିକ୍ଷା
କିଏ କେତେ ଆସି ଦେଲେରେ ଶିକ୍ଷା ।

ଜବାବ ଦେଲୁ ତୁ ନବାବ ପରି
ମରିବା ପାଇଁ କି ନ ଗଲୁ ଡରି ।
କହିଲୁ ପୋଥି ବା ପୁରାଣେ କାହିଁ
ମିଥ୍ୟାର ଜୟ ତ କେଉଁଠି ନାହିଁ ।

ସତରେ ଦୁନିଆ ଚାଲିଛି ସଦା
ମରିବାକୁ ମତେ ନ ଦିଅ ବାଧା ।
ବିନା ଦୋଷେ ଦୋଷ ମାନିବ କିଆଁ
ମରଣ ମୁହେଁ ମୁଁ ଜାଳିବି ନିଆଁ ।

ଲକ୍ଷ୍ମଣ ଗଲରେ ଲକ୍ଷ୍ମଣ ଗଲ
ତୋ' ଏଭଳି ଜବାବ ପାଇ ।
ଉଝଳା ଚାଲିଲା ମରଣ ବେଦୀ
ସେ ବେଦୀ ଆମର ମରଣ ଭେଦି ।

ବାରବାର ବେଦୀ ପରଖ ହେଲା
ଘନେଇ ଆସିଲା ଫାଶିର ବେଳା ।
ଲକ୍ଷ୍ମଣ ଗଲରେ ଲକ୍ଷ୍ମଣ ଗଲ
ସେ ଦିନ କଥା ମୁଁ ଭୁଲିବି ନାହିଁ ।

ସକାଳ ପହରୁ ପଡ଼ିଲା ହୁରି
ଛାଡ଼ିଯିବ ତୁମେ ମରତ ପୁରୀ
ଚାହୁଁ ଚାହୁଁ ଘଡି ଯିବ ତ ଚାଲି
ସବୁରି ମନ ତ ହୋଇଲା ଭାରି ।

କେତେ ସାଥି ଦୁଃଖେ କରିଲେ ଦେଖା
ତମ ମନ ଦୁଃଖ ନଥିଲା ଏକା ।
ଗଲଦିନ କହିଗଲ ତ ଯାହା
ଇତିହାସେ ଲେଖା ରହିବ ତାହା

କହିଲ ଆଉ କି ଅଛିରେ ଡେରି
ବିଦେଶୀ ଏ ଯିବେ ମୁଲକ ଫେରି ।
ତୁମେ ଚଳାଇବ ତୁମର ଦେଶ
ମୋର କାମ ଯାହା କଲି ମୁଁ ଶେଷ ।

ଲକ୍ଷ୍ମଣ ଗଲରେ ଲକ୍ଷ୍ମଣ ଗଲ
ସୂର୍ଯ୍ୟ ଲୁଚିଲେ ପଶ୍ଚିମେ ଯାଇ ।
କାଳ ରାତି ଚହୁଁ ଆସିଲା ଘୋଟି
ମୁଦା ହେଲୁ ଆମେ ଗୋଟିକି ଗୋଟି ।

ଅଖିଆ ଅପିଆ ରାତିରେ ଚାହିଁ
ଲୁହା ବାଡ଼ ପାଖେ ଥାଉ କାନେଇ
ଘଣ୍ଟାରେ ଯେମିତି ବାଜିଲା ଚାରି
ସକାଳି ଚାଲିଲ ତମ ସୁଆରୀ ।

ଜୟନାଦ ଦେଇ ବାପୁଜୀ ନାମେ
ଛାତି ଫଟା ହୁରି ଛାଡ଼ିଲୁ ଆମେ ।
ରାମ ନାମ ଡାକ ମୁହଁରୁ ତୋ'ର
ଭସି ଆସି ଛାତି କଲା ପଥର ।

ଆଣିଲେ ସିପାହୀ ଡୋଚେରେ ଧରି
ଜିଅନ୍ତା ପାଚେରୀ ଉଠିଲା ଥରି ।
ଏଣିକି ଘଟଣା ଘଟିଲା ଯାହା
ଲେଖି ନ ପାରିବି ଆଉ ମୁଁ ତାହା ।

ଲକ୍ଷ୍ମଣ ଗଲରେ ଲକ୍ଷ୍ମଣ ଗଲ
ଜୀବନ ବତୀ ତୋ' ଦେଲେ ଲିଭାଇ ।
ଇଆଡ଼େ ଆମେରେ କାନ୍ଦିଲୁ ବସି
ସିଆଡ଼େ ବାଜିଆ ଉଠିଲା ହସି ।

ନନ୍ଦନ ବନରୁ କୁସୁମ ତୋଳି
ଗୁନ୍ଥି ରଖିଥିଲେ ଚନ୍ଦନ ବୋଳି ।
ଗଳାରେ ମାଳଟି ପିନ୍ଧାଇ ଦେଇ
ପାଛୋଟି ନେଲେ ସେ ଉଷତ ହୋଇ ।

ସାଥି ଭଗବତୀ ସାଥିରେ ନେଇ
କହିଲେ ଚିହ୍ନତ କିଏ ସେ ଏହି ?
ଚିହ୍ନି ପାରିଲେ ସେ ଦେଖିଲା କ୍ଷଣି
କୋଳ କରି ନେଲେ 'ଭକ୍ତକମଣି'
ଋଷି ମାୟାଧର ଆସିଲେ ଧାଇଁ
ବିରଜା ଭୂଇଁରୁ ଥିଲେ ସେ ଯାଇଁ ।
ଭରମ୍ ମାଟିରେ ରକତ ଢାଳି
ମରଣ ପଥେ ସେ ଗଲେରେ ଚାଲି ।
ସଚ୍ଚି ଏ ଆସିଲେ, ହୋଇଲେ ଠୁଳ
ଖେଳିଲା ସରଗେ ଆନନ୍ଦ ରୋଳ ।
କବି ବାଞ୍ଛାନିଧି ଶାଢନ୍ଦୀ ମିତ
ଲେଖି ରଖିଥିଲେ ସ୍ୱାଗତ ଗୀତ ।
ବାବୁ ନିରଞ୍ଜନ ସେ ଗୀତ ଗାଇ
ସବୁରି ଅନ୍ତର ଦେଲେ ଥଗଇ ।
ଲକ୍ଷ୍ମଣ ଭଲରେ ଲକ୍ଷ୍ମଣ ଭଲ
ଅଦେଖା ରଇଲେ ଚହିଲୁ ଯାଇ ।
ଲକ୍ଷ୍ମଣ ଭଲରେ ଲକ୍ଷ୍ମଣ ଭଲ
କହିବୁ କଥା ଏ ମତେ ଫିଟାଇ ।
କେତେ ଜନ୍ମ ଯାଏ ଝଟିଲେ ଏଠି
ସେଠି ଯାଇ୍ ତୋତେ ପାରିବି ଭେଟି ।

● ● ●

## ଶୋଭାଯାତ୍ରା

ପାହିଲାଣି ଗତି ଉଠ ସାଙ୍ଗ ସାଥି
ଆଜି ବାପୁଜୀଙ୍କ ଜନମ ତିଥି
ତୁଟିଛି ଅନ୍ଧାର ଫୁଟିଛି ମନ୍ଦାର
ଛୁଟୁଛି ସରଗୁଁ ଅମର ଗୀତି ।
ଗଗନ ପବନ ଗିରି ନଦୀବନ
ଖେଳଇ ସବୁଠି ତାଙ୍କରି ପ୍ରୀତି
ତାଙ୍କରି ଗୌରବ ତାଙ୍କରି ସୌରଭ
ଖୋଜେ ଭୂମଣ୍ଡଳ ତାଙ୍କରି ନୀତି ।
ଧରି ତାଙ୍କ ତେଜ ଉଇଁଲାଣି ସୂର୍ଯ୍ୟ
ମାନବ ସମାଜେ କରିବ ଗତି
ଶୋଷକ ଶୋଷିତ ଶାସକ ଶାସିତ
ବଦଳି ଯିବ ତ ସବୁରି ମତି ।

● ● ●

## ଶିଶୁ ଦିବସ

ଆଜି ପରା 'ଶିଶୁ ଦିବସ' ଆମ ଇସ୍କୁଲ ଛୁଟି
ସବୁ ପିଲମାନେ ସେଦିନ ଯାଇ ଗୁରୁଙ୍କୁ ଭେଟି ।
ଗୁରୁଙ୍କ ଆଦେଶ ମାନିତା କରୁ ଗୋଟିଏ ସଭା
ସଭରେ ଗୁରୁଜୀ ଆମର ଆସି ହୋଇଣ ଉଭା ।
'ଶିଶୁ ଦିବସ'କୁ କାହିଁକି ଆମେ ପାଳନ କରୁଁ,
ଜନମ ପରା ସେ ଦିନରେ ଆମ ନେତା ନେହେରୁ ।
ସେ ପରା ଶିଶୁଙ୍କ ପାଆନ୍ତି ଭଲ ସେଇଥିପାଇଁ
ଆଜି ପରା ତାଙ୍କ ଜନମ ଦିନ ପାଳୁତ ଥାଇ ।
ଫ୍ୟାନସି ଡ୍ରେସ୍ ପିନ୍ଧିଣ ସବୁ ପିଲାଏ ତୁମେ
ନାଚ ଗୀତ ଗାଇ କୁଦିବ ଛୁଟି ଦେଉଛୁ ଆମେ ।
ସଭା ଶେଷେ ମିଠା ଖାଇବ ହୋଇ ହରଷ ମନ
ଶେଷ କଥା ମୋର ତୁମକୁ ମନ ହୋଇଣ ଶୁଣ ।
ତାଙ୍କ ଦୀର୍ଘଜୀବୀ କାମନା କର ବାଳକେ ମିଶି
ଦେଶର ସୁଚିନ୍ତା କରନ୍ତୁ ଶାନ୍ତି ସୁଖରେ ବସି ।

● ● ●

## ଆମ ମହାପୁରୁଷ

ଏହି ମୋର ଜନମ ଭୂଇଁ
ଏଇତ ମୋର ଦେଶ
ଏହିଠି ମୁହିଁ ଆରମ୍ଭ ହେଲି
ଏଇଠି ହେବି ଶେଷ ।

ରଜାଘରର ପୁଅ ଯେମିତି
ଧରିଲା ଯୋଗୀ ବେଶ
ଏହିତ ମୋର ଜନମ ଭୂଇଁ
ଏଇତ ମୋର ଦେଶ ।

ରାତି ଅଧରେ ନଅର ଛାଡ଼ି
ଗହନ ବନେ ପଶି
ଦୁନିଆ ଦୁଃଖ ହରିବାପାଇଁ
ରହିଲା ଯୋଗେ ବସି ।
( ବୁଦ୍ଧ )

ଯେଉଁ ଦେଶରେ ଭକତ ଜଣେ
ଖରାପ ମାଡ଼ଖାଇ
ହସି ହସିକା ଗାଇଲା ଗୀତ
ସଭିଏଁ ମୋର ଭାଇ ।

ମାରିଲା ଲୋକ ଧରିଲା ଗୋଡ଼
ବଦଳି ଗଲା ମନ
ଗଢ଼ିଛି ମୋତେ ସେହି ଦେଶର
ସୁନ୍ଦର ତରା ଜହ୍ନ ।
( ଚୈତନ୍ୟ )

ବାଳୁତ ବାଳୁ ନାନକ ଯହିଁ
ଖେଳାଇ ନିଜ ମଥା
ବାଳ ବାଳକୁ ଦେଖାଇଗଲା
ଆମକୁ ନୂଆ ପନ୍ଥା ।

ହିନ୍ଦୁ ସାଥିରେ ମୁସଲମାନ
ମିଳେଇ କଲା ଶିଷ୍ୟ
ଜୟ ଗୁରୁଜୀ ଶବଦେ ଗଲା
ଚମକି ମୋର ଦେଶ ।
( ନାନକ )

ଯେଉଁ ଦେଶର ଯୁବକ ଜଣେ
ଖୋଜିଲା ଜ୍ଞାନୀ ଗୁରୁ
ଖୋଜି ଖୋଜିକା ପାଗଳ ହେଲା
ବର୍ଷିଲା ମରୁ ମରୁ
ଜ୍ଞାନ ପାଗଳ ପୂଜାରୀ ଜଣେ
ଦେଲା ତା ଆଖି ଖୋଲି
ସାରା ଜଗତ ଜାଣିଲେ ତାଙ୍କୁ
ବିବେକାନନ୍ଦ ବୋଲି ।
( ବିବେକାନନ୍ଦ )

ନଳିନୀକାନ୍ତ ନବଶିକ୍ଷିତ
ସଂସାରୀ ଲୋକ ଜଣେ
କଷଣ କେତେ ଭୋଗିଲା ବୁଲି
ପାହାଡ଼ ବିଲ ବଣେ ।
ଜାଯାର ଲାଗି ବାୟା ତ ହେଲା
ମାୟା ଗଲା ଉଡ଼ି
ପ୍ରୀତି ଭକତି ଗୋଟିଏ ବାଟ
ଦେଖାଇ ଦେଲା କାଢ଼ି ।
( ନିଗମାନନ୍ଦ )

ଅରବିନ୍ଦଙ୍କ ପଦାରବିନ୍ଦ
ସୁଗନ୍ଧ ଦୂରୁ ପାଇ
ଭ୍ରମର ପରି ଆସିଲେ ଆମ
ଶ୍ରୀମା ଗୀତ ଗାଇ ।
ନୁହିଁ ହତାଶ ହୁଅ ଉଲ୍ଲାସ
ଆସୁଛି ନବ ଜ୍ୟୋତି
ମନୁଷ୍ୟ ଯେତେ ଦେବତା ହେବେ
ବଦଳି ଯିବ ପୃଥ୍ୱୀ ।
( ଅରବିନ୍ଦ )

ଯେଉଁ ଦେଶରେ ନୀଳ ସାଗର
ପାହାଡ଼ ବଣ ଭୂଇଁ
ମନର କଥା କାନରେ କହି
ତାହାକୁ କରେ ବାଇ ।

ପର୍ଦ୍ଦିଲ ଯେତେ ପଡ଼ିଲ ସେତେ
ଆଙ୍କିଲ କେତେ ଛବି
ଦୁନିଆ ସାରା ବାଜିଲ ନାଆଁ
ସେ ବିଶ୍ୱ କବି ରବି ।
( ରବୀନ୍ଦ୍ରନାଥ )

ଦୁଃଖରେ ପଡ଼ି ରୋଗରେ ଗଡ଼ି
ଦିଖଣ୍ଡି କାଠି ଧରି
ଯେଉଁ ଗରିବ ଯୁବକ ଜଣେ
ଗତିରେ ଲକ୍ଷ୍ୟ କରି ।
ଗ୍ରହ ତାରଙ୍କ ଗତି ମାପିଲ
ଲେଖିଲ ଯେଉଁ ବହି
ଚନ୍ଦ୍ର ସୂର୍ଯ୍ୟ ରହିବା ଯାଏ
ପଠାଣି ଥିବ ରହି ।
(ପଠାଣିସାମନ୍ତ)

ଫଉଜ ଯେବେ ଡାକିଲେ ଗର୍ଜେ
ଆରେ ଡଙ୍ଗା ନେଇଆ
ପ୍ରଜାମଣ୍ଡଳ ହୁକୁମ ନାହିଁ
ଯାଅ ତମେ ଫେରି ଯାଆ ।
ଜବାବ ଶୁଣି ବାଜିଲ ଗୁଳି
ବାଜିଆ ଗଲ ପଡ଼ି
ସ୍ୱାଧୀନତାର ତାଜମହଲ
ଏ ଦେଶେ ଗଲ ଗଢ଼ି ।
(ବାଜି ରାଉତ)

ଯେଉଁ ଦେଶର ଶିଳିପି ପିଲ
ବଢ଼ାଇ ଦେଲ ବେକ
ଯୁଗ ଯୁଗକୁ ରଖିବା ପାଇଁ
ଆପଣା ଜାତି ଟେକ ।
ଦଧି ନଉତି ବଢ଼ାଇ ଦେଇ
କୋଣାରକର ଚୂଳେ
ହସି ହସିକା ଡେଇଁ ପଡ଼ିଲ
ଅକାତ ନୀଳ ଜଳେ ।
(ଧର୍ମପଦ)

ଯେଉଁ ମାଟିରେ ଲକ୍ଷ୍ମଣ ବୀର
ଗରିବ ଘର ପୁଅ
ଅଥୟ ହେଲ ଆଖିରେ ଦେଖି
ଦେଶର ଲହୁ ଲୁହ ।
ଭାରତ ଛାଡ଼ ଡାକ ଛାଡ଼ିଲ
ବିଦେଶୀ ଗଲେ ଡରି
ଫାଶୀ କାଠରେ ପଡ଼ିଲ ବଳି
ଦେବତା ନେଲେ ବରି ।
(ଲକ୍ଷ୍ମଣ ନାୟକ)

ଯେଉଁ ଦେଶର କୁଳର ବୋହୂ
କୋଳରେ ପିଲ ନେଇ
ଜନମ ଭୂଇଁ ଉଦ୍ଧାର ଲାଗି
ପଡ଼ିଲେ ଯୁଦ୍ଧେ ଡେଇଁ ।
ତୋପ ମୁହଁରେ ମରିବାପାଇଁ
ହୋଇଲେ ଆଗଭର
ସେହି ଦେଶରେ ଜନମ ମୋର
ସେହି ମାଟିରେ ଘର ।
(ସତ୍ୟାଗ୍ରହୀ ମହିଳାବୃନ୍ଦ)

ଯେଉଁ ଦେଶର ବାପୁଜୀ ମୋର
ଜନମି ଏଠି ବଢ଼ି
ଅହିଂସା ସାଥେ ବସିଲ ମିତ
ଜୀବନ ସାରା ଲଢ଼ି ।
ଅଚଳ କଲ ଶାସନ କଳ
ଶାସକେ ଗଲେ ଡରି
ବହୁ ଦିନର ହଜିଲ ଛବି
ପାଇଲୁ ଆମେ ଫେରି ।
(ମହାତ୍ମା ଗାନ୍ଧୀ)

ଯେଉଁ ଦେଶର ଲାଲ ସୁଭାଷ
ବହୁତ ପାଠ ପଢ଼ି
କେଉଁ କରଜା ଫିଟାଇ ଦେଇ
ଗର୍ଜିଲ ହାତ କଡ଼ି ।
ଉଡ଼ିଯାଇ ସେ ଦୂର ବିଦେଶେ
ଗଢ଼ିଲ ସେନାଦଳ
'ଦିଲ୍ଲୀ ଚଲୋ' ଶବଦ ଶୁଣି
ଡରିଲେ ଗୋରାକୁଳ ।
( ସୁଭାଷ ଚନ୍ଦ୍ର ବୋଷ )

ଭାରତ ପ୍ରାଣ ଜାତି ନିଶାଣ
ଜଗତ ପୂଜ୍ୟ ଶାସ୍ତ୍ରୀ
ଭାଙ୍ଗିଲ ମନ ଯୋଡ଼ିବା ପାଇଁ
ହେଲ ଋଷିଆ ଯାତ୍ରୀ
ଆସିଲ ଫେରି ତାହାର ଶବ
ଫେରିଲ ନାହିଁ ଶିବ
ଭୁଲିବେ ନାହିଁ କେହି ତାହାଙ୍କୁ
ଯାବତ୍ ଦେଶ ଥିବ ।
(ଲାଲ୍‌ବାହାଦୂର)

ଆମରି ନେତା ଜବାହରଲାଲ
ଯୋଜନା ମାନ କରି
ଲୋକଙ୍କ ହାତେ ଅରପି ଦେଇ
ଦେଖିଲ ପୃଥ୍ୱୀ ଘୂରି ।
ବୁଲି ବୁଲିକା ସମଝିଗଲ
ପ୍ରଳୟ ହେବ ସୃଷ୍ଟି
ତା ପଞ୍ଚଶୀଳ ନୀତିକି ଯେବେ
ନ ଦେବେ କେହି ଦୃଷ୍ଟି ।
(ଜବାହରଲାଲ୍)

ଗରିବ ବନ୍ଧୁ ଦାସ ଆପଣେ
ଜାତିର ମଥା ମଣି
କୋଟିଙ୍କ ଲାଗି ଗୋଟିଏ ଲୋକ
ଆଲୁଅ ଦେଲ ଆଣି ।
କର୍ତ୍ତ ମରୁଡ଼ି ସାଥିରେ ଲଢ଼ି
ଲଗାଇ ଛାତି ହାଡ଼
ପୂରଣ କଲ ସ୍ୱାଧୀନତାର
ପଥରେ ଯେତେ ଗାଡ଼ ।
(ଗୋପବନ୍ଧୁ ଦାସ)

ବେପାର କଲେ ବିଦେଶ ଯିବେ
ଆପଣା ଦେଶେ ଫେରି
କଣ୍ଟାରେ କଣ୍ଟା କାଢ଼ିବ ମଧୁ
ଲଗିଲ ଜିଦ୍ ଧରି ।
ହାତ ତିଆରି ଜିନିଷ କେତେ
ଗଢ଼ାଇ ଆମ ଦେଶେ
ଯାନ ଆସନ ସବୁ ସାରିଲ
ଭିକାରି ହେଲେ ଶେଷେ ।
(ମଧୁସୂଦନ)

ବଳୀ ଦୁଆରେ ବାମନ ପରି
ବିନୋବା ଯହିଁ ବୁଲି
ଦଳିବ ବୋଲି କଳି ଯୁଗକୁ
ପତାଏ ଭିକ୍ଷା ଝୁଲି ।
ନିଃସ୍ୱ ଦେଶକୁ ଡାକର ଦିଏ
ଉଡ଼ାଅ ପ୍ରୀତି ବାନା
ବିଶ୍ୱଗ୍ରାସ ଗଢ଼ିବ ଯେବେ
ସଜାଅ ଶାନ୍ତିସେନା ।
(ବିନୋବା)

ଭାଇପଡ଼ାର ସାହାସୀ ଋଷୀ
ଆସିଲ ଯେବେ ମାଡ଼ି
ଥରିଲ ହାତ ହାକିମଙ୍କର
କଲମ ଗଲ ଛାଡ଼ି ।

ହୁକୁମ କଲେ ଫଉଜ ଗଲେ
ବନ୍ଧୁକ ମୁନେ ଚାଢ଼ି
ଯୁବକ ସେନା କଲିଜା ଚିରି
ରଗରେ ଦେଲେ କାଢ଼ି ।
(କୋଇପଡ଼ା ଶହୀଦ୍)

ଇଣ୍ଡିମ୍ କଥା ମରମ ଜାଣେ
ଲେଖିଲ ବେଳେ କିଛି
କେତେ ସଧବା ବିଧବା ହେଲେ
ସିନ୍ଦୂର ମୁଣ୍ଡୁ ପୋଛି ।
ସଭକୁ ଆସି ନିରୀହ ଲୋକେ
ଖାଇଲେ ସେଠି ଗୁଳି
ଅମର ହୋଇ ରହିଲେ ରହି
ଶାସନ ଗଲ ଟଳି ।
(ଇରମ୍ ଶହୀଦ୍)

ଦୁଧ ଡଙ୍କାକେ କଦଳୀଟାଏ
ହୋଇ ସେ କୋଠାଘରେ
ଜନମି ଥିଲ ଏହି ଭରତେ
କଟକ ଛାତି ପରେ ।
ଜୀବ ଭିତରେ ଶିବ ଦେଖି ସେ
ଚାକିରି ଦେଲ ଛାଡ଼ି
ସ୍ୱାଧୀନ କଲ ଦେଶକୁ ତାର
ସପରିବାର ଲଢ଼ି ।
(ଗୋପବନ୍ଧୁ ଚୌଧୁରୀ)

ଆହୁରି ଜଣେ ବୁଲୁଛି ଆଜି
ଗଲଣି ତାର ଆଖି
କହି ଆସୁଛି ଜୀବନ ସାର
ସାକ୍ଷୀ ଗୋପାଳ ସାକ୍ଷୀ ।
କରିବା ସେବା ମଣିଷ ହେବା
ମଣିଷ ଆମ ସାଥୀ

ମଣିଷ ପାଇଁ ଜୀବନ ଦେଲେ
ବଞ୍ଚିବ ଏହି ଜାତି ।
(ଆଂଗ୍ଲର୍ଯ୍ୟ ହରିହର)

ପଦ୍ମ ପତରେ ପାଣି ସମାନ
ସଂସାରୀ ଧର୍ମେ ରହି
ଅନୁକୂଳତା ପ୍ରାଣର କଥା
ସଭିଙ୍କି ଯାଏ କହି ।
ବିଶ୍ୱାସ କର ନିଃଶ୍ୱାସ ମାର
ଗୁରୁଙ୍କୁ କରି ଭକ୍ତି
ଯେଉଁଠି ଥାଅ ଯେପରି ଥାଅ
ବଢ଼ିବ ତମ ଶକ୍ତି ।
(ଅନୁକୂଳ ଚନ୍ଦ୍ର ଠାକୁର)

ଯେଉଁ ଦେଶରେ ଜନମି ମୀରା
କାମିନୀକୁଳ ହୀରା
ଭୋଗ ବାସନାକୁ ବରଜି ଦେଇ
କାମନା କଲ ପୂରା ।
ପିତୃଜା ସାଥେ ପୀରତି କଲ
ଭଜନ କରି ନିତି
ପରଣ ପତି ବିଜେ ସବୁଠି
ଦେଖାଇ ଗଲ ସତୀ ।
(ମୀରାବାଈ)

ରକତେ ନଈ ଛୁଟାଏ ଯୁଦ୍ଧେ
ଭଉଁକି ଭଇ ମାରି
ଆଖିରେ ଦେଖି ଅଶୋକ ପ୍ରାଣ
ଶୋକରେ ହେଲ ଭାରି ।
ରାଜ ପୋଷାକ ଉତାରି ଦେଇ
ଧରିଲ ଭିକ୍ଷୁ ବେଶ
ଅହିଂସା ନୀତି ପ୍ରଚାର କରି
ଆଇଷ କଲ ଶେଷ ।

ତାହାରି ଚକ୍ର ପତାକା ଆଜି
ଉଡ଼ୁଛି ଘରେ ଘରେ
ମନ ତ ମୋର ଗୁମୁରି ଉଠେ
ସ୍ମରି ତା'ଙ୍କୁ ଥରେ ।
(ଅଶୋକ)

କବୀର ଯହିଁ ଜନମ ହୋଇ
ମୁସଲମାନ ଘରେ
କୋରାନ୍ ସଙ୍ଗେ ପୁରାଣ ପଢ଼ି
ବଦଳିଗଲ ପରେ ।
ଧରମ ମରମ ନୀତି ଶିଖି
ରଚିଲ ଯେଉଁ ଗୀତ
ପଢ଼ିଲେ ତାକୁ ତରଳିଯିବ
ପାଷାଣ ଲେକ ଚିତ ।
(କବୀର)

ତୁଳସୀ ବାସେ ଦୁଇ ପତ୍ରକୁ
ତୁଳସୀ ଦାସ ଯହିଁ
ରାମ ନାମକୁ ଜପିଲ ନିତି
ରାମଙ୍କ ଦେଖା ପାଇଁ ।
ସାଧନା ତାର ସଫଳ ହେଲ
ମନାସି ଥିଲ ଯାହା
ରଚନା କଲ ରାମଚରିତ
ଅମର ଲେଖା ତାହା ।
(ତୁଳସୀ ଦାସ)

ଗର୍ଜି ଇଂରଜୀ ଡାକେ ଗରଜି
ସ୍ୱରାଜ ଆମର ଦାବି
ନେଲେ ସେପାରି କଳାପାଣିକି
ନରାଇ ଚିତେ ଦବି ।
ଘାଣି ମାଡ଼ରେ ଜୀବନ ଦେଇ
ପଡ଼ିଲ ଶେଷେ ଟଳି

ଶାନ୍ତି ସମରେ ଉଡ଼ୁଥ ବୀର
ଜେତେ ବାପତା ଜାଣି ।
(ଲାଲ ଲଜପତ୍ ରାଓ)

ଝାନ୍ସୀ ରାଣୀ କାହାଣୀ ଶୁଣି
ଅନ୍ତର ହୁଏ ଖାଣି
ଘୋଡ଼ାରେ ଚଢ଼ି ଇଂରେଜଙ୍କ
ବରଜି ସେନାବାହିଣି ।
ଲଢ଼ି ଲଢ଼ି ସେ ପଡ଼ିଲ ତଳେ
ଜୀବନ ଗଲ ଉଡ଼ି
ଭାରତ ଇତିହାସେ ସୁରୁଜ ଗଲେ
ପଶ୍ଚିମ ଦିଗେ ବୁଡ଼ି ।
(ରାଣୀ ଲକ୍ଷ୍ମୀବାଇ)

ସୁରେନ୍ଦ୍ର ସାଏ କଥା ପଢ଼ିଲେ
ରକତ ଉଠେ ଜାଗି
ଜୀବନ ମୂର୍ଚ୍ଛା ଇଂରେଜଙ୍କ
ସଙ୍ଗରେ ଧରି ସାଥି ।
ଜାଗ ଜଣଣ ବରଣ କଲ
ରକ୍ଷିବା ଲାଗି ଦେଶ
ବିଦେଶୀ ହାତେ ନଦେଇ ପ୍ରାଣ
ନିଜକୁ କଲ ଶେଷ ।
(ସୁରେନ୍ଦ୍ର ସାଏ)

ରୋଗୀ ସେବାକୁ ଯୋଗୀ ହୋଇ ସେ
ଖୋଜିଲ ମୁକ୍ତି ପଥ
ସବୁରି ମତ ସାଥେ ମିଳାଇ
ବାଢ଼ିଲ ନିଜ ମତ ।
ସେବା ଯୋଗକୁ ଶିବାନନ୍ଦର
ଉଠିଲ ଜ୍ଞାନ ଭକ୍ତି
'ଦିବ୍ୟ ଜୀବନ ସଙ୍ଘ' ଗଢ଼ିଲ
ବରିଲ ସାରା ପୃଥ୍ୱୀ ।
(ଶିବାନନ୍ଦ)

ମାହେନ୍ଦ୍ର ଯୋଗେ ଜନମି ଥିଲ
ଆମରି ଦେଶ ରମା
ଧନ ଜୀବନ ସବୁ ସଁପିଲ
ଗଢ଼ନା ନାହିଁ ଜମା ।
ଗୋଟିଏ କଥା କହି ବୁଲୁଛି
ଏ ମାଟି ଆମ ମାଆ
ପାଇବା ଯାହା ତାହାରି ପାଖୁ
ଖାଇବା ବାଣ୍ଟି ତାହା ।
(ରମାଦେବୀ)

ବିଦ୍ୟାଭୂଷଣ ଆର୍ତ୍ତବଲ୍ଲଭ
ସରଳମନା ଗୁରୁ
ଚିହ୍ନିଲେ ଲୋକେ ନୁଆଁନ୍ତି ମଥା
ଦେଖିଲେ ତାଙ୍କ ଦୂରୁ ।
ବହୁକାଳରୁ ତାଳପତ୍ରର
ଅମୂଲ ଲେଖାମାନ
ପ୍ରକାଶ କରି ଦେଇଗଲ
ସେ ଜାତିକି ବଡ଼ ଦାନ ।
(ଆର୍ତ୍ତବଲ୍ଲଭ)

ଭାରତରତ୍ନ ଚନ୍ଦ୍ରଶେଖର
ଅଭିଭ ତାର ଜ୍ୟୋତି
ତାହାରି ଲାଗି ଜଗତ ସାରା
ବଢ଼ିଲା ଆମ ଖ୍ୟାତି ।
ଗବେଷଣାରେ ବୁଡ଼ି ରହି ସେ
କାଢ଼ିଲ ନୂଆ ବାଟ
ଘଟିଲା ତା'ର ପଡ଼ିଲା ଜଣା
ଚିହ୍ନିଲେ ସବୁ ଘାଟ ।
(ଚନ୍ଦ୍ରଶେଖର)

ଗଛର ଦେହେ ଜୀବନ ଅଛି
ଜାଣନ୍ତି ହେଲେ ଛୁଇଁ
ମଣିଷ ପରି ଶୋଇ ସେମାନେ
ଉଠନ୍ତି ପୁଣି ଚେଇଁ ।
ଜଗତ ଜ୍ୟୋତି ଜଗଦୀଶର
ଅକାଟ୍ୟ ଏହି ତତ୍ତ୍ୱ
ପ୍ରମାଣ ଦେଖି ନୋଇଁଲେ ମଥା
ମନୀଷୀ ଶତ ଶତ ।
(ଜଗଦୀଶଚନ୍ଦ୍ର)

ଯୁବକ ଯୋଗୀ ଭାଷଣ ଶୁଣି
ତରଳିଗଲ ମନ
ସଂସାର ଭୋଗ ବାସନା ତେଜି
ଭୁଲିଲ ଜନ୍ମସ୍ଥାନ ।
ଏହି ମାଟିରେ ଦେହ ଢାଳିଲ
ଭଗିନୀ ନିବେଦିତା
ସେବିକା ହୋଇ କାଟିଲ ଦିନ
ହରିଲା ମନ ବ୍ୟଥା ।
(ନିବେଦିତା)

ସ୍ୱାଧୀନଚେତା ରାଜଗୋପାଳ
ବିଜୟୀ ବୀର ଜଣେ
ମହାମାନବ ତାହାଣ ହାତ
ଭାରତ ମୁକ୍ତି ରଣେ ।
ଚିର ଉଜ୍ଜ୍ୱଳ ପ୍ରତିଭା ତାର
ଅଲିଭା ତାର ଯଶ
ଭାବୁଛି ସଦା ବିଶ୍ୱ ବାକ୍ୟରେ
ନହେଉ ଧରା ଧ୍ୱଂସ ।
(ରାଜଗୋପାଳାଚାରୀ)

ପଞ୍ଚଭାବେ ଉଡ଼ିଲା ମନ
ଦେଖିଲା ଟାଟା ବୁଲି
ଆମରି ଧନେ ଧନୀ ବିଦେଶୀ,
କେବଳ ଆମେ କୁଲି

ଜାତି ଜାତିକା କଳ ବସାଇ
ଖୋଲାଇ କେତେ ଖଣି
ଆମ ମାଟିରୁ ଫଳୁଛି ସୁନା
ଦେଖାଇଦେଲା ଆଣି
(ଜାମସେଦ୍‌ଜୀ ଟାଟା)

ଦେବଭାଷାରେ ମହାପଣ୍ଡିତ
ଜାତିର କୁଳପତି
ସବୁ ଦର୍ଶନ ଅଧିକାରୀ ସେ
ଜଗତ ସାରା ଖ୍ୟାତି ।

ବିଶ୍ୱରବନ୍ତ ରାଧାକୃଷ୍ଣନ୍
ନିଜିତି ତୁଳା ନିତି
ଗୁରୁଦିବସ ପାଳିତ ହୁଏ
ତାହାରି ଜନ୍ମତିଥି ।
(ରାଧାକୃଷ୍ଣନ୍)

ଇଚ୍ଛିବା ମନ ଗଢ଼ିବା ପାଇଁ
ଭବିଲା ଲୋଡ଼ା ଶିକ୍ଷା
ଶିକ୍ଷାଶେଷରେ ରାଜନୀତିରେ
ଗୋଖଲେ ନେଲେ ଦୀକ୍ଷା ।

ସରଳଭାବେ କାଟିଲା ଦିନ
ନିଜର ସ୍ୱାର୍ଥ ଛାଡ଼ି
ଭାରତ ସେବା ସମାଜ ଥାପି
ଜୀବନ ଦେଲା ବାଢ଼ି ।
(ଗୋଖଲେ)

ବିଦ୍ରୋହୀ ବୀର ସବର୍‌କର୍
ଅଦ୍ଭୁତ ତା'ର କାର୍ଯ୍ୟ
ଅସୀମ ତା'ର ମନର ବଳ
ଅମାପ ତା'ର ଧୈର୍ଯ୍ୟ ।

ଦେଶ ପୀରତି ଅବତାର ସେ
ଯାଇଛି କରି ଯାହା
କଲମ ମୁନେ ଫୁଟାଇ ସବୁ
ମୋହିବ ଅର୍କି ତାହା ।
(ସବର୍‌କର୍)

ଆର୍ଯ୍ୟ ଜାତିର ବୈଦିକ ନୀତି
ହେଉଛି ପଥ ଲକ୍ଷ୍ୟ
ଦୃଷ୍ଟିରେ ପଡ଼ି ଦୟାନନ୍ଦର
ଲଭିଲା ପ୍ରାଣେ କଷ୍ଟ ।

ବିଦେଶୀ ଧର୍ମ କବଳୁ ଦେଶ
କରିବା ପାଇଁ ରକ୍ଷା
ଆର୍ଯ୍ୟ ସମାଜ ସ୍ଥାପନ କଲା
ଧରି ସନ୍ନ୍ୟାସ ଦୀକ୍ଷା ।
(ଦୟାନନ୍ଦ)

କୁଡ଼ିଆ ଘରେ ଜନମ ତା'ର
ବଢ଼ିଆ ମନଭାବ
ଦୁଃଖ ସୁଖର ଝଡ଼ଝଞ୍ଜାରେ
ବାହିଲା ନିଜ ନାବ ।

ବୀଣାପାଣିକି ବରଣକରି
ପୂରଣ କଲା ଆଶା
ଭୁଲିବ ନାହିଁ ଗଙ୍ଗାଧରକୁ
ରହିବା ଯାଏ ଭାଷା ।
(ଗଙ୍ଗାଧର ମେହେର)

ଶଙ୍କର ଥିଲା ବୁଦ୍ଧିଆ ପିଲା
ଏଇ ଦେଶରେ ବଢ଼ି
ବାଳୁତ କାଳୁ ପଣ୍ଡିତ ହେଲା
ବେଦ ବେଦାନ୍ତ ପଢ଼ି ।

ଅମାନିଆଙ୍କୁ ମନାଇନେଲା
ଚେତାଇ ଦେଇ ମନେ
ପ୍ରମାଣକରି ଦେଖାଇ ଦେଲା
ଜଗତା ଅଛି ଜଣେ ।
( ଶଙ୍କରାଚାର୍ଯ୍ୟ )

ରମ ତାରକା ମତର କପି
ପାଶୋରି ଗଜଗାଡ଼ି
ବାଗ୍‌ଦେବୀଙ୍କ ହାତ ମୁଠାରେ
ରଖିଲ ଭଞ୍ଜ ବାନ୍ଧି ।
ନଡ଼ିଆ ପରି ବର୍ତ୍ତିଆ ତାର
ଛାନ୍ଦର ସବୁ ପାଦ
ସନ୍ଦେହ ଭର୍ଗି ଗୁଣିଲେ ଯାଇ
ପଡ଼ଇ ଜଣା ସ୍ୱାଦ ।
( ଉପେନ୍ଦ୍ରଭଞ୍ଜ )

କିଭଳି ଯୋଗେ ଜନମିଥିଲ
ଧନ୍ୟ ତା ପିତା ମାତା
ପୃଥ୍ୱୀରେ କାହିଁ ଦେଖା ନ ଥିଲ
ବୁଦ୍ଧିଆ ଏଡ଼େ ମଥା ।
ସୁଣକ୍ୟ ଲେଖା ମାଣିକ୍ୟ ପରି
ଅଲିଇ ତାର ଜ୍ୟୋତି
ମାନବ ଜାତି ବଞ୍ଚିବା ଯାଏ
ବଞ୍ଚିବ ତାର ନୀତି ।
( ଗୁଣକ୍ୟ )

ବିଜ୍ଞାନ ଜ୍ଞାନ ଗଗଣି ହଜି
ମହିମା ତାର ଦେଖି
ପୁଟାଇ କେହି ପାରିବେ ନାହିଁ
କଲମେ ସବୁ ଲେଖି ।
ପୁରାଣ କଥା ନୁହଇଁ ମିଥ୍ୟା
ପ୍ରମାଣ କରେ ସାଇ
ଧରଣୀ ଆଜି ହୋଇଛି ଧନ୍ୟ
ତାହାକୁ ପୁଣି ପାଇ ।
( ସତ୍ୟସାଇ ବାବା )

ସାରଳା ଦାସ ଜନମ ପାଇ
ଶାରଳାପୀଠ ପରେ
ସେବକ ହୋଇ ଲେଖକ ହେଲ
ଶାରଳା ଦେବୀ ବରେ ।
ଲେଖନ ପତ୍ର ଧରି ହାତରେ
ସରଳ ଭବେ ଲେଖି
ଅଠରଖଣ୍ଡ ମହାଭାରତ
ଭରତେ ଗଲ ଲେଖି ।
( ସାରଳାଦାସ )

ଜନ୍ମ କୁଳରେ ଜନମ ହୋଇ
ପାଇଲ କାହୁଁ ଶିକ୍ଷା
ଆଖି ନ ଥାଇ ଶିଖିଲେ ସବୁ
କିଏ ସେ ଦେଲ ଦୀକ୍ଷା ।
ରୂପ କେତେ ଅରୂପେ ମଜି
କରିଲ ବହୁ ଶିଷ୍ୟ
ଭୀମଭୋଇର ଭଜନ ଗୀତା
ଭୁଲିବ ନାହିଁ ଦେଶ ।
( ଭୀମଭୋଇ )

ଟାଣ୍ଡନ ଜଣେ ଟାଣୁଆ ଲୋକେ
ବଡ଼ ସେ ନୀତିବାନ୍
ନୀତିରୁ ତିଳେ ଟଳୁ ନଥିଲ
ଯାଉ ପଛକେ ମାନ୍ ।
ସତ୍ୟ ପଥର ପଥିକ ହୋଇ
ନିଜର ଧର୍ମ ପାଳି
ଦେଶ ସକାଶେ ଲଢ଼େଇ କରି
ଜୀବନ ଦେଲ ଢାଳି ।
( ଟାଣ୍ଡନ୍ )

ବାଉନ ବର୍ଷ ବୟସରେ
ମାଆକୁ ଦାହ କରି
ମଶାଣି ଘାଟୁ ଘରକୁ ଆଉ
ଆସିଲ ନାହିଁ ଫେରି ।

ତୁଇଶ ଅଶୀ ବରଷ ବର୍ଷି
ଛାଡ଼ିଲ ଦେହ ବାବା
ତଇଲଙ୍ଗର କରଣି ଦେଖି
ଦୁନିଆ ହେଲ ଜାବା
( ତଇଲଙ୍ଗ )

ପଞ୍ଚସଖାଙ୍କ ପୟର ଧୂଳି
ମାଟିରେ ଅଛି ରହି
ଗତ ଆଗତ ବହୁତ କଥା
ଲୋକଙ୍କୁ ଗଲେ କହି ।
ମାୟା ସଂସାର ସାର ମରମ
ରଚନା କଲେ ଗୀତେ
ନେଲେ ସମାଧି ରହିଛି ଗାଦି
ଲଗାଇ ଜନ ହିତେ ।
(ପଞ୍ଚସଖା)

ବୀର ମାଟିରେ ଜନମ ନେଲେ
ଦିଅଟି ଖାଁ ପୁଅ
ତାଙ୍କ କଷଣ ଶୁଣିଲେ କାନେ
ସମ୍ଭାଳି ନୁହେଁ ଲୁହ ।
ଲକ୍ଷେ ସଇନ ନେଇ ଲଢ଼ିଲେ
ଅହିଂସା ନୀତି ପାଳି
ଖାନ ଭାଇ ନାଁ ସୀମାନ୍ତ ଗାନ୍ଧୀ
ପଡ଼ିଲ ବଡ଼ ଟଳି ।
(ସୀମାନ୍ତ ଗାନ୍ଧୀ)

କଲମଠାରୁ ବଲମ ଯାଏ
ସଭିଙ୍କି କରି ସାଥି
ଦେଖ କିମିତି ବିଦେଶୀ ଯିବେ
ଭାବିଲ ଦିନ ରାତି ।
ବିପ୍ଳବର ନିଆଁ ଜାଳି ସେ
ଭୋଗିଲ କଳାପାଣି

ତିଳକ ଗୀତା ଜାତୀୟ ଚେତା
ଦେଶକୁ ଦେଲ ଆଣି
(ତିଳକ)

ଦେବଭାଷାରୁ ଭାଗବତକୁ
ଓଡ଼ିଆରେ ସେ ଲେଖି
ମାରିଲ ମାଡ଼ ପଣ୍ଡିତ ଦଳ
ଅନୀତି କଥା ଦେଖି !
ଜଗନ୍ନାଥଙ୍କ ର ବର୍ଜିଲ ଛିଡ଼ି
ନ ଗଲ ଟିକେ ଡରି
ବାର ଭାଗରେ ଭଣିତା କଲ
ଲେଖନ ପତ୍ର ଧରି ।
(ଜଗନ୍ନାଥ)

ହରିଣ କଥା ଶୁଣି ସୁନ୍ଦର
ଫୋପାଡ଼ି ଦେଲ ଧନୁ
ଗହନ ବନେ କଟିଲ ତପ
ଛାଡ଼ିଲ ହିଂସା ମନୁ ।
ଯୀଶୁଙ୍କ ଭକ୍ତି ଶକତି ତାର
ପାଦିରୀ କୂଳ ଦେଖି
ଫଟ ଉତାରି ପଠାଇଦେଲେ
ବିଲତେ ସବୁ ଲେଖି ।
(ସାଧୁସୁନ୍ଦର ଦାସ)

ପିତାଙ୍କ ରଣ ଆଇନଜୀବୀ
ସବୁ ସୁଝିଲ ଚିତ୍ତ
ପିଲଙ୍କୁ କେତେ ମଣିଷ କଲ
ଯୋଗାଇ ସଦା ବିତ୍ତ ।
ଭୋଗ ବାସନା ନ ରଖି ମନେ
ଅରଜି ଥିଲ ଯାହା
ଗାନ୍ଧୀ କଥାରେ ବାନ୍ଧି ହୋଇ ସେ
ବରଜିଗଲ ତାହା ।
(ଚିତ୍ତରଞ୍ଜନ)

ଭାଇ ଭଉଣୀ ତିନିହେଁ ଯାକ
ରଥରେ ବସି ବୁଲି
ମଣିଷ ଜାତି ଡାକି ସଭିଙ୍କି
କୁହନ୍ତି ପ୍ରାଣ ଖୋଲି ।

ଧରମ ଠାରୁ କରମ ବଡ଼
ପରଶ ରଖ ମନେ
କରମ କଲେ କରତା ସାଥେ
ମିଳିବ ଦେଖା ଦିନେ ।
(ଜଗନ୍ନାଥ ମନ୍ଦିର)

ଭକତ କବି ଜୟଦେବର
ମଧୁର ଛନ୍ଦ ବାଣୀ
କବି କଲମୁ ଫୁଟି ନଥିଲା
ନଥିଲା କେହି ଶୁଣି ।
ନିଜେ ଗୋବିନ୍ଦ ରଚନା ପଢ଼ି
ଆସିଲେ ହସି ହସି
ପଦପୂରଣ କରି ଗଲିଲେ
ଅଜଣା ଥିବେ [illegible] ।
([illegible])

ଆଙ୍କିବା କଥା ପାଙ୍କିବା ନୁହେଁ
ଗଣିତ ପରିମିତ
କବି ସାଧକ ଦେବ ଦେବୀଙ୍କ
ଅଙ୍କନକାରୀ ମିତ ।

ଆଖିକୁ ଯାହା ଲାଗଇ ଭଲ
ପ୍ରାଣକୁ ଦିଏ ଶାନ୍ତି
ତୁଳିରେ ଆଙ୍କି ଫୁଟାଏ ନନ୍ଦ
ନିଖୁଣ କରି କାନ୍ତି ।
(ନନ୍ଦମୁଲ)

ରସାୟନରେ ବଡ଼ ପଣ୍ଡିତ
ଗଭୀର ତାର ଜ୍ଞାନ
ସେହି ବିଦ୍ୟାରେ ରହିଲା ବୁଦ୍ଧି
ଲଗାଇ ବକ ଧ୍ୟାନ ।
ପରୋପକାରୀ ପ୍ରଫୁଲ୍ଲ ଚନ୍ଦ୍ର
ଚିଆରିଗଲା ଯାହା
ଯୁଗ ଯୁଗକୁ ଲୋକ ସେବାରେ
ରହିବ ଲାଗି ତାହା ।
(ପ୍ରଫୁଲ୍ଲ ଚନ୍ଦ୍ର)

ଗଛରୁ ଫୁଲ ଛିଣ୍ଡ ଅ ନାହିଁ
ଫୁଲର ଅଛି ପ୍ରାଣ
ଅତିମାନବ ଅହିଂସା ଯୋଗୀ
ଏମିତି ଯାର ଜ୍ଞାନ ।
ଚିହ୍ନିଲେ ତାଙ୍କୁ ଆଣ୍ଡୁ ସାହେବ
ପାରିଲେ ତାଙ୍କୁ ଜାଣି
ମୋହନ ମନ୍ତ୍ରେ ଦୀକ୍ଷିତ ହୋଇ
ପ୍ରଚାର କଲେ ବାଣୀ ।
(ଆଣ୍ଡ୍ରୁଜ)

ବିଦେଶୀ ଧର୍ମ ପ୍ରବଳ ସ୍ରୋତ
ଆସିଲା ଯେବେ ମାଡ଼ି
ହିନ୍ଦୁ ସମାଜୁ କୁରୀତି ପ୍ରଥା
ପକୁଥା ମାଟି ତାଡ଼ି ।
ଦୂରଦରଶୀ ରାମମୋହନ
ପ୍ରଚାରି ଧର୍ମ ନୀତି
ବ୍ରାହ୍ମ ସମାଜ ଥାପନା କଲେ
ଦେଖାଇ ଦେଶ ପ୍ରୀତି ।
(ରାମମୋହନ)

ବାପୁଙ୍କୁ ଯେବେ ତେର ବରଷ
କସ୍ତୁରୀ ହେଲା ସାଥି
ଅହିଂସା ପଥେ ପକାଇ ପାଦ
ପଥର କଲା ଛାତି ।

ଶୋଭିନି କେବେ ସୁନା ଛଡ଼ ସେ
ଶୋଭିନି ଉପହାର
ଲୁହା ଫାଟକ ପାଚେରୀ କୋଳେ
ଜୀବନ ଗଲା ତାର ।
(କସ୍ତୁରବା)

ଧନ୍ୟ ଜନନୀ ଜନମ ଦେଲୁ
ପଟେଲ ଦୁଇ ଭାଇ
ଏହି ଦେଶର ଇତିହାସରେ
ତୁଳନା ତାର କାହିଁ ?
ବର୍ଦ୍ଦୋଲିର ବଲ୍ଲଭ ଭାଇ
ଆସିଲା ଯୁଦ୍ଧେ ଜିତି
ଆଇନ ଲେଖି ଭିଟଲ ଭାଇ
ବଢ଼ାଇ ଦେଲା ଖ୍ୟାତି ।
(ପଟେଲ)

ରାଜ କୁମାର ଅରକ୍ଷିତଙ୍କ
ଅଥୟ ହେଲା ମନ
ଘର ଦୁଆର ସଉଜ ଛାଡ଼ି
ପାହାଡ଼େ କଲା ଧ୍ୟାନ ।

ନିରକାରକୁ ଭଜନ କରି
ଲୋକକୁ ଦେଲା ଶିକ୍ଷା
ମହାମଣ୍ଡଳ ଗୀତା ଲେଖି ସେ
ଭଣିଲା ଭକ୍ତି ଟୀକା ।
(ଅରକ୍ଷିତ)

ଯୁଗ ବିଜ୍ଞାନ କଷଟି ପରେ
ଯୋଗୀ ବିଜ୍ଞାନ କଷି
ସବୁ ଧରମ ସାର ମରମ
ଶେଖିଲେ ହୋଇ ଖୁସି ।

ପୃଥିବୀ ପରେ ବ୍ରହ୍ମ ବିଦ୍ୟାର
ପଢାଇଗଲେ ନିଅଁ
ଥାଇଲଣ୍ଡର ମହିଳା ଜଣେ
ଜଣେ ଋଷିଅ ଝିଅ ।
(ବ୍ରହ୍ମବିଦ୍ୟା)

ଭଣ୍ଡ ଦରଶୀ ମହାମନୀଷୀ
ରମଣ ମହା ଋଷି
ଖର ବରଣା ସହି ସାଧିଲ
ଅରୁଣା ଯୋଗେ ବସି ।
ଦେହରୁ ତାର ଫୁଟଇ ଜ୍ୟୋତି
ଲୋକ ଦେଖିବା କଥା
କେତେ ସାଧକ ଚରଣରେ ତା'
ନୋଇଁଲେ ଆସି ମଥା ।
(ରମଣ ମହର୍ଷି)

ହିଂସା ନୀତିକି ପାଶୋରି ମନୁ
ଅହିଂସା ନୀତି ପାଳି
ମରଣ ଯଜ୍ଞେ ଯତୀନ୍ ଦାସ୍
ଜୀବନ ଦେଲା ଢାଳି ।

ଚୌଷଠି ଦିନ ଗାରଦ ଘରେ
ରହିଲା ଲୋକେ ପଢ଼ି
ଜେଲ୍ ଆଇନ୍ କୋହଳ ହେଲା
ଯିବାରୁ ଦେହ ଛାଡ଼ି ।
(ଯତୀନ୍ ଦାସ୍)

ମାଗୁଣି ପରି ନାହିଁ ବିଜ୍ଞାନୀ
ନାହାନ୍ତି କେହି ଗୁଣୀ
ଧନବନ୍ତରୀକି ଜନମି ଥିଲେ
ଭାରତେ ଅସି ପୁଣି ।

ତାର ମହିମା ଗୁଣ ଗାରିମା
ବିଦେଶୀ ଲୋକେ ଦେଖି
ଦୁନିଆ ଆଗେ ପ୍ରକାଶ କଲେ
କାଗଜ ପତ୍ର ଲେଖି ।
(ମାଗୁଣି ବ୍ରହ୍ମା)

ନହେଲେ ଚାର ନରଖି ଭେଲ
ଫୁଟାଇ ସତ କଥା
କାଳି କଲମେ ଅଙ୍କି ଗଲ ସେ
ଜାତିର ପ୍ରାଣ କଥା ।
ଶାସନ କଳେ ରହି ବଙ୍କିମ
ଦେଖାଇ ଦେଲ ବାଟ
ଦେଶ ପ୍ରେମରେ ପାଗଳ କଲ
ଯୁବତୀ ଯୁବା ଘଟ ।
(ବଙ୍କିମ)

ଦେଶ ବିଦେଶ ଶାସନ ବିଧି
ଆଇନ୍ ବହି ପଢ଼ି
ଭରତ ବର୍ଷେ ସ୍ବଳ୍ପ ଶାସନ
ଆଇନ୍ ଦେଲେ ଗଢ଼ି ।
ଦେଖିଲ ଭଳି ଆମ୍ବେଦକର୍
କରିଲ ଗୋଟେ କାମ
ଦେଶ ସ୍ୱାଧୀନ ରହିବା ଯାଏ
ରହିଥିବ ତା' ନାମ ।
(ଆମ୍ବେଦକର)

ବିପ୍ଳବୀ କବି ନଜରୁଲର
ଆହ୍ୱାନ ଦିଏ ପଦ୍ୟ
ଜାଗ ବିଦ୍ରୋହୀ ଜାଗ
ସୈନିକ ବଜାଅ ରଣ ବାଦ୍ୟ ।
ଶୋଷଣ କଳ ଶୋଷଣ ଦଳ
ସଭିଙ୍କି କରି ଧ୍ୱଂସ
ରକ୍ତ ଟିକା ମଥାରେ ପିନ୍ଧି
ମୁକ୍ତ କର ଏ ଦେଶ ।
(କାଜି ନଜରୁଲ ଇସ୍‌ଲମ୍)

ଘର କରନ୍ତି ଗାଛ ଭିତରେ
ପିନ୍ଧନ୍ତି ନାହିଁ ଲୁଗା
ଗାଈ ବଳଦ ସାଙ୍ଗେ ସମାନ
କେବଳ ନାହିଁ ପଘା ।
ମନୁଷ୍ୟ ଜାତି ଦଶା ଏମିତି
ଠକର ବାପା ଦେଖି
ମନୁଷ୍ୟ ତାଙ୍କୁ କରିବ ବୋଲି
ପିନ୍ଧିଲ ସେବା ରକ୍ଷୀ ।
(ଠକର୍ ବାବା)

ଶାରଦାଦେବୀ ଦେଖାଇଗଲେ
ପତିର ସେବା କରି
କାମ କାଞ୍ଚନ ବରଜି ନାରୀ
ପାରଇ ଦେହ ଧରି ।
ଦେହର ରଜା ଅଟଇ ମନ
ମନକୁ କଲେ ବଶ
ବଇରି ଯେତେ ହୁଅନ୍ତି ବନ୍ଧୁ
ଜଗତେ ମିଳେ ଯଶ ।
(ଶାରଦାଦେବୀ)

ଆମ ଦେଶରେ ରହିଛି ଛପି
ଓଁ କାର ପାଦଧୂଳି
ସଙ୍ଗୀତ ତାର ଶୁଣିଲେ ଲୋକ
ଯାଆନ୍ତି ସବୁ ଭୁଲି
କାମୁଡ଼ା ବାଘ ହୋଇଲ ଶାନ୍ତ
ବିଲେଇ ପରି ବସି
ସାରା ସଂସାର ରହିଛି ବୁଡ଼ି
ଶବଦ ବନ୍ଧେ ରସି
(ଓଁ କାର)

ଧଇର୍ଯ୍ୟବାନ ନେତା ମଦନ
ଆଗ୍ରହବାନ ବ୍ୟକ୍ତି
ଜାତୀୟ ଚେତା ଆଣିବା ଲାଗି
ଖଟିଲ ଦିନରାତି ।

ଜନମଭୂଇଁ ମୁକତି ପାଇଁ
ବରଣ କଲେ କାରା
ଭକତିଭରେ ପୂଜନ୍ତି ତାଙ୍କୁ
ଆମର ଦେଶ ସାରା ।
(ମଦନ ମୋହନ)

ଲୌକିକ ନୀତି ଭିତ୍ତି ଉପରେ
ମୌଳିକ ଶିକ୍ଷାନୀତି
ଲଭିଲେ ଗାନ୍ଧୀ ଆପିବେ ଭର୍ତ୍ତି
ଅମଳ ଶିକ୍ଷା ରୀତି
ସୂଚନାପାଇ ଆର୍ଯ୍ୟନାୟକ
କାର୍ଯ୍ୟରେ ଗଲେ ଲଗି
ସିଂହଳୁ ଆସି ଭାରତେ ଲଗି
ଯୁଦ୍ଧରେ ହେଲେ ଭାଗୀ ।
(ଆର୍ଯ୍ୟନାୟକ)

● ● ●

# ଶୋକ ଗୀତ ଓ ଅଭିନନ୍ଦନ ଗୀତିକା

## ଗାନ୍ଧୀ ଜୟନ୍ତୀ ଉପଲକ୍ଷେ

ନାହା ଛାଡ଼ି ଦେଇ ଗଲ ନାଉରୀ
ଆମେ ଜାଣି ନାହୁଁ ନଇ ପହଁରି
ଲହରୀ ଉପରେ ଆସୁଛି ଲହରୀ
ଖେଳେ ଆଖି ଆଗେ କାଳ ଭଉଁରୀ ।

ରହିଛି ଅନ୍ଧାର ଚଉଦିଗ ଘେରି
ଯାଉଛୁ କୁଆଡ଼େ ପାରୁନାହିଁ ବାରି
ନିଜ କଥା ନିଜେ ଭାବୁଅଛୁ ଖାଲି
ମଉଜେ କିପରି ଯିବୁ ଉତୁରି ।୧।

ପଶ୍ଚିମା ପବନ ମେଘ ଗରଜନ
ବଧିର କଲଣି ସାରା ପୃଥ୍ୱୀ କାନ
ମହାସାଗରର କଲିଜା ଥରୁଛି
ଜାକ ଛାଡ଼େ ହୋଇ ବିଷରେ ଘାରି ।୨।

ଛାତି ଦମ୍ଭ କରି ନ ଗ୍ଭଳିବେ ହାତ
ଗଣ୍ଡକୁ ଅକାତ ଖସିଯିବ କାତ
ଲଙ୍କା ଡଙ୍ଗାଟିରେ ମାଣ୍ଡି ପଶିଯିବ
ହଜିଯିବ ବୁଦ୍ଧି ବଳ ସବୁରି ।୩।

ଏମିତି ନଇରେ କି ପଡ଼ିଅଛି ନାହା
ଗ୍ଭଲ ମିଳିମିଶି ଲଗାଇବା ବାହା
ସର୍ଗି ସବୁ ଦଳ ଚଳାଇବା ଜଳ
ନୋହିବା କାହାରି କେହି ବଇରୀ ।୪।

ଥିବାଯାଏ ଆମ ନାଶାରେ ନିଃଶ୍ୱାସ
ନାଉରିଆ ବୋଲେ କରିବା ବିଶ୍ୱାସ
ପ୍ରଳୟ ମୁଖରୁ ସୃଷ୍ଟି ଉଦ୍ଧରିବା
ମଣିଷ ଜାତିଙ୍କ ଦେବତା କରି ।୫।

● ● ●

## ଅଭିନନ୍ଦନ ସଙ୍ଗୀତ

ଆହେ ନାଉରି
କହ କେତେ ଦୂର ଯିବା ଆହୁରି ?
ତମେ ଅଛ ମଙ୍ଗେ ଆମେ ତମ ସାଙ୍ଗେ
ବସି ଅଛୁ ଲକ୍ଷ ପଝାରୀ ।

( ୧ )

ବହି ଗ୍ଭଲିଯାଏ କାଳ ଖରସ୍ରୋତ
ବୁଡ଼ି ଯାଏ କେତେ ଭସିଲ ବୋଇତ
ଆମ ଅତୀତକୁ
ଛବିଲ ବେଳକୁ
ସର୍ବାଙ୍ଗ ଆମର ଉଠେ ଶିହରୀ ।

( ୨ )

ପାହାନ୍ତା ପହରେ ଜଣେ କିଏ ଆସି
ଦୁଆରେ ଆମର ବଜାଇଲ ବଂଶୀ
ବଂଶୀ ଡାକ ଶୁଣି
କଥା ତାର ମାନି
ତୁଟାଇଲୁ ଆମ ଦାସତ୍ୱ ଡୋରି ।

( ୩ )

ନିଶଙ୍କ ନିଦରୁ ଉଠିଗଲ ସିନା
ନିଦ ବାଉଳାରେ ହୋଇ ବାଟବଣା
ଆପଣା ଲୋକଙ୍କି
ପର ପରି ଦେଖି
ଥରେ ଥରେ ହେଉଁ (କ୍ଷୁଦ୍ର) ସ୍ୱାର୍ଥରେ ଘାରି ।

( ୪ )

ଉନ୍ନତି ଛଳରେ ହଗଲ ସର୍ବସ୍ୱ
ସାରା ବିଶ୍ୱ ଆଜି ହୋଇଲଣି ନିଃସ୍ୱ

ଶତ ହିରୋସୀମା
ରଚିବା ପାଇଁକି
ଗଢ଼େ ଆଣବିକ ବୋମା ତିଆରି ।

( ୫ )

ମନୁଷ୍ୟ ହାତରୁ ପାଇ ବରଦାନ
ବସିଛି ନେବାକୁ ମନୁଷ୍ୟର ପ୍ରାଣ
ଏ ବିଷ ବିଜ୍ଞାନ
ଦାନବ ସମାନ
ଜାତି ଫଗ ଛାଡି ଉଠଇ ଥରି ।

( ୬ )

ଦିନୁ ଦିନ ବଢ଼େ ଆମର ଦାୟିତ୍ୱ
ଗ୍ରହି ବସିଛନ୍ତି ଏ ସାରା ଜଗତ
'ଜଗତ ହିତାୟ'
ଏ ଦେଶର ମନ୍ତ୍ର
ଆମଠି ବିଶ୍ୱାସ ଅଛି ସବୁରି ।

( ୭ )

ପ୍ରଳୟ ମୁଖରୁ ରଖିବାକୁ ଧରା
ଆମ ଦେଶ ପଛେ ହୋଇବ ସାହାରା
ଇଚ୍ଛେ ନେଲେ ଆମେ
ନ ଘୁଞ୍ଚିବୁ ପଛେ
ମୃକତି ଘାଟରେ ଯିବୁ ଉତୁରି ।

● ● ●

## ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବଙ୍କ ଅଭିନନ୍ଦନ ଉପଲକ୍ଷେ

ଆମେ ଯାଇନୁ ଭୁଲି
ଯେଣୁ ପାରିନୁ ଭୁଲି
ଗ୍ରତକ ପଗଣେ ଗ୍ରହି ବସିଥିଲୁ
ତମେ ଆମ ପାଖେ ଫେରିବ ବୋଲି । ପଦ ।

(୧)

ତମ ଗୌରବେ ଗର୍ବିତ ଆମେ
କେଜାଣି କି ମଧୁ ଲଗିଛି ସେ ନାମେ
ଶତ ଶତ ଲୋକ ଧାଇଁ ଅସୁଛନ୍ତି
କହିବାକୁ ନିଜ ହୃଦୟ ଖୋଲି

(୨)

ଭୋଟ ବାକ୍ସ ନୁହେଁ ତମ ମାପକାଠି
ସେବକ ନ ଖୋଜେ କିଏ କେଉଁ ପାର୍ଟି
ସେବା ଯାର ଲକ୍ଷ୍ୟ ହେବ ଯେ ସେବକ
ପାରିବ କେ ତାକୁ ପୃଥାନେ ଦଳି ।

(୩)

ସ୍ୱାଧୀନତା ଅର୍ଥ ନୋହେ ସ୍ୱେଚ୍ଛାଚାର
ଦଳର ସଙ୍କେତ ନୋହେ ଦଳାଚାର
ଗଣତନ୍ତ୍ର ଅର୍ଥ ନୋହେ ଗଣାପତି
ସାମ୍ୟବାଦ ନୁହେଁ ଭି... ଝୁଲି ।

(୪)

ଯୋଗଜନ୍ମା ତମେ ଯୁଗ ସନ୍ଧିବେଳେ
ଜନମ ଲଭିଲ ଆମ ଏ ଶଯଳେ
ଶାସନ କଳକୁ ଆଣିଦେଲ ସିନା
ଶୋଷଣ ନୀତିକି ମୂଳତ ଦଳି ।

(୫)

ପ୍ରଧାନ ମନ୍ତ୍ରଣା ଦିଅ ମହାତ୍ମନ
ନ ଜପୁ ଏ ଜାତି ଦିନ ପଞ୍ଜିକାର
ମାଟିତଳେ ତାର ମଙ୍ଗଳର ହୀରା
(ତା) ଗର୍ଭରେ ଉଇଦ ସୁବର୍ଣ୍ଣ ଥାଳି ।

● ● ●

## ଯାଇନାହିଁ ତାର ସ୍ମୃତି ମଣ୍ଡ

କହ ରଷିକୁଲ୍ୟା କହ ମୋତେ ଆଜି ସତ କରି
ଭବି ଆମ କଥା
କିଏ ସେ ଦେବତା
ଆସିଥିଲ ମହୀକି ଦେହ ଧରି । ପଦ ।
ଦେଖି ମାନଚିତ୍ର ପଢ଼ି ଇତିହାସ
ଦୁଝିଲ ଦେହରି ଫାସେ ବନ୍ଧୁ ଦେଶ

ସମାଜ ବନ୍ଧନ ବିଦେଶୀ ଶୋଷଣ
ଆମ ମନବଳ ଦିଏ ସାରି । ୧ ।

ଦେଖିଲ ଜନନୀ ଯେତେ ଯେତେ ଗଞ୍ଜଣ
କେବେ ଗଙ୍ଗା କୂଳେ (କେବେ) ଗୟାରେ ତା ପିଣ୍ଡ
ଫାଟୁ ନାହେଁ ଛାତି ଶୁଖିଯାଏ ତୋଟି
ଦିନୁ ଦିନ ହୁଏ ହତଶିରୀ । ୨ ।

ତଟିନୀ ଯେ ଦିନେ ତୋହରି ପୂଜିନେ
ଉତ୍କଳ ମିଳନ ମଣ୍ଡପ ଆସନେ
"ବନ୍ଦଇ ଜନନୀ" ଧ୍ୱନି ଉଠାଇଲେ
ମଧୁସୂଦନଙ୍କ କର ଧରି । ୩ ।

ଜେଲନ୍‌ବାଗର ହତ୍ୟାକାଣ୍ଡ ଶୁଣି
ବାପୁଜୀଙ୍କ କଥା ମନେ ମନେ ଗୁଣି
ସ୍ୱାଧୀନତା ଯୁଦ୍ଧେ ସୈନିକ ସାଜିଲ
ଶାସକ କୁଳେ ତା ଗଲେ ଡ଼ରି । ୪ ।

ଜାତି ଧର୍ମ ମର୍ମ କରିବାକୁ ଭେଦ
ଦିବାନିଶି ସେତ ଚର୍ଚ୍ଚାକଲ ବେଦ
ଅରୁଚି କୁରୁଚି ଛୁଆ ଧ୍ୱଂସିବାକୁ
ସାର ଜୀବନ ତ ଦେଲା ସାରି । ୫ ।

ଆର୍ଯ୍ୟ ଗଉରବ ଅନୁଭବି ଆର୍ଯ୍ୟ
କଥା ଅନୁସାରେ କରିଗଲା କାର୍ଯ୍ୟ
ବାକ୍‌ଦେବୀ ପୟରେ ପୁଷ୍ପ ଭରିଦେଲା
ବିତରିଲା ଲେଖା ଦେଶ ଭରି । ୬ ।

ପଚିଲ ପୂଜାକୁ ବଡ଼ ମନେ କରି
ପ୍ରତିମା ପୂଜାକୁ ଥିଲା ପରିହରି
ସକଳ ଘଟରେ ବିଜେ ନାରାୟଣ
ଦେଇଗଲା ସେ ତ ପ୍ରମାଣ କରି । ୭ ।

ପ୍ରତି ଲୋମ କୂପେ ଅଛନ୍ତି ଦେବତା
ମରମେ ମରମେ ସମଜି ଏ କଥା
ଗୋକୁଳ ଆଶ୍ରମ ବସାଇଗଲା ସେ
ଯାଇ ନାହିଁ ତାର ସ୍ମୃତି ମରି । ୮ ।

ବାଳୁତ ବିବାହ ସମାଜୁ ଉଠାଇ
ବିଧବା ବାଳାଙ୍କୁ ସିନ୍ଦୁର ପିନ୍ଧାଇ
ସମାଜ କଠିନ ବନ୍ଧନକୁ କାଟି
ଜାତନା ତାଙ୍କର ନେଲା ହରି । ୯ ।

ଆଲୋକିତ କରି ଆମ ଜନ୍ମଭୂଇଁ
ଉତ୍କଳ ଗଗନେ ଆସିଥିଲା ଉଇଁ
ତାଙ୍କ ଉପଦେଶ ମାନି ଏହି ଦେଶ
ଚଳିବ ପଦାଙ୍କ ଅନୁସରି । ୧୦ ।

(ଶ୍ରୀବତ୍ସ ପଣ୍ଡାଙ୍କ ଶତବାର୍ଷିକୀ ଉପଲକ୍ଷେ)

● ● ●

## ଶ୍ରୀମାନ୍ ଗାନ୍ଧୀଙ୍କ ଆଗମନ ଉପଲକ୍ଷେ ସ୍ୱାଗତ ସଂଗୀତ

(୧)

ଜନ ସେବକ ହେ ସତ୍ୟ ପୂଜାରୀ
ମନ ତ ସବୁରି ଯାଇଛି ମରି
ତମ ପୂଜା ଫୁଲ ପଡ଼ିଛି ଝାଉଁଳି
ପୂଜିବୁ ତୁମକୁ କହ କିପରି ?

(୨)

ତମେ ସେନାପତି ସୀମାନ୍ତର ଜ୍ୟୋତି
ଅଙ୍ଗେ ଲିଭାଇଲ ଅହିଂସା ଶକତି
ଲକ୍ଷେ ସୈନ୍ୟ ସାଥେ ପଶିଲ ସମରେ
ଗଗନ ପବନ ଉଠିଲା ଥରି ।

(୩)

ସ୍ୱାଧୀନତା ଯୁଦ୍ଧେ ଜୟଲାଭ କରି
ଜନତାଙ୍କ ମତ ଦିନେ ନ ପଚାରି
ଜନମ ଭୂଇଁକି କଲମରେ ଚିରି
ଜନତା ଛାତିରେ ମାଇଲୁ ଛୁରୀ ।

(୪)

ଜିଅନ୍ତା ଦିଅଁକୁ କରିଲୁ ପଥର
ପିନ୍ଧାଇଲ ବେଳେ ତାଙ୍କୁ ଫୁଲହାର

ଜନନୀ ଜଠରୁ ଜନମିଲ ବେଳୁ
ଶୁଦ୍ଧ ଘର ଯାକେ ସାହା । ୪ ।
ହୋଇ ଏକ ମନ କରି ଏକ ଧ୍ୟାନ
ଡାକ ଶୁଣ ଆଜି ତାର
ମାନବ ଜନମ ସାର୍ଥକ ହୋଇବ
ହେବା ଭବସିନ୍ଧୁ ପାର । ୫ ।
ସହଯୋଗ ଠାରୁ ନାହିଁ ବଡ଼ ଯୋଗ
ପଡ଼ୋଶୀଠୁଁ ନାହିଁ ସାଥି
କର୍ମ ଠାରୁ ଧର୍ମ ବଡ଼ କିଛି ନାହିଁ
କର୍ମ ଗଢ଼ି ଅଛି ଜାତି । ୬ ।

● ● ●

## ବିଦ୍ୟାଭବନ ଉଦ୍‌ଘାଟନ ଉପଲକ୍ଷେ

ଦେଖ ଗୋ ଭଉଣୀ ଦେଖ ମୋ ଭାଇ
ଉଆଁସ ଘଟିଟି ଗଲାଣି ପାହି
ଡର ନାହିଁ ଆଉ ଡେରି ତ ନାହିଁ
ଦେଖ ଗୋ ଭଉଣୀ ଦେଖ ମୋ ଭାଇ ।

(୧)

ଧୀରେ ଅପସରି ଯାଉଛି ଅନ୍ଧାର
ମଳୟ ପବନେ ଦୋଳଇ ମନ୍ଦାର
ପୂଜାବେଳ ଆସି ପହଞ୍ଚିଲାଣି
ଡାକଇ ବୋଇଲି ନିଦ୍ର ଉଠାଇ ।

(୨)

ବ୍ରହ୍ମ ଜ୍ୟୋତି ତମ ଦୁଆରେ ଅତିଥି
ଯାହା ଲଗି କୋଟି ଜନ୍ମ ଗଲା ବିତି
ବ୍ରହ୍ମବିଦ୍ୟା ତାକୁ ପ୍ରମାଣ କଲାଣି
ପିଣ୍ଡକୁ ବ୍ରହ୍ମାଣ୍ଡ ସାଥେ ମିଳାଇ ।

(୩)

ବିଜ୍ଞାନ ବାହାରେ ନୋହେ ଯୋଗଜ୍ଞାନ
ସବୁ ଧର୍ମ ଶାସ୍ତ୍ରେ ଜାଳି ମନ ପ୍ରାଣ
ଉପାସିକା ଆସି ଅଙ୍କ ପରି କଷି
ଦେଲା ପୃଥିବୀର ଆଖି ଫିଟାଇ ।

(୪)

କଲା ଅନୁଭବ କର୍ତ୍ତା ଅଟେ ସତ୍ୟ
ସତ୍ୟ ହିଁ ଗଢ଼ିଛି ଆମର ଏ ମର୍ତ୍ତ୍ୟ
ସତ୍ୟ ସନ୍ଧାନରେ ଆୟୁ କଲା ଶେଷ
ସତ୍ୟର ପତାକା ଗଲା ଉଡ଼ାଇ ।

(୫)

ଆସେ ମହାକାଳ ବଜାଇ ଡମରୁ
ଚମକି ଉଠନ୍ତି କୁମେରୁ ସୁମେରୁ
ମନୁଷ୍ୟ ଜାତିକି ବଞ୍ଚାଇବ ଯେବେ
ଧର୍ମ ଭେଦ ଭାବ ଦିଅ ଭୁଲାଇ ।

● ● ●

## ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ଭିତ୍ତିପ୍ରସ୍ତର ସ୍ଥାପନ ଉପଲକ୍ଷେ ସ୍ୱାଗତ ଗୀତିକା

ପୂଜ୍ୟ ସଭାପତି ହେ ଯୁବ ଅତିଥି
ତମ ସ୍ନେହ ପ୍ରୀତି ଭୁଲିବୁ ନାହିଁ
ଆସିଲ ଖବର ପାଇଲା ଦିନରୁ
ଘଡକ ପଲଏ ରହିନୁ ଶୁହିଁ । ପଦ ।

ବସିଛେ ଯା କୋଳେ ଏହି ସେ ଅଳକା
ବନ୍ଦୀ ହେଲା ଦିନୁ ନେଲା ନୂଆ ଦୀକ୍ଷା
ତମରି ପରିଚ ଧରି ସେବା ବ୍ରତ
ଶରୀର ତାହାର ଅଛି ଶୁଖାଇ । ୧

ଶତ ଶ୍ରମଜୀବୀ ଶତ ଶତ ଋଷୀ
କୋଳେ ତାର ଠୁଳ ପ୍ରତିଦିନ ଆସି
ତାର କ୍ଷୀର ନୀର ତା ଧୀର ସମୀର
ଜୀବିକା ସଭିଙ୍କି ଦିଏ ଯୋଗାଇ । ୨ ।

କେତେ ସାଧୁ ସନ୍ଥ ତା ଛବି ରୁଚିର
ଦେଖି ବିରଚିଲେ ତା ତୀରେ କୁଟୀର

ଉଡ଼େ ତାଙ୍କ ବାନା ପଡ଼ିଅଛି ଜନା
କର୍ପୂର ନେଇଣି କାଳ ଉଡ଼ାଇ । ୩ ।

ଗଳଇ ଅଦୂରେ ସାରଳାଙ୍କ ପୀଠ
ପାରଦ୍ୱୀପ ତଟେ ଉଛଳବେ ବନ୍ଦ
ଛବି ଭବିଷ୍ୟାତ ସଦା ଉଲ୍ଲସିତ
ଚକ୍ରବାଳ କୋଳେ ଅଛି ଅନାଇ । ୪ ।

ସ୍ୱାଧୀନତା ଯୁଦ୍ଧେ ହୋଇ କି ପାଗଳ
ଜାଗିଥିଲ ଦିନେ ଆମ ଏ ଅଞ୍ଚଳ
ଯାଗବାରଠାରୁ କାରାଗାର ଯାକେ
ମରଣ ବାହିନୀ ଥିଲ ପଠାଇ । ୫ ।

ସାକ୍ଷୀ ରବି ଶଶି ସାକ୍ଷୀ ଏ ଅଳକା
ସହି କେତେ ଦୁଃଖ ଖାଇ କେତେ ଧକ୍କା
କେତେ କେତେ ଵୀର ଗଲେ ସ୍ୱର୍ଗପୁର
କେତେ ଗଲେ ପଥ ଭିକାରୀ ହୋଇ । ୬ ।

ଏଠାରେ ଯୁବକ ସତତ ସେବକ
କୋରିଆ ଯୁଦ୍ଧରେ ଖଟାଇ ବିବେକ
ସମର ଭୂଇଁରୁ ହରଷେ ଫେରିଲ
ଜାତିସଂଘ ଯଶ ପଦକ ପାଇ । ୭ ।

ଆଜି ଶୁଭ ଦିନେ ଏ ଶୁଭ ଲଗନେ
ଭିରି ଶୀଳା ଦେଇ ଏ ବିଦ୍ୟା ଭବନେ
ଯୁଗ ଯୁଗ ଲଗି ଯାଅ ଯଶ ରଖି
ଆମ ଇତିହାସେ ଅମର ହୋଇ । ୮ ।

● ● ●

## ଶପଥ ଗ୍ରହଣ ଉପଲକ୍ଷେ-ଶୁଭାଶୀଷ

ମିନତି ଆମର ଏତିକି
ନ ଭୁଲିବ ଦୀନ ଦୁଃଖୀଙ୍କି
କରିଲ ଶପଥ　　ଦେଖାଇବ ପଥ
ଦେଶର ଉନ୍ନତି ପାଇଁ କି ।

ମନ ବଳ ଆଗେ　　ନୋହେ ଧନବଳ
ମନରୁ ଜନମ　　ଦୁନିଆର କଳ
ମନ ବଳେ ଆମେ　　ସ୍ୱାଧୀନ ହୋଇଛେ
ତୋପ ଆଗେ ଛାତି ପାତିକି ।

ବୁଦ୍ଧି ସାଥେ ଯେବେ　　ଆଚରିବ ଶୁଦ୍ଧି
ଅଚିରେ ତୁମର　　ଲକ୍ଷ୍ୟ ହେବ ସିଦ୍ଧି
ମନ ଶୁଦ୍ଧି ବଳେ　　ଫେରଇ ଆଣିଲେ
ଗାନ୍ଧୀ ଏ ଭରତ ଭୂଇଁକି ।

ଚିଲିକା କୂଳରେ　　ଫୁଟିଲେ ଶୋରିଷ
ଚିକାଗୋ ସହରେ　　ଚହଟେ ସୁବାସ
ସାରା ବିଶ୍ୱ ଦେଖ　　ଏକ ଗଛ ମୂଳ
ବଢ଼ାଅ ମାନବ ପ୍ରୀତିକି ।

'ଜଗତ ହିତାଇ'　　ଆମ ଦେଶ ମନ୍ତ୍ର
ସେହି ମନ୍ତ୍ର ଘେନି　　ଚଳାଇଲେ ଯନ୍ତ୍ର
ରତ୍ନ ସସବିନୀ　　ଆମର ଜନନୀ
ହସାଇବ ସାରା ପୃଥ୍ୱୀକି ।

ମଧୁ ଗୋପବନ୍ଧୁ　　ପଠାଣି ସାମନ୍ତ
ବହୁତ ଦୂରରୁ　　ଜଣାଇ ସ୍ୱାଗତ
ଶୁଭାଶୀଷ ବାରି　　ଢାଳନ୍ତି ଆକାଶୁ
ତମ ଆଡ଼େ ଗୁହିଁକି ।

● ● ●

## ଗୋଦାବରୀଶ ମହାପାତ୍ରଙ୍କ ତିରୋଧାନ ଉପଲକ୍ଷେ

କେତେ ବଡ଼ ଦୀପ ଲିଭିଗଲ ତମେ
ସାରା ପୁର ପଲ୍ଲୀ ଅନ୍ଧାର କରି,
ମରଣ ସାଥିରେ ଲଢ଼ିଲ ଶେଷରେ
ଚୂନା କରି ତମ ସୁନାର ଶରୀ । ପଦ ।

(୧)

ରୋଗର ଔଷଧି　　ଅଛି ସିନା ହାତେ
ମୃତ୍ୟୁର ଔଷଧି　　ନାହିଁ ଏ ଜଗତେ

ସମାଜ ବନ୍ଧନ ବିଦେଶୀ ଶୋଷଣ
ଆମ ମନବଳ ଦିଏ ସାରି । ୧ ।

ଦେଖିଲ ଜନନୀ ଯେତେ ଗଞ୍ଜଦଣ୍ଡ
କେବେ ଗଙ୍ଗା କୂଳେ (କେବେ) ଗୟାରେ ତା ପିଣ୍ଡ
ଫାଟୁନାହେଁ ପାଟି ଶୁଖିଯାଏ ତୋଟି
ଦିନୁ ଦିନ ହୁଏ ହତଶିରୀ । ୨ ।

ତଟିନୀ ସେ ଦିନେ ତୋହରି ପୂଜିନେ
ଉତ୍କଳ ମିଳନ ମଣ୍ଡପ ଆସନେ
"ବନ୍ଦଇ ଜନନୀ" ଧ୍ୱନି ଉଠାଇଲେ
ମଧୁସୂଦନଙ୍କ କର ଧରି । ୩ ।

ଜାଲିନ୍‌ବାଗର ହତ୍ୟାକାଣ୍ଡ ଶୁଣି
ବାପୁଜୀଙ୍କ କଥା ମନେ ମନେ ଗୁଣି
ସ୍ୱାଧୀନତା ଯୁଦ୍ଧେ ସୈନିକ ସାଜିଲ
ଶାସକ କୂଳେ ତା ଗଲେ ଡ଼ରି । ୪ ।

ଜାତି ଧର୍ମ ମର୍ମ କରିବାକୁ ଭେଦ
ଦିବାନିଶି ସେତ ଚର୍ଚ୍ଚାକଲ ବେଦ
ଅରୁଚି କୁରୁଚି ଛୁଆ ଧ୍ୱଂସିବାକୁ
ସାର ଜୀବନ ତ ଦେଲା ସାରି । ୫ ।

ଅର୍ଯ୍ୟ ଗଉରବ ଅନୁଭବି ଆର୍ଯ୍ୟ
କଥା ଅନୁସାରେ କରିଗଲା କାର୍ଯ୍ୟ
ବାକ୍‌ଦେବୀ ପୟରେ ପୁଷ୍ପ ଭରିଦେଲା
ବିତରିଲା ଲେଖା ଦେଶ ଭରି । ୬ ।

ପତିତ ପୂଜାକୁ ବଡ଼ ମନେ କରି
ପ୍ରତିମା ପୂଜାକୁ ଥିଲା ପରିହରି
ସକଳ ଘଟରେ ବିଜେ ନାରାୟଣ
ଦେଇଗଲା ସେ ତ ପ୍ରମାଣ କରି । ୭ ।

ପ୍ରତି ଲୋମ କୂପେ ଅଛନ୍ତି ଦେବତା
ମରମେ ମରମେ ସମଜି ଏ କଥା
ଗୋକୁଳ ଆଶ୍ରମ ବସାଇଗଲା ସେ
ଯାଇ ନାହିଁ ତାର ସ୍ମୃତି ମରି । ୮ ।

ବାଲ୍ୟତ ବିବାହ ସମାଜୁ ଉଠାଇ
ବିଧବା ବାଳାଙ୍କୁ ସିନ୍ଦୁର ପିନ୍ଧାଇ
ସମାଜ କଠିନ ବନ୍ଧନକୁ କାଟି
ଜାତନା ତାଙ୍କର ନେଲା ହରି । ୯ ।

ଆଲୋକିତ କରି ଆମ ଜନ୍ମଭୂଇଁ
ଉତ୍କଳ ଗଗନେ ଆସିଥିଲା ଉଇଁ
ତାଙ୍କ ଉପଦେଶ ମାନି ଏହି ଦେଶ
ଚାଲିବ ପଦାଙ୍କ ଅନୁସରି । ୧୦ ।

(ଗୋବନ୍ଦ ପଣ୍ଡାଙ୍କ ଶତବାର୍ଷିକୀ ଉପଲକ୍ଷେ)

● ● ●

## ସୀମାନ୍ତ ଗାନ୍ଧୀଙ୍କ ଆଗମନ ଉପଲକ୍ଷେ ସ୍ୱାଗତ ସଂଗୀତ

(୧)

ଜନ ସେବକ ହେ ସତ୍ୟ ପୂଜାରୀ
ମନ ତ ସବୁରି ଯାଇଛି ମରି
ତମ ପୂଜା ଫୁଲ ପଡ଼ିଛି ଝାଉଁଳି
ପୂଜିବୁ ତୁମକୁ କହ କିପରି ?

(୨)

ତମେ ସେନାପତି ସୀମାନ୍ତର ଜ୍ୟୋତି
ଅଙ୍ଗେ ଲିଭାଇଲ ଅହିଂସା ଶକତି
ଲକ୍ଷେ ସୈନ୍ୟ ସାଥେ ପଶିଲ ସମରେ
ଗଗନ ପବନ ଉଠିଲା ଥରି ।

(୩)

ସ୍ୱାଧୀନତା ଯୁଦ୍ଧେ ଜୟଲାଭ କରି
ଜନତାଙ୍କ ମତ ଦିନେ ନ ପଚାରି
ଜନମ ଭୂଇଁକି କଲମରେ ଚିରି
ଜନତା ଛାତିରେ ମାଇଲୁ ଛୁରୀ ।

(୪)

ଜିଅନ୍ତା ଦିଅଁକୁ କରିଲୁ ପଥର
ପିନ୍ଧାଇଲୁ ବେଳେ ତାଙ୍କୁ ଫୁଲହାର

ଆଖିରୁ ତୁମର ଲୁହ ଗଡ଼ିଥିବ
ଗଲା କଥା ମନ ମନେ ସୁମରି ।

(୫)

ଫେରିଲେ ବିଦେଶୀ ଦେଇ ସିନା ଗବି
ପୂରଣ ନୋହିଲା ଯାହାର ଯା ଦାବି
ପେଟ ପିଠି ଜ୍ୱାଳା କରଇ ପାଗଳ
ସଭ୍ୟତାକୁ ଦିଏ ଦୂଷିତ କରି ।

(୬)

କହି ଗଲେ ବାପୁ ହେବାକୁ ସେବକ
ବିକି ବିବେକକୁ ହେଲୁ ଆମେ ବକ
ନୀତିକି ତାଙ୍କର ହତ୍ୟା କଲୁ ନିତି
କ୍ଷମତା ମଦରେ ହୋଇକି ଘାରି ।

(୭)

ଧନୀଙ୍କ ହାତରେ ଗରୀବଙ୍କ ତୁଟି
ଶୋଷେ କୋଟିପତି ଆଉ ଦୁଇକୋଟି
ଶାସନ କଳର ଛାଇ ତଳେ ରହି
ବଣିକି ପୋଷିବ ଝିଙ୍କି ମାରି ।

(୮)

ଅଳପ ବେତନ ଭେଗି ଅଶ୍ରୁଜଳ
ନିକମା ଲୋକଙ୍କ ଜଠର ଅନଳ
ଶାସକ ରାଡ଼ିକି କରେ ଟଳମଳ
ଆଣି ଚିତ୍କାରେ ପଡ଼ିବ ଟଳି ।

(୯)

ଭୋଟ ବାକ୍ସ ନୁହେଁ ସେବା ମାପକାଠି
ଧର୍ମ ଅର୍ଥ ନୁହେଁ ବେକ କଟାକଟି
ସ୍ୱାଧୀନତା ଅର୍ଥ ନୋହେଁ ସ୍ୱେଚ୍ଛାଚାର
ସାମ୍ୟବାଦ ନୁହେଁ ଭିକାରୀ ଝୁଲି ।

(୧୦)

ଦେଖି ହିଂସେସୀମା ଦେଖି ନାଗାସାକି
ମନୁଷ୍ୟ ରକତ ଯାଏ ପୁଣି ଶୁଖି
.ଜାତିସଂଘ ବୁଦ୍ଧି ବାଟ ପାଉ ନାହିଁ
ଖୋଜୁଛି ଆଲୁଅ ଅକ୍ଷରେ ଘୂରି ।

(୧୧)

ଅଛି ମୋର ଆଶା ରହିଛି ଭରସା
ନୋହିବ ଅହିଂସା କେବେ ଲୋକ ହସା
ବିଷରୁ ଅମୃତ ଉତାରିବ ଦିନେ
ପ୍ରଳୟ ମୁଖରୁ ପୃଥ୍ୱୀ ଉଦ୍ଧରି ।

(୧୨)

ସମର ଶବଦ ରହିବ ବହିରେ
ବିଶ୍ୱ ରାଷ୍ଟ୍ର ଗଢ଼ା ହୋଇବ ମହୀରେ
ରବି ଶଶୀ ତାରା ଉଲ୍ଲସି ଉଠିବେ
ବାପୁଜୀ ଆମର ଆସିବେ ଫେରି ।

● ● ●

## ନିଖିଳ ଭାରତ ସମବାୟ ସପ୍ତାହ ଉପଲକ୍ଷେ
## ପ୍ରାରମ୍ଭିକ ସଙ୍ଗୀତ

ଆସହେ ଆସହେ ସହଯୋଗୀ ଭାଇ
ଆସ ସମବାୟ ସାଥୀ
ତୁଟିଛି ଅନ୍ଧାର ଫୁଟିଛି ମନ୍ଦାର
ପାହିଛି ଉଆଁସ ରାତି । ୧ ।

ସ୍ୱାଧୀନତା ସୂର୍ଯ୍ୟ କନକ କିରଣ
ଖେଳେ ଗୁହାଁ ଘରେ ଘରେ
ଇନ୍ଦ୍ରଧନୁ ରଙ୍ଗ ପତାକା ଆମର
ଦୋଳେ ଆଜି ହର୍ଷ ଭରେ । ୨ ।

ଗ୍ରାମ କାରିଗର ମଜୁରିଆ ଚାଷୀ
ହାକିମ ଅମଲା ଯେତେ
ପୁଲିସ ପିଅନ ସେନାପତି ସୈନ୍ୟ
ଛବି ଦେଖ ବାରେ ଚିତ୍ରେ । ୩ ।

ଜନନୀ ଆମର ଏଇ ଜନ୍ମଭୂମି
ମାଟି ତ ଆମର ମାଆ

ଜନନୀ ଜଠରୁ ଆସିବା ଆଗରୁ
ସବୁରି ଗର୍ଭରେ ମରଣ ଡୋରି ।

( ୨ )

କିଏ ଚଟାଇଛ ଜାତୀୟ ମମତା
ମଚାଇଛ କିଏ ଲେଖିଇ କବିତା
ବକୁଳ ବନରୁ ଡାକିଲା କୋକିଳ
ହୃଦୟ ତାହାକୁ କଲା ବିକିରି ।

( ୩ )

ପଦ ପଦବୀରେ ନ ରଖି ଲାଳସା
କାହାରି କୃପାକୁ ନ କରି ଭରସା
ଦୁର୍ନୀତି ସାଥିରେ ଜୁଝିଥିଲ ନିତି
ସଖା କି ବଇରୀ କା'ରେ ନ ଡରି ।

( ୪ )

ଜୀବର ଯା' ଭବ ଫୁଟାଏ ତା' ଭଷା
ଭଷା ବିନା ଭବ ହୁଅଇ ନିଆଶା
ତୁମ କଥା ଭଷା ରଚନା ଶଇଳୀ
ତମ ଚିତା ସଙ୍ଗେ ଗଲାଣି ଜଳି ।

●●●

## ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ରଙ୍କର ପ୍ରଥମ ବାର୍ଷିକ ସଭା ଉଦ୍ଦେଶ୍ୟେ

ଲାଗେ ସବୁ ମୋତେ କାଲିକା ପରି
ଘଣ୍ଟୁ ଘଣ୍ଟୁ ଗଲ ବରଷେ ପୁରି
ପାଣି ପରି ଦିନ ଗଡ଼ି ଚାଲିଗଲା
ନ ଆସିବ ଆଉ ପଛକୁ ଫେରି । ୧ ।

ତମ ଛବି ଯେବେ କହୁଥାନ୍ତା କଥା
ଫିଟାଇ କୁହନ୍ତୁ ଆମ ପ୍ରାଣ ବ୍ୟଥା
ବଢ଼ି ବଢ଼ି ଗଲେ ସବୁ ଚିଜ ଲାଇ
କମି କମି ଯାଏ ଆୟୁ ସବୁରି । ୨ ।

ତମ ଭଷା ତମ ଲେଖାର ଶଇଳି
ତମ ଚିତା ସାଥେ ଯାଇ ଅଛି ଜଳି
ବିଶାଳ ଭାରତ କଥାକେ ଭବିବ
ସିଂହ ଭୂମି ଲାଗି ହେବ କେ ଝୁରି । ୩ ।

ପଶୁପକ୍ଷୀଙ୍କର ଅଛି ନିଜ ଭଷା
ଭଷା ହିଁ ମେଣ୍ଟାଏ ଜାତିର ପିପାସା
ଶତ୍ରୁ ଆସି ଆମ ଜିଭ କାଟିବେଲେ
ଆମ ଭଷା ଆମେ ଯିବା କି ଭୁଲି । ୪ ।

ପ୍ରକୃତି ବଜାଏ ବିପଦର ଘଣ୍ଟି
ପଶୁ ନାହିଁ ଚେତା ଶୁଣିଯାଏ ତଣ୍ଟି
ଗାଦି ପାଇଁ ଆମେ ବାଦୀ ପାଲ କରୁ
ଭାଇ ଲାଗି ଭାଇ ପକାଉ ଛୁରୀ । ୫ ।

ଦୁଇନାବେ ଆମେ ଦେଇଅଛୁ ପାଦ
ସତ୍ୟ ଅହିଂସାର ସଦା କରି ଶ୍ରାଦ୍ଧ
ଦୁର୍ନୀତି ଦୁର୍ନୀତି ହୁରି ଛାଡ଼ୁ ନିତି
ନିଜେ ଦୁର୍ନୀତିରେ ଗଲୁଣି ସରି । ୬ ।

ଜଣେ କିଏ ଦିନେ ପାଇଥିଲା ଶୁଳି
ଗାନ୍ଧିଜୀଙ୍କୁ ଆମେ ନିତି କରୁ ଗାଳି
ଗାନ୍ଧୀଠାରୁ ବଡ଼ ଗାନ୍ଧୀବାଦ ନୀତି
ଦେଲୁଣି ସେ କଥା ମନୁ ପାଶୋରୀ । ୭ ।

ରହଣ ବନ୍ଧକେ ପଡ଼ିଲାଣି ଦେଶ
ଦଖଲ ବନ୍ଧାରେ ହେବା କି ହେ ଶେଷ
ହଜାଇଜ ବୋମା ପରୀକ୍ଷା ଚାଲିଛି
କେ କେତେ ପାରିବ ମନୁଷ୍ୟ ମାରି । ୮ ।

ତଥାପି ଭରସା ରହିଛି ମୋ ମନେ
ବିଶ୍ୱ ଗଣ୍ଡ ଗଢ଼ା ହେବ ଏଠି ଦିନେ
ଜଗତ ହିତାୟ ଆମ ଦେଶ ମଂଚ
ବିଷକୁ ଅମୃତ ପାରିବୁ କରି । ୯ ।

●●●

## ମହାପ୍ରାଣ ଅଗ୍ନିବର୍ଯ୍ୟ ହରିହରଙ୍କ
## ମହାଶ୍ରାଦ୍ଧ ଉପଲକ୍ଷେ

ଲିଭି ଗଲା ଦୀପ ଲିଭିଗଲା
ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା
ସଳିତାରେ ତେଲ ଥିଲା ତ ଯେତେକ
ଗହୁଁ ଗହୁଁ ସବୁ ସରିଗଲା ।

ପଞ୍ଜୁରିଟି ଛାଡି ନଢ଼େଇଟି ମୋର
ନୀଳ ଆକାଶରେ ଉଡ଼ିଗଲା ।
(ସେତ) ଉଡ଼ିଗଲା ।

ବକୁଳ ବନର ଆକୁଳ ଆଖିରୁ
ଧାର ଧାର ଲୁହ (ଅତରୁ) ଗଡ଼ିଗଲା ।
ଗଡ଼ିଗଲା ।

ଖୋଲିଗଲା ଗଣ୍ଠି ଫୁଟାଇ ପାହାନ୍ତି
ପ୍ରାଣରେ ତାହାର ଆସିଗଲା ଶାନ୍ତି .
ଉଠିଲା ଦିଅଁକୁ ଛୁଇଁଲା କ୍ଷଣି ସେ
ଆମ କଥା ସବୁ ଭୁଲିଗଲା ।

ସରଗ ପୁରରୁ ସମ୍ବାଦ ନେଇକି
ଆସିଥିଲା ପୃଥ୍ୱୀ ବୁଲିବା ପାଇଁକି
ଦେବ ଆଦେଶରେ ଦେବତା ବେଶରେ
ଆମ ପାଇଁ ଆଖି ମେଲି ଥିଲା ·
ମେଲି ଥିଲା ।

ଦେଖିଲା ବିଚିତ୍ର ଅଟେ ଦୁନିଆଁ
ବାହାରେ ଭିତରେ ଜଳେ ସଦା ନିଆଁ
ପତଙ୍ଗ ପରାଏ ପଡ଼ନ୍ତି ମାନବ
ଦେଖି ଦେଖି ସେତ କାବା ହେଲା
ସେ ତ କାବା ହେଲା ।

ଝଡ଼ି ବର୍ଷା ଦେଖି ଗଲା ନାହିଁ ଡରି
ଅନ୍ଧାର ଭିତରେ ନିତି ଘୂରି ଘୂରି
ଘେନି ସାଙ୍ଗ ସାଥି ଖଟି ଦିବା ରାତି
ଆଶାର ଆଲୁଅ ଜାଳି ଦେଲା ।
ସେ ତ ଜାଳି ଦେଲା ।

ବାଟରେ ଭେଟିଲା ଯୁଗ ଅବତାର
ଗଳାରେ ତାଙ୍କର ଦେଇ ଫୁଲ ହାର
ପାଇ ତାଙ୍କ ଶିକ୍ଷା ଘେନି ତାଙ୍କ ଦୀକ୍ଷା
ଦେଶ ଲାଗି ଦେହ ଶେଷ କଲା ।
ଶେଷ କଲା ।

ଦେବତାଏ ତାକୁ ନେଲେଣି ପାଛୋଟି
ନିଜ ଘରକୁ ଗଲା ସେ ନେଟେଟି
କିଏ ସେ କହିବ କେଉଁ ଦେବତା ସେ
ନର ଦେହ ଧରି ଆସିଥିଲା ।
ଏଠି ଆସିଥିଲା ।

• • •

## ୮ ସାରଙ୍ଗଧର ଦାସ

ହେ ସୁର, କେତେ ଜଣ ଯୋଦ୍ଧା ତମରି ଭଳି
ଲଢ଼ି ଲଢ଼ି ତମେ ପଡ଼ିଲ ଟଳି
ଜାତି ଲାଗି ତୁମେ ଶେଷ ହୋଇଗଲ
ଦେଶ ଲାଗି ଦେଲ ଜୀବନ ବଳି । ପଦ ।

ତରୁଣ ବୟସୁ ତମେ ତ ବିପ୍ଳବୀ
ବିପ୍ଳବୀ ଆଙ୍କଇ ବିଶ୍ୱେ ନବ ଛବି
ତୋପ ବନ୍ଧୁକକୁ ପଚାରଇ ବୁଝ
ବିଦେଶୀ ଶାସନ ଭାଙ୍ଗିବ ବୋଲି । ୧ ।

ଅଭବ ସାଥିରେ କରି ସଦାଲାପ
କଳୁଷିତ କେବେ କରିନା ସ୍ୱଭାବ
ବିବେକକୁ କେବେ କରିନା ବିକ୍ରିତି
ପଦ ପଦବୀର ପଛରେ ବୁଲି । ୨ ।

ବତାଇଲା ବାଟ ଆମକୁ ଯେ ଗୁରୁ
ବାଟ ଛାଡ଼ି ତାକୁ ଚଢ଼ିଲୁ ପୃଷ୍ଠାରୁ

ସମାଧିରେ ତାର ଫୁଲମାଳ ଢାଳୁ
ନୀତିକୁ ତାହାର ପାଦରେ ଦଳି । ୩ ।

ମାନବ ଜାତିକୁ କରିବାକୁ ଦାସ
ମାନବ ବସାଏ କେତେ ଜାତି ପାଶ
ପରମାଣୁ ବୋମା ଲଗିଛି ପରୀକ୍ଷା
କିଏ କାହାଠାରୁ ବଳରେ ବଳି । ୪ ।

ଉଡି ନାଗାସାକି ଗର୍ଜି ହିରୋସୀମା
ପୃଥିବୀ କି ଦେଇ ବିଷ ବାଷ୍ପ ଜିମା
ଚନ୍ଦ୍ର ମଣ୍ଡଳକୁ ଧାଇଁଲୁଣି ଆମେ
ଦୟା ମାୟା ପ୍ରୀତି ପଡ଼େ ଝାଉଁଳି । ୫ ।

ମନରେ ମୁନରେ କି ଅବା କାମରେ
ଚଳି ନ ପାରିଲେ ଅହିଂସା ନୀତିରେ
ମହାସିନ୍ଧୁ ପ୍ରାଣୁ ବହେ ଯେଉଁ ଶ୍ୱାସ
ଜୀବ ଜଗତକୁ ଦେବ ସେ ଜାଳି । ୬ ।

● ● ●

## କାହୁଁ ଚାଲିଗଲ

ଯେତେ ଭୁଲଇଲେ ନ ଭୁଲେ ମୋ ମନ
ଆଖି ଆଗେ ତୁମେ ଯାଉଛ ଦିଶି
କାହୁଁ ଆସି ତୁମେ କାହୁଁ ଗଲିଗଇ
କାହା ସାଥେ ଗୁରୁ ରହିଲ ମିଶି । ପଦ ।

ଥିଲ ତୁମେ ଆମ ଦେଶ ଅଭିଧାନ
ହେତୁ ହେଲ ଦିନୁ ସଦା ଦେଶ ପ୍ରାଣ
ଉଅଁଶ ନିଶିରେ ମଶାଲ ଜଳାଇ
ଅଗୁଆ ହୋଇଲ ଯୁଗ ମନୀଷୀ । ୧ ।

ତରୁଣ ବୟସୁ ସାଜିଲ ବିପ୍ଳବୀ
ବିପ୍ଳବୀ ଅଙ୍କଇ ବିଶ୍ୱେ ନୂଆ ଛବି
ସମାଜ ସାଥିରେ ତାଳ ପକାଇଲ
କଣ୍ଟକି ପଥରେ ନୀତିକି କଷି । ୨ ।

ଜାତୀୟତା ମଂତ୍ରେ ହେବାକୁ ଦୀକ୍ଷିତ
ବହୁ ଯୁବାଜନେ କରଇ ଶିକ୍ଷିତ
ପଞ୍ଚସଖା ତମେ ଏକା ମନ କଲ
ଛୁଟାଇଦେଲ କୁଞ୍ଜ ଉଠିଲ ହସି । ୩ ।

ଦେଲ ଇତିହାସ ତୁମକୁ ସନ୍ଧାନ
ଖାରବେଳ ଦେଶ ନୋହେ କେବେ ହୀନ .
ତାର କୀର୍ତ୍ତିଗଳି ବର୍ଣ୍ଣିଅଛି ଆଜି
ସାଗର ପତ୍ତାରେ ଉଠି ବିକଶି । ୪ ।

ବହିଲ ମଳୟ ଖେଳିଲ ବାସନା
ପୂର୍ଣ୍ଣ କରିବାକୁ ଦେଶର କାମନା ।
ଡେଙ୍ଗି ସ୍ୱତଦାଗ ହେଲ ଆତୁହରା
ଇଛୁଳା ନଇରେ ପଡ଼ିଲ ଝାସି । ୫ ।

ଗାଇଲ ସ୍ୱରଜ ପାଇବ ଏ ଦେଶ
ଗୋଲମି କି ଛାଡ଼ି ବେଗେ ଭଲ ଆସ
ତମ ଭବିଷ୍ୟତ ବାଣୀ ହେଲ ସତ
ଆମ ଦେଶୁ ଫେରିଗଲେ ବିଦେଶୀ । ୬ ।

( ପଣ୍ଡିତ ନୀଳକଣ୍ଠଙ୍କ ମହାପ୍ରୟାଣ ଉପଲକ୍ଷେ )

● ● ●

## ମହାପ୍ରାଣ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ତିରୋଧାନ ଉପଲକ୍ଷେ

କୋଟିପତି ଠାରୁ କୁଟୀର ବାସୀ
ଘଟ କାରିଗର ମୂଲିଆ ଋଷୀ
ସାରା ଦେଶ ଲୋକେ କାନ୍ଦନ୍ତି ତା ଲାଗି
କି ଆଉ ଲେଖିବି ମୁଁ ଆଉ ବେଶୀ ।

( ୧ )

ଜାତି ଇତିହାସ ପ୍ରାଚୀନ ସଂସ୍କୃତି
ଗଢ଼ିଥିଲ ତାର ଜୀବନୀ ଶକତି
ଗାଦୀ ପିନ୍ଧି ପୃଥ୍ୱୀ ବୁଲି ଆସିଲା ସେ
ତୋଷିଲା ସଭିଙ୍କି ବିନୟେ ଭଷି ।

( ୨ )

ଶିବ ହୋଇଗଲା ଆମ ଦେଶୁ ଉଡି
ଶବ ହୋଇ ପୁଣି ଆସିଲା ବାହୁଡ଼ି
ଗାନ୍ଧୀ ନୀତିରେ ସେ ବାନ୍ଧି ହୋଇଗଲା
ସତ୍ୟ ନ୍ୟାୟ ପାଇଁ ଚଳାଇ ଆସି ।

( ୩ )

ସେ ପାରିଛୁ ଅବା ଆସିଲା ଖବର
ମନର ବାସନା ପୂରିଛି ତମର
ଋଷୀ ଜବାନଙ୍କ ଜିମା ଦେଇ ଦେଶ
ଦମ୍ଭମାର ଟିକେ ଏ ପାରେ ଆସି ।

( ୪ )

ମନୁଷ୍ୟ ଜୀବନ ସବୁଠି ସମାନ
ନୀତିବଳେ ଯହିଁ ଚାଲିଛି ଶାସନ
ସେ ଦେଶ କୋଳରେ ଆଖି ବୁଜି ଦେଇ
ଅନନ୍ତ ଆକାଶେ ଗଲା ସେ ମିଶି ।

( ୫ )

ଯିବା ବେଳେ ଗଲ ଦେଇ ସେ ଇଙ୍ଗିତ
ବିଶ୍ୱ ଗଣ୍ଡ ଦିନେ ଗର୍ଜିବ ଜଗତ
ସମର ଶବଦ ରହିବ ବହିରେ
ଅସ୍ତ୍ରଯାକ ଯିବେ ସାଗରେ ଭାସି ।

● ● ●

## ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ପବିତ୍ର ଦେହାବଶେଷ ସ୍ଥାପନ ଉପଲକ୍ଷେ ଶ୍ରଦ୍ଧାଞ୍ଜଳି

ଯୋଗୀବର ତୁମେ ଯୁଗେ ନାଉରୀ
ତମ ଯୋଗ କଥା ଭାବିଲା ବେଳକୁ
ଅନ୍ତର ଆମର ଉଠେ ଶିହରୀ । ପଦ ।

ହେତୁ ହେଲା ଦିନୁ ମାନବ ଜାତିଙ୍କି
ଭଲ ପାଇ ସଦା ମାନବ ପ୍ରୀତିଙ୍କି
ଦେବତା ବେଶରେ ଜନମ ତୁମର
ଯୌବନ ଆରମ୍ଭୁ ପାରିଲ ବାରି । ୧ ।

ଉପାଧି ମୃଗୟା ପଛେ ପଛେ ଧାଇଁ
ଆତ୍ମାର ଶାନ୍ତିତ ନ ପାଇଲ କାହିଁ
ଭ୍ରମ ତୁଟିଗଲ ଆଶା ନ ମେଣ୍ଟିଲ
ଯାଇ ବିଲାତରୁ ଆସିଲ ଫେରି । ୨ ।

ଦେଖିଲ ସବୁଠି ମନୁଷ୍ୟ ରକତ
ଶୋଷନ୍ତି ମନୁଷ୍ୟ ହୋଇ ଉଲ୍ଲସିତ
ବିଦ୍ରୋହ ଅନଳ ଜଳିଲ ପ୍ରାଣରେ
ପ୍ରତି ରକ୍ତ ବିନ୍ଦୁ ଉଠିଲ ଥରି । ୩ ।

ନିଜ ବିବେକକୁ ଦେଇ ପର ଜିମା
ଭିକ୍ଷା ବୃତ୍ତି ନୁହେଁ ଆମ ଶିକ୍ଷା ସୀମା
ସିନ୍ଦୁକ ବନ୍ଧୁକ ମୁକ୍ତିର କଣ୍ଟକ
ସମଜିରେ ପଥୁ ଗଲ ଓହରି । ୪ ।

ଶୁଦ୍ଧ ବିନା ବୁଦ୍ଧି ଯେତେ ସବୁ ବ୍ୟର୍ଥ
ଯୋଗ ବିନା ଭୋଗ ଆଣଇ ଅନର୍ଥ
ମରମେ ମରମେ ବୁଝିଗଲ ତୁମେ
ବିଶ୍ୱ ଇତିହାସ ବିଚାର କରି । ୫ ।

ଜନ୍ମଭୂମି ହେଲ ତୁମ୍ଭକୁ ସନ୍ଧାନ
ଜଡ଼ଠାରୁ ବଡ଼ ଅଟଇ ଚେତନ
ବିଜ୍ଞାନ ଉପରେ ଅଛି ଦିବ୍ୟ ଜ୍ଞାନ
ଖୋଜିଲ ତାହାକୁ ଯୋଗ ଆଚରି । ୬ ।

କଲ ଅନୁଭବ ଆମ ମାଟି ପିଣ୍ଡ
ଭିତରେ ରହିଛି ଏ ସାରା ବ୍ରହ୍ମାଣ୍ଡ
ରବି ଶଶି ତାରା ସସାଗର ଧରା
ବାସଭୂମି ଏଠି ଅଛି ସବୁରି । ୭

ଅନ୍ଧାର ଭିତରେ ଅଛି ନବ ଜ୍ୟୋତି
ବୁଝିଲ ଅସୀମ ମାନବ ଶକତି

ମାନବର ଜ୍ଞାନ ମାନବ ବିଜ୍ଞାନ
ମିଶି ଫୁଟାଇବେ ସରସ ଶିରୀ । ୮ ।

ମହାଯୋଗୀ ତମ ଅନ୍ତର ବିଶ୍ୱାସ
ଧୀରେ ଧୀରେ ହୁଏ ପୃଥ୍ୱୀରେ ବିକାଶ
ରୋଗ ଶୋକ ଜରା ମୃତ୍ୟୁ ହାତୁ ଧରା
ତୁଟାଇବ ନିଜ ବନ୍ଧନ ଡୋରି । ୯ ।

● ● ●

## ଓଡ଼ିଶାର ମୁଖ୍ୟମଂତ୍ରୀ ପ୍ରଧାନ ଅତିଥି ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କ ଅଭିନନ୍ଦନ ଉପଲକ୍ଷେ

ଆହେ କେଶରୀ
ତମ ନାମ ଯାଇନି ସରି
ସାରା ଓଡ଼ିଶାର ତମେ କର୍ଣ୍ଣଧାର
ତମରି ଉପରେ ଆଖି ସବୁରି । ପଦ ।

କେତ ଝଡ଼ ଝଞ୍ଜା ସହିଛି ଜୀବନେ
ସ୍ୱାଧୀନତା ଛବି ଦେଖିଲ ସପନେ
ସପନ କଥାତ ହୋଇଅଛି ସତ
ଯାଇଛି ବିଦେଶୀ ଦେଶରୁ ଫେରି । ୧ ।

ଚୂନା କରି ଆମ ସୁନାର ସଂସାର
ହରି ନେଲେ ଆମ କଣ୍ଠ ହୀରା ହାର
ବହେ ରକ୍ତ ଧାର ହୋଇ ଧାର ଧାର
ଏ ଦେଶ ଛାତିରେ ବସିଛି ଛୁରୀ । ୨ ।

ଲଢ଼େଇ ଆମର ହୋଇ ନାହିଁ ଶେଷ
ଲଢ଼ିବାକୁ ହେବ ଗଢ଼ି ଆମ ଦେଶ
ଦରିଦ୍ରତା ସାଥେ ଗ୍ଲାନି ନୀତି ପଥେ
ଅସତ୍ୟ ଅନ୍ୟାୟ ଆମ ବଇରୀ । ୩ ।

ଯାଇଛନ୍ତି ଗୁରୁ ଦେଇ ଯେଉଁ ଶିକ୍ଷା
ଜପି ସେହି ମନ୍ତ୍ର ଘେନି ସେହି ଦୀକ୍ଷା
ମାନବ ଜାତିକୁ ହେବ ତାରିବାକୁ
ବିଶ୍ୱ ମୈତ୍ରୀ ଭାବ ପ୍ରଚାର କରି । ୪ ।

● ● ●

# କବିର ଛବି

ଭାବି ଭାବି ଭାବନାରେ          ଯାଏ ମୁଁ ଭାସି
ମୋ ମନର ଭାବନା          ପ୍ରାଣର ବାସନା
ପାରେ ନାହିଁ ପଦାରେ କାହିଁ ପ୍ରକାଶି । ପଦ ।

ସୂର୍ଯ୍ୟ ଉଠେ          କୋକିଳ ଡାକେ
ସରୋଜ ଫୁଟେ          ବକୁଳ ଲକ୍ଷେ
ଚନ୍ଦ୍ରମା ହସେ          ତରୁଣୀ ହୃଦେ
କୁମୁଦ ଲୁଟେ          ତହିଁରେ ଲକ୍ଷେ
ମଧୁ ଲୋଭେ ମଧୁକର ନାଚଇ ଆସି ।
ତା କୁନ୍ତଳେ ଦୋଳି ଖେଳେ ସୌରଭ ରାଶି । ୧ ।

ତଟିନୀ ବାଳା          ପ୍ରେମ ଉତାଳ
ଗୁଞ୍ଜେ ସାଥିରେ          ଫେନିଳ ମାଳା
ଘାଟୁ ନୀର ଘେନି ଫେରେ ଘରଣୀ ଗୁଷୀ । ୨ ।

ପଲ୍ଲବ ସାଥେ          ପବନ ମାତେ
ଗୋପ ବାଳକେ          ମୁରଲୀ ହାତେ
ଚଳି ଚଳି ବନ ପଥେ ଆସନ୍ତି ହସି । ୩ ।

ଧୂଳିରେ ଫଟି          ଧୂଳିରେ ଲୋଟି
ଧୂଳିରେ ଲୋଟି          ହୋଇବି ମାଟି
ନାହିଁ କେ କି ସାଥି ମୋର ଡାକିବ ଆସି । ୪ ।

● ● ●

# ପ୍ରଥମ ଅଙ୍କ

## —ପ୍ରଥମ ଦୃଶ୍ୟ—

ସରୋଜର ପଢ଼ାଘର–ସମୟ ଦିବା ୫ଟା

( ସରୋଜ ଗୋଟାଏ ଚେୟାରରେ ଆସୀନ–ମୁଖମଣ୍ଡଳରେ ଚିନ୍ତାର ଛାୟା–ଟେବୁଲ୍ ଉପରେ
ଦକ୍ଷିଣ ହସ୍ତ ରଖି ବସି ରହିଥିଲା ।)

ମନୋରଞ୍ଜନ—(ଅନ୍ତରାଳରୁ) ନମସ୍କାର ! ସରୋଜ ବାବୁ, ଭିତରକୁ ଯାଇପାରେ କି ?

ସରୋଜ—ଆଜ୍ଞା, କିଏ ସେ ଆସନ୍ତୁ । ନମସ୍କାର ।

ମନ—(ଟେବୁଲ ପାଖକୁ ଚାଲି ଯାଉ ଯାଉ) ଆଜ୍ଞା, ଆପଣଙ୍କର ବହୁ ମୂଲ୍ୟ ସମୟ ଉପରେ ହସ୍ତକ୍ଷେପ...

ସରୋଜ—ହେ ତୋ ପାଟି ମୁଁ କମା ବାରି ପାରିଲି ନାହିଁ । ଟିକିଏ ଅନ୍ୟମନସ୍କ ଥିଲି ।

ମନ—ଏଥର ମନସ୍କ ହୁଅନ୍ତୁ ଗରିବ କଥା ପଡ଼ି......

ସରୋଜ—ସେ ଫାଜିଲାମି ଛାଡ଼ି ଦେ—ବସ୍ ।

( ଟାଣି କରି ମନକୁ ବସାଇ ନିଜେ ବସିଲେ )

ମନ—କାଲି ଗତି ୭ଟା ବେଳେ, ୯ଟା ବେଳେ, ୧୧ଟା ବେଳେ ମଧ୍ୟ ଆସିଥିଲି । ତମର ଦେଖା ମିଳିଲା ନାହିଁ । ପରୀକ୍ଷା ମୁଣ୍ଡ ଉପରେ । କେଉଁ ପିଲଟା ଭଲ ରାତି ଅଧ୍ୟାଏ ବୁଲୁଛି ?

ସରୋଜ—ତୁ ଯାହା କହ ପଛେ, ପରୀକ୍ଷା ମୋ ମୁଣ୍ଡ ଉପରେ ନୁହେଁ । ପରୀକ୍ଷା ମୁଣ୍ଡ ଉପରେ ମୁଁ । ଯେଉଁ ଦିନ ପରୀକ୍ଷା ମୋ ମୁଣ୍ଡ ଉପରେ ବୋଲି ଭାବିବି ସେ ଦିନ ମୁଁ ଫେଲ୍ ହୋଇଯିବି ।

ମନ—ଆଚ୍ଛା, ସତ କହିଲୁ, କାଲି କୁଆଡ଼େ ଯାଇଥିଲୁ ?

ସରୋଜ—(ମନର ମୁଣ୍ଡ ଉପରେ ହାତ ବୁଲାଇ) ଏତେବେଳେ ଯାଇ ତୋ ମୁଣ୍ଡ ଠିକ୍ ହେଲା ତୁଣ୍ଡ ମଧ୍ୟ ପହିଲେ ମୁହଁରୁ ବାହାରିଲା—ଆପଣ—ତା ପରେ ତମେ ସେଇଠୁଁ ତୁ । ତୋତେ ତ ମୁଁ କେବେ ମିଛ କହେ ନାହିଁ । ତୁ ପୁଣି ଆଜି ପଚାରୁଛୁ ସତ କହିଲୁ ।

ମନ—ସରୋଜ, ସମସ୍ତେ ଆଶା କରନ୍ତି ଆମ ସ୍କୁଲ୍ ଏଥର ୟୁନିଭରସିଟିରେ ଫାଷ୍ଟ ହେବ । ପରୀକ୍ଷାକୁ ପରୀକ୍ଷା ବୋଲି ମନେ କରିବା ଉଚିତ୍ ।

ସରୋଜ—ହେଲେ ହେବ, ନ ହେଲେ ନ ହେବ ମାତ୍ର ମୁଁ ସବୁବେଳେ ବହି ପାଖରେ ବକ ଧ୍ୟାନରେ ବସି ପାରିବି ନାହିଁ । କାଲି ଆଉ ଗୋଟାଏ ପରୀକ୍ଷା ହଠାତ୍ ଆସି ପହଞ୍ଚିଲା । ବହି ବନ୍ଦ କରି ସୁରେଶ ଘରକୁ ଚାଲିଗଲି । ( ଗମ୍ଭୀର ହୋଇ ବସିଗଲା )

ମନ—ମୁଁ ଜାଣେ ସେ କଥା । ତୁ ବଡ଼ ମୁହଁ ବଢ଼ିଆ । ଦେଖ୍ ଯେତେ ଯୁବକ ପୃଥିବୀରେ ନଷ୍ଟ ହୋଇଛନ୍ତି ଅଧିକାଂଶ ବନ୍ଧୁମାନଙ୍କ ମୋହବତ୍‌ରେ—ତୋତେ ବରାବର କହି ଆସିଛି କଳା ଘରେ ପଶିଲେ କଳା ଲାଗେ ।

**ସରୋଜ**—ତୁ ଯାହା କହିଲୁ ତା ଅକ୍ଷରେ ଅକ୍ଷରେ ସତ । ମୋର ଆଉ ସେ ଦିନ ନାହିଁ—ଲଭି ଯାଇଥିଲି ଲଭି ଯାଇଥାନ୍ତି । ମୋହବନ୍ଧର ଭଉଁରୀରେ ପଡ଼ି ଶେଷ ପାଇ ଯାଆନ୍ତାଣି, ତୋ ସଙ୍ଗେ ଯଦି ଦେଖା ହୋଇ ନଥାନ୍ତା । ମୁଁ ଆଜି ଭଲ ରୂପେ ବୁଝିଛି ବନ୍ଧୁ କିଏ ବନ୍ଧୁକ କିଏ ?

**ମନ**—କାଲି କ'ଣ ଏତେ ଦରକାର ପଡ଼ିଲା ସୁରେଶ ଘରକୁ ଯିବାକୁ ?

**ସରୋଜ**—ତାର ଅବସ୍ଥା ଦେଖିଲେ ତୁ ଧୈର୍ଯ୍ୟ ଧରି ରହି ପାରିବୁ ନାହିଁ । ମୁଁ କଳ୍ପନା କରିପାରୁ ନାହିଁ । ମନୁଷ୍ୟ ଏପରି ରହନ୍ତି ବୋଲି । ତା ଘରେ ପିଇବାକୁ ଗିଲାସଟାଏ ନାହିଁ କି ଶୋଇବାକୁ ବିଛଣା ଖଣ୍ଡେ ନାହିଁ । ତୁ ଆସିବା ଆଗରୁ ମୁଁ ସେଇ କଥା ଭାବୁଥିଲି । ଆମର କି ଅଧିକାର ଅଛି ଏପରି ମଉଜରେ ରହିବାକୁ ?

**ମନ**—ମୁଁ ତାଙ୍କ ଘର ସମ୍ବନ୍ଧରେ ବହୁତ କଥା ଶୁଣିଛି ।

**ସରୋଜ**—ହୁଁ—ଲୋକେ ବହୁତ କଥା କହି ପାରନ୍ତି । ତା ମା ପନ୍ଦର ଦିନ କାଳ ରୋଗ ଶଯ୍ୟାରେ ପଡ଼ି ବଞ୍ଚରେ ସଢ଼ିଲା । କେତେ ଜଣ ଭଲ ତାକୁ ପଚାରିଲେ ? ମନୁଷ୍ୟତା ଦୃଷ୍ଟିରୁ କେହି କାହାକୁ ପଚାରିବେ ନାହିଁ ?

**ମନ**—ସେ ଯାହାହେଉ ତୋର ସ୍ୱାସ୍ଥ୍ୟ ମୋ ପକ୍ଷରେ ଆଉ ଜାତି ପକ୍ଷରେ ମୂଲ୍ୟବାନ୍ । ସେତ ତବଇ୍ ସଂକ୍ରାମକ ଜାଗା । ମୁଁ ତୋତେ ସେଠିକି ଯିବାକୁ ଦେବି ନାହିଁ ।

**ସରୋଜ**—ମନ, ତବଇ୍ ସଂକ୍ରାମକ ଅର୍ଥଟା ମୁଁ ବେଶ୍ ବୁଝି ପାରୁଛି । ପର କଥାରେ ଲବଙ୍ଗକୁ ସଂକ୍ରାମକ ବ୍ୟାଧି ବୋଲି ଭାବିବା ଭୁଲ । ତାର ପାପ ସେ ଜନ୍ମିଛି ଗରୀବ ଘରେ । ସେ ଆମ ଘରେ ଜନ୍ମିଥିଲେ ?

**ମନ**—ସେ ଯାହା ହେଉ ତାକୁ ଦୂରରେ ରଖି ସାହାଯ୍ୟ ଦେ ।

**ସରୋଜ**—ମୁଁ ବା କ'ଣ ସାହାଯ୍ୟ ଦେବି ? ତାଙ୍କର ତ ସର୍ବନାଶ ହୋଇଗଲା । ମୋର ଆଖି ଆଗରେ ନାଚୁଛି ସେ ଛବିଟା । କଥା କହୁ କହୁ କିପରି ତା ମା' ଶେଷ ହୋଇଗଲା ।

**ମନ**—ଦିନେ ତ ସମସ୍ତେ ଶେଷ ହେବେ ।

**ସରୋଜ**—ମୋର ହଠାତ୍ ମା'ଙ୍କ କଥା ମନେ ପଡ଼ିଗଲା । ସେତିକିବେଳକୁ ମୋତେ କିଛି ଭଲ ଲାଗୁ ନାହିଁ । ତୋତେ ଦେଖିଲା ବେଳୁ ଟିକିଏ......

( ତାର କଣ୍ଠରୁଦ୍ଧ ହୋଇଆସିଲା )

**ମନ**—ହେଲା ମୁଁ ଯାଉଛି (ଉଠି) ହଷ୍ଟେଲ୍‌ରେ ଯୋଲ୍‌ନଲ୍ ହେବଣି । ପର୍ଯ୍ୟାପ୍ତ କର ।। ଯେଉଁଟା ଯାଉଛନ୍ତି ପଛକୁ ନଚାହିଁ ଆଗକୁ ଚାହିଁ । (ପ୍ରସ୍ଥାନ)

( ସରୋଜ ପୂର୍ବବତ୍ ବସି ରହିଲା )

—ପଟକ୍ଷେପ—

## —ଦ୍ୱିତୀୟ ଦୃଶ୍ୟ—

( ବସନ୍ତ ବାବୁ ଚେୟାର୍‌ରେ ଉପବିଷ୍ଟ । ଅଗରେ ଟେବୁଲ୍ । ଟେବୁଲ୍‌ଟିରେ କେତେଗୁଡ଼ିଏ ଫାଇଲ୍, ଟ୍ରେ ଓ ଦୁଆତ ଦାନୀରେ ପୂର୍ଣ୍ଣ—ବସନ୍ତ ବାବୁ କଲମ ଧରି ଫାଇଲ୍ ଦସ୍ତଖତ୍ କରିବାରେ ବ୍ୟସ୍ତ । ଗୋଟି ଗୋଟି କରି ଧଡ଼ିଆ ପାଖକୁ ପକାଇ ଦେଉଥିଲେ । ସେଗୁଡ଼ାକ ସେ ଗୁଡ଼ି ବାନ୍ଧି ରଖୁଥିଲା । )

ବସନ୍ତ ବାବୁ—(ଲେଖୁ ଲେଖୁ)–ଧଡ଼ିଆ, ମା'ଙ୍କୁ କହିଲୁ ପାନପାଇଁ ।

ଧଡ଼ିଆ— ପାନ ତ ନଥିଲା—( କାଗଜ ପତ୍ର ବାନ୍ଧୁ ବାନ୍ଧୁ ) ଏଇକ୍ଷଣି ଦେଇ ଆସିଲି—ସର୍ଜ୍ଜ ସାରିବେଣି ।

ବସନ୍ତ—ଆଚ୍ଛା ତୁ ଯାଇ ଏ ଫାଇଲ୍‌ଟା ରାମବାବୁଙ୍କୁ ଦେଇ ଆସିବୁ । ମା'ଙ୍କୁ କହି ଯା ପାନ ଦି' ଖଣ୍ଡ ତଥିକ ଦେଇଯିବେ ।

( ଧଡ଼ିଆର ଫାଇଲ୍ ନେଇ ପ୍ରସ୍ଥାନ—ଗାୟତ୍ରୀ ଆସିଛନ୍ତି ହାତରେ ପାନଥାଳୀ ଧରି । ଟେବୁଲ୍ ଉପରେ ପାନ ରଖି ଦେଇ ନୀରବରେ ଠିଆ ହୋଇ ରହିଲେ କିଛିକ୍ଷଣ । )

ବସନ୍ତ—( ଗାୟତ୍ରୀଙ୍କୁ ଚାହିଁ ଓ ଚଷମା ଟେବୁଲ୍ ଉପରେ ରଖି ଦରହାସିତ ବଦନରେ ) କେମିତି ଏକମ ତମେ ? ଆଖିକୁ କ'ଣ ଦେଖାଯାଉ ନାହିଁ ? କାଳି ହାତ କିମିତି ଖାଇବି ?

ଗାୟତ୍ରୀ—ମୋତେ କିମିତି ଅବା ଦେଖାଯିବ ? ମୋର ତ କମା ଯୋଡ଼ାଏ ଆଖି, ତମ ପରି ଚାରିଟା ଆଖି ହୋଇଥିଲେ ସିନା......

ବସନ୍ତ—ହେଉ ଦିଅ ଦିଅ......ତଣ୍ଡି ଶୁଖିଗଲାଣି ।

ଗାୟତ୍ରୀ—କୋଡ଼ିହଣା କାମ କି ? ଛାଇରେ ବସି ବସି ତଣ୍ଡି ଶୁଖି ଯାଉଛି ?

ବସନ୍ତ—କୋଡ଼ିହଣାଠାରୁ କଲମ ହଣା ବେଶୀ କଷ୍ଟ । ତାକୁ ସିନା ବୁଝିବା ଲୋକ ବୁଝିବେ । ତୁମେ ତ ମାଇପି ଜାତି ବୁଝିବ କ'ଣ ?

ଗାୟତ୍ରୀ—(ଅଭିମାନରେ) ତମର ସବୁ ଦିନେ ଆମ ଜାତିକି ବେଖାତିରି । ମୋତେ ଗାଳି ଦିଅ ପଛେ ମୋ ଜାତିଟାକୁ କିଆଁ ଗାଳି ଦେଉଛ ?

ବସନ୍ତ—ହେଉ ବାବୁ ତମ ଜାତିକୁ ମୋର କୋଟି ଜୁହାର । ପାନ ଖଣ୍ଡେ ଦେଇ ଆଗ । (ଗାୟତ୍ରୀ ଖଣ୍ଡେ ପାନ ଖୁଆଇ ଦେଲେ ଓ ନିକଟସ୍ଥ ଟୁଲ୍ ଉପରେ ବସି ପଡ଼ିଲେ ।) ଥଟ୍ଟାରେ କହୁ କହୁ ଦେହକୁ ଟାଣି ନେଇ ନା ? ତମ ଅପେକ୍ଷା ତମ ନାରୀ ଜାତିଟା ପ୍ରତି ମୋର ବିଶେଷ ଭକ୍ତି, ସ୍ନେହ ଓ ପ୍ରୀତି ଅଛି ବୁଝିଲ ?

ଗାୟତ୍ରୀ—ଗାଁ ପରିମଳ ଧୋବା ତୁଠରୁ । ସେ କଥା ମୋତେ ସଫା ଜଣା ପଡ଼ିଯାଉଛି ଯେ । ସେ ଗୁଡ଼ାକ ମୋ ଆଗରେ କୁହନା—ସଭାରେ ଭାଷଣ ଦେଲାବେଳେ, ପରୀକ୍ଷାରେ ରଚନା ଲେଖିଲା ବେଳେ ତା ଶୋଭା ପାଇବ । ଏ ଦେଶରେ ନାରୀ ଜାତିର ଯେଉଁ ମର୍ଯ୍ୟାଦା ?

ବସନ୍ତ—ଆମ ଦେଶ ପରି ଅନ୍ୟ କୌଣସି ଦେଶ ନାରୀ ଜାତିକି ଏତେ ଉଚ୍ଚ ସ୍ଥାନ ଦେଇ ନାହିଁ । ଏହି ଦେଶ ଅଦ୍ୟାବଧି ଲକ୍ଷ୍ମୀ, ସରସ୍ୱତୀ ଓ ଦୁର୍ଗାଙ୍କର ପୂଜା କରି ଆସିଛି । ଜାଣିଛ ?

ଗାୟତ୍ରୀ—ହଁ ଜୀଅନ୍ତା ପ୍ରତିମାକୁ ହରି କାଠରେ ପକାଇ ମାଟି ପ୍ରତିମା ପାଖରେ ହରିନାମ କଲେ ବିଫଳ ।

ବସନ୍ତ—ଆଚ୍ଛା କଥାଟିଏ ମନ ପକାଇ ଦେଲ । ପ୍ରତିମା ବିଷୟରେ କ'ଣ କରିବା କହିଲ ଭଲ ? ତା ହେଡ୍‌ମାଷ୍ଟର ତ ମୋ ପାଖକୁ ବରବର ଚିଠି ଲେଖୁଛନ୍ତି ।

ଗାୟତ୍ରୀ—ସେ କଥାରେ ମୁଁ ମଲ୍ଲୀ କି ଚମ୍ପା କିଛି ପାଟି ଫିଟାଇବି ନାହିଁ । ତମର ସେ ଭଉଣୀ । ତମେ ତାର ଭାଇ—ତମେ ଯାହା କରିବ ତାହା ହେବ ।

ବସନ୍ତ—ବାଃ ମୋର ସେ ଭଉଣୀ ତମର ସେ କିଛି ନୁହଁ ?

ଗାୟତ୍ରୀ—କିଛି ନୁହଁ କାହିଁକି ? ସେ ଯେଉଁଠିକି ଯିବ ନାଁ ପଡ଼ିବ ମୋରି । ଭଲ ମନ୍ଦ ହେଲେ ଲୋକେ କହିବେ—ମା ନ ଥିଲା—ଭାଉଜଟା ଯେମିତି ବଢ଼େଇଛି—ସେ–ମି–ତି

ବସନ୍ତ—ମୁଁ ଆଉ କ'ଣ କରିବି ? ମୋତେ ତ ଟିକିଏ ଫୁରୁସତ୍ ନାହିଁ । ଯାହାକୁ ଯେମିତି କହିବାର କହିଲି । ଖବର କାଗଜରେ ନୋଟିସ୍ ଦେଲି । କେଉଁଠୁ ସେମିତି ସୁବିଧା......

ଗାୟତ୍ରୀ—ତମର ପଇସା ସବୁ ନଥିଲା—ଖବର କାଗଜରେ ନୋଟିସ୍ ଦେଉଥିଲ । ମୁଁ କେତେଥର ତୁମକୁ କହିଛି ତାର ବାହାଘର ପାଘର ଏକ୍ଷଣି ପକାଅ ନାହିଁ । ମୋଟେ ତ ଚଉଦ ବର୍ଷର ହୋଇଛି । ପଢ଼ୁ ଗୁଣର ହେଉ ।

ବସନ୍ତ—ସତ କହିଲେ ମୋର ଏ ଶିକ୍ଷା ପ୍ରତି ବିଶ୍ୱାସ ନାହିଁ କି ଆସ୍ଥା ନାହିଁ । ଏ ଶିକ୍ଷା ଆମକୁ ନିକମା କରୁଛି । ପଢ଼ି ପଢ଼ି ବଡ଼ ବଡ଼ କବିତା ଲେଖିବେ—ମାତ୍ର ପିଲାପିଲିଙ୍କି ସ୍ୱାମୀ ଶ୍ୱଶୁରଙ୍କୁ ମୁଠାଏ ରାନ୍ଧି ଦେଇ ପାରିବେ ନାହିଁ ।

ଗାୟତ୍ରୀ—କଥାଟା କିଛି ଦି ଆଡ଼କୁ ପାଉଛି । ପୂଝାରୀ ନ ଥିଲେ ମୁଁ କଣ ଗେଷେଇ କରିଦିଅନ୍ତି ନି । ଚୁଲି ଉପରେ ମୁଠାଏ ବସାଇ ଉଠାଇ ନେବାଟା ବଡ଼ କଥା ନୁହେଁ । ଅସଲ ହେଉଛି ଘରର ସବୁ କଥା କରନ୍ତା ବୁଝି ଘର ସମ୍ଭାଳିବା । ଶିକ୍ଷା ସ୍କୁଲରେ ହୁଏ ନାହିଁ । ଅସଲ ଶିକ୍ଷା ସ୍ଥାନ ହେଉଛି ଘର । ବାପ, ମା, ଭାଇ ଭଉଣୀ, ସାଙ୍ଗ ସାଥି, ସାଇ ପଡ଼ିଶା ଜୀବନରେ ଏମାନେ ହିଁ ମୋହର ପରି ଛାପା ବାଢ଼େଇ ଦିଅନ୍ତି ।

ବସନ୍ତ—ତମେ ଯାହା କୁହ, ଏ ଶିକ୍ଷା ଆମ ଆଦର୍ଶକୁ ଖାପ ଖାଉ ନାହିଁ ।

ଗାୟତ୍ରୀ—ଖାପ ଖାଉ ନାହିଁ ତ ଘରେ ଜଣେ ମାଷ୍ଟର ରଖି ପଢ଼ାଉନା । ତୁମେ ଯାହା ଭଲ ଭାବୁଛ ତା କର । ନିଜେ ତା ପଢ଼ାପଢ଼ି ଦେଖ । କହିଲେ ତ ଚିଡ଼ି ଉଠିବ । ତମେ ତ ତାର ଭାଇ । ଦିନେ ଭଲ ଦେଖିଲଣି—ସେ କ'ଣ ପଢ଼ୁଛି ? ଖାଲି ଲୋକ ଦେଖାଣିଆକୁ ପଢ଼ା । କଥାରେ ଅଛି 'ମନରେ ନାହିଁ କି ମାଳିରେ ନାହିଁ, ମାଳି ଜପି ଜପି ପାଇବୁ କାହିଁ ?'

ବସନ୍ତ—ଆଚ୍ଛା ଏବେ ତୁମେ ଯାହା କହିବ ମୁଁ ତା କରିବି ।

ଗାୟତ୍ରୀ—ତମେ କିଛି ତା ପିଛାରେ ଖରଚ ଖାଲିଏ ଖର୍ଚ୍ଚ କରୁ ନାହିଁ । ବାପା ତା ପାଇଁ ଯେଉଁ ଟଙ୍କା ରଖି ଯାଇଛନ୍ତି, ସେତିକିରେ ସେ ଆଉ ପାଞ୍ଚ ବର୍ଷ ପଢ଼ିବ । ମୋର ଇଚ୍ଛା ସେ ପଢ଼ୁ.....ଯେତେ ଦୂର ପଢ଼ିବ ।

ବସନ୍ତ—ହଉ ସେଇଆ ହେଉ । ତା ଦାୟିତ୍ୱ ତୁମ ଉପରେ । ମୁଁ ତୁମ ହୁକୁମ ବିନା ତା ବିଷୟରେ କିଛି କରିବି ନାହିଁ ।

ଗାୟତ୍ରୀ—ହଁ ଏମିତି ଗୋଟିଏ ଗୋଟିଏ ଦାୟିତ୍ୱ ନିଜ ମୁଣ୍ଡ ଉପରୁ ଖସାଇ ପାରିଲେ ଭଲ । ତମ ଭଳି ଲୋକଙ୍କର ଘର ସଂସାର କରିବା ଉଚିତ୍ ନଥିଲା । ଆଉ ଗୋଟାଏ ଦାୟିତ୍ୱ—କଟେଲୀ ଯିବା । ସେଟା ତ ମୋତେ ଦେଇ ପକାଇଲେ ଭଲ ହୁଅନ୍ତା ।

ବସନ୍ତ—ପ୍ରକୃତରେ ତୁମେ ସେଇଆ ଭାବୁଥିବ ଯେ—ସେ ଦାୟିତ୍ୱଟା ମୋ ଉପରେ ପଡ଼ିଲେ ତୁମେ କ'ଣ ଖୁସି ହୁଅନ୍ତ ନାହିଁ ? ଲୋକେ ଯାହା କହିଛନ୍ତି ତାହା କ'ଣ ମିଛ ?

ଗାୟତ୍ରୀ—ଲୋକେ କହୁଛନ୍ତି କ'ଣ ? ମୁଁ ତ ସଫା ମାନୁଛି । ମୋ ଭଳି ଅଶିରଚଣ୍ଡୀ ଏ ଦେଶରେ ପାଞ୍ଚ ହଜାର ଯଦି ବାହାରନ୍ତେ ତେବେ ଏ ଦେଶର ଜଳବାୟୁ ବଦଳି ଯାନ୍ତା—ଏମିତି ଦାସଙ୍କର ଦାସୀ ହୋଇ ରହିବାଠାରୁ.....

—ପଟ ପରିବର୍ତ୍ତନ—

## —ତୃତୀୟ ଦୃଶ୍ୟ—

ବନବାବୁଙ୍କ ବାହାର ଘର—ସମୟ ସନ୍ଧ୍ୟା ୫ଟା ।

(ଘୁଙ୍କର ଡଷ୍ଟର ଧରି ଟେବୁଲ ସଫା କରିବାରେ ବ୍ୟସ୍ତ ଥିଲା । ଚକ୍ରଧରର ପ୍ରବେଶ )

ଚକ୍ରଧର—ଆରେ ବାବୁ ଅଛନ୍ତି ? (କେହି ଭିତରକୁ ପଶିଗଲେ)

ଘୁଙ୍କର—ଆଜ୍ଞା ହଁ ଅଛନ୍ତି ।

ଚକ୍ରଧର—ଟିକିଏ ଡାକି ଦେଲୁ । (ଘୁଙ୍କର ଯିବାକୁ ଉଦ୍ୟତ ହେଲା) ହଁ ଶୁଣ ବାବୁ କାମରେ ବ୍ୟସ୍ତ ଥିଲେ ଡାକିବୁ ନାହିଁ । ମୋତେ କହିଯିବୁ ବୁଝିଲୁ । (ଘୁଙ୍କର ପ୍ରସ୍ଥାନ କଲା—ଚକ୍ରଧର ବାବୁ ଗୃହ ମଧ୍ୟରେ ପଦ ଚାରଣ କରିବାକୁ ଲାଗିଲେ—ମୁଖମଣ୍ଡଳରେ ଚିନ୍ତାର ଛାୟା ।)

ବନ—(ପ୍ରବେଶ କଲେ) କିଏ ଚକ୍ରଧର ବାବୁ, ନମସ୍କାର । ନମସ୍କାର !!

ଚକ୍ରଧର—ବୋଧହୁଏ ଆପଣ ବିଶ୍ରାମ କରୁଥିଲେ । ଆପଣଙ୍କୁ କଷ୍ଟ ଦେଲି (ଟିକିଏ ହସିଲେ)

ବନ—(ଦୁହେଁ ବସିଲା ପରେ) ଆମ ଜୀବନରେ ବିଶ୍ରାମ କାହିଁ ? ଘୁରିଟାବେଳେ ଆସି ଜଳଖିଆ ଖାଇଛି ଖବର ପହଞ୍ଚିଲା ଟାଉନ ହଲରେ କ'ଣ ଗୋଟିଏ ସଭା ହେଉଛି । ସେଇଠି ଯାଇ ସାଇକେଲରେ ଫେରୁ

ଫେରୁ ଗୋଟିଏ ଆକ୍‌ସିଡେଣ୍ଟରେ ଗୋଡ଼ଟା ଛିଡ଼ିଗଲା (କ୍ଷତ ସ୍ଥାନରେ ନଇଁପଡ଼ି ହାତ ମାରିବା)

ଚକ୍ର—(ଆଶ୍ଚର୍ଯ୍ୟ ହୋଇ କ୍ଷତ ସ୍ଥାନକୁ ନିରୀକ୍ଷଣ କଲେ) ସେ ଚାକର ନାଆଁ କ'ଣ ?

ବନ—ଶ୍ୟାମ

ଚକ୍ରଧର—(ଶ୍ୟାମକୁ ଡାକି) ଆରେ ବିଶଲ୍ୟକରଣୀ ପତ୍ର ଦିଟା ବାଟି ଆଣିଲୁ ।

ବନ—ବୁଝିଲେ ! ଚାକିରି କଲେ ମଣିଷ ସରିଗଲା । ଆପଣଙ୍କ କଥା ଆମ କଥା ।

ଚକ୍ରଧର—ନାଇଁ ଆଜ୍ଞା, ଆମେ ଯେ ସ୍ୱାଧୀନ ବୋଲି ଘରେ ବସୁ, ତାହା ନୁହେଁ, ଆମଠୁ ବେଶୀ ପରାଧୀନ ଆପଣ ନୁହଁନ୍ତି । ଏଇ ଦେଖନ୍ତୁ ୮ଟା ବେଳକୁ ଟିକିଏ ସରବତ୍ ଖାଇ ବାହାରିଲି ଯେ ହୋଟେଲ୍ ହୋଇ ବସାକୁ ଫେରୁ ଫେରୁ ଘଡ଼ି ଏଗାରଟା ହେବ ।

ବନ—ଆପଣ କ'ଣ ଏବେ ହୋଟେଲରେ ରହୁଛନ୍ତି ନା ?

ଚକ୍ରଧର—ହଁ ଆଜ୍ଞା, ତେ ହୋଟେଲରେ ଏବେ ମୋର ବନ୍ଦୋବସ୍ତ ହେଲାଣି । ଘରର ପୂଜାରୀ ରଖିବା ବଡ଼ ଝିନ୍‌ଝଟ ପଡ଼ିଲା । ମୁଁ ହିସାବ କରି ଦେଖୁଛି........ ଘର ଅପେକ୍ଷା ହୋଟେଲ୍ ଶସ୍ତା ।

ବନ—(ଟିକିଏ ଚିନ୍ତାକରି) ଆଚ୍ଛା, ଆପଣ ମୋର ଆଉ ଗୋଟିଏ ଉପକାର କରିପାରିବେ କି ? ମେଦିନାପୁରରୁ ଗୋଟାଏ ଲୋକ ଆସି ସେ ହୋଟେଲ୍‌ରେ ରହୁଛି । ସେ କାହିଁକି ଆସିଛି ? ସେ କୁଆଡ଼େ ଯାଏ ? କ'ଣ କରେ ମୋତେ ତାର ଟିକିଏ ସନ୍ଧାନ ଦେଇପାରିବେ କି ? ଏତକ କରିପାରିଲେ ମୁଁ ବଡ଼ କୃତଜ୍ଞ ହୁଅନ୍ତି ।

ଚକ୍ରଧର—(ମୃଦୁ ହସି) ଏତିକି କଥା ଆପଣଙ୍କ ପାଇଁ କରିପାରିବି ନାହିଁ ? କଣ କହୁଛନ୍ତି ଆପଣ ? ମୁଁ ଯେତେବେଳେ ସିଟି କଲେଜରେ ପଢ଼ୁଥିଲି ଜଣେ ସି. ଆଇ. ଡ଼ି ବନ୍ଧୁକୁ ସ୍ୱଦେଶୀ ଆନ୍ଦୋଳନରେ ପ୍ରାଣେ ପ୍ରାଣେ ସାହାଯ୍ୟ କଲି । ସେ ସାଧାରଣ ଇନ୍‌ଫର୍ମରୁ ଇନ୍‌ସିପେକ୍ଟର ପର୍ଯ୍ୟନ୍ତ ଉଠିଗଲେ । ହେ- ହେ- (ହସିଲେ)

(ଚାକରର ବିଶଲ୍ୟକରଣୀ ବଟା ହସ୍ତେ ପ୍ରବେଶ)

ବନ—ଆରେ ଖଣ୍ଡେ ସଫାକନା ଆଣିଲୁ ନାହିଁ ?

ଚକ୍ରଧର—ଆଜ୍ଞା ମୋ ପାଖରେ ଅଛି । (ପକେଟରୁ ରୁମାଲ କାଢ଼ି ବନବାବୁଙ୍କ ଗୋଡ଼ରେ ଗୁଡ଼ାଇ ଦେବାକୁ ଯିବା)

ବନ—(ବାଧା ଦେଇ) ଥାଉ ଥାଉ । ଆପଣ କାହିଁକି ବାଂଧିବେ ? ଯା ନା ଗୋଟିଏ କଥା । ଶ୍ୟାମ ତ ଅଛି ଆପଣ କାହିଁକି ବୃଥାରେ କଷ୍ଟ କରିବେ ।

ଚକ୍ରଧର—ଏ ହେଁ ସେଥିରେ କଣ ଅଛି ? ଆପଣ ମୋର ବନ୍ଧୁ ଯେତେବେଳେ........

ବନ—ମୁଁ ବଡ଼ ଦୁଃଖିତ ଏବଂ ଲଜ୍ଜିତ । ଆପଣ ତିନିଥର ଗଲେଣି । ଏଥର ତିନି ଚାରିଖରେ ନିଶ୍ଚୟ ।

ଚକ୍ରଧର—ଏକ ଲକ୍ଷ ପୂରଣ ହେବାକୁ ମୋର ଆଉ ଦଶହଜାର ବାକି ଅଛି । ସେଟା ଆପଣଙ୍କ ଦ୍ୱାରା ପୂରଣ ହେବ । ଆଉ.............

ବନ—ନା ଭଇ, ମୁଁ ଦଶ ହଜାର ପାରିବି ? ତେବେ ତିନି ହଜାର ମୁଁ ଦେବି । ବାକି ସାତ ହଜାର ଅନ୍ୟଠାରୁ କରଜ ଦେବି । ସେ ବସନ୍ତ କହୁଥିଲା........

ଚକ୍ରଧର—ନା ଆଜ୍ଞା, ସେ ଆଉ ଅଛି ? ତାକୁ ଓରିୟାଣ୍ଟାଲ୍ ମାରି ନେଲାଣି । ସେ ପାଞ୍ଚ ହଜାର ଟଙ୍କାର କେଣ୍ଟା................

ବନ—ଆଚ୍ଛା ହେଉ ଯେଉଁଠୁ ହେଲେ ମୁଁ କରଜ ଦେବି । ହଁ ଗୋଟାଏ ଭଲ କଥା ମନେ ପଡ଼ିଲା । ଆପଣଙ୍କର ବିବାହ ହୋଇଛି ?

ଚକ୍ରଧର—(ମୃଦୁହସି) ନା ଆଜ୍ଞା ।

ବନ—ମୁଁ ଗୋଟିଏ ଜୀବନ ବୀମାର ପ୍ରସ୍ତାବ କରିବି । ପିଲାଟି ଆପଣଙ୍କ ପାଇଁ ଖୁବ୍ ଉପଯୁକ୍ତା । ସେ ଜଣେ ମୋର ବନ୍ଧୁଙ୍କର ଭଉଣୀ ଶିକ୍ଷିତା ବି ।

ଚକ୍ରଧର—(ପକେଟ୍‌ରୁ ସିଗାର କାଢ଼ି) ନିଅନ୍ତୁ ନା ଆଜ୍ଞା ।

ବନ—ଆପଣଙ୍କ ଜବାବ୍ ଆପଣ ଦେବେନା ଆପଣଙ୍କର କିଏ ମୁରବୀ ଅଛନ୍ତି ?

ଚକ୍ରଧର—ମୋର ମୁରବି ତ ମୁଁ । ନିଜ ଗୋଡ଼ରେ ନିଜେ ଆଜି ଯାଏଁ ଠିଆ ହୋଇ ଆସିଛି । ମୋର ଉଦ୍ଦେଶ୍ୟ ହେଉଛି ବ୍ୟବସାୟ । ବାଣିଜ୍ୟେ ବସତେ ଲକ୍ଷ୍ମୀ । ସେହି କାରଣରୁ ଚାକିରି ନକରି ମୋର ଯାହା ପୈତୃକ ଜମି ଜମିଦାରୀ ସବୁ ବିକ୍ରିକରି ଭିନ୍ନ ଭିନ୍ନ ବ୍ୟାଙ୍କରେ ଡିପୋଜିଟ ରଖିଛି । ଆଉ ଡିଫେନ୍‌ସ ବଣ୍ଡ କିଣିଛି । ରିଜର୍ଭ ବ୍ୟାଙ୍କରେ ବି କିଛି ସେୟାର କିଣିଛି । ମୋର ପ୍ଲାନ୍ ଗଡ଼ଜାତରେ ଯେତେ ହରିଡ଼ା, ବାହାଡ଼ା, କୋଚିଲା ଅଛି ସବୁ ମନୋପଲି କରି ଏକଚାଟିଆ ପଟ୍ଟା ନେଇ ଭରନ୍ତ ବାହାରକୁ ପଠାଇବି । ଚିଲିକା ମାଛ ବ୍ୟବସାୟକୁ ହାତକୁ ନେଇ ଟାଟା କଲିକତାକୁ ରପ୍ତାନୀ କରିବି ।

ବନ—(ଈଶତ୍ ହାସ୍ୟ ବଦନରେ) ଆପଣଙ୍କର ଉଦ୍ଦେଶ୍ୟ ସହିତ କିନ୍ତୁ...........ଏକାକୀ..........

ଚକ୍ରଧର—ସେଇ ସକାଶେ ଏପରି ଜଣେ ସାଥି ଖୋଜୁଛି ଯେ ବ୍ୟବସାୟରେ ପୁରପୁରି ସାହାଯ୍ୟ କରିବ । ମାଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ପଢ଼ିଥିବ । ଟାଇପ୍ ରାଇଟିଂ ଜାଣିଥିବ । ଚତୁରତା ସହିତ କ୍ୟାନ୍‌ଭ୍ୟାସିଂ କରି ପାରିବ ଯେମିତି ।

ବନ—ପ୍ରକୃତରେ ଆପଣଙ୍କୁ ଏଭଳି ସହଧର୍ମିଣୀ ଲୋଡ଼ା । ମୁଁ ଯେତେଦୂର ଅନୁମାନ କରୁଛି ସେ ପାରିବ । କେବଳ ଟାଇପ୍ ରାଇଟିଂଟା ଶିଖାଇ ଦେବାକୁ ପଡ଼ିବ । ଆପଣଙ୍କର ଆଉ ଦାବି ତ କିଛି ନାହିଁ ।

ଚକ୍ରଧର—ସେଟା ମୁଁ ଆପଣଙ୍କ ଉପରେ ଛାଡ଼ିଦେଲି । ଯୌତୁକ ପ୍ରଥା ଦ୍ୱାରା ଯେ ଆମ ଦେଶର ଜାତିର ସର୍ବନାଶ ଘଟୁଛି ।

ବନ— ତେବେ ଆପଣ କ'ଣ କନ୍ୟା ଦେଖିବାକୁ ଚାହାନ୍ତି ? ଆଜି କାଲିତ ହୋଇଗଲାଣି । ନୋହିଲେ ପଛରେ ମତେ ଦୋଷ ଦେବେ । ତାର ସୁବିଧା କରି ଦିଆଯିବ ।

ଚକ୍ରଧର—ନା ସେସବୁ ପାଇଁ ଆପଣ କଷ୍ଟ କରିବା ଦରକାର ନାହିଁ । ନାମ ଜାଣିଲେ ବ୍ୟବସ୍ଥା କରି ନେବି । ମୋର ଧାରଣା ଯେ ବିଉଟିଫୁଲ, ସେ ବିଉଟିଫୁଲ୍ । କର୍ତ୍ତବ୍ୟ ହିଁ ସୁନ୍ଦର ।

ବନ—ତେବେ ଦାବି କିଛି ନାହିଁ ? ମୋତେ ଜବାବ ଦିଅନ୍ତୁ ।

ଚକ୍ରଧର—ସେଟା ଆପଣଙ୍କ ଉପରେ ଛାଡ଼ିଲି ପଚ ୫, ୧୦, ୧୨ ହଜାରର ଲୋକ ମଧ୍ୟ ଛାଡ଼ିଛି । ନାଆଁଟା କହିବେ ନାହିଁ ? ବସନ୍ତ ବାବୁଙ୍କର କେହି କି ? ସମାଜରେ ନୋଟିସ୍ ବାହାରିଥିଲା ତାଙ୍କରି ଘର କଥା ନା ?

ବନ—ହଁ ତାଙ୍କରି ଭଉଣୀ । (ମୁଖରେ ସ୍ମିତହାସ୍ୟ ଦେଖାଗଲା)

ଚକ୍ରଧର—ଛାଡ଼ନ୍ତୁ । ସେ ବିଷୟରେ ଆଉ ଭାବିବ ନାହିଁ । ମୋ ମନ ବର୍ତ୍ତମାନ ଯାଇ ସେ ମିଦ୍ନାପୁରବାଲା ପାଖରେ । ଆପଣ ତାକୁ କେମିତି ଠକାଇଲେ ? ମୋର ବର୍ତ୍ତମାନ ମନେ ପଡ଼ୁଛି ସେ ଲୋକଟାର ଢଙ୍ଗଢ଼ାଙ୍ଗ ବଡ଼ସନ୍ଦେହଜନକ । ମୁଁ ଆସୁଛି ହେଉ (ନମସ୍କାର)

ବନ—ନମସ୍କାର (ପ୍ରସ୍ଥାନ)

—ପଟକ୍ଷେପ—

## —ଚତୁର୍ଥ ଦୃଶ୍ୟ—

(ବସନ୍ତ ବାବୁଙ୍କର ଗୋଟିଏ କକ୍ଷ । ସମୟ ଅପରାହ୍ନ ଶନିବାର ।) ପ୍ରତିମା ସପ ଉପରେ ବସି ପଙ୍ଖା କରୁଥିଲେ । ଗାୟତ୍ରୀ ପ୍ରବେଶ କଲେ ହାତରେ ମୋଜା ସିଲାଇ କରୁ କରୁ ।

ଗାୟତ୍ରୀ—ସତ କହିବ ପ୍ରତିମା ? ସ୍କୁଲରୁ ଫେରିଲାବେଳୁ ମନଟା କାହିଁକି ମାରିଦେଇଛ ? ମୁହଁଟି ଶୁଖିଲା ଦିଶୁଛି ।

ପ୍ରତିମା—(ଗମ୍ଭୀର ହୋଇ) ଭାଉଜ ବୋଉ, ସେ ସ୍କୁଲରେ ପଢ଼ିବାକୁ ଆଉ ମନ ହେଉ ନାହିଁ । ଘରେ ପଢ଼ି କ'ଣ ପରୀକ୍ଷା ଦେଇ ଦେବି ନାହିଁ ।

ଗାୟତ୍ରୀ—କ'ଣ ହେଲା କି ? ମୋତେ ଠକିବାପାଇଁ ଭାଇ ଭଉଣୀ ଦିହେଁ କ'ଣ ସଲା ସୁତୁରା ହୋଇଛ କି ? ତାଙ୍କର ତ ପଢ଼ାଇବାର ଆଦୌ ଇଚ୍ଛା ନଥିଲା । ମୁଁ ଏକା ଜିଦ୍ ଧରି.........

ପ୍ରତିମା—ସବୁ କଥାରେ ସେଇ ଭାଇ ମୁଣ୍ଡରେ ଅଠା । ତମେ ଗୋଟି ପଣେ ତୁଳସୀ ।

ଗାୟତ୍ରୀ—ମୋର କ'ଣ ଦୋଷ ହେଲା କି ?

ପ୍ରତିମା—ହଁ କ'ଣ ଗୋଟିଏ ନବରଙ୍ଗ ଖବର କାଗଜରେ ବାହାର କଲ ଯେ ସ୍କୁଲରେ ରମା, ଶଶୀ କେହି ବସେଇ ଉଠେଇ ଦେଲ ନାହାନ୍ତି । ସବୁବେଳେ ଚିଡ଼ଉଛନ୍ତି ।

ଗାୟତ୍ରୀ—(ହସି ହସି) ଏହି କଥାକୁ ନାଆ ପେଲିଦେଲି କଲିକତାକୁ । ସବୁ ଦିନେ କ'ଣ ସୁଭଦ୍ରା ଠାକୁରାଣୀ ପରି ବସିଥିବ କି ? ଯେଉଁଦିନ ହେଲେ ଦିନେ ତ...........ସବୁ ନବରଙ୍ଗ ତମ ଭାଇ ଚୂଡ଼ାମଣି କରିଛନ୍ତି ।

ପ୍ରତିମା—ସେମାନେ ତ ଯାହା କହୁଥିଲେ, ଆଜି ମାନ ମାଷ୍ଟରଣୀଙ୍କ ସାଙ୍ଗରେ ଆଉ ଜଣେ କିଏ ସ୍ତ୍ରୀ ଲୋକ ଆସିଥିଲେ । ସେ ତାଙ୍କୁ କି କହିଦେଲେ । ସେ ମୋ ଅଡ଼କୁ ଗ୍ରହି ହସିଲେ । ଭଉଜ ନାଆଁରେ କ'ଣ କଥାବାର୍ତ୍ତା ହେଲେ କହିଲେ ଏଡ଼େ ଟିକିଏ ପିଲାକୁ..........

ଗାୟତ୍ରୀ—ସେ କିଏ ? କାହିଁକି ଆସିଥିଲେ ମ ?

ପ୍ରତିମା—ତାଙ୍କ କଥା ଶୁଣିତ ମୋ ମୁହଁ ଜଳିଗଲା । ମୁଁ କହି ପାରିବି ନାହିଁ । ସେ କାହିଁକି ଆସିଥିଲେ । ରମୀ କହୁଥିଲା ସେ କ'ଣ ସବୁ ଚାନ୍ଦା ଆଦାୟ କରୁଛନ୍ତି ଘରେ ଘରେ ବୁଲି । ଆମ ସାଇକୁ ବୋଧହୁଏ ଆସିବେ । ଗେରୁଆ ଲୁଗା ପିନ୍ଧିଛନ୍ତି..........

ଗାୟତ୍ରୀ—ଯେ ଚିଡ଼େ ତାକୁ ବେଶୀ ଚିଡ଼ାନ୍ତି । ତମେ ନ ଶୁଣିଲେ ଲୋ—ତମେ କେବଳ ତୁମ ପଢ଼ାପଢ଼ିରେ ମନ ଦିଅ । ତମେ ଗୁଣର ହୋଇପାରିଲେ ଆଉ ପାଞ୍ଚଟାକୁ ଗୁଣରେ କରିପାରିବ ।

ପ୍ରତିମା— ଭଉଜ ବୋଉ ! ଆମ ସ୍କୁଲର ମାଗାଜିନରେ ଯେଉଁ କବିତାଟି ଦେଇଥିଲି ପଢ଼ିଛଟି ? ତାକୁ ପଢ଼ି ଜଣେ............

(ଅନ୍ତରାଳେ ସଙ୍ଗୀତ ଧ୍ୱନି—ନାରୀ କଣ୍ଠସ୍ୱର)

"ମିଳାଇ ଦିଅ ହେ ସବୁରି ଧାଥେ ।
ମୋ ରଙ୍ଗ ହୃଦୟରେ ରେଶମୀ ଗଣ୍ଠିଟି
ବାନ୍ଧି ଦିଅ ନେଇ ସବୁରି ହାତେ । ପଦ ।
ମୋ ସଜଡ଼ା ଗୀତଟି ତମ କଣ୍ଠ ଗାଇ
ମୋ ଭଙ୍ଗୁଡ଼ା ବୀଣାଟି ତମେ ହାତେ ବାଇ
ସାରା ଦୁନିଆକୁ ମତାଇ ଦିଅ ହେ
ରବି, ଶଶି, ତାରା ଚିହ୍ନନ୍ତୁ ମୋତେ । ୧ ।

ଗାୟତ୍ରୀ—ବାହାରେ କ'ଣ ଗୀତ ଶୁଣା ଯାଉଛି ?

ପ୍ରତିମା—ମୁଁ ଯାଇ ଦେଖି ଆସେ । (ପ୍ରସ୍ଥାନ)

(ଗାୟତ୍ରୀ ବସିଗଲେ—ପ୍ରତିମାର ହଠାତ୍ ପ୍ରବେଶ)

ପ୍ରତିମା—(କ୍ଷୀଣ ସ୍ୱରରେ) ସେଇଲେ ଭଉଜ ବୋଉ, ଯାହାଙ୍କ କଥା କହୁଥିଲି । (ସନ୍ନ୍ୟାସିନୀ ଗୀତ ଗାଇ ଗାଇ ପ୍ରବେଶ କଲେ । କାନ୍ଧରେ ହାରମୋନିୟମ । ପରିଧାନ ଗୈରିକ ବସନ—ମୁଖମଣ୍ଡଳରେ ହାସ୍ୟର ଛଟା ।)

ନୀଳ ସାଗରର ଫେନ ପୁଞ୍ଜି ରଶ୍ମି
ଆସନ୍ତୁ ମୋ ପାଶେ ନାଚି ନାଚି ହସି
ତରଙ୍ଗ ଦୋଳାରେ ସୁଦୂର ଅନ୍ଧାରେ
ଭସି ଭସି ଯାଏ ଆଶା ବୋଇତେ । ୨ ।

ଗାୟତ୍ରୀ—(ଚେୟାର ଠିଆ ହୋଇଯାଇ) ନମସ୍କାର ! ବସନ୍ତୁ ।
(ଦୋ ଦୋ ଚିନ୍ତାଙ୍କ ପରି ରହିବା)

ସନ୍ନ୍ୟାସିନୀ—ନମସ୍କାର । ଗାୟତ୍ରୀ, ମତେ ତମେ ଚିହ୍ନି ପାରୁଛ ନା ?

ଗାୟତ୍ରୀ—ମୁଁ...............( ଦୋ ଦୋ ଚିନ୍ତା କରିବା )

ସନ୍ନ୍ୟାସିନୀ—ହଁ ତମ ଆଖି ବଦଳିଗଲାଣି । ତମେ ବଡ଼ ଲୋକର ଘରଣୀ ହେଲଣି । ସେ ଦିନ ଆଉ କାହିଁ ଯେ ଚିହ୍ନିବ ।

ଗାୟତ୍ରୀ—ତମ ନାଁ କଣ ଶର୍ମିଷ୍ଠା ? ( ପ୍ରତିମାର ପାନପାଇଁ ପ୍ରସ୍ଥାନ )

ସନ୍ନ୍ୟାସିନୀ—(ସ୍ମିତହାସ୍ୟ)

ଗାୟତ୍ରୀ—(ପାଖକୁ ଆସି ଧରି ପକାଇ) ହେ, ତୁ ଏମିତି କାହିଁକି ହେଇଛୁ ? କ'ଣ ମାତାଜୀ ହୋଇଗଲୁ ?

ସନ୍ନ୍ୟାସିନୀ—ମାତାଜୀ ହେବି କୁଆଡ଼ୁ ? ମୋଟେ ତ ମାତା ହୋଇନାହିଁ ।

ଗାୟତ୍ରୀ—ବସ୍ ( ଶର୍ମିଷ୍ଠା ଓ ଗାୟତ୍ରୀ ଉପବେଶନ କଲେ ) ଏହିକ୍ଷଣିତ ତୋରି କଥା ପ୍ରତିମା ପକାଇଥିଲା । ତୋର ଖରି ଆଇଷ । ଯୁଗ ପୁଣି ଏମିତି ବଦଳି ଯାଏ ? ହଇଲେ ଶର୍ମିଷ୍ଠା ତୋର ସେ ଫେସନ ସବୁ କୁଆଡ଼େଗଲାମ ?

ସନ୍ନ୍ୟାସିନୀ—ହଉ ଆଉ କେଉଁଦିନ ଆସିଲେ ସେ ସବୁ କହିବି । ଏହା ଭିତରେ ଜୀବନର ବହୁତ ଇତିହାସ ବହି ଗଲାଣି । କହିଲେ ସାତଖଣ୍ଡ ରାମାୟଣ ହେବ । ଖାଲି ତତେ ଟିକିଏ ଦେଖିବାକୁ ଆସିଥିଲି ।
(ପ୍ରତିମାର ପାନବଟା ହସ୍ତେ ପ୍ରବେଶ)

ଗାୟତ୍ରୀ—ହଁ ଯିବୁ ତ ତରତର କାହିଁକି ? ପାନ ଖା ( ପାନଥଳୀଟା ପାଖକୁ ଥୋଇ )

ସନ୍ନ୍ୟାସିନୀ—ମୁଁ ସେ ସବୁ ଛାଡ଼ିଛି । ତୋତେ ଏତିକି ଦେଇଯାଉଛି । (ବ୍ୟାଗରୁ ପାମ୍ଫଲେଟ୍ କାଢ଼ି ଦେବା) ଏଥିରୁ ସବୁ ବୁଝିବୁ । (ଉଠିବାକୁ ଉଦ୍ୟତ ହେଲେ)

ଗାୟତ୍ରୀ—ଶର୍ମିଷ୍ଠା ( ତାର ହାତ ଧରି ଟାଣି ବସାଇଲେ ) ଗୋଟାଏ କଥା ? ଦଶ ବର୍ଷ ପରେ ଦେଖା । ରହମ ଆଜ୍ଞା ବାବାଜୀ କାହାନ୍ତି ?

ସନ୍ନ୍ୟାସିନୀ—ବୈଠକ ଖାନାରେ ବସି ତମ ବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେଉଛନ୍ତି । ଆମେ ଆସିଛୁ ସେବା ସଂଘ ତରଫରୁ ଚନ୍ଦା ଅସୁଲ କରିବାକୁ । ଲୋକେ ପୋକ ମାଛି ପରି ସଢ଼ି ମରୁଛନ୍ତି । ନଇ ବଢ଼ି ଏବର୍ଷ ଧୋଇଆ ଅଞ୍ଚଳକୁ ଶେଷ କରିଦେଇଛି ।

ପ୍ରତିମା—ଆପଣମାନେ ଆସି କେଉଁଠି ଅଛନ୍ତି ?

ସନ୍ନ୍ୟାସିନୀ—ଏମିତି କିଛି ସୁବିଧା ନାହିଁ —ହୋଟେଲରେ ଅଛୁଁ ।

ଗାୟତ୍ରୀ—ତୋର ଭାଗ୍ୟ ତୁ ପୃଥ୍ୱିକରି ବୁଲୁଛୁ । ମୁଁ ତ ଏହା ଭିତରେ ବନ୍ଦୀ ।

ସନ୍ନ୍ୟାସିନୀ—କାହିଁକି ତୁ ଆସୁନ ସାଙ୍ଗରେ । କୌଣସି କଥାରେ ଅଭାବ ରହିବ ନାହିଁ । ଆମ ଦେଶରେ ନାରୀ କର୍ମୀଙ୍କ ଯଥେଷ୍ଟ ଅଭାବ ।

ଗାୟତ୍ରୀ—ମୋର ଭଗ୍ୟ କାହିଁ? ଦେଶ ଦଶଙ୍କର ସେବା କରିବି ? ତୁ କେମିତି ଏଥିରେ ପଶିଲୁ ମ ?

ସନ୍ନ୍ୟାସିନୀ—ଦି ଜଣଙ୍କର ତ ମନ ହେଇ—ଏକା ଦିନେ ଉଠିଆସିଲୁ । ଦେଖିଲୁ ମଣିଷ ଜୀବନଟା ପାଣି ଫୋଟକା ପରି । ସମସ୍ତେ ସ୍ୱାର୍ଥର ... ଭସି ବୁଲିଛନ୍ତି । ସେଇ ଖାଇବା, ପିଇବା, ପଇସା ରୋଜଗାର କରିବା, ସୁନା ଅଳଙ୍କାର ପିନ୍ଧିବା, କୋଠା ପିଟିବା, ମଉଜ ମଜଲିସ୍‌ରେ ଦିନ କାଟିବା । କୋଟି କୋଟି ଲୋକ ଯେ ପେଟପୁର ଗଣ୍ଡେ ଖାଇବାକୁ ପାଉନାହାନ୍ତି । ରୋଗରେ ପଡ଼ିଲେ ଔଷଧ ଟିକିଏ ପାଉନାହାନ୍ତି । ତାଙ୍କ କଥା କେତେ ଜଣ ଭବୁଛନ୍ତି ? ତମେ ଯେଉଁମାନେ ସହରରେ ଅଛ ଗାଁର ଅବସ୍ଥା କାହୁଁ ଜାଣିବ ?

ଗାୟତ୍ରୀ—ହଁ ତମ ଦି ଜଣଙ୍କର ଏକ ମନ ଏକ ଆତ୍ମା ହେଇ ବୋଲି ସିନା ଯା କଲ । ତୋର ବାହାଘର କଥାଟା ଶୁଣିଥିଲି ଖାଲି । କେଉଁଠି ହେଲା କିପରି ହେଲ ଜାଣି ନଥିଲି । ସମୟେ ସମୟେ ପିଲ ଦିନର କଥା ମନେ ପଡ଼େ—ସେ ବେଳ କୁଆଡ଼େ ଗଲା ଊର୍ମିଷା ?

ସନ୍ନ୍ୟାସିନୀ—ଆମ ବିଭଘର ଆଜି କି ଆଠ ବର୍ଷ ହେଲଣି । ଘର ଛାଡ଼ିବା ଚାରି ବର୍ଷ ହେବ । ଆଉ ସେ କଥା ସବୁ କହିବି ପରେ । ମୁଁ ଯାଉଛି ବେଳ ହୋଇଗଲଣି ପ୍ରତିମାକୁ ଟିକିଏ ମୋ ସାଙ୍ଗରେ ପଠାନ୍ତୁ । ତମର ଏ ପଡ଼ାରେ ଆଉ କେତେ ଘର ଅଛି ଦେଖାଇ ଦେଇ ଆସନ୍ତା ।

( ଉଠି ହାରମୋନିୟମ କାନ୍ଧରେ ପକାଇଲେ—ଗାୟତ୍ରୀ ପ୍ରତିମା ଠିଆ ହେଲେ )

ଗାୟତ୍ରୀ—ଉଁ......ଉଁ.....ତାଙ୍କ ଭଇ କାଳେ ......ତମେ କ'ଣ ସମସ୍ତଙ୍କ ଘରକୁ ଯିବ ?

ସନ୍ନ୍ୟାସିନୀ—ସମସ୍ତେ ତ ଆମର, ନ ଯିବୁ କାହା ଘରକୁ ? କିଏ ଦେଉ ବା ନ ଦେଉ ସମସ୍ତେ କଣ ଶ୍ରଦ୍ଧା ଦେଉଛନ୍ତି ।

( ବସନ୍ତ ବାବୁ ପ୍ରବେଶ କଲେ ) ହେଇ ତମ ବାବୁ ତ ଆସିଲେଣି ।

ବସନ୍ତ—ଆପଣମାନେ କଣ ଚାଲି ଯିବେ ? ତରତର କାହିଁକି ହେଉଛନ୍ତି ? ଆଜି ରହିଗଲେ ହୁଅନ୍ତା ନାହିଁ ?

ସନ୍ନ୍ୟାସିନୀ—ଆପଣଙ୍କର ଅନୁରୋଧ କରିବା ଦରକାର ନାହିଁ । ମୋର ଅଧିକାର ଅଛି—ମୁଁ ରହିପାରନ୍ତି, କିନ୍ତୁ...

ଗାୟତ୍ରୀ—ହଁ ହଁ ସେଇ ସକାଶେ ଚାଲି ଯାଉଛନ୍ତି—

ସନ୍ନ୍ୟାସିନୀ—ଆପଣ ତ ସବୁ ଶୁଣିବେଣି—

ଗାୟତ୍ରୀ—ସେ କହୁଛନ୍ତି—ପ୍ରତିମା ତାଙ୍କୁ ଆମ ପଡ଼ାରେ ଟିକିଏ ବୁଲାଇ ଆଣିବ ।

ବସନ୍ତ—ଯାଉ ନାହିଁ ।

ସନ୍ନ୍ୟାସିନୀ—ଆସ ପ୍ରତିମା ଯିବା—

ଗାୟତ୍ରୀ—ଯା—ଚଞ୍ଚଳ ଆସିବ । ଆମ ଘରେ ଆଜି ଖାଇବାକୁ ପଡ଼ିବ—ତତେ ମୋ ରାଣ ।

ସନ୍ନ୍ୟାସିନୀ—ହଉ ଦେଖିବା..........( ଗୀତ ଗାଇ ପ୍ରସ୍ଥାନ କଲେ—ଅନୁଗମନ କଲ ପ୍ରତିମା )

କୃଷକ କୁମାରୀ ଲୁହରେ ଭିଜାଇ
ଶ୍ରମିକ ସୁନ୍ଦରୀ ନିଃଶ୍ୱାସେ ସିଝାଇ
(ତାଙ୍କ) ଭଙ୍ଗା କୁଡ଼ିଆରେ କନ୍ଥା କର ମୋତେ
ମିଶିଯାଏ ତାଙ୍କ ଶ୍ୟାମଳ ଯେତେ ।
ମିଳାଇ ଦିଅ ହେ ।

## —ପଞ୍ଚମ ଦୃଶ୍ୟ—

(ହୋଟେଲ—ଚକ୍ରଧର ଗୋଟିଏ ଚେୟାରରେ ଆସୀନ । ଟେବୁଲ୍‌ରେ କେତେଟା କପ୍‌ପ୍ଲେଟ୍ । ଦୂରରେ ହାଡ଼ିବନ୍ଧୁ ଶଂକିତ ଭାବରେ ଦଣ୍ଡାୟମାନ—ଚକ୍ରଧର ଘ [illegible] ଦେଉଥିଲେ ।)

ଚକ୍ରଧର—କି ହାଡ଼ିବନ୍ଧୁ—ବସୁନା—ଘ ଖାଅ—ଆରେ ଖାଅନା (ହାଡ଼ିବନ୍ଧୁ ଅନିଚି ଦୂରକୁ ଘୁଞ୍ଚିଯାଇ ବସିବାକୁ ଚେଷ୍ଟା କରିଛି)

ଚକ୍ରଧର—ସେମିତି କାହିଁକି ହଉଚ ହେ ହାଡ଼ିବନ୍ଧୁ । ଆସ ବସ, ଏତେ ଭାବନା କରୁଛ କାହିଁକି ?

ହାଡ଼ିବନ୍ଧୁ—ନାଇଁ ଆଜ୍ଞା ବସୁଛି । ମୋ କଥା..........ମୋ ମନ ଏଠି ଜମା ନାହିଁ ।

ଚକ୍ରଧର—(ମୁହଁକୁ ହାଡ଼ିବନ୍ଧୁର ମୁହଁ ପାଖକୁ ନେଇଯାଇ ବାଁ ଆଖି ବୁଜି) ତମକୁ ଜବାବ ଦେଉଛି—ତମ ଗୋଡ଼ରେ କଣ୍ଟା ବାଜିବ ନାହିଁ । ତମେ ସତ କଥା କହିଦେଲେ ଖଲାସ ହୋଇଯିବ ।

ହାଡ଼ିବନ୍ଧ—ଆଜ୍ଞା ତାଙ୍କୁ ଜମା ବିଶ୍ୱାସ ନାହିଁ । ମୋଠଉଁ କଥାଯାକ କାଢ଼ି ନେଇ ଯଦି ଓଲଟି ମୋତେ କେଶ୍‌ରେ ପକାନ୍ତି ?

ଚକ୍ରଧର—ଆହେ ନା ନା—ଯା କେତେବେଳେ ନୁହେଁ । ବନବାବୁ ମୋତେ ହାତ ଦେଇଛନ୍ତି । ସି. ଆଇ. ଡ଼ି. ଇନ୍‌ସିପେକ୍ଟର ସେ । ଯାହା କହିବେ ତାହା ହେବ । ତମେ ତାଙ୍କର ମୋର ସମ୍ବନ୍ଧ ଜାଣି ନାହିଁ । ମୋର ତାଙ୍କର ବିଶେଷ ଘନିଷ୍ଠତା......... ।

ହାଡ଼ିବନ୍ଧ—ଆପଣ ମୋତେ ଏ ବିପଦରୁ ରଖନ୍ତୁ । ମୁଁ କଣ କେବେ ହେଲେ ଆପଣଙ୍କର ଏ ଋଣ ଶୁଝି ପାରିବି ନାହିଁ । ଏ ହୟାତ୍ ଥିବା ଯାବତ୍ ମନେ ପକାଉଥିବି ଆପଣଙ୍କୁ ।

ଚକ୍ରଧର—(ଗମ୍ଭୀର ହୋଇ ପାଖକୁ ଝୁଙ୍କିପଡ଼ି) ସେ ପର ମୋର ଏକ ପ୍ରକାର ଶଳା ହେବ । ତାଙ୍କର ଜଣେ ବନ୍ଧୁଙ୍କ ଭଉଣୀ ସହିତ ମୋର ବିଭାଘର ଠିକ୍ ହୋଇଛି । ସେ ସେଥିରେ ମଧ୍ୟସ୍ଥ—କାହାରିକୁ କହିବ ନାହିଁ ।

ହାଡ଼ିବନ୍ଧ—ଆଜ୍ଞା, ଆପଣଙ୍କ ଅନୁଗ୍ରହରୁ ମୁଁ ଏଥିରୁ ଖସିଗଲେ ଆଉ କୁଆଡ଼େ ଯିବି ନାହିଁ । ଆପଣଙ୍କ ପାଖରେ ପଡ଼ି ରହିବି । ଆପଣଙ୍କ କମ୍ପାନୀରେ ଖଣ୍ଡେ ହେଲେ ଚାକିରି ବାକିରି କରାଇ ଦେବେ ।

ଚକ୍ରଧର—ଚାକିରି ଗୋଟାଏ ବଡ଼ କଥା କ'ଣ ? ମୁଁ ଯେଉଁ ବ୍ୟବସାୟ କରିବାକୁ ଯାଉଛି ସେଥିରେ ତ ଅନେକ ଲୋକ ଦରକାର । (ବନବାବୁଙ୍କର ପ୍ରବେଶ)

ଚକ୍ରଧର—ଆଜ୍ଞା ବସନ୍ତୁ । ମୁଁ ଭଲକରି ବୁଝିଲିଣି । ଏ ଦି ଜଣ ସେଇଭଳି କିଛି ନୁହନ୍ତି । ସେମାନେ ଧୋଇଆ ଅଫଳ ପାଇଁ ଗନ୍ଦା ଉଠାଉଛନ୍ତି । ହାଡ଼ିବନ୍ଧୁ ସିଗାର ଆଣ ତ ! ହଁ ସେମାନଙ୍କୁ ଅବିଶ୍ୱାସ କରିବାର କାରଣ କିଛି ନାହିଁ । (ହାଡ଼ିବନ୍ଧୁର ପ୍ରସ୍ଥାନ)

ବନ—ସେ ଯାହାହେଉ ତାଙ୍କ ବିଷୟରେ ରିପୋର୍ଟ ଦେବାକୁ ହେବ । ଆପଣ ଜାଣି ନାହାନ୍ତି ଯେ ଆମେ, ଆମ ଛାଇକି ବି ଆମର ଅବିଶ୍ୱାସ । ଆପଣ ସେ ମେଦିନାପୁରିଆଙ୍କ କଥାରୁ ବୁଝିପାରୁ ନାହାଁନ୍ତି । ଏତକ ଟଙ୍କା ସେ ଖାଇକରି ଚାଲିଆସିଛି ବୋଲି ?

ଚକ୍ରଧର—ଅଚ୍ଛା ବନବାବୁ ! ଲୋକଙ୍କ କଥାରୁ କ'ଣ ବୁଝିବା ? ତା କଥା ତ କଥା............ବେହେଲେ ଖଣ୍ଡକ ସାକ୍ଷାତ ବୁଦ୍ଧଦେବ ପରି । ଲୋକେ କାହିଁକି ଏ ଭଳି ଟଙ୍କା ଖାଆନ୍ତି ?

ବନ—ଆଜ୍ଞା ! ଲୋକେ କ'ଣ ଟଙ୍କା ଖା'ନ୍ତି............ଟଙ୍କା ଲୋକଙ୍କୁ ଖାଏ । ବେଶିରେ ତ କ'ଣ ହେଲା ? ଆମର ଏ ଡିପାର୍ଟମେଣ୍ଟକୁ ଇଣ୍ଟେଲିଜେନ୍ସ ଡିପାର୍ଟମେଣ୍ଟ ବୋଲି ଯାହା କହନ୍ତି............ପ୍ରକୃତରେ ଏହା ଆମର ଇଣ୍ଟେଲିଜେନ୍ସ ଡିପାର୍ଟମେଣ୍ଟ । ଆଁ କ'ଣ କହୁ ନାହାଁନ୍ତି ?

ଚକ୍ରଧର—ହଁ ପ୍ରକୃତରେ ସାମ୍ରାଜ୍ୟ ଯଦି ତିଷ୍ଠି ଥାଏ, ତେବେ ସୈନିକମାନଙ୍କର ଅସିଧାରରେ ନୁହେଁ.......... ଆପଣମାନଙ୍କ ମସୀ ଧାରରେ............

ବନ—ତମେ ଯାହା କୁହ ଚକ୍ରଧର ବାବୁ ! ଆପଣମାନେ ସ୍ୱାଧୀନ । ଆଉ ଆମେମାନେ ପରାଧୀନ । ଆମେ ଯେତେ ସତ କହିଲେ ବି ସାଧାରଣ ମୁଖରେ ଆମର ନିନ୍ଦା............

ଚକ୍ରଧର—ଯେ ମୂର୍ଖ......ସେ ନିନ୍ଦା କରିବ । ଶିକ୍ଷିତ ଲୋକ କାହିଁକି ବା କରିବ ? ହେଲା ଦେଶରେ ଯେ କୌଣସି ପ୍ରକାରେ ଶାସନ ନୀତି ପ୍ରତିଷ୍ଠିତ ହେଉ ଆପଣମାନଙ୍କର ଡିପାର୍ଟମେଣ୍ଟ ରହିବ ହିଁ ରହିବ । ତ୍ରେତୟା ଯୁଗରେ ମଧ୍ୟ ସି. ଆଇ. ଡି ରିପୋର୍ଟ ଉପରେ ସୀତା ନିର୍ବାସିତ ହୋଇଥିଲେ ।

ବନ—ସେଇଟା କ'ଣ ଠିକ୍ ହୋଇଛି ?

ଚକ୍ରଧର—ରାମଚନ୍ଦ୍ର ଭଳି ରଜା ମଧ୍ୟ ଗୁପ୍ତଚରମାନଙ୍କୁ ବିଶ୍ୱାସ କରୁଥିଲେ । ଠିକ୍ ବେଠିକ୍ କିଏ କହିବ ? ଯେ ସୀତାଙ୍କ ନାମରେ ରିପୋର୍ଟ ଲେଖିଲା............ତାର କର୍ତ୍ତବ୍ୟ ପରାୟଣ ଓ ସାହାସକୁ ଧନ୍ୟବାଦ ।

ବନ—ଆପଣ କର୍ତ୍ତବ୍ୟ କାହାକୁ କହନ୍ତି ? ଯାହା ଆମେ କରିଯାଉ ନା ଯାହା କରିବା ଉଚିତ୍ତ ?

(ହାଡ଼ିବନ୍ଧୁ ସିଗାର ଦେଇ ଚାଲିଗଲା—ଅନ୍ତରାଳେ)

ଚକ୍ରଧର—(ପ୍ୟାକେଟ୍‌ରୁ ଖଣ୍ଡେ ସିଗାରେଟ୍ ଦେଇ ଓ ଦିଆସିଲି ବାହାର କରି) ଲଗାନ୍ତୁ ନା ଖଣ୍ଡେ

ବନ—(ସିଗାରେଟ୍ ଲଗାଇ)ଆପଣ ମୋର ଯଥେଷ୍ଟ ଉପକାର କଲେଣି । ମୁଁ କିଛି କରିନାହିଁ । ଅପେକ୍ଷା ପୂର୍ବରୁ ଆପଣଙ୍କୁ ଆଉ ଦି' ହଜାର ଟଙ୍କାର କେଶ୍‌ଟାଏ ନିଶ୍ଚୟ କରେଇ ଦେବି ।

ଚକ୍ରଧର—(ଧୀରେ ହସି) ଆଜ୍ଞା ଜୀବନ ବୀମା କଥା ତ ହେବ ଜୀବନସୀମା କଥା କ'ଣ ହେଲା ?

ବନ—ଆରେ ଭାଇ, ହଁ ସେ କଥା ତୁମକୁ କହିବାପାଇଁ ଭୁଲି ଯାଇଥିଲି । ବସନ୍ତ ମୋତେ କହୁଥିଲା । ମୁଁ ପଚାରିଥାନ୍ତୁ ପୁଣି ମୋତେ ତ ନାହିଁ କରିଦେଲା । ସେ କହିଲା ମାଟ୍ରିକ୍ୟୁଲେସନ୍ ପାସ୍ କଲେ ଯାଇ ବିଭା ହେବି । ମୁଁ ଆଉ ତାକୁ ତୁମ ନାଆଁ କହିଲି ନାହିଁ ।

ଚକ୍ରଧର—ତେବେ ସେ ଲୋକଙ୍କୁ ଠକୁଥିଲେ କାହିଁ କି ? ନୋଟିସ୍ ଦେବା କି ଦରକାର ଥିଲା । ଏଇଟା କ'ଣ ଅଭଦ୍ରତା ନୁହେଁ ? ଆପଣଙ୍କ କଥାରେ ମୁଁ ଅନେକ ଦୂର ଅଗ୍ରସର ହୋଇଛି । ଆପଣଙ୍କ ଭଳି ଗାର୍ଡ଼ିଯାନ ମୋ ପକ୍ଷରେ ମିଳିବ ନାହିଁ । ପିଲାଟା ଶିକ୍ଷିତା, ମୋ ବିଜିନେସ ପକ୍ଷରେ ଟିକିଏ ସୁବିଧା ହୋଇଥାନ୍ତା । ଯା' ଭିତରେ ଗୋଟିଏ ବଡ଼ ପ୍ରସ୍ତାବ ଆସିଥିଲା ମୁଁ ଫେରାଇଦେଲି କାରଣ ଇତି ମଧ୍ୟରେ ମୁଁ ତାକୁ ଦେଖି ସାରିଛି । ଆଉ ଆପଣଙ୍କ ଭଳି ଲୋକ ଏଥିରେ ଉଦ୍ୟୋକ୍ତା..............

ବନ—କଥା କ'ଣ କିଛି ବୁଝିପାରୁ ନାହିଁ ? ସେ କହିଥିଲା, କାହିଁକି ନାହିଁ କଲା ?

ଚକ୍ରଧର—ଆପଣଙ୍କର ମୋସହିତ ସିନା ଏତେ ବନ୍ଧୁତା ଅଛି ବୋଲି, ନଚେତ୍ ଆପଣଙ୍କୁ ସେ ତ ମୋ ପାଖରେ ଅପ୍ରସ୍ତୁତ କରାଇଲେ । ତାଙ୍କୁ କୁହନ୍ତୁ ମୁଁ ଯୌତୁକ ଗ୍ରହେଁନା ବିବାହ ପରେ କନ୍ୟା ତାଙ୍କ ଘରେ ରହି ପଢ଼ୁ.........ମୋର କିଛି ଆପତ୍ତି ନାହିଁ ।

ବନ—ମୁଁ ପରୋକ୍ଷରେ ଶୁଣିଛି ପିଲାଟା କୁଆଡ଼େ ଗଜି ଦେଲା ନାହିଁ । ହେଲେ ଝିଅ ଭରି ବୁଦ୍ଧିମତୀ । ମଣି କାଞ୍ଚନ ସଂଯୋଗ ହୋଇଥାଆନ୍ତା ।

ଚକ୍ରଧର—ଆଜ୍ଞା ଯାହା ଶୁଣିଛନ୍ତି ତାହା ମିଛ ଏକଦମ୍ । ବିବାହ ହେବାକୁ ତାର ସମ୍ପୂର୍ଣ୍ଣ ଇଚ୍ଛା ଆପଣଙ୍କୁ ମୁଁ ବିଶ୍ୱାସରେ ଦେଖାଉଛି । କେଉଁଠି ପ୍ରକାଶ କରିବେ ନାହିଁ । (ଚିଠିଟାଏ ଦେଖାଇବା)

(ବନବାବୁ ଚିଠି ପଢ଼ିଲେ ଏବଂ ହସିଲେ)

ଚକ୍ରଧର—ଏଥିରୁ ଆପଣ କ'ଣ ଅନୁମାନ କରୁଛନ୍ତି ? ଆପଣ କ'ଣ ଜାଣନ୍ତି ନାହିଁ ଯେ ସ୍ତ୍ରୀମାନଙ୍କ ହୃଦୟ ? ସେ କ'ଣ ଖୋଲି ଲେଖିଦିଅନ୍ତା ଯେ ମୁଁ ତୁମକୁ ଭଲ ପାଏ-ବିବାହ ହେବି ?

ବନ—ମୁଁ ଦେଖୁଛି ଆପଣ ଜଣେ ମହା ଶିକାରୀ ।

ଚକ୍ରଧର—ଆପଣଙ୍କ ଆଶୀର୍ବାଦରୁ ମାତ୍ର ଏଯାଏଁ ଗୋଟିଏ ଜୀବ ହତ୍ୟା କରିନାହିଁ । ଲକ୍ଷ୍ୟ କଲେ ଲକ୍ଷ୍ୟଭ୍ରଷ୍ଟ ହେବି ନାହିଁ । ଏହା ମୋର ବିଶ୍ୱାସ । ପାନ ନିଅନ୍ତୁ ।

ବନ—(ପାନ ନେଇ) ବୁଝିଲେ ଚକ୍ରଧର ବାବୁ ! ସବୁର୍‌କା ଟାଢ ନେଁ ମେଓ୍ୱା ଫଲତା ହେ । ଅପଣ ଏତେ ବ୍ୟଗ୍ର ହେଲେ ଚଳିବ ? ଯୋଗ ଥିଲେ ସେଇଠି ନିଶ୍ଚୟ ହେବ । ଯା ଭିତରେ ପୁଣି ଚେଷ୍ଟା କରୁଛି । ଅନୁଗ୍ରହ କରି ସେ ଦି'ଜଣଙ୍କର ନାଁ କାଲି ମୋତେ ଦେଇ ଆସିବେ ।

ଚକ୍ରଧର—ଆଜ୍ଞା ! କାଲି ଗୋଟିଏ ଜରୁରୀ କାମ ଅଛି । ହାଡ଼ିବନ୍ଧୁ ହାତରେ ପଠାଇ ଦେବି ।

ବନ—ହାଡ଼ିବନ୍ଧୁ ଆଗ ଘର ଦେଖିଛ ନା ?

ଚକ୍ରଧର—(ହାଡ଼ିବନ୍ଧୁକୁ ଡାକିଲେ—ହାଡ଼ିବନ୍ଧୁ ପ୍ରବେଶ କଲେ) ଆରେ ବାବୁଙ୍କ ଘର ଦେଖିଛୁ ନା ?

ହାଡ଼ିବନ୍ଧୁ—ହଁ—ଆଜ୍ଞା

ଚକ୍ରଧର—ଆଚ୍ଛା ! ଆପଣ ତା କଥା କଣ ବୁଝିଲେ ?

ବନ—ତା କାମ ସରି ଯାଇଛି କାଲି କୋର୍ଟରେ ହାଜର ହୋଇ ପ୍ରକୃତ ଘଟଣା ଯାହା କହିଦେବ । ମୁଁ ଆସୁଛି । (ପ୍ରସ୍ଥାନ)

(ହାଡ଼ିବନ୍ଧୁର ପ୍ରାଣରେ ଟିକିଏ ଆନନ୍ଦର ଢେଉ ଖେଳି ଗଲପରି ଜଣାଗଲା)

## ଷଷ୍ଠ ଦୃଶ୍ୟ

(ଦେଓ୍ୱାନ୍ ବାବୁଙ୍କର ବୈଠକ ଖାନ—ଦେଓ୍ୱାନ୍ ବାବୁ ଆରାମ ଚୌକିରେ ଓ ହେଡ୍‌ମାଷ୍ଟର ବାବୁ ଚୌକିରେ ସମାସୀନ । ପାଖରେ ଗୋଟିଏ ଟେବୁଲ—ଟେବୁଲଟି ଫୁଲଦାନୀଦ୍ୱାରା ସଜ୍ଜିତ । କକ୍ଷଟି ବିଭିନ୍ନ ଛବିରେ ସୁଶୋଭିତ)

ଦେଓ୍ୱାନ—ହେଡ୍‌ମାଷ୍ଟର ବାବୁ ! ଲୋକ ଯଦି ଅତୀତ ଦୁଃଖକୁ ଭୁଲିଯାଆନ୍ତା................ତା ହେଲେ ପୃଥିବୀ ସ୍ୱର୍ଗ ହୋଇଯାଆନ୍ତା । ଆଜି ଆପଣଙ୍କର ଏତେ ଆନନ୍ଦ ମଧ୍ୟରେ ମୋର . ........

ହେଡ଼ମାଷ୍ଟର—ନା ନା........ଆପଣ ଯାହା କହିଲେ ତାହା ଠିକ୍ । କବିବର ଯଥାର୍ଥରେ କହିଛନ୍ତି— "ସ୍ମୃତି ତ କଦାପି ନୁହେଁ ପିଙ୍ଗିବାର/ପିଙ୍ଗିପାରିଲେ ତ ଲଭନ୍ତା ନିସ୍ତାର" । ଏହା ମନୋ ବିଜ୍ଞାନ ସମ୍ମତ । ମନୁଷ୍ୟର ପ୍ରତ୍ୟେକ ଅନୁଭୂତି ଅଚେତନ ମନରେ କଏଦୀ ହୋଇ ରହିଥାଏ ।

ଦେଓ୍ୱାନ—ଆଜି ବେଶି ମୋର ଚାରି କଥା ମନେ ପଡ଼ୁଛି । ୟୁନିଭରସିଟିରେ ସରୋଜ ଫାଷ୍ଟ ହୋଇଛି । ଗୋଡ଼ ତାର ତଳେ ଲାଗୁନଥାନ୍ତା—ଆପଣମାନେ ବୁଝନ୍ତି ମୁଁ ସରୋଜର ପଢ଼ାପଢ଼ି କିଛି ଦେଖେ ନାହିଁ ବୋଲି...ବାସ୍ତବିକ ମୁଁ ଦେଖିପାରେ ନାହିଁ । ତାକୁ ଗୁହିଁଲେ ମୋର ଅନେକ କଥା ମନେପଡ଼େ । ଧୈର୍ଯ୍ୟ ଧରି ରହିପାରେ ନାହିଁ ଯେତେ ମୋର ମନ ଏଣେତେଣେ ବୁଡ଼ିରହେ ସେତେ ମୁଁ ନିସ୍ତାର ପାଏ ।

ହେଡ଼ମାଷ୍ଟର—ଆପଣଙ୍କର ହୃଦୟ ଭଳି କେତେ ଜଣଙ୍କର ବା ହୃଦୟ ଅଛି ? ସଙ୍ଗେ ସଙ୍ଗେ ସର୍ଭିସ୍‌ରୁ ଇସ୍ତଫା ଦେଇଦେଲେ.......ଆପଣଙ୍କର ସେ ଦିନର ଗୋଟାଏ କଥା ମୋର ମନେ ଅଛି । "Marriage comes once in life" ମାନେ ବିବାହ ଜୀବନରେ ଥରେ ହୁଏ ।

ଦେଓ୍ୱାନ—ମୁଁ ଦିନେ ହେଲେ ତାକୁ ପଢ଼ାପଢ଼ି କଥାରେ ପଗ୍ଭରେ ନାହିଁ । କାରଣ ମୁଁ ଜାଣେ........ ମୋ ଭଳି ହତଭାଗ୍ୟ ବାପା ଆଉ ହତଭାଗ୍ୟ ପୁଅ ତା'ପରି ଦୁନିଆରେ ଖୁବ୍ ଅଳ୍ପ ଅଛନ୍ତି ।

ହେଡ଼ମାଷ୍ଟର—ଆମର କାହାରି ମନରେ ବିଶ୍ୱାସ ନଥିଲା.......ସେ ଫାଷ୍ଟ ହେବ.......ବହି ପାଖରେ ତ ଘଣ୍ଟାଏ ବସେ ନାହିଁ ।

ଦେଓ୍ୱାନ—ସେ ଯାହାହେଉ ଆପଣଙ୍କ ଆଶୀର୍ବାଦରୁ ତାର ସ୍ୱାସ୍ଥ୍ୟ ଓ ଚରିତ୍ର ନିଖୁଣ ଓ ସତେଜ ରହୁ—ଏହା ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ।

ହେଡ଼ମାଷ୍ଟର—ମୁଁ ଲକ୍ଷ୍ୟ କରିଛି ସେ ବଡ଼ ସାହାସୀ ଓ ଈଶ୍ୱର ବିଶ୍ୱାସୀ ।

ଦେଓ୍ୱାନ—ବୁଝିଲେ ହେଡ଼ମାଷ୍ଟର ବାବୁ ! ଏହା ମୋର ସୌଭାଗ୍ୟର ବିଷୟ । ମୁଁ କିନ୍ତୁ ତା ବୟସରେ ଈଶ୍ୱର ବିଶ୍ୱାସୀ ନଥିଲି । ମୁଁ ବରବର ଯୁକ୍ତି କରୁଥିଲି...ଈଶ୍ୱର ଫିଶ୍ୱର କେହି ନାହାନ୍ତି । ପରଜନ୍ମ ମିଥ୍ୟା ମାତ୍ର ପରିସ୍ଥିତି ମୋର ସବୁ ବିଶ୍ୱାସ ବଦଳେଇ ଦେଲା । ମୁଁ ଭାଗ୍ୟବାଦୀ ହୋଇପଡ଼ିଲି ।

ହେଡ଼ମାଷ୍ଟର—ଯାହାହେଉ, ଆପଣ ତାକୁ ଏ ଦେଶ—ଦଶରେ ବଡ଼ କରାଇ ଦେଇ ଯାଆନ୍ତୁ । ତାର ପ୍ରତିଭା ଅଛି ।

ଦେଓ୍ୱାନ—ହେଡ଼ମାଷ୍ଟର ବାବୁ ! ଯାହା ଭାଗ୍ୟରେ ଥିବ ହେବ । ମୁଁ କରାଇଦେବି କଣ ? ମୋ ଜୀବନରେ ଆସି ସାଢ଼େ ୧୧ଟା ବାଜିଲାଣି ।

(ମନୋରଞ୍ଜନର ପ୍ରବେଶ—ହେଡ଼ମାଷ୍ଟର ବାବୁ ଓ ଦେ୍ୱଓ୍ୱାନ ବାବୁଙ୍କୁ ନମସ୍କାର କରିବା ଓ ବେଞ୍ଚରେ ବସିବା)

ହେଡ଼ମାଷ୍ଟର—କି ମନା ! ସରୋଜ କାହିଁ ? କ'ଣ ପାସ୍ ଖବର ଶୁଣି ଫୁର୍ତ୍ତି କରି ବୁଲୁଛି ?

ମନ—କେଜାଣି ସାର, ମୁଁ ତ ତାକୁ ଖୋଜୁଛି । ସେ କୁଆଡ଼େ ଯାଇ ବୁଲୁଥିବ । କିଏ କେଉଁଠି ବେମାର ପଡ଼ିଥିବ ତ ସେ ବସିଥିବ ତାରି ପାଖରେ ।

ହେଡ଼ମାଷ୍ଟର—ସମାଜ ସେବାଟା ଭଲରେ । ମାତ୍ର ସବୁବେଳେ ସେଥିରେ ବ୍ୟସ୍ତ ରହିବାଟା କ'ଣ ଠିକ୍ ? କାଳି ଦାସଙ୍କ ଭଷାରେ "ଶରୀର ମାଦ୍ୟଂ ଖଲୁ ଧର୍ମ ସାଧନଂ" । ଫଳାଫଳ ଶେଷୀର ପାଖରେ ଯାଇ ବସିଯିବ । ଘରିଆଡ଼କୁ ବିଗ୍ଭର କରିବା ଉଚିତ ।

ମନ—ମୁଁ ଯେତେ ଥର ମନା କଲେ ବି ସେ କ'ଣ ମୋ କଥା ମାନେ ? ମୋ ସାଙ୍ଗରେ ନାନାବି ଯୁକ୍ତି ଲଗାଏ । ବଡ଼ ଏକଜିଦ୍‌ଆ ।

ଦେଓ୍ୱାନ—ବୁଝିଲେ ହେଡ଼ମାଷ୍ଟର ବାବୁ, ମୁଁ ଯେତେଥର ତାକୁ କହିଛି ନିରଶ ହୋଇଛି । ମତେ ସେ ଥରେ ଉତ୍ତର ଦେଲ ଯାହା ଯୋଗ ଥିବ ତାହା ହେବ । ଏତେ ଟଙ୍କା ଖର୍ଚ୍ଚ କରି ମା'କୁ ତ ବଞ୍ଚେଇ ପାରିଲ ନାହିଁ । ମୁଁ ସେଇ ଦିନଠୁଁ ଚୁପ୍ ।

ହେଡ଼ମାଷ୍ଟର—ଈଶ୍ୱର ୟାଙ୍କୁ ତାର ସେବା ଭବଟା ସମଗ୍ର ଜାତି ଓ ଦେଶ ମଧ୍ୟରେ ଖେଳିଯାଉ । (ମେନ ଆଡ଼କୁ ଅନାଇ) ଟିକିଏ ୬ାକି ଆଣିଲୁ ନାହିଁ, କଥାବାର୍ତ୍ତା ହୋଇଯାଉଛି । ଆଚ୍ଛା ଦେଓ୍ୱାନ ବାବୁ, ଆପଣ ତାକୁ କେଉଁ ଦିଗରେ ଯିବାକୁ ଠିକ୍ କରିଛନ୍ତି ? ସେଟା ଏତିକିବେଳୁ ସ୍ଥିର କରିବା ଉଚିତ । ମୋର ଇଚ୍ଛା ସେ ବି.ଏ. ପରେ ଆଇ.ସି.ଏସ୍ ପଢ଼ିବାକୁ ଯାଉ ।

ଦେଓ୍ୱାନ—ମୁଁ ସେ କଥା କିଛି ଭବୁନାହିଁ । ଆପଣ ଯାହା ତାର ରୁଚି ଦେଖି ଠିକ୍ କରିଦେବେ । କେଉଁଠି ଗୋଟାଏ ଯାଗାରେ ପଢ଼ିଥିଲି, ରୁଚି ଅନୁକୂଳେ ନ କରେ ଯେ କାମ, ଭଗ୍ୟଦେବୀ ହୋନ୍ତି ତାହା ଭଗ୍ୟେ ବାମ ।"

ହେଡ଼ମାଷ୍ଟର—ଆଜ୍ଞା ସେ କଥା ଅକ୍ଷରେ ଅକ୍ଷରେ ସତ । ତେବେ ବର୍ତ୍ତମାନ ଦରକାର ପଡ଼ୁଛି—ଯାହା ହେଲ ଗୋଟାଏ ଠିକ୍ କରିବା । ଜୀବନର ଲକ୍ଷ୍ୟ ସ୍ଥିର ନ କରି ଯାହା କରିବା ଉଚିତ ନୁହେଁ ।

ମନ—ମୁଁ ଯେତେ ଦୂର ଜାଣେ—ତାର ମେଡ଼ିକାଲ ଲଇନ୍ ।

ହେଡ଼ମାଷ୍ଟର—ତମର କ'ଣ ଠିକ୍ କଲ ?

ମନ—ଦାଦାଙ୍କର ଇଚ୍ଛା ଇଂଜିନିୟରିଂ ସ୍କୁଲରେ.....କଣ କରିବି ଏ ପର୍ଯ୍ୟନ୍ତ ଠିକ୍ କରିନାହିଁ ।

ଦେଓ୍ୱାନ—ମୋର ବି ସରେଜକୁ ବେଶୀ ଦୂର ଛାଡ଼ିବାକୁ ଇଚ୍ଛା ହେଉ ନାହିଁ । ଆଜିକୁ ୬ ବର୍ଷ ହେଲ ମୁଁ କେବେ ହେଲେ ତାକୁ ପାଖରୁ ଅନ୍ତର କରିନାହିଁ । ସେ ବିଗତ ଘଲେ ମୁଁ ବର୍ତ୍ତିବି କିପରି ? ପରୁଣି ବୁଝନ୍ତେ ତାର ଇଚ୍ଛା । ମୁଁ ବା ଆଉ କେତେ ଦିନ ? ମୋ ଜୀବନରେ ସବୁ ସ୍ମୃତି ଏହି ଗଢ଼୍ୟର ଧୂଳି ତଳେ ରହିଛି । ମୁଁ ବି ଦିନେ ଏହି ଧୂଳି ତଳେ ମିଶିବି ।

## —ସପ୍ତମ ଦୃଶ୍ୟ—

( ଗୋଟାଏ ଟ୍ରଙ୍କରେ ଲବଙ୍ଗ ବସି କେତେ ଗୁଡ଼ାଏ ଲୁଗାପଟା ସଜାଡ଼ି ରଖୁଛି—ଜନ୍ମସ୍ଥାନ ଛାଡ଼ି ଦୂରକୁ ଯାଉଛି ବୋଲି ତାର ମନ ଭିତରେ ଘୋଳେଇ ଘାଣ୍ଟି ହେଉଛି । ଏହି ସମୟରେ ପ୍ରବେଶ କଲେ ବାଡ଼ି ହସ୍ତେ ଗୋଟିଏ ବୃଦ୍ଧା—ବାର୍ଦ୍ଧକ୍ୟର ପ୍ରଭବରେ ତାର ଶରୀର ବଙ୍କା ହୋଇଥିଲ ।)

ବୃଦ୍ଧା—ଅଛୁ କିଏ ଲବଙ୍ଗ ?

ଲବଙ୍ଗ—କିଏ ବଡ଼ ଆଈ, ଆସ ଆସ । ମୁଁ ତ ତମକୁ ବର୍ତ୍ତମାନ ଖୋଜୁଥିଲି । ତମେ ବହୁତ ଦିନ ବଞ୍ଚିବ ।

ବୃଦ୍ଧା—ହଁ ମୋର ପରମାୟୁ ବେଶୀ ନ ହେଲେ ତୋ ପୁଅ ଝିଅଙ୍କୁ କେମିତି ଦେଖିବି ? କାଳ ଯମ ମୋ ପାଞ୍ଜି କି କୁଆଡ଼େ ହଜାଇଲଣି । ନାଇଁ ଲୋ ଝିଅ, ହାତ ଗୋଡ଼ ଚଳୁ ଚଳୁ ସେମାନଙ୍କ ଆଗରେ ଯଦି ଚାଲିଯାଏ କୋଟି ସୌଭାଗ୍ୟର କଥା, ଆଉ ତ ଆଖିକୁ ଭଲ ଦିଶୁ ନାହିଁ । କାନକୁ ବି ଭଲ ଶୁଣା ଯାଉନି । ଚାଲିଲେ ଦେହ ଥରୁଛି ।

ଲବଙ୍ଗ—ଆଇ ବସନା । ଏ ସପ ଉପରେ ବସ ।

(ବୃଦ୍ଧା ଉପବେଶନ ଓ ଲବଙ୍ଗ ତାର ପିଠି ଗୋଡ଼ ଆଉଁଷି ଦେଲା)

ବୃଦ୍ଧା—ସେ ସୁରିଆ କାହିଁଲୋ, କାହିଁ ଦିଶୁ ନାହିଁତ ?

ଲବଙ୍ଗ—ଭାଇ ଯାଇଛନ୍ତି ଦେଓ୍ୱାନ ବାବୁଙ୍କ ଘରକୁ । ସେ ଡକେଇ ଥିଲେ ।

ବୃଦ୍ଧା—ହଇଲୋ, ମୁଁ ଗୋଟାଏ କଥା ତ ଶୁଣିଥିଲି ଗଡ଼ବାଲଙ୍କଠୁଁ । ସୁରିଆ କୁଆଡ଼େ ଯାଉଛି କଟକ ଚାକିରି କରିବାକୁ । ଦେଓ୍ୱାନ୍ ବାବୁଙ୍କ ପୁଅ ଡକେଇଛନ୍ତି । ଯାହାହେଉ ସେ ପିଲାଟି ତମକୁ ବହୁତ ହେମତ ହେଲା । ତମକୁ ଯେମିତି ମାଆ ଛାଡ଼ି ଦେଇଥିଲା । ସତ କହିଲେ ତମେ ଦି ଜଣ ଅଇରି ଗପଗକୁ ବଇରୀ ହୁଅନ୍ତଣି । ଘର ଡିହ ବି ନଥାନ୍ତା ।

ଲବଙ୍ଗ—ଆଇ ମୁଁ ବି ଯାଉଛି ଭାଇଙ୍କ ସାଙ୍ଗରେ ସେଠି ପଢ଼ିବି ବୋଲି ।

ବୃଦ୍ଧା—ହଁ ତୁ ଯାଉଥିଲୁ ବସି... ...ମାଇକିନିଆ ଝିଅଟା... ...

ଲବଙ୍ଗ—ନାଇଁ ଆଇ ତମ ରାଣ । ମୁଁ ବି ଯାଉଛି ।

ବୃଦ୍ଧା—ଏଠିକା ଇସ୍କୁଲ ପାଠ କ'ଣ ତୋର ସରିଲାଣି । ତତେ ପର ଟଙ୍କା ମିଳୁଥିଲା ସରକାରଠୁ ?

ଲବଙ୍ଗ—ଚାରି ଟଙ୍କା ଲେଖାଏଁ ମିଳୁଥିଲା । ମୁଁ ପର ମାଇନର୍ ପାଶ୍ କଲି ଆଉ ମିଳିବ କେଉଁଠୁ ?

(ସୁରେଶର ପ୍ରବେଶ)

ସୁରେଶ—(ଲବଙ୍ଗ ପ୍ରତି)ଯେଉଁ କଥାଭାଷା ହୋଇଥିଲା ବଡ଼ ଆଈକୁ ପଚାରିଲୁ ଲବଙ୍ଗ ?

ଲବଙ୍ଗ—ନା ପଚାରି ନାହିଁ । ଖାଲି ଯିବା କଥା କହିଛି ।

ବୃଦ୍ଧା—କିରେ ସୁରିଆ କିରେ ! କେଉଁ ଦିନ କଟକ ଯାଉଛୁ ?

ସୁରେଶ—କାଲି ତ ଯାଉଛୁ ।

ବୃଦ୍ଧା—କ'ଣ ଘର ଭଉଣୀ ଛାଡ଼ି ଯାଉଁଛି ହୋଇ ?

ଲବଙ୍ଗ—ମଲା କାନକୁ ଶୁଣା ଯାଉନି । ଆଖିକୁ ଦେଖାଯାଉ ନାହିଁ, ଗୁଣ କେତେ ?

ବୃଦ୍ଧା—(ସୁରେଶକୁ ପାଖକୁ ଡାକି) ବସିଲୁ ପୁଅ । ଗୋଟିଏ କଥା ତତେ କହିବାକୁ ଅଛି । ମୋ କଥା ଯଦି ମାନିବୁ ତେବେ କହିବି । ତମେ ମା ଛେଉଣ୍ଡ ପିଲା ଦିଓଟି । ମୁଁ ତମର କେବେ ଅମଙ୍ଗଳ ପାଞ୍ଚି

ନାହିଁ—କି ଚାଞ୍ଚିବି ନାହିଁ । ଗୋଟାକ ଯେବେ ଥାଆନ୍ତା ତେବେ ଅଛି ହୁଅନ୍ତା । (କୋହ ଭାର ହୋଇ) ବିଧାତା ତ ସେତକ ଆଇଷ ଦେଇଥିଲା । (କାନ୍ଦି ପକାଇଲା—ତାର ଆଖିରୁ ଝରିଲା କେତେ ବିନ୍ଦୁ ଲୁହ)

ସୁରେଶ—(ବସି ଶୁଣୁଥିଲା) କାହିଁକି ବ୍ୟସ୍ତ ହେଉଛୁ ଆଇ, କ'ଣ କହୁନୁ ଆମ ଭାଗ୍ୟରେ ଯାହା ଅଛି ତାହା ହଉଛି—ହବ ।

ବୁଢ଼ୀ—ହଇରେ ପୁଅ । ତୁ ଯାଉଛୁ ଭଲ ଚାକିରି କରିବାକୁ । ମରଦ ପୁଅ । ସେ ଝିଅଟାକୁ କାହିଁକି ସାଙ୍ଗରେ ନେଇ ଯାଉଛୁ ? ତା ନାଆଁ କଟକ ସହର । ଜାଣୁ ତ ଆମ ଗାଁ କଥା ଏଠି ମାଛି ପଡ଼ିଲେ ନବ ଖଣ୍ଡ । ତମ ମାଆ ଥିଲାବେଳେ ସେ କ'ଣ କମ୍ ବଚନ ସହିଛି । ତମମାନଙ୍କ ଲାଗି ? ଏଇ ସାଇ ପଡ଼ିଶା କେତେ ଦେଖେଇ ଶିଖେଇ କହନ୍ତି । ମୋ କଥା ରଖ । ସେ ଅଭିଆଡ଼ୀ ଝିଅଟାକୁ ନେ ନା ସାଙ୍ଗରେ । ବାର ହଟହଟା ବସିବ ।

ସୁରେଶ—ଆଜି ଯା କହିଲ ଆଇ ! ମାକୁ ଯେତେବେଳେ ଠାକୁରାଣୀ ହେଲା ସେତେବେଳେ ଏ ସାହିରେ କେହି ଆମ ଦୁଆର ମାଡ଼ିଲେ ନାହିଁ । ସବାଶେଷକୁ ସେ ମଲା—ଆମେ ତିନିଦିନ ଉପବାସ ଆଇ ! ସାନ ଭାଇଙ୍କର ଗୋଡ଼ ଧରିଲି । କାନ୍ଦି ଗଡ଼ିଲୁ ଆମେ ଭାଇ ଭଉଣୀ । କାହାରି କଣ୍ଠରେ ଟିକିଏ ଦୟା ହେଲା ନାହିଁ । କହିଲେ କୋଡ଼ିଏ ଟଙ୍କା ଆଣ । ଲାସ ଉଠିବ । ସରୋଜ ବାବୁ ନଥିଲେ ଲାସ ଘରେ ପଡ଼ି ଥାଆନ୍ତା । ସେ କଥା ମୋ ହୃଦୟରେ ତିନିଗାର ହୋଇପଡ଼ିଛି ।

ଲବଙ୍ଗ—(ପିଠି ଆଉଁଷି) ଆଛା ଆଇ କହିଲ—ଭାଇ ଗଲେ ମୁଁ କେଉଁଠି ରହିବି ? କାହା ଘରେ ? ମୁଁ ଖଟି ଖାଇବାକୁ ରାଜି ଅଛି । ଏ ଗାଁରେ କିଏ ଖାଇବାକୁ ଦେବ ?

ବୁଢ଼ୀ—ସତଲୋ ଝିଅ । ଏ ଗାଁରେ ତ ତେଲ ପଳାଏ ଧରି ବୁଲିଲେ ପାଣି ପଳାଏ ନାହିଁ ।

ସୁରେଶ—ଆଇ ମୁଁ ଯାଉଛି ପଢ଼ିବି । ସେ ବି ଯାଇ ଡାକ୍ତରୀ ସ୍କୁଲରେ ପଢ଼ିବ । ପଢ଼ି ଆସିଲେ ଏଠି ବହୁତ ଲୋକଙ୍କର ସେବା କରିପାରିବ । ତୁ ଜାଣୁ ନାହିଁ ଆଜିକାଲି ଯାରି ଝିଅ ଶହ ଶହ ପିଲା ଇସ୍କୁଲରେ ପଢ଼ୁଛନ୍ତି ।

ବୁଢ଼ୀ—ଭଗବାନ ତମର ମଙ୍ଗଳ କରନ୍ତୁ । ତେବେ ମୁଁ ଯାହା ଶୁଣିଛି ତମକୁ ତ ଲୁଚେଇଲେ ମୋତେ ପାତକ ପଡ଼ିବ । ଏ ସହସ୍ର ଗର୍ଣ୍ଣ ତଳେ ବସିଛି । ତମେ ମୋର ପୋଷଣହାରୀ ଲାଗିଛ । ଏଇ ଲବଙ୍ଗ କଥା—ସେ ଦିନ ସେ ଗୁଡ଼ିଆ ଟୋକାଏ ଯାହା ସବୁ କହୁଥାନ୍ତି—କାନରେ ଶୁଣିବ ନାହିଁ । ଶୁଣି ମୋ ମନ ଉବେଇ ଖବେଇ ହଉଛି ।

ସୁରେଶ—ସେ ସବୁ ପଛରେ କହିବେ । ଆଗରେ କିଏ କହିବେ । କାହା ଜିଭରେ ହାଡ଼ ଅଛି ? ତମେ ସେ ଗୁଡ଼ାକ ଶୁଣିବ ନାହିଁ । ଆମର ଗୋଟାଏ କାମ କରିବ ଆଇ ? ଗୋଟିଏ ଗୁଆ ଦେଇ ଆମର ଏ ପାଟ ବାଡ଼ିବାଡ଼ି ନେଇଯାଅ । ଆମେ ଆଉ ତାକୁ ରଖିବୁ କେଉଁଠି ? ତମ ଘରେ ରହିଲେ ହେପାଜତ୍‌ରେ ରହିବ । ନୋହିଲେ ଆମକୁ ଝୁରି ହେବ । ତାଙ୍କର ଚୁଳ ପିଟିଛି ନା ମୁଣ୍ଡ ପିଟୁଛି ?

ଲବଙ୍ଗ—ଆଉ ତୁମକୁ ମୋ ରାଣଟି ମୋ ମୁଣ୍ଡ ଖାଅଟି, ଆମକୁ ଯେମିତି ଭଲ ପାଅ ପଟ ବାବୁରୀ ବି ମୋତେ ସେମିତି ଭଲ ପାଇବ ।

ବୃଦ୍ଧା—ହଉ ଦଉତ ଦବ । ଆମ ଘରେ ଗୋ ମାତାଙ୍କର ଅଣ ହେଳା ହେବ ନାହିଁ । ଆମେ ପଛେ ଉପାସ ରହିବୁ—ତାଙ୍କ କଥା ଆଗ । ତାଙ୍କ ଭୁମ ଗୋଟିଜ ଦେବତା ଗୋଟିଏ ।

ଲବଙ୍ଗ—ଆଜି ତ ଗୁରୁବାର ହବ ନାହିଁ । କାଲି ସକାଳୁ ଗାଈବେଳେ ତମେ ଆସିବ । ଭୁଲି ଯିବ ନାହିଁ ।

ବୃଦ୍ଧା—ତୁମେ କଟକ ଗଲେ ହୁସିଆର ହୋଇ ଚଳିବ । ପର ଗରଜ । ଏହର ଜାଗା (ଭଠି) ଆପଣା ଦେହପାକୁ ଜଗି ମାନ ମହତ ରଖି ଚଳିବ । ହଁ ତମେ ଯାହା ଭରସାରେ ଯାଉଛ ସେ ଭଳି ପିଲାଟ ଏ ଗରଜରେ କୋ'ଟିକେ ଗୋଟିଏ ଥିବ । ଭଗବାନ ତାଙ୍କୁ ପରମାୟୁ ଦିଅନ୍ତୁ ।

ଲବଙ୍ଗ—ଆଉ ଆମକୁ ଟିକିଏ ମନ ପକାଉଥିବ ।

ବୃଦ୍ଧା—ହଁ ବର୍ତ୍ତିଥିଲେ ପୁଣି ଦେଖା । ପାଚିଲ ଆମ୍ବ ଆସି ହେଲେଣି—କେତେବେଳେ ଝଡ଼ି ପଡ଼ିବି ସେ ଠିକ ମୁଁ ଯାଉଛି—

( ନଇଁପଡ଼ି ଠକ୍ ଠକ୍ କରି ପ୍ରସ୍ଥାନ କଲେ )

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( କନକପ୍ରଭା ମେଡ଼ିକାଲ ମେସରେ ଗୋଟାଏ କୋଠରୀ । ପ୍ରତିମା ଓ ଲବଙ୍ଗ ନିଜ ନିଜ ବିଛଣାରେ ବସିଥିଲେ । ଦୁହିଁଙ୍କ ମନରେ ଚିନ୍ତାର ଛାୟା-ଜକ୍ଷଟି ନୀରବରେ ପୂରି ରହିଥିଲା । ପ୍ରତିମା ଖଟ ଉପରୁ ଉଠିଆସି ଚେୟାରରେ ବସିପଡ଼ିଲା ।)

ପ୍ରତିମା—(ନୀରବତା ଭଙ୍ଗି) ଲବଙ୍ଗ, ତମର ଯେ ଭାଇ ଆସିଥିଲେ ମୁଁ ତାଙ୍କୁ ତ କେବେ ଏଠି ଦେଖି ନାହିଁ ତମ ପାଖକୁ ଆସିବାର ?

ଲବଙ୍ଗ—ନା, ସେ ମୋର ନିଜ ଭାଇ ନୁହନ୍ତି । ସୁରେଶ ଭାଇ ଯେ ଆସନ୍ତି ସେ ମୋର ନିଜ ଭାଇ ।

ପ୍ରତିମା—ତେବେ କ'ଣ ବନ୍ଧୁବାନ୍ଧବ ସମ୍ପର୍କ ?

ଲବଙ୍ଗ—ସେ ମୋର ଧର୍ମ ଭାଇ । ତାଙ୍କ ବାପା ଆମ ଷ୍ଟେଟର ଦେଓ୍ୱାନ ଥିଲେ । ତାଙ୍କ ଘର ତ ସେଇ ଗଡ଼ରେ । ଆମ ଦି ଜଣଙ୍କୁ ସେ ବହୁତ ସାହାଯ୍ୟ କରିଛନ୍ତି । ଏଇଠି ଆସି କଲେଜରେ ପଢ଼ୁଛନ୍ତି ପରା ।

ପ୍ରତିମା—ଓ ତୁ ଯାହାଙ୍କ କଥା କହୁଥିଲୁ କି ? ତାଙ୍କ ଘରେ ଆଉ କିଏମ ?

ଲବଙ୍ଗ—ଆଉ କେହି ନାହାନ୍ତି । ବାରବର୍ଷବେଳେ ତାଙ୍କ ମା' ମରିଗଲେ । ଦେଓ୍ୱାନ ବାବୁ ବି ଏମିତି ଛାଡ଼ିଲେ । ଆଉ ସେ ତ ବିଭା ହୋଇ ନାହାନ୍ତି ।

ପ୍ରତିମା—ତାଙ୍କ ଘରେ ତାହା ହେଲେ ବାପ ଆଉ ଝିଅ ଦୁଇଜଣ ।

ଲବଙ୍ଗ—ହଁ (ଟିକିଏ ରହି) ଏତେବେଳ ଯାଏଁ ତମ ତୁଣ୍ଡରୁ ଭଲକରି ପଦେ ଶୁଣିଲି । ଦେଇ, ତମକୁ ମୁଁ ଗୋଟାଏ କଥା ପଚାରିବି ଚିଡ଼ିବ ନାହିଁ ତ ?

ପ୍ରତିମା—କ'ଣ କହୁନୁ, ଚିଡ଼ିବାର ହେଲେ ଚିଡ଼ିବି—ନ ଚିଡିବାର ହେଲେଟି ନାହିଁ ।

ଲବଙ୍ଗ—ତମ ସାଙ୍ଗରେ ରହିଲା ଦିନଠାରୁ କେଉଁଦିନ ଏମିତି ମୁହଁ ଶୁଖାଇ କଥା କହି ନାହିଁ । ନିଜ ଭଉଣୀଠାରୁ ବଳି ସ୍ନେହ କର । କାଲି ସକାଳୁ ତମେ ମୋ ଉପରେ ଏଡ଼େ ମୁହଁ କରିଛ । ଉପର ଠଉରିଆ କଥା ବାର୍ତ୍ତା କରୁଛି । ମୋର ଦୋଷ କ'ଣ ?

ପ୍ରତିମା—ତୋର ଦୋଷ ନୁହେଁ ଯେ ମୋ ଭାଗ୍ୟର ଦୋଷ । ଏତେ ଦିନ ଯାଏଁ ଏକାଠି ରହି ତୁ ଯେ ମୋ ମନକଥା ବୁଝି ପାରିଲୁ ନାହିଁ । ଦୁନିଆରେ କିଏ କାହାର ?

ଲବଙ୍ଗ—ଦେଇ, ତମେ ଗୋଡ଼ ଦେଇ ଫିଙ୍ଗି ଦେଲେ ମୁଁ ମୁଣ୍ଡ ଟେକି ପଶିଲି ପିଙ୍କ । ବହି ଖଣ୍ଡିକ ଲାଗି ଯେବେ ମୋ ଉପରେ ରାଗିଥାଅ ତେବେ ମୁଁ ନାଚାର । ତମେ ଭଲକରି ଜାଣ ମୁଁ ସେଥିପାଇଁ ବଡ଼ ଦୁଃଖିତ । ବହି ନେଲାବେଳେ ମୁଁ ତାଙ୍କୁ କିଛି କହି ପାରିଲି ନାହିଁ । ମୁଁ ବି ଘଣ୍ଟାକୁଣୀ ତୁମକୁ ପଦେ ପଚାରିଲି ନାହିଁ । ତମେ ତ ବସିଥିଲ । ତାଙ୍କୁ ଦେଖିଲାକ୍ଷଣି କିଆଁ ଉଠି ପଳାଇଲ ?

ପ୍ରତିମା—ମୁଁ ଉଠି ଯାଆନ୍ତି ନାହିଁ ଆଉ କ'ଣ ତାଙ୍କ ମୁହଁକୁ ଚାହିଁ ବସନ୍ତି ? ତାଙ୍କର ମୋର ଚିହ୍ନା ନା ପରିଚୟ—ତମ ଭାଇ ଭଉଣୀଙ୍କର ପ୍ରାଇଭେଟ୍ କଥାବାର୍ତ୍ତା ଥିବ-ମୁଁ ବସି ରହିବାଟା କଣ ଶିଷ୍ଟାଚାର ହୋଇ ଥାଆନ୍ତା ।

ଲବଙ୍ଗ—ଘର ବାହାର କେଉଁ କଥା ତୁମକୁ ଅଛପା ? ଯିଏ ଯାହା ଭବନ୍ତୁ ମୋର ଦୟା ଓ ଭକ୍ତି ଆସେ ।

ପ୍ରତିମା—ମୋର ତ ଭୟ କି ଭକ୍ତି କିଛି ଆସିଲା ନାହିଁ । ତୁ ଯାହା ତାଙ୍କ ବିଷୟରେ ବର୍ଣ୍ଣନା କରୁଥିଲୁ ଦେଖିଲି ତାହା ଆରବ୍ୟ ଉପନ୍ୟାସ ପରି ସତ । ତୁ କହୁଥିଲୁ ତାଙ୍କ ହୃଦୟଟା କିଲା ପଡ଼ିଆ ଭଳି । ମାତ୍ର କାମରେ ଦେଖିଲି ଠିକ୍ ଓଲଟା । ପଇସା ମଣିଷକୁ ଅନ୍ଧ କରିଦିଏ । ବୁଝିଲୁ ଲବଙ୍ଗ ଯାର ହୃଦୟ ଥାଏ ସେ ଅନ୍ୟର ହୃଦୟ କଥା ବୁଝିପାରେ ।

ଲବଙ୍ଗ—ସେ କଥା ମୁଁ ବୁଝିଛି ଦେଇ । ଅଙ୍କେ ନିଭେଇଛି । ମା' ମଲାଦିନ ଅମ ଭାଇ ଭଉଣୀଙ୍କ କାନ୍ଦ ଦେଖି ସେ ଭେ ଭେ ହୋଇ କାନ୍ଦି ଉଠିଲେ । କେଡ଼େ ବଡ଼ ଲୋକ ସେ । ଆମେ କିବା ଛାର ।

ପ୍ରତିମା—ସେଇଠି ତ ମରମ କଥା ! ଗରିବ ଲକ୍ଷେ କାନ୍ଦିଲେ ସେ କଥା କାହାରିକି ଦିଶେ ନାହିଁ । ବଡ଼ ଲୋକ ଆଖିରେ ଟୋପାଏ ଲୁହ ଦେଖା ହେଲା—ଉପନ୍ୟାସ-ଅଙ୍କା ହେଲା ଚିତ୍ରପଟ, ଅଭିନୀତ ହେଲା ନାଟକ । ସେମାନେ କ'ଣ ସୁନା ଲୁହ କାନ୍ଦନ୍ତି ?

ଲବଙ୍ଗ—ତମେ ଯାହା କୁହ—ପରର ଦୁଃଖ ଦେଖି ଯାର ମନ ତରଳେ ନାହିଁ ସେ ପଥର ।

ପ୍ରତିମା—ହଁଅ-ଯେମିତି ଅଜି ତୁ—ଆଉ ତୋର ପୂଜ୍ୟପାଦ ଭଉଣୀବେବ (ବିଦ୍ରୂପ ହସ ହସି) ନାଆଁଟା କଣଟି—ସଙ୍କେତିତା—ହାଁ ନା ସରୋଜ କୁମାର ପାଇ !

ଲବଙ୍ଗ—ମୁଁ ଆଉ ତୁମକୁ କିଛି କହିବି ନାହିଁ । ତାଙ୍କ ଲେଖି ପଠାଇବି । ସେ ଖଣ୍ଡେ ନୂଆ ବହି ପଠାଇ ଦେବେ। ମୁଁ ବଡ଼ ଭୁଲ କରିଛି ତାଙ୍କୁ ଏଠିକି ଡାକି ଆଣି—ବହୁତ ଅପମାନ ଦିଆଗଲା ।

ପ୍ରତିମା—ଯାର ଯେଉଁ ଜିନିଷରେ ଅଧିକାର ନାହିଁ ସେ ସେଥିକି ମନ ବଢ଼ାଇବ କିଆଁ ?

ଲବଙ୍ଗ—(କାନ୍ଦ କାନ୍ଦ ହୋଇ) ଅଧିକାର ନଥିଲା ବୋଲିତ ଏତିକ ଧିକ୍କାର ସହିଲିଣି ।

ପ୍ରତିମା—(ପାଖକୁ ଯାଇ ତା କାନ୍ଧରେ ହାତ ପକାଇ) କାନ୍ଦୁଛୁ କାହିଁକି ମ ! ଲୋକଙ୍କ ପାଇଁ ଏତିକି ସହି ପାରୁନୁ ? ସେ ତମପାଇଁ ଏତକ କାନ୍ଦିଥିଲେ ? ସେ ଋଣ କେମିତି ସୁଝିବୁ ମ ଲବଙ୍ଗ ? (ନିଜ ଜାଗାରେ ଯାଇ ବସି) ତୁ ବୁଝିବୁ କ'ଣ ? ଆମର ଏଠି ବହି କିଣି ଜାଣନ୍ତି ନାହିଁ । ପଢ଼ି ଜାଣନ୍ତି ନାହିଁ ନାଁ ଧରି ଜାଣନ୍ତି ନାହିଁ । ବହିର ଇଜ୍ଜତ କ୍ୱଚିତ୍ ଲୋକଙ୍କୁ ଜଣା । ତୁ ଜାଣୁ ମୁଁ ବହିକି କେତେ ଭଲପାଏ । ହେପାଜତ୍‌ରେ ରଖେ । ମୋ ଖାତାରେ ଗାରେଇ ଦେଲେ ମୋତେ ଆଖୁଡ଼ି ହେଲା ଭଳି ଲାଗେ । ଗାରତ ବହିରେ ପଡ଼ିନାହିଁ ହୃଦୟରେ ପଡ଼ିଛି ।

ଲବଙ୍ଗ—ପ୍ରକୃତରେ ତାଙ୍କର ଭୁଲ୍ ହୋଇଯାଇଛି ।

ପ୍ରତିମା—ସେ ପିଲାଦିନେ ସମ୍ଭବ ଏମିତି ଚପଳ ଥିଲେ ।

ଲବଙ୍ଗ—ନା ଦେଇ ପିଲାଦିନୁ ତ ସ୍କୁଲରେ ବରାବର Good Conduct Prize ପାଇ ଆସିଛନ୍ତି ।

ପ୍ରତିମା—ହ Good Conduct Prize ଟା ପ୍ରାୟ ଯାଙ୍କରି ଭଳିଆ ମଉନ ମୁହାଁଙ୍କ ଭାଗରେ ପଡ଼େ । ଯେ ଆଗଚଲା ଆଗବୋଲା ହୋଇ ସାରଙ୍କ ସାଙ୍ଗରେ ଯୁକ୍ତିତର୍କ କଲା ତା ଭାଗ୍ୟରେ କ୍ୱଚିତ୍ ଯେ ପାଇକ୍ୱଚିତ ଜୁଟେ । ଚରିତ୍ର ଯେତେ ନିଷ୍କଳଙ୍କ ହୋଇଥାଉ ପଛେ ।

ଲବଙ୍ଗ—ଦେଇ ତମେ ଜାଣନା-ସେ ୟୁନିଭରସିଟିରେ ଫାଷ୍ଟ ହୋଇଥିଲେ ନିଜ ପ୍ରତିଭା ବଳରେ ।

ପ୍ରତିମା—ଏ ଯେଉଁ ପରୀକ୍ଷା ନା ଏଥିରେ ପ୍ରତିଭା ଜକ୍ ଜକ୍ ହୋଇ ଦେଖାଯାଉଛି । ଏ ଦେଶର ଖିରେଜାଙ୍କି ଖିରେପିଡ଼ା । ବିଶ୍ୱକବିଙ୍କ ଭାଷା ଶିକ୍ଷା ନ ଥାଇ ପରୀକ୍ଷା । ମୁଁ ଜାଣେ ଯାହାର ସ୍ମରଣ ଶକ୍ତି ଥାଇ ଟିକିଏ ବୁଦ୍ଧିଆ ହୋଇଥିବ ସେ ନିଶ୍ଚୟ ପୋଜିସନ୍ ରଖି ଫାଷ୍ଟ ହୋଇପାରିବ । କେତେ ଅହମିକା— ନିଜେ ନ ଆସି ଗାରିଆ ଗାରି କରି ବହି ଖଣ୍ଡିକ ଅନ୍ୟ ହାତରେ ଫେରେଇଛନ୍ତି ।

ଲବଙ୍ଗ—ଦେଇ, ସାମାନ୍ୟ ବହିଟାପାଇଁ ମନରେ ଏତେ ଦୁଃଖ କରୁଛନା ?

ପ୍ରତିମା—ବହି କଥା ନେଇ ନୁହେଁ । ତାଙ୍କ ବ୍ୟବହାରପାଇଁ ।

—ପଟକ୍ଷେପ—

## —ଦ୍ୱିତୀୟ ଦୃଶ୍ୟ—

(ମହାନଦୀ କୂଳ—ଗୋଟିଏ ବେଞ୍ଚରେ ସରୋଜ ଓ ମନୋରଞ୍ଜନ ଉପବିଷ୍ଟ—ସମୟ ଗୋଧୂଳି—ପଶ୍ଚିମ ସୂର୍ଯ୍ୟର କନକ କିରଣ ମହାନଦୀର ଜଳରେ ନାଚି ଉଠୁଥିଲା—ସରୋଜ ଚିନ୍ତାମଗ୍ନ)

ମନ—ତୁ ଆଜି କାହିଁକି ଟିକିଏ ଅନ୍ୟମନସ୍କ ଥିଲା ପରି ଜଣାପଡ଼ୁଛୁ ?

ସଙ୍ଗେଳ—ଗୋଟାଏ ବିଷୟ ଖୋଜୁଛି । ତାକୁ ଭାର୍ଡ଼ି ଦେଇ ପାରୁନାହିଁ । ହଠାତ୍ ଆସିଲ ବେଳୁ ଲାଗୁଛି ତୋତେ ପଗ୍ଭରିବି ।

ମନ—କ'ଣ କହୁନୁ । ଲାଜ ମାଡ଼ୁଛି କି? ବୟସ ବୃଦ୍ଧି ସଙ୍ଗେ ମଣିଷର ଇଚ୍ଛା ବଢ଼େ—ସରଳତା କମି ଆସେ ।

ସଙ୍ଗେଳ—ମୋର ଆଉ କେଉଁ କଥା ବାକି ଅଛି... ? ଅଚ୍ଛା କହିଲୁ ଜଣେ ଜଣକୁ ଦେଖିଲାକ୍ଷଣି କାହିଁକି ନିଜର ପରି ବୋଧ ହୁଏ ? ମନ ହୁଏ ଯେମିତି କେଉଁ କାଳର ପରିଚିତ—କେଉଁ ଜନମର ସାଥି । ମନ ଓ ଆଖି ଟାଣି ହୋଇଯାଏ ।

ମନ—ଏତେ ଦିନେ ସେ କଥା ତୋର ମୁଣ୍ଡରେ ପଶିଲା ପରା । ମୁଁ ଯେତେବେଳେ କହୁଥିଲି ସେଇଟା ତୋତେ କାଲ ଆଗରେ ମୁକ୍ତା ଖାଇଲା ପରି ଲାଗୁଥିଲା । ମୁଁ ତ ଦାର୍ଶନିକ କି ବୈଜ୍ଞାନିକ ନୁହେଁ—ସେମାନେ ତାର କାରଣ ବାହାର କରିପାରନ୍ତି । ମାତ୍ର ମୁଁ ମୋ ଅନୁଭୂତିରୁ କହୁଛି । ପହିଲି ଭେଟରେ ମୁଁ ଯାହାକୁ ଭଲ ପାଇଛି ତାର ଛବି ମୋର ମନ ଓ ପ୍ରାଣରେ ଆଙ୍କି ହୋଇ ରହିଛି । ତହିଁର କାରଣ ଗୋଟାଏ କିଛି ନିଶ୍ଚୟ ଥିବ ।

ସଙ୍ଗେଳ—ନିଶ୍ଚୟ କିଛି ସ୍ୱାର୍ଥ ଥିବ ।

ମନ—ସ୍ୱାର୍ଥ ଏଇଆ—ଭଲ ଲାଗେ ବୋଲି ଭଲ ପାଆନ୍ତି । ଅନେକ ଜାଗାରେ ଦେଖାଯାଇଛି ରୂପ ଓ ଗୁଣ ସବାଶେ ମଣିଷ ମଣିଷକୁ ଭଲ ପାଇଥାଆନ୍ତି ।

ସଙ୍ଗେଳ—ରୂପଟା ଗୋଟାଏ ଗୁଣ ନୁହେଁ । ଗୁଣଟା ଏଠି ମଣିଷ କେତେକାଂଶରେ ଗଢ଼ି ଦେଇପାରେ । ମାତ୍ର ରୂପଟା ବିଭୂତିର । ତାକୁ ମଣିଷ ଏଠି ଗଢ଼ି ପାରେନା ।

ମନ—ସଙ୍ଗେଳ, ମୁଁ ଦେଖୁଛି ତୁ ଭାରି ବଦଳି ଗଲୁଣି ।

ସଙ୍ଗେଳ—ବୁଝି ପାରୁନାହିଁ କାହିଁକି ବଦଳି ଗଲି । କେବେ ବଦଳି ଗଲି—ମୁଁ ତ ମୁଁ ଅଛି ।

ମନ—ନିଶ୍ଚୟ ବଦଳି ଯାଇଛୁ, ସେ ଦିନ ମୋତେ କହୁଥିଲୁ—ଦେଖ କୋଇଲିଟା କେମିତି କୁହୁ କୁହୁ ଗାଉଛି—ଏ ମହାନଦୀର ସ୍ରୋତ—ଟେବୁଲ ଉପରେ ତ ନିତି ଫୁଲ ଦାନିରେ ଫୁଲ ସଜଡ଼ା ହୋଇ ରହୁଛି । ଅଚ୍ଛା ତତେ ପରା କହିଥିଲି—ଗୀତା ପଢ଼ିବାକୁ, ପଢ଼ୁଛୁ ତ ?

ସଙ୍ଗେଳ—ନା ଆଜିକାଲି ଆଉ ପଢ଼ି ପାରୁନାହିଁ । ଖାଲି ପଢ଼ିଲେ କ'ଣ ହେବ ? ଗୀତା ଅନୁଯାୟୀ କାମ କଲେ ସିନା ଚଳିବ ? ମୋର ସେହି ଗୋଟିଏ ଧାଡ଼ିମନେ ଅଛି—'ତ୍ୱୟା ହୃଷିକେଶ ହୃଦେ ସ୍ଥିତେନ ।'

ମନ—ମୁଁ ଅନେକବାର କହିଛି, ସଙ୍ଗାତ ଜାୟତେ କାମଃ । ମିଳାମିଶାରେ ଅଭିଳାଷ ବଢ଼େ । ତୋର ବର୍ତ୍ତମାନ ସେଇ ଅବସ୍ଥା । ଏତେବେଳେ ତୁ ନିଜକୁ ଯଦି ଠିକ୍ ଭାବରେ ଚଳାଇ ନେଇ ନ ପାରିବୁ ବାଲବର୍ଷ ତପ ଯାକ ଶୁଖୁଆ ପୋଡ଼ାରେ ଯିବ । ଏ ଗୋଟାଏ ଜୀବନର ସନ୍ଧିକ୍ଷଣ ।

ସଙ୍ଗେଳ—(ଦୀର୍ଘ ନିଃଶ୍ୱାସ ପକାଇ) ପ୍ରକୃତରେ ମୋତେ କିଛି ଭଲ ଲାଗୁନାହିଁ । ମନଟା କେମିତି ଉଡ଼ି ଉଡ଼ି ବୁଲିଛି ।

ମନ—ମେଡ଼ିକାଲ ଆଡ଼େ କେବେ ଯାଇଥିଲୁ କି ?

ସରୋଜ—(ଅନ୍ୟମନସ୍କ ଥିଲା) ଏଁ କ'ଣ ପଚାରିଲୁ ? ମେଡ଼ିକାଲ ଆଡ଼େ ? ହଁ ଯାଇଥିଲି ପନ୍ଦର ଦିନ ତଳେ ।

ମନ—ତୁ ମନରେ କଷ୍ଟ କରିବୁ ନାହିଁ । ଲବଙ୍ଗ ରୂପ ଯେ ତତେ ଟାଣି ଧରିବ ଏକଥା ମୁଁ ବହୁଦିନ ଆଗରୁ ଜାଣେ । ସତ କହିଲୁ ମୋର ଭୟ ତୋତେ କେବଳ ଚୁପି ରଖିନାହିଁ ?

ସରୋଜ—(ଠିଆ ହୋଇ ଉତ୍ତେଜିତଭାବେ) ନା ନା ତୁ ଯାହା ଭାବୁଛୁ ତା କେବେ ନୁହେଁ । ତୋର ଏ ଧାରଣା ମୁଁ ତୋତେ ଭୟ କରେ ? ବନ୍ଧୁ ଯେତେବେଳେ ବନ୍ଧୁ ପ୍ରାଣରେ ଅନ୍ଧ ହୋଇ ଅର୍ଜୁନଙ୍କ ପରି ଗାଇ ଉଠେ—ତ୍ୱୟା ହୃଷିକେଶ ହୃଦିସ୍ଥିତେନ, ସେତିକିବେଳେ ସାଧାରଣ ଚକ୍ଷୁକୁ ଦେଖାଯାଏ—ଜଣେ ଜଣଙ୍କ ଉପରେ ପରିସ୍ଫୁଟିତ ପ୍ରୀତି ଓ ଭୀତି ମଧ୍ୟରେ ପ୍ରାଚୀର ଭଳି ବ୍ୟବଧାନ । ଭୀରୁ ପ୍ରେମିକ ହୋଇପାରେନା କି ପ୍ରେମିକ ଭୀରୁ ହୋଇପାରେନା ।

ମନ—(ଉଠିଯାଇ ତାକୁ ଧରି ପକାଇ ବସାଇବା) ସରୋଜ ! ମୁଁ କଣ ଗୋଟାଏ ଥଟ୍ଟାରେ କହିଦେଲି—ଏପରି ହଠାତ ଉତ୍ତେଜିତ ହୋଇପଡ଼ିଲୁ ନା ?

ସରୋଜ—ଲବଙ୍ଗକୁ ସେ ଆଖିରେ ମୁଁ କେବେ ଦେଖିନାହିଁ କି ଦେଖିବି ନାହିଁ । ତାକୁ ସେପରି ଆଖିରେ ଦେଖିବା ମୋ ପକ୍ଷରେ ଅସ୍ୱାଭାବିକ ଓ ପାପ । ତାମା ମୃତ୍ୟୁ ଶଯ୍ୟାରେ କାନ୍ଦି ଯେଉଁ ପଦକ କହି ଯାଇ ଥିଲ ତାହା ଏ ପର୍ଯ୍ୟନ୍ତ କାନରେ ବାଜି ଉଠୁଛି । ତମର ଏ ସାନ ଭଉ ଭଉଣୀ ।

ମନ—ତେବେ ତୁ କାହା କଥା ଭାବୁଛୁ ? ତୋ ଆଖି କେଉଁଠି ଅଟିକିଲା ।

ସରୋଜ—ସେ ଦିନ ବଡ଼ ହଇରାଣରେ ପଡ଼ିଲି । ପ୍ରାୟ ୧୫ ମିନିଟ ବସିଛି କି ନାହିଁ ମୋତେ ବଡ଼ ଅସ୍ୱସ୍ଥ ଲାଗିଲା । ଛାଟିପିଟି ହୋଇ ପଳାଇ ଆସିଲି । ବାଟରେ ଚଷମାଟା ବି ହଜିଗଲା । ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । କାହିଁକି ଏପରି ହେଲା । ସେ ଛବିଟା ମନରୁ ଭୁଲି ପାରୁନାହିଁ ।

ମନ—ଠିକ୍ ସେ ଦିନ ପର ଚକ୍ଷୁଟି ହଜାଇ ଦୁନିଆକୁ ନିଜ ଚକ୍ଷୁରେ ଦେଖୁଛୁ । ଆଉ ବୋଧ ହୁଏ କିଣିନାହୁଁ । ତାହା ହେଲେ ଅନ୍ଧ ହେଲୁଣିତ ?

ସରୋଜ—ନିଜ ଚକ୍ଷୁ ଆଉ କାହିଁ ସେହି ଦିନୁ ?

ମନ—ଲବଙ୍ଗ ସାଙ୍ଗରେ ଆଉ କିଏ ଥାଏ କି ?

ସରୋଜ—କାହିଁକି ସେ ମୋତେ ଗହିଁକରି ଚାଲିଗଲା ମୁଁ ବୁଝିପାରିଲି ନାହିଁ । ମୁଁ ଯେ କାହିଁକି ତାକୁ.......... ତା ବି ବୁଝି ପାରୁନାହିଁ । ଲବଙ୍ଗ ସାଙ୍ଗରେ ଥାଏ ବୋଲି ମୁଁ ତ ଜାଣେନା—ହଠାତ୍ ଦେଖା । ସେ ମୁହୂର୍ତ୍ତର ପରିଣତି—ବର୍ତ୍ତମାନର ଅଶାନ୍ତି । ମାତ୍ର ଲବଙ୍ଗ ଆଜି ଯେଉଁ ଚିଠି ଲେଖିଛି—ମୁଁ ତ ପଢ଼ି ଅବାକ୍ ।

ମନ—(ସାଗ୍ରହେ) କ'ଣ ଲେଖା ଅଛି ?

ସରୋଜ—ତିନିଥର ପଢ଼ିଛି—ତୁ ନେଇ ପଢ଼ (ପକେଟରୁ ଚିଠି ଦେବା)

ମନ—(ପେର୍ଚ୍ଚି ସାରି) ପର ବହିରେ ଏମିତି ଦାଗ ଦେଲ କାହିଁକି ? ଲବଙ୍ଗ ବିଗ୍ଭରି ତୋ ଲାଗି ଅପମାନିତ ହେଲ ସିନା ।

ସରୋଜ—ସେ କ'ଣ ଏତେ ଗର୍ବୀ ? ଚିଠିରୁ କ'ଣ ବୁଝୁଛୁ କହିଲୁ ?

ମନ—ଏ ଚିଠିଟା ତା ହାତର ଚିଠି ନୁହେଁ । ସେ ଯାହା କହିଲ ଲବଙ୍ଗ ତାହା ହିଁ ଲେଖିଛି । ଗର୍ବ ହୋଇ ପାରେ ଅଭିମାନ ବି ହୋଇପାରେ । ସେଥିରେ ଏଇ ଯେଉଁ ଧାଡ଼ିଟି ଲେଖାଅଛି—ଆପଣ ନିଜେ ନ ଆସି ଅନ୍ୟ ହାତରେ ବହି ପଠାଇବାଦ୍ୱାରା ସେ ନିଜକୁ ଅପମାନିତ ମନେକଲେ, ଏଇଥିରୁ ମୁଁ ଜାଣୁଛି ଏଇଟା ଅଭିମାନ ।

ସରୋଜ—ଏହାର ରହସ୍ୟ ମୁଁ କିଛି ଜାଣିପାରୁ ନାହିଁ । ମୁଁ ଯେ କେଡ଼େ ବଡ଼ ଭୁଲ କରିଛି—ତାହା ଆଜି ଜାଣୁଛି । ଲବଙ୍ଗ ବହୁତ ଥର ଖବର ଦିଏ ମୁଁ ଯାଏ ନାହିଁ । ପୁଣି ଗୋଟାଏ କି ଯୋଗରେ ଗଲି !

ମନ—ଆଚ୍ଛା ଯାହା ହେଲ କାଲି ଯା—ତୁ କ'ଣ ଚୋର ହୋଇଛୁ କି ? ଦରକାର ହେଲେ ନୂଆ ବହିଟାଏ କିଣି ପଠାଇ ଦେବା । ତେବେ ଦେଖୁ ଦେଖୁ ଭସି ଯିବୁ ନାହିଁ । ଆର ଥର ତ ଚଷମା ହଜାଇ ଆସିଛୁ ଏଥର ଯଦି ନିଜକୁ ହଜାଇ ଆସୁ .................

ସରୋଜ—ନା ମନ—ମୁଁ ଯିବି ନାହିଁ—ତୁ ଟିକିଏ ଯା ଲବଙ୍ଗଠୁଁ ବୁଝି ଆସିବୁ ।

ମନ—ନା ଭାଇ, ମୁଁ ସେ ଅଡ଼୍ଆରେ ପଶିବି ନାହିଁ । ତୁ ଯାଆ । ମୁଁ ଜାଣେ ତୁ ବେଶ ଚଳାଇ ନେଇପାରିବୁ । ମୁଁ ଯିବାଟା ଉପରେ ପଡ଼ିଲ ପରି ହେବ । ଆ—ଯିବା (ପ୍ରସ୍ଥାନ)

—ପଟକ୍ଷେପ—

## ତୃତୀୟ ଦୃଶ୍ୟ

( ଚକ୍ରଧର ବାବୁଙ୍କ ଘର । ଚୌକିରେ ବସି ଚକ୍ରଧର ବାବୁ ଖବର କାଗଜ ପଢ଼ୁଥିଲେ—ଟେବୁଲ୍ ଉପରେ ଗୋଡ଼ ଦିଟା ରଖି—ହଠାତ୍ ବନ ବାବୁ ପ୍ରବେଶ କରି ନମସ୍କାର କଲେ—ଚକ୍ରଧର ଉଠୁ ଉଠୁ ଚୌକି ସହିତ ପଡ଼ିଗଲେ—ଚୌକିର ଗୋଟାଏ ହାତ ଭାଙ୍ଗି ଯାଇ ତଳେ ପଡ଼ିଗଲ ।)

ଚକ୍ର—ଆରେ ନମସ୍କାର ! ନମସ୍କାର ! ଆଜ୍ଞା ଆସନ୍ତୁ ( ଉଠିଯାଇ ଟିକିଏ ଝାଡ଼ି ହେବାର ଅଭିନୟ କଲ । ଚୌକି ଉଠାଇ ଉଠାଇ ) ଓଃ ସେ ଦିନୁ କହୁଛି ଚୌକିଟା ମରମତି କରାଇ ଦିଅ । ସେତ ଗୋଟାଏ ବାବୁ । ଆଜ୍ଞା ବସନ୍ତୁ । (କହି ବସିଯିବା)

ବନ—(ଚୌକିଟା ହଲାଇ) ଏ ଚୌକିଟା ଦଦରା ନୁହେଁ ତ ? (ବସୁ ବସୁ) ଆପଣ ମୋ ସକାଶେ ....

ଚକ୍ର—ଆପଣଙ୍କ ସକାଶେ କ'ଣ ? ଜୀବନରେ ତ କେତେ କଚଡ଼ା ଖାଇବାକୁ ହେବ । କଚଡ଼ା ଖାଇ ଯେ ଉଠି ବସେ ସେ ବୀର ।

( ଚୌକିର ଖଣ୍ଡିଆ ହାତଟା ଆଣି ଲଗାଇବା )

ବନ—ଆଜି ହୋଟେଲକୁ ଯାଇ ନାହାନ୍ତି କି ?.( ଈଷତ୍ ହସି )

ଚନ୍ଦ୍ର—ଜହଣ୍ଣ ନାହିଁ ଆଜ୍ଞା, ଆଜି କ'ଣ ଏତେବେଳଯାଏଁ ମୋର ଖିଆ ନା ପିଆ । ସେ ବହି ଖଣ୍ଡକ ଲାଗି ପନ୍ଦର ଦିନ ହେଲା ଦୌଡ଼ି ଦୌଡ଼ି ହଜାରେ ଜାଗାରେ ଆଜି ୫୧ ଖଣ୍ଡ ବହି ମିଳିଛି । ଏଠିକା ପ୍ରେସ୍ ବାଲାଙ୍କୁ ପାରିହେବ ନାହିଁ ଆଉ ( ଟେବୁଲ୍‌ରେ ହାତ ବାଡ଼ାଇ ଦେବା )

ବନ—ତାଙ୍କର ଦୋଷ କଅଣ । କାଗଜ ତ ଆଜିକାଲି ସହଜେ ମିଳୁ ନାହିଁ । ପ୍ରକାଶକ ବି ନକଡ଼ା ଛକଡ଼ା କରି ଦିଅନ୍ତି । ସେମାନେ ମାର୍କଣ୍ଡେଶ୍ୱର ଭଣ୍ଡାରୀ ପରି ବହୁତ କାମ କରି ଦିଅନ୍ତି ।

ଚନ୍ଦ୍ର—ଆମ ସବିତା ପୁଣି ଯେଉଁଠି ବାହାରେ । ତାଙ୍କର ଆମର ଏତେ ଭାବ ନାବ ଥାଇ ସୁଦ୍ଧା....ଆପଣଙ୍କର କ'ଣ ଜରୁରୀ କାମ ଅଛି ?

ବନ—ନାଁ ସେମିତି ମୋର ବିଶେଷ କିଛି କାମ ନାହିଁ । ବୁଲଚାଲ ହୋଇ ହୋଟେଲ ଆଡ଼କୁ ଯାଇଥିଲି । ସେଠି ଆପଣଙ୍କୁ ନ ପାଇ ଚାଲି ଆସିଲି ।

ଚନ୍ଦ୍ର—ଆପଣଙ୍କର ଉପହାର ଖଣ୍ଡକ ନେଇ ଆସେ—

( ହଠାତ୍ କ୍ଷିପ୍ରବେଗେ ପ୍ରସ୍ଥାନ )

( ବନ ବାବୁ ଖବର କାଗଜଟା ପଢ଼ି ବସିଲେ )

ଚନ୍ଦ୍ର—(ପୁନଃ ପ୍ରବେଶ) ଗ୍ରହଣ କରନ୍ତୁ । (ବହି ବଢ଼ାଇ ଦେଲେ । ବସି ପଢ଼ିଲେ)

ବନ—( ବହି ଦେଖି ) 'ଶୁଭ ଶଙ୍ଖ' ନାଁ ଟା ତ ମନ୍ଦ ହୋଇନାହିଁ ? ( ଥରେ ଆଖି ପକାଇ ଦେଇ ମୁହୂର୍ତ୍ତ ଶେଷଯାଏଁ ) ଏଁ—ଏ ଗୁଡ଼ାକ କ'ଣ ସବୁ ପ୍ରତିମାର ଲେଖା ? ସାହିତ୍ୟରେ ଭଲ ଦଖଲ ଅଛି ତ ? ( ଆଶ୍ଚର୍ଯ୍ୟ ହୋଇ )

ଚନ୍ଦ୍ର—ହିଁ ଏକ ପ୍ରକାର ତାରି ସବୁ । ମୁଁ ମଝିରେ କେତେକ ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଛି ମାତ୍ର ।

ବନ—ଏଥିରେ ତ ଦେଢ଼ଶ' କି ଦଇଶ' ଟଙ୍କା ଲାଗିଥିବ ?

ଚନ୍ଦ୍ର—ପଇସାଟା କ'ଣ ଆଜ୍ଞା ଦୁନିଆରେ ବଡ଼ ? ଜାତିର ସାହିତ୍ୟ ଉନ୍ନତି ଲାଗି ଜଣେ ଜଣେ ଲୋକ ଲକ୍ଷ ଲକ୍ଷ ଟଙ୍କା ଅଜ୍ଞାତରେ ଦାନ କରୁଛନ୍ତି । ମୋର ଏ ଉଦ୍ଦେଶ୍ୟ ମହତ୍—

ବନ—କିନ୍ତୁ ଗୁପ୍ତ......

ଚନ୍ଦ୍ର—(ଈଷତ୍ ହସି) ଆଜି ବହି ଗୁଡ଼ିଆଡ଼େ ପ୍ରଚାର ହୋଇଯିବଣି । ସମସ୍ତେ ବି ଜାଣି ଯିବେଣି ।

ବନ—(ବହି ଦେଖୁ ଦେଖୁ) ଗୋପାଳ ବାବୁଙ୍କ ଅଗ୍ରଲେଖାଟି ତ ଅତି ଚମତ୍କାର ହୋଇଛି । ସେ ତ ପଚାରିଥିବେ ଲେଖିକା ତମର କ'ଣ ହୁଅନ୍ତି ?

ଚନ୍ଦ୍ର—ହଁ, ସେ ପଢ଼ିସାରି ପଚାରିଲେ । ମୁଁ କିଛି ନ କହି ହସିଲି । ତେବେ ସେ କଥାଟା ବୁଝିନେଲେ, ଦେଖିଲି ବଡ଼ ହୃଦୟ ତାଙ୍କର ।

ବନ—ଏ ବହି ବସନ୍ତ ବାବୁଙ୍କ ଘରକୁ ଗଲଣି ନା ? (ବହି ପଢ଼ିବା)

ଚକ୍ର—ମୁଁ ତ 'କନକ ପଦ୍ମ' ମେସ୍‌କୁ ୫୦ କପି ପଠାଇ ଦେଇଛି । ଦୁଇଶ ଖଣ୍ଡ ପୁଣି ଉପହାର ପାଇଁ ବିତରଣରେ ଯିବ ।

ବନ—(ସସ୍ମିତେ) ଚକ୍ରଧର ବାବୁ—କବିତାର ଗୋଟିଏ ଗୋଟିଏ ଢାଞ୍ଚାରେ କବିର ମନ ପ୍ରାଣ ଫୁଟି ଉଠିଛି । ଚମତ୍କାର ହୋଇଛି । ତା ଭିତରେ ଏତେ ନିଆଁ ଅଛି ! ସେ ଆମ ଘରକୁ ଥରେ ବି'ଅଭ୍ର ଆସିଥିଲା ! ବଡ଼ ଗମ୍ଭୀର ଦେଖାଯାଏ—ଏଇ ଯେ ଲେଖିଛି । ବିଦ୍ରୋହ ଯୁବକ ଯୁବତୀର ଧର୍ମ, ଶୃଙ୍ଖଳ ଚୂରିବା ଯୌବନର କର୍ମ ।

ଚକ୍ର—ବୁଝିଲେ ବନ ବାବୁ, ମୋର ଯୋଜନା ସବୁ ବଦଳିଗଲା—ଦେଖିଲି ମୋର ଯେ ସହଯାତ୍ରୀ ହେବ ସେ ଜଣେ କବି । ତାର ସେ ଦିଗରେ ପ୍ରତିଭା ଅଛି । ତାକୁ ଯେବେ ସୁବିଧା ଦିଆଯିବ ସେ ସରୋଜିନୀ ନାଇଡୁ ଭଳି ଭାରତ ବିଖ୍ୟାତ ହେବ । ବର୍ତ୍ତମାନ ମୋର ଚିନ୍ତା ଖଣ୍ଡେ ପ୍ରେସ୍, ଗୋଟିଏ ବଡ଼ ଲାଇବ୍ରେରୀ । ତାରିପାଇଁ କେବଳ ମୁଁ ସବିତାର ସଂପାଦକ ହେଲି—ଏକ ପଇସା ବି ନିଏନା ।

ବନ—ଆଚ୍ଛା ଛପାଇବାକୁ ପ୍ରତିମା ଅନୁମତି ଦେଇଥିଲା ନା ?

ଚକ୍ର—କି ଆଶ୍ଚର୍ଯ୍ୟ ! ଆପଣ କ'ଣ ଭୁଲି ଗଲେଣି କି ସେ ଯେଉଁ ଚିଠି କଥା ? ସେଥିରେ ତ ସବୁ ଲେଖାଥିଲା । କବିତା ଗୁଡ଼ାକ ମୋର ସଂଶୋଧନ ପୂର୍ବକ ପ୍ରକାଶ କଲେ ଚିରବାଧିତା ହେବି । ତଳେ ଲେଖାଥିଲା "ଆପଣଙ୍କର ପ୍ରତିମା" ।

ବନ—ବୋଧ ହୁଏ ସେଥିରେ ଲେଖାଥିଲା "ଆପଣଙ୍କର ଆଶୀର୍ବାଦକାଂକ୍ଷିଣୀ ପ୍ରତିମା" । ମନେ ପଡ଼ୁଛି ।

ଚକ୍ର—ନାଇଁ ସେ ମଝି ଧାଡ଼ିଟା ଭୁଲରେ ଲେଖି ଦେଇଥିଲା । ପରେ କାଟି ଦେଇଛି ।

ବନ—ଶୁଭ ଶଙ୍ଖଟି ଯେପରି ଚଞ୍ଚଳ ପ୍ରକାଶିତ ହେଲା ସେପରି ଚଞ୍ଚଳ ବାଜି ଉଠୁ । ଆମର ଉଭୟ ପକ୍ଷରୁ ଲାଭ । ସବୁ ତ ଆପଣଙ୍କ କୃପା—

ବନ—ସେ ଗୁଡ଼ାକ ମିଛ । ଯାହା ଘଟିବାର ଥିବ ଅବଶ୍ୟ ଘଟିବ । ଚକ୍ରଧର ବାବୁ, କାଲି ଷ୍ଟେସନ ପାଖରେ ମାଇଗୋଦାମ କୁଲିମାନଙ୍କର ଗୋଟାଏ ମିଟିଂ ଅଛି । ଆପଣଙ୍କୁ ଟିକିଏ ସେଠାକୁ ଯିବାକୁ ପଡ଼ିବ ।

ଚକ୍ର—କାଲି ଘରିଟା ବେଳେ ନା ? ନିଶ୍ଚୟ ଯିବି ।

ବନ—ହଁ ହଁ ଘରିଟା ବେଳେ ନା (ଉଠି) ତେବେ ମୁଁ ଚାଲିଲି (ପ୍ରସ୍ଥାନ)

ଚକ୍ର—ଓଃ ସେତେବେଳୁଁ ଗଲଣି କ'ଣ କରୁଛି ? ଉଠି ପଦଚାରଣ କରୁ କରୁ

ଆଜି ପ୍ରତିମା ପ୍ରାଣ ଭିତରେ ଗୋଟାଏ ଆନନ୍ଦର ଢେଉ ଖେଳିଯାଉଥିବ । କୃତଜ୍ଞତାର କଳସ ଢାଳିଲେ ମୋ ଶ୍ରୀ ଚରଣେ ଢାଳି ଦେବାକୁ ଚାହୁଁଥିବ । ସେ କଦାପି ଆଶା ରଖି ନ ଥିବ ତାର କଳ୍ପନାର ଶୁଭ ଶଙ୍ଖ ବାଜି ଉଠିବ ବୋଲି । ତାର ସାଥିମାନେ ତ ତାକୁ କେତେ ରକମର ପରିହାସ କରୁଥିବେ । ତାକୁ କ'ଣ ବହି ଖଣ୍ଡିକ ଭଲକରି ପଢ଼ାଇ ଦେଉଥିବେ ? ଆହା ଲାଜରେ ମରିଯିବଣି ସେ ! ଆଜି ସହରରେ ବହୁତ ଲୋକ ଜାଣିଯିବେ । ଦିନେ ତ ଜାଣିଥାଆନ୍ତେ—ଜାଣନ୍ତୁ । (ପ୍ରସ୍ଥାନ)

—ପଟକ୍ଷେପ—

## —ଚତୁର୍ଥ ଦୃଶ୍ୟ—

(ମେଡ଼ିକାଲ କୋଠରୀ)

ପ୍ରତିମା—ତୁ କହୁଥିଲୁ ଭୋକ ହେଉଥିଲା—ଖାଲିଗଲୁ ନ ଖାଇ । ଖାଇବା ଆ (ଦୁହେଁ ଆସନରେ ବସିଲେ) ଭୋକ ବେଳେ ନ ଖାଇଲେ ଦେହ ଖରାପ ହୁଏ ଜାଣିନାହୁଁ ? (ଦୁହେଁ ଖାଇବାକୁ ଆରମ୍ଭ କଲେ)

ଲବଙ୍ଗ—ହଁ ସ୍କୁଲରେ ପଢ଼ିଲାବେଳେ ଏମିତି କେତେଥର ତ ଉପାସରେ ଯାଇଛି । ଦିନେ କିନେ କଷ୍ଟ ହୁଏ ମା ରାତିକୁ ବାସି ପେଜ ଟିକିଏ ରଖିଥାଏ । ସକାଳୁ ଭାଇ ଭଉଣୀ ଦୁହେଁ ତାକୁଇ ଲୁଣ ପକାଇ ଖାଇ ଦେଇଯାଉ ।

ପ୍ରତିମା—ତୁ ପରା ବୃତ୍ତି ପାଉଥିଲୁ ?

ଲବଙ୍ଗ—ସେ କୁଆଡ଼େ ପାଏ । ଘରେ ତ ଆମେ ତିନିଜଣ । ମା ଯାହାର ବୁଣା ଧନ୍ଦା କରି ଆଣେ ଆମରି ପିଲାଙ୍କେ ଖର୍ଚ୍ଚ କରେ ।

ପ୍ରତିମା—ସେ ସବୁ ଆଉ ମନେ ପକାନା—ଈଶ୍ୱର କାହାକୁ କିପରି ରଖିଛନ୍ତି ।

ଲବଙ୍ଗ—ଭାଇ ଆଜି ଚାକିରି କରିଛି—ଏତେ କଷ୍ଟ କରିଥିଲା, ତା ରୋଜଗାର ସେ ଭୋଗ କରି ପାରିଲା ନାହିଁ ।

ପ୍ରତିମା—ସୁନା ଭଉଣୀ ପରା ଖା—ସେ ସବୁ କଥା କାହିଁକି ଭାବୁଛୁ !

(ଦୁହେଁ ବସି ଖାଉଥିଲେ—କିଛି ସମୟ ପରେ କିଏ ସେ ଡାକିଲା)

ଅନ୍ତରାଳରୁ—ଲବଙ୍ଗ ଅଛ ନା ?

ପ୍ରତିମା—କିଏ ? (ଲବଙ୍ଗକୁ ଧୀରେ ପଚାରିଲା )

ଲବଙ୍ଗ—ବୋଧ ହୁଏ ସରୋଜ ଭାଇ ପରା ! (ଉଦ୍‌ବେଗ ପ୍ରକାଶ କରି) (ଅନ୍ତରାଳରୁ ଶୁଭିଲା ଲବଙ୍ଗ......)

ଲବଙ୍ଗ—ହଁ ତ ଥାଳି ଗୋଟାଇ ଅନ୍ତରାଳକୁ ନିଜେ ନେଇଗଲା—ପ୍ରତିମା ହାତ ଧୋଇ ଯାଇ ଲବଙ୍ଗ ପାଖରେ ବସି ରହିଲା—ଲବଙ୍ଗ ତରତର ହୋଇ) ଆସନ୍ତୁ । ଦୁଆର ମୁହଁ ନିକଟକୁ ଚାଲିଗଲା ଓ ସରୋଜକୁ ଦେଖି ପ୍ରଣାମ କଲା) ବସନ୍ତୁ ନାହାଁନ୍ତି ?

ସରୋଜ—ମୋର ବେଳ ନାହିଁ, ମୁଁ ଟିକିଏ କଥାବାର୍ତ୍ତା ହୋଇ ଚାଲିଯିବି । (ବିଷର୍ଣ୍ଣ ବଦନରେ) ମୋ ଉପରେ ଭାରି ଅଡୁଆରେ ପଡ଼ିଲୁ ନା ଲବଙ୍ଗ ?

ଲବଙ୍ଗ—ନାଇଁ ଅଡୁଆ କ'ଣ !

ସରୋଜ—ବହିଟା ନେଇ ଯାଇ ଦେଖିଲି ସେଇଟା ତୋର ନୁହେଁ । ଆଉ ସେ ବହିଟା କେଉଁଠି ମିଳେ ?

ଲବଙ୍ଗ—ଦେଇ ସେ ବହିଟା କେଉଁଠି ମିଳେଟି ?

ପ୍ରତିମା—ମୋର ମୁଖସ୍ଥ ନାହିଁ ।

(ରକ୍ତର ସମ୍ପର୍କ)

**ରଘୁଆ**—(ପ୍ରତିମା ପ୍ରତି) ଆଜ୍ଞା ଆପଣଙ୍କ ଘରୁ କିଏ ଖବର ନେଇ ଆସିଛି ।

**ପ୍ରତିମା**—ଲଙ୍ଗେ, କିଏ ଆସିଛି ଦେଖତ (ରଘୁଆର ପ୍ରସ୍ଥାନ)

**ସରୋଜ**—ଆପଣଙ୍କର ମନେ ନାହିଁତ କଷ୍ଟ ସ୍ୱୀକାର କରି ଟିକିଏ ବହିଟା ଦେଲେ ଟିପି ନିଅନ୍ତି—ଆଜ୍ଞେ ସତ୍ୟ !

**ପ୍ରତିମା**—ଅନୁଗ୍ରହ କରି ବସିବେ କି ? (ଠିଆ ହୋଇ)

**ସରୋଜ**—ବସି ଲାଭ କଣ ? ଆଜ୍ଞେ ସ୍ୱଟା ଦେଲେ ଚାଲିଯିବି (ଚୌକିରେ ହାତ ଦେଇ ଠିଆ ହୋଇ ରହିଲା)

**ପ୍ରତିମା**—ଦୁନିଆଟା କ'ଣ ଖାଲି ଲାଭ କ୍ଷତି ଉପରେ ଚାଲିଛି ? (ପ୍ରତିମା ଅନ୍ୟ ଚୌକି ଉପରେ ସେହି ପରି ହାତ ରଖି ଠିଆ ହୋଇ ରହିଲା)

**ସରୋଜ**—ନିଶ୍ଚୟ ଅଙ୍କ କଷାକଷି ।

**ପ୍ରତିମା**—ଯେଉଁମାନେ ବଡ଼ ଲୋକ ସଲାରସିପ୍ ପାଆନ୍ତି, ସେମାନେ ଅଙ୍କ କଷି ଜାଣନ୍ତି । ଆମେ ଗରୀବ.......

**ସରୋଜ**—ବଡ଼ ଲୋକ କିଏ ? ଗରୀବ କିଏ ସବୁ ସମାନ, ଆପଣ ବୋଧହୁଏ ଭାବିଛନ୍ତି ଲାଭ ସନ୍ଧାନେ ମୁଁ ସଲାରସିପ୍ ଖୋଜି ପାଇଥିଲି ।

**ପ୍ରତିମା**—ତାହା ହେଲେ ସଲାରସିପ୍ ଆପଣଙ୍କୁ ଖୋଜି ଆସିଥିବ । ଜଗତରେ ଦୁଇ ଜାତିର ଲୋକ ଅଛନ୍ତି—ପ୍ରବଳ ବଡ଼ ଲୋକ ଦୁର୍ବଳ ଗରୀବ ।

**ସରୋଜ**—ଆଉ ଯୁକ୍ତି ତର୍କରେ କି ଦରକାର । ଯୁକ୍ତିରେ ମୁକ୍ତି ନାହିଁ ।

**ପ୍ରତିମା**—ମାତ୍ର ବନ୍ଧନରେ ମୁକ୍ତି ଅଛି ।

**ସରୋଜ**—ଇନ୍ଧନ ପରି ଜଳିବାକୁ ପ୍ରସ୍ତୁତ ହେଲେ ସିନା ।

**ପ୍ରତିମା**—ଇନ୍ଧନ ଘୃତ ସଂଯୋଗରେ ଯେତେ ଭଲ ଫଳ ଦିଏ, କିରୋସିନି ସେତେ ନୁହେଁ ।

**ସରୋଜ**—ହେଉ ମାପ୍ କରନ୍ତୁ, ମୋର ସମୟ ହୋଇଯାଉଛି । ବହିଟା ଆଣନ୍ତୁ (ଯିବାକୁ ଉଦ୍ୟତ)

**ପ୍ରତିମା**—(ଥରେ ଥରେ ପଛକୁ ଅନାଇ ଅନ୍ତରାଳେ ପ୍ରବେଶ କଲା ଓ କିଛି କ୍ଷଣ ପରେ ବହି ହସ୍ତେ ପ୍ରବେଶ କଲା)— ଏ ବହିକି ଦେଖି କିଏ ଧୈର୍ଯ୍ୟ ଧରି ରହିବ ?

**ସରୋଜ**—(ବିଷର୍ଣ୍ଣ ବଦନରେ) ମାପ୍ କରନ୍ତୁ । ମୁଁ ବହିଟା ନିଶ୍ଚୟ ଆଣି ଦେବି । ମୋର ଗୋଟାଏ ବଦଭ୍ୟାସ ପଢ଼ୁ ପଢ଼ୁ ଯେଉଁ ଲାଇନ୍‌ଟା ଭଲ ଲାଗେ ତାକୁ ଗାର ଦେଇ ପକାଏ ।

**ପ୍ରତିମା**—ମୁଁ ତ ଅନ୍ୟ ବହି ଚାହେଁନା—ଆପଣ ଏ ଦାଗ ଗୁଡ଼ିକ ଲିଭାଇ ଦେଇ ଯାଆନ୍ତୁ ।

**ସରୋଜ**................ମୋ ପକ୍ଷରେ ଅସମ୍ଭବ ।

**ପ୍ରତିମା**—ତେବେ ବହିଟା ଶେଷକରି ଆଉ ଯେଉଁଠି ଦାଗ ଦେବାର ଦେଇ ଯାଆନ୍ତୁ । (ବହି ପକାଇ ଦେଇ ପ୍ରସ୍ଥାନ)
(ସରୋଜ ନୀରବରେ ଠିଆ ହୋଇ ରହିଲା—ଦୀର୍ଘ ନିଃଶ୍ୱାସ ତ୍ୟାଗ କରି ଚାରିଆଡ଼କୁ ଥରେ ଚାହିଁଲା । କାହାରି ଦେଖା ପାଇଲା ନାହିଁ—ବହିଟା ଧରି ଯିବାକୁ ଉଦ୍ୟତ ହେଲାବେଳେ ଅଦୂରେ ଶୁଭିଲା କାହାର ପାଦ ଶବ୍ଦ । ଭାବିଥିଲା ପୁଣି ଫେରିବ ପ୍ରତିମା । କିନ୍ତୁ କାହିଁ ? କିୟତ୍ କ୍ଷଣ ପରେ ପ୍ରବେଶ କଲା ରବଙ୍ଗା)

ଲବଙ୍ଗ—ଯାଉ । କାଲି ଆସିବାର ସୁବିଧା ହେବ ?

ସରୋଜ—କାଲି ? (ଅନ୍ୟମନସ୍କ ହୋଇପଡ଼ିଥିଲା)

ଲବଙ୍ଗ—ହଁ ଦେଇଙ୍କର ତ ଏକ୍ଷଣି ହସପିଟାଲରେ ଡ଼ିଉଟି ପଡ଼ିବ ।

ସରୋଜ—ମୁଁ ତ ଆସିବାକୁ ବାଧ୍ୟ ହେଲିଣି ଏ ବହିଟା ସକାଶେ ।

(ପ୍ରସ୍ଥାନ)

(ଲବଙ୍ଗ ପଛେ ପଛେ ପାଛୋଟି ଦେବାକୁ ଗଲା)

—ପଟକ୍ଷେପ—

## —ପଞ୍ଚମ ଦୃଶ୍ୟ —

ଚନ୍ଦ୍ର—(କଲମ ଥୋଇ ଦେଇ) ହାଡ଼ୁ ! ହାଡ଼ୁ ! !

ହାଡ଼ିବନ୍ଧୁ—(ଅନ୍ତରାଳରୁ) ଆଜ୍ଞା ଯାଉଛି (ଧୀରେ ଧୀରେ ପ୍ରବେଶ କଲା)

ଚନ୍ଦ୍ର—ପତ୍ରିକା ଦେଇ ଆସିଲ ?

ହାଡ଼ୁ—ଆଜ୍ଞା ହଁ ।

ଚନ୍ଦ୍ର—କନକପ୍ରଭା ମେସ୍‌କୁ ଯାଇଥିଲଟି ?

ହାଡ଼ୁ—ହଁ ଯାଇଥିଲି—ତାଙ୍କ ଘରଟା ବନ୍ଦ ଥିଲା । ଶୁଣିଲି ସେ ବସାକୁ ଯାଇଚନ୍ତି ।

ଚନ୍ଦ୍ର—ସେଠି ଦେଇ ଆସିଲ ନାହିଁ ?

ହାଡ଼ୁ—(ବିଷର୍ଣ୍ଣ ବଦନରେ) ନା......ଊଁ । ଅସୁ ଅସୁ ଲାଗି ଖର ହୋଇଗଲା । କାଲି ସକାଳେ ଦେବି ।

ଚନ୍ଦ୍ର—ମନଟା କିଆଁ ମାରି ଦେଇଛ ହେ ହାଡ଼ିବନ୍ଧୁ ? ତମ ମୁହଁ ଶୁଖିଲା ଦେଖିଲେ ମୋତେ କଷ୍ଟ ଲାଗେ, ତମର ଆଉ ଚିନ୍ତା କ'ଣ ?

ହାଡ଼ୁ—ଚିନ୍ତା ଆଉ କଣ ? ଆଜି ଘରୁ ଖଣ୍ଡେ ଚିଠି ଆସିଛି । ବୋଉ ଭାରି ବ୍ୟସ୍ତ ହୋଇ ଲେଖିଛି ଯିବାକୁ । କେଉଁଦିନୁ ଯାଆନ୍ତାଣି.....କେବଳ ଆପଣଙ୍କ ସକାଶେ ମୁଁ.....

ଚନ୍ଦ୍ର—ହଁ ଘରକୁ ଯିବତ ? ଆମର ଏ କାମଟା ଟିକେ ସରିଯାଉ । ବିଭାଘର ହେଉ ନ ହେଉ ମହାପ୍ରସାଦ ନିର୍ବନ୍ଧ ହୋଇଗଲେ ତମେ ୧୫ ଦିନ ସକାଶେ ଘରକୁ ଯିବ—ବୁଝିଲ ?

ହାଡ଼ୁ— ଆପଣ ପରା କହୁଥିଲେ ଏ ମାର୍ଗଶିର ମାସରେ ହେବ ?

ଚନ୍ଦ୍ର—ନା ବନବାବୁ ତ କହୁଥିଲେ ସଚିମାର ପରୀକ୍ଷା ନ ସରିଲେ—

ହାଡ଼ୁ—ନିର୍ବନ୍ଧ କଣ ଯାରି ଭିତରେ ହେବ ?

ଚନ୍ଦ୍ର—ନିଶ୍ଚୟ ହେବ । ବନ ବାବୁଙ୍କ ଜବାବ୍ । ହାଡ଼ିବନ୍ଧୁ, ତୁମକୁ ଗୋଟିଏ କଥା କହିବାକୁ ଭୁଲି ଯାଇଥିଲି । ଏ ଯେଉଁ ରମେଶ ଉମେଶ ବିବା ଆମ ବସାକୁ ଆସୁଛନ୍ତି ତାଙ୍କୁ କହିବ ଆମ ବସାକୁ ଆଉ ଆସିବେ ନାହିଁ । ତାଙ୍କର ଆମରତ ସମ୍ବନ୍ଧ ନାହିଁ—ଆଉ କାହିଁକି ଆସିବେ ?

ହାଡ଼—ଆଜ୍ଞା, ତାଙ୍କୁ ଏତେ ବଡ଼ କଥା କହିବାକୁ ମୋ ତୁଣ୍ଡ ନେଉଟିବ ନାହିଁ । ସେ ଆପଣଙ୍କର ବନ୍ଧୁ—କେତେ ବଡ଼ ଲୋକ—ତାଙ୍କର ଯଦି ଆଜି ଭଉଣୀ ଥାଆନ୍ତେ ? ?

ଚନ୍ଦ୍ର—(ହାତ ଉଠାଇ) ଧୀରେ ଧୀରେ କୁହହେ । କିଏ ଶୁଣିବ । ସେ କଥା କେହି ଜାଣନ୍ତି ନାହିଁ । ତୁମ ଛଡ଼ା । ବନବାବୁ ମୋର ଏତେ ବଡ଼ ବନ୍ଧୁ ସେ ବି ଜାଣନ୍ତି ନାହିଁ ।

ହାଡ଼—ନାଇଁ ଆଜ୍ଞା ମୋର କି ଦରକାର ? ମୁଁ କାହାକୁ କହିବି ?

ଚନ୍ଦ୍ର—ତୁମେ ବୁଝିପାରୁ ନାହଁ ? ଏକଥା ଯଦି ପଦାକୁ ବାହାରିବ , ପ୍ରତିମା ପ୍ରାଣରେ କେତେ ବଡ଼ ଆଘାତ ଲାଗିବ ? ମୋତେ ଦେଖି ସେ ଯେଉଁ କଳ୍ପନାର ତାଜମହଲ ତୋଳିଛି, ତାହା କ୍ଷଣ ଗଦା ପରି ଭାଙ୍ଗି ପଡ଼ିବ ସିନା !

ହାଡ଼—ତୋଲେଇ ବର କଣ ବାହାହେଇ ନାହାଁନ୍ତି ? ଆପଣଙ୍କର ବୟସ ଏମିତି କେତେକି ? ଆପଣଙ୍କ ବୟସର ଲୋକତ ବାହା ହୋଇ ନାହାଁନ୍ତି ।

ଚନ୍ଦ୍ର—ଆହେ ତମେ ବୁଝି ନାହଁ । ଅଇଣ୍ଠା ଖାଇବାକୁ କେହି ଗଢି ହୁଏ ? ଅମୃତ ହେଲେବି ? ତମେ ଯଦି ମନୋବିଜ୍ଞାନ ପଢ଼ିଥାଆନ୍ତ ତାହାହେଲେ ଜାଣନ୍ତ ।

ହାଡ଼—ଭଗବାନ୍ କୁ ଅଜିଯାଏ କାହାକୁ କହି ନାହିଁ । ଆପଣ ମୋତେ ତାଗିଦ୍ କରି ଦେଇ ନଥିଲେ ମୋ ପାଟିରୁ କେଉଁ ଦିନ ବାହାରି ପଡ଼ି ଥାଆନ୍ତା । ରମେଶ ବାବୁ ତ ବରାବର ଆସୁଛନ୍ତି ।

ଚନ୍ଦ୍ର—ବରାବର ଏମିତି ବିରକ୍ତ କଲେ ଆମେ ଯାଇ ହୋଟେଲରେ ରହିଲେ ଯାହାହେଉ କେହି ତାଙ୍କର ପରିଚୟ ମାଗିଲେ ତମେ କହିଦେବ—ସେ ତାଙ୍କର ସାଇ ପଡ଼ିଶା ଲୋକ ।

ହାଡ଼—ହଁ, ଗାଈଁ ର ଦୁଆଡ଼ି ଡିଣ୍ଡିର ଲୋକ, ଝିଅ ମଲେ କୋଉଁ କାହାର ଗୋତ୍ର ?

ଚନ୍ଦ୍ର—ହଇଏ ହାଡ଼ିବନ୍ଧୁ ବସିଲ—ବସିଲ । ତମେ ଯେଉଁ ଦିନ ସେ 'ଶୁଭ ଶଙ୍ଖ' ବହି ନେଇଗଲ ସେଦିନ ପିଲାଏ ତାଙ୍କୁ କେମିତି ଚିଡ଼େଇଲେ ? କେମିତି ଘେରିଗଲେ ? ତାଙ୍କୁ କେମିତି ହୋଇଗଲା ହେ ?

( ଉଦ୍‌ବେଗ ହୋଇ ପ୍ରକାଶ କଲେ )

ହାଡ଼—ସେଦିନ ପର କହିଥିଲି, ପୁଣି କହିବି ?

ଚନ୍ଦ୍ର—ତମେତ କବି ନୁହଁ—କୁଆଡ଼ୁ ବୁଝିବ ? ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଶୁଣୁଥିଲେ ନୂଆ ଲାଗୁଥାଇ—(ହସିବା)

ହାଡ଼—ମୁଁ ବହି ନେଇ ଯେମିତି ଗଲି ମୋତେ ତ ଘରିଆଡ଼ୁ ଶାଗୁଣା ଭଳି ଘେରିଗଲେ ।

ଚନ୍ଦ୍ର—ହାଡ଼ିବନ୍ଧୁ, ତମେ ଗୋଟିଏ ବଡ଼ ରସିକ । ସେମାନଙ୍କୁ ଶାଗୁଣା କହୁଛ ? ପ୍ରଜାପତି ବୋଲି କହିଲେ ସିନା ଶୋଭା ପାଆନ୍ତା.....

ହାଡ଼ି—ସମସ୍ତେ ତ ଜାଣନ୍ତି ମୁଁ 'ସବିତା' ବିକ୍ରି କରେ ବୋଲି—ପଗରିଲେ ଏ ବହି ସବୁ କ'ଣ ବିକ୍ରି ? ମୁଁ ନାହିଁ କରିଦେଲି—ନା ଏ ବହି ବିକ୍ରି ହେବ ନାହିଁ । ଏ ସବୁ ଉପହାର—ଲେଖିକା..... ପ୍ରତିମା ଦେବୀ ।

ଚନ୍ଦ୍ର—ତମେ ସମସ୍ତଙ୍କୁ ଖଣ୍ଡେ ଖଣ୍ଡେ ଦେଇ ଦେଲ ନାହିଁ ? ବଡ଼ ଭୁଲ କଲ ।

ହାଡ଼ି—ଭୁଲ୍‌ତ ଆପଣଙ୍କ ଆଡ଼ୁ ହୋଇଛି । ଆପଣ ପରା କହିଥିଲେ ଆଗ ନେଇ ପ୍ରତିମା ଦେବୀଙ୍କୁ ଦେଇ ଦେବାକୁ । ମୁଁ ତ ତାଙ୍କୁ ଦେଲି ।

ଚନ୍ଦ୍ର—(ଉଦ୍‌ବେଗର ସହିତ) ସେଇଠୁଁ ?

ହାଡ଼ି—ତାଙ୍କ ସଙ୍ଗରେ ଯେଉଁ ପିଲାଟି ଥିଲା ସେ ତାଙ୍କୁ ଚିଡ଼େଇଲା ପଡ଼ି ଯେ ଆଉ କୁହନା । ଅନ୍ୟ ପିଲାଏ ଖଣ୍ଡେ ଖଣ୍ଡେ ତାଙ୍କ ପାଖରୁ ବହି ନେଇ ପର୍ଦ୍ଦା କରି ନାଚିଲେ ଯେ..... ମୁଁ ଟିକିଏ ଦୂରେଇ ହୋଇ ଛିଡ଼ା ହୋଇଥାଏ କିଏ କେତେ ପ୍ରକାର କଥା କହୁଥାନ୍ତି ।

ଚନ୍ଦ୍ର—(ଶୁଣିବାପାଇଁ ଚଞ୍ଚଳ ହୋଇ ପଡ଼ୁଥିଲେ ଓ ପ୍ରତି ମୁହୂର୍ତ୍ତରେ ଉଠିଯାଇ ପୁଣି ବସୁଥିଲେ) କ'ଣ କହୁଥାନ୍ତି ?

ହାଡ଼ି—କିଏ କହୁଥାନ୍ତି କବି କି କବି ମିଳି ଗଲେ । ଆଉ ଗୋଟିଏ କିଏ କହୁଥାଏ—ଏପର "ସବିତା"ର ସଂପାଦିକା ହେବ । ଆଉ ଜଣେ କିଏ କହୁଥାଏ ସେ ବୁଡ଼ି ବୁଡ଼ି ପାଣି ପିଉଛି ।

ଚନ୍ଦ୍ର—(ହସିହସି) ଆଚ୍ଛା ସେ କଣ କହୁଥାଆନ୍ତି ? ବହି ବି ପଢ଼ୁଥାଆନ୍ତି ନା ? ତାଙ୍କ ମୁହଁ କେମିତି ଦେଖା ଯାଉଥାଏ ? ଆଗ କୁହ ଚଞ୍ଚଳ (ହୋଇଉଠି)

ହାଡ଼ି—(ହସିହସି) ମୁହଁତ ମୁହଁ ଭଳି ଦିଶୁଥାଏ, କହିବି କେମିତି ?

ଚନ୍ଦ୍ର—(ଚଞ୍ଚଳ ହୋଇ ଉଠି ହାତ ଛିଆଡ଼ି)—ତମେ ନିହାତି ବେରସିକ ଲୋକଟାଏ ହାଡ଼ିବନ୍ଧୁ ! ବିଭା ହୋଇ ଯାଇନାହଁ ବୋଲି କଣ ବରଯାତ୍ରୀ ହୋଇଯାଇନାହଁ ? ତମେ ଆଗ କହିଲ ସେ କଣ କହୁଥାନ୍ତି ?

(ଉଦ୍‌ବିଗ୍ନ ହୋଇ)

ହାଡ଼ି—ଏମାନେ ଯେତେବେଳେ ବହି ପଢ଼ିଲେ—ସେ ଆଡ଼ୁଆଳରେ ଟିକିଏ ଟିକିଏ ଦେଖିବା ନାଁରେ ପଢ଼ୁଥାଆନ୍ତି ।

ଚନ୍ଦ୍ର—ଓଃ ସେ ଲଜ୍ଜରେ ତ ସରି ଯାଇଥିବ । ସେଇଥି ଲାଗି ତ ଆଉ ନୂଆ କବିତା ପଠାଇ ନାହିଁ । ଏଥର ପତ୍ରିକାରେ ତାର ପୁରୁଣା ଲେଖାରୁ ବାଛି ଗୋଟିଏ ଦେଇଛି...... ବାର ଭାଇ ଭଉଣୀ ଭରି ନିଶ୍ଚୁପ । କଥାଟା ଗୋଟିଏ ଛିଡ଼ି ଯାଆନ୍ତା, ତା ମନରେ ଶାନ୍ତି ଆସନ୍ତା ।

ହାଡ଼ି—ସେ କ'ଣ ଆପଣଙ୍କୁ ଚିଠି ଦେଇଥିଲା ପରା ? ତାହା ହେଲେ ତେର ମେଘ ଗଳି.....

ଚକ୍ର—ହଇଏ ହାଡ଼ିବନ୍ଧୁ, ତୁମେ କ'ଣ ମୋତେ ଏତେ ଓଲୁ ଠଉରେଇଲ ? (କିଏ ଅଭ୍ୟାଗତଙ୍କୁ ଡାକିଲା)

ଅଭ୍ୟାଗତ—ବାବୁ ଅଛନ୍ତି ?

ହାଡ଼—କିଏ ଆସନ୍ତୁ—ହଁ ବାବୁ ଅଛନ୍ତି ।

ହୋଟେ ଲ ଚାକର—(ପ୍ରବେଶି ନମସ୍କାର କରି) ବାବୁ—ଇନସପେକ୍ଟର ବାବୁ ଡାକୁଛନ୍ତି—ହୋଟେଲରେ ।

ଆରେ ହଁ ତ (ଘଣ୍ଟା ଦେଖି) ସାଢ଼େ ନଅଟା ଚାଲ ଚାଲ (ପ୍ରସ୍ଥାନ)

(ଚାକର ଚକ୍ରଧରଙ୍କ ଅନୁଗମନ କଲା ଓ ଅନ୍ୟ ଦିଗରେ ହାଡ଼ିବନ୍ଧୁର ପ୍ରସ୍ଥାନ)

—ପଟକ୍ଷେପ—

## —ଷଷ୍ଠ ଦୃଶ୍ୟ—

( ପ୍ରତିମାର କୋଠରୀ—ଗୀତ ବୋଲିବାରେ ରତ ଥିଲା—ବେଳେବେଳେ ଚୌକିରେ ବସି ଯାଉଥିଲା—ଉଠିଯାଇ ଉଇଣ୍ଡୋ ସ୍କୁ ଧରି ଗାଉଥିଲା—ବେଳେବେଳେ ବହିପତ୍ର ସାଇତି ରଖୁଥିଲା ।)

ପ୍ରତିମା—ଗୀତ

ମୁଁ ତ ଜାଣେନା ଜାଣେନା କାହିଁକି
ସ୍ମୃତି ପରୁଆରେ ପାଇଥିଲି ତାରେ
ପହିଲି ଭେଟରେ ଚାହିଁକି । ପଦ ।

ତା ନୟନ ଶଶି ଜୋଛନା ପରଶି
ମୋ ହୃଦ କୁମୁଦ ଉଠିଲା ବିକଶି
ମୋ ଧୈର୍ଯ୍ୟ ପଥରବନ୍ଧ ଭାଙ୍ଗିଗଲା
ପିରତୀ ତରଙ୍ଗ ବାଜିକି । ୧ ।

କେଉଁ ଜନମର ସାଥି ସେ ମୋହର
ଦୂର ଅତୀତର ପ୍ରିୟ ସହଚର
କେଉଁ ଧୂଳି ଘରେ ଧୂଳି ଖେଳୁଥିଲୁ
ଫୁଲ ମଧୁରସ ଖାଇକି । ୨ ।

କେଉଁ ତମାଳର ତଳେ ବାଇବଂଶୀ
ଆମ୍ବ ବଉଳର ବାସେ ଗଲୁ ଭାସି
କୋଇଲି ସଙ୍ଗରେ କଣ୍ଠ ମିଳାଇଲୁ
ବଉଳ ବନରେ ବୁଲିକି । ୩ ।

କେଉଁ ମାଘମାସ ପାହାନ୍ତା ପହରେ
ପୂଜାଫୁଲ ତୋଳି ଫେରୁ ଫେରୁ ଘରେ
ଦକ୍ଷିଣା ପବନ ବହି ଗୁପତରେ
ଛୁଇଁଗଲା ଆମ ଦୁହିଁକି । ୪ ।

( ହଠାତ୍ ସରୋଜ ପ୍ରବେଶ କଲା—ହାତରେ ବହି ଖଣ୍ଡିକ )

**ସରୋଜ**—ଆପଣଙ୍କର ବହି ଖଣ୍ଡିକ.......ଶେଷ ହୋଇଛି ( ପ୍ରତିମାକୁ ବଢ଼ାଇ ଦେଲା )

**ପ୍ରତିମା**—(ସରୋଜକୁ ଦେଖି ଅପ୍ରତିଭ ହୋଇଗଲା ଓ ହାତରୁ ବହି ନେଇ କିଛିକ୍ଷଣ ଠିଆ ହୋଇ ରହିଲା) ଆଜି କଣ ସମୟ ଅଛି ?

**ସରୋଜ**—ତେବେ ଅନ୍ୟ ଆଉ କାମ ନାହିଁ (ବସିପଡ଼ିଲା ଗୋଟିଏ ଚୌକିରେ)

**ପ୍ରତିମା**—(ଚୌକିରେ ବସି ଅନ୍ୟମନସ୍କ ଭାବେ ବହିଟା ଦେଖୁ ଦେଖୁ ଚମକି ପଡ଼ିଲା) ମୋ' ନାଁ ଚଳେଇ...

**ସରୋଜ**—(ତଳକୁ ମୁଣ୍ଡପୋତି) ଯେଉଁଟା ମୋର ବଦଭ୍ୟାସ.....ଯେଉଁଟା ମୋତେ ଭଲଲାଗେ ତା ତଳେ ଦାଗ ଦିଏ !

**ପ୍ରତିମା**—ହଁ ମୋର ଗୋଟିଏ ଜିନିଷ ହଜିଯାଇଛି ।

**ସରୋଜ**—(ଆଶ୍ଚର୍ଯ୍ୟ ହୋଇ) କଣ ?

**ପ୍ରତିମା**—ଆପଣ ଯେଉଁଦିନ ଆସିଥିଲେ ସେହି ଦିନରୁ ହଜିଛି, କହିବାକୁ ଭୁଲି ଯାଇଥିଲି ।

**ସରୋଜ**—ତାହାହେଲେ କଣ ମୁଁ ନେଇଛି ତାକୁ ?

**ପ୍ରତିମା**—ଆପଣଙ୍କ ବ୍ୟତୀତ ଆଉ କେହି ନେଇ ନାହାଁନ୍ତି ।

**ସରୋଜ**—(ଆଶ୍ଚର୍ଯ୍ୟ ହୋଇ) ଜାଣି ପାରିବିକି ସେଇଟା କ'ଣ ? ଆଉ ମୋତେ ବାରମ୍ବାର ଅନ୍ଧାରରେ ପକାନ୍ତୁ ନାହିଁ । ସେ ବହି ଲାଗି ମୋ' ପ୍ରାଣରେ ବଡ଼ ଯନ୍ତ୍ରଣା ହୋଇଛି ।

**ପ୍ରତିମା**—ମୁଁ ତାହା ଜାଣିବି କିପରି ? ଜର ମାପୁଣି ଯନ୍ତ୍ର ଥର୍ମୋମିଟର ପରି ମନ ମାପୁଣି ଯନ୍ତ୍ର ଆଜିଯାଏ ତ ଆବିଷ୍କୃତ ହୋଇନାହିଁ.....

**ସରୋଜ**—ଲବଙ୍ଗ ଚିଠି ପାଇଲା ଦିନଠାରୁ.....

**ପ୍ରତିମା**—ବହି ଖଣ୍ଡିକ ଅନ୍ୟ ହାତରେ ପଠାଇ ଦେବାଟା କଣ ଠିକ ହୋଇଛି ? କିଏ କାହାଲାଗି ଯନ୍ତ୍ରଣା ଭୋଗୁଛି ଅନ୍ତର୍ଯ୍ୟାମୀ ଜାଣନ୍ତି । ମୁଁ ମୋର ମନକୁ ହଜାଇ ସେହି ଦିନଠାରୁ ମଣିହରା ଫଣୀ ପରି ଛଟପଟ୍ ହେଉଛି ।

**ସରୋଜ**—(ଦୀର୍ଘନିଃଶ୍ୱାସ ପକାଇ) ପ୍ରତିମା, ମୁଁ ଆଶ୍ଚର୍ଯ୍ୟ ହେଉଛି ତମେ ଏତେ ଚତୁର ଭାବେ ନିଜକୁ ଲୁଚାଇପାର ମୋତେ ବୋଧଶୂନ୍ୟ ବାକ୍ୟଶୂନ୍ୟ କରି ଦେଲଣି ।

**ପ୍ରତିମା**—ତମେ ଯେ ଜଣଙ୍କୁ ଏତେଦିନ ହେଲା ନିର୍ଜୀବ କରି ବସେଇ ଦେଇଛ ?

**ସରୋଜ**—ସେଦିନ ଏ ଘରେ ଗୋଡ଼ ଦେଉ ଦେଉ ତମେ ଚାହିଁ ଦେଇଗଲ, ମୋର ମନେହେଲା ସେହି ଚାହାଣୀରେ ଅନେକ କଥା କହିଦେଇଗଲ । ସେହି ଆଖିଦୁଇଟିର ସ୍ମୃତି ଛାତି ପକେଟରେ ନେଇ ଫେରିଥିଲି । ମାତ୍ର.....

**ପ୍ରତିମା**—ଅଚ୍ଛା ଗୋଟିଏ କଥା ପଚାରିବି, ମୋତେ ଫିଟାଇ କହିବ ? ତୁମେ ପୃଥିବୀରେ ସବୁଠାରୁ ଯାହାକୁ ଭଲପାଅ ତାର ରାଣ, କୁହ ଲବଙ୍ଗ ଚିଠି ପାଇ ତମର ମୋ ପ୍ରତି କ'ଣ ଧାରଣା ହେଲା ?

ଲବଙ୍ଗ—କାହିଁ (ଅବାକ୍ ହୋଇ) ମୁଁ ତ କାହିଁ ଜାଣି ପାରୁନାହିଁ ?

ଗାୟତ୍ରୀ—ତମେ ଜାଣିବ କୁଆଡୁ ? ଯେମିତି ବସୁଛି ଥକମକ ହୋଇ ବସୁଛି । ଯୁଆଡେ଼ ଅନାଇଛି ତ ଅନାଇଛି । କୁଆଡ ଉଣ୍ଡିବାକୁ କହିଲେ କଲମଟା ନେଇ ଆସୁଛି । କାଲି ଦେଖିଲ ନାହିଁ—ଆଞ୍ଜୁଳି ଧରିଗଲ ବେଳେ...

ଲବଙ୍ଗ—ନାହିଁ ଭଉଜ ବୋଉ..... ସେ ସେମିତି ଲେଖାଲେଖି କଲ ବେଳେ ଏକୁଟିଆ ହୋଇ ଭାବନ୍ତି ।

ଗାୟତ୍ରୀ—ଲବଙ୍ଗ, ତମେ ଜାଣିଛ ତାଙ୍କ ଘରଙ୍କର ପଢ଼ାଇବାର ଜମା ଇଚ୍ଛା ନଥିଲ । ଏକା ଜିଦ୍ ଧରି ଏତେ ଦୂର ଆଣିଲି ମୁଁ । ମତେ କ'ଣ ତା ଲାଗି କମ୍ ସହିବାକୁ ପଡୁଛି । ସେ ଯେଉଁ 'ଶୁଭଶଙ୍ଖ' ବହି ସେଇ ଆମ ଘରେ ଜଳିମଞ୍ଜି ପୋଡିଲ । ତାଙ୍କ ଭାଇ ମୋ ମୁଣ୍ଡ ଉପରେ ଦୋଷ ଲଦି ଦେଇ କହିଲେ ତମର ମୁହଁବଢ଼ା ହେତୁ—ଆଧୁନିକ ଶିକ୍ଷାର କି ଫଳ ମିଳିଲ ?

ଲବଙ୍ଗ—ଭଉଜ ବୋଉ, ସେ ବଦମାସ ଲୋକଟା କଥା କହନା । ଦେଇ ଆମର କବିତା କେତୋଟି ପଠାଇ-ଥିଲେ ତା ମାସିକ ପତ୍ରକାରେ ଛାପିବାକୁ—ସେଥିରେ ନିଜ କବିତା ମିଶାଇ ସେ ତାକୁ ଛାପି ଦେଲ—ବହି ଆକାରରେ । ଦେଇ କଣ କଲେନା—ସବୁ ବହି ମଗାଇ ଆଣି ପୋଡ଼ି ଦେଲେ ଘରରେ ।

ଗାୟତ୍ରୀ—ଏ କ'ଣ ଜମା ତା ପାଖକୁ ଚିଠି ପତ୍ର ଦେଇ ନାହିଁ ?

ଲବଙ୍ଗ—ନା ମୁଁ ଭଲକରି ଜାଣେ—ସେ ଦିଅନ୍ତି ନାହିଁ । ସେ ଥରେ ଦେଇଙ୍କୁ ପ୍ରଶଂସା କରି ଚିଠି ଦେଇଥିଲ । ତାର ଉତ୍ତରରେ ଦେଇ ବି ଖଣ୍ଡେ ପଠାଇଦେଲେ । ସେତିକି ଯାହା ଦିଆନିଆ । ଏମିତି ସାପ ଭିତରେ ମାଛ ଅଛି ବୋଲି ଜାଣିଥିଲେ ସେ କେବେ ଦେଇ ନଥାନ୍ତେ ।

ଗାୟତ୍ରୀ—ଅଭିଆତ୍ରୀ ଝିଅଙ୍କର ଅଜଣା ପୁରୁଷ ପୁଅକୁ ଚିଠି ଦେବା ଠିକ୍ ନୁହେଁ ।

ଲବଙ୍ଗ—ଚିଠିର ଉତ୍ତର ନ ଦେଇଥିଲେ ଅଭଦ୍ରତା ହୋଇଥାଆନ୍ତା । ଚିଠିରେ ତ କିଛି ଲୁଗ୍ଗଛପା କଥା ନଥିଲ । ସେ ବହି ଯେଉଁ ଦିନ ଆସିଲ, ମୁଁ ତାକୁ ଚିରିପୋଡ଼ି ପକାଇଲି । ଭଉଜ ବୋଉ ଦେଇ ସେ ଦିନଟା ଯାକ ଖାଲି ଆଖିରୁ ଲୁହ ଗଡ଼ାଉଥାଆନ୍ତି । ସେ ଦିନ ସେ ନିୟମ କଲେ ଆଉ କେଉଁଠିକି ଲେଖା ପଠାଇବେ ନାହିଁ ବୋଲି ।

ଗାୟତ୍ରୀ—ତାହାହେଲେ ସେ ଆଉ କାହା କଥା ଭାବୁଛି ?

ଲବଙ୍ଗ—ଏକୁଟିଆ ତମେ ପଚାରି ବୁଝ (ଉଠି) ସେ କ'ଣ କହୁଛନ୍ତି ଦେଖାଯାଉ (ପ୍ରତିମାର ପ୍ରବେଶ)

ପ୍ରତିମା—ଲବଙ୍ଗ, ତତେ ପରା କହିଲି ପଛରେ ଆ ବୋଲି । ସବୁ ଏତେ କହିଲ—ତୁ ଏଣେ ରହିଗଲୁ ଖସିକରି ବଡ଼ ଠାପୋଇଟାଏ ।

ଗାୟତ୍ରୀ—ତାକୁ କ'ଣ ବାଛୁଛ ? ତମେ ତ କେଡ଼େ ଚଞ୍ଚଳା ଥିଲ । ଆଜିକାଲି ତାଠୁଁ ବଳି ଠାପୋଇ ହୋଇ-ଗଲଣି । ଆଉ ଏହି କ୍ଷଣିକା କହିବି ଯେବେ.....

ଲବଙ୍ଗ—ତମେ ଥାଅ । ତାଙ୍କ ଘରୁ ମୁଁ ଆସେ । ସେ କାହିଁକି ମନରେ କଷ୍ଟ କରିବେ ? (ପ୍ରସ୍ଥାନ)

ଗାୟତ୍ରୀ—(ପ୍ରତିମାକୁ ଟାଣି ନେଇ ଚେୟାରରେ ବସାଇ) ପ୍ରତିମା, ତମେ ଜାଣ ମୁଁ ତୁମକୁ କେତେ ଭଲ ପାଏ ? ଆଜି ଗୋଟାଏ କଥା ପଚାରିବି । ତମେ ଫିଟାଇ କହିବ । ତମେ ଆଉ ସାନ ପିଲା ନୁହଁ । ସଂସାର ତମ ଆଖିରେ ଫୁଟି ପଡ଼ିଲାଣି ।

ପ୍ରତିମା—(ମୁହଁ ଶୁଖାଇ) କ'ଣ କହୁନା ?

ଗାୟତ୍ରୀ—ଆଚ୍ଛା ! ଆର ଥରକ ଆସିଥିଲି, ତମ ମନରେ ଯେଉଁ ସରଗ ଥିଲା ଏଥର ସେ ସରଗ ଆଉ ଦେଖୁ ନାହିଁ । ତମ ମନ ଭିତରେ କିଏ ପଶିଛି, ମୋତେ ଫିଟାଇ କୁହ ।

ପ୍ରତିମା—ତମ ଇଚ୍ଛା ହେଲାଣି–ମୋତେ ପାଖରୁ ଅନ୍ତର କରିବାକୁ-ନହେଲେ ଆଜି କାହିଁକି ଏକଥା ବାହାରନ୍ତା ?

ଗାୟତ୍ରୀ—ଯେଉଁଦିନ ହେଲେ ଦିନେ ତ ଅନ୍ତର ହେବ ? ମୁଁ ତ ପୁଣି ଅନ୍ତର ହୋଇ ତୁମ ଘରକୁ ଆସିଛି ?

ପ୍ରତିମା—ମୋ ମନ ଭିତରେ କେହି ପଶି ନାହିଁ । (ମୁହଁ ତଳକୁ ପୋତି)

ଗାୟତ୍ରୀ—ତାହା ହେଲେ ତୁମ ମନ କାହା ଭିତରେ ପଶିଛି କୁହ ? ତମେ ଜାଣେ ଜାଣେ ଗଲେ ମୁଁ ପଛେ ପଛେ ବୁଲେ । ତମ ଲଳିତା ଲବଙ୍ଗଲତା ମୋତେ ସବୁ କହିସାରିଛନ୍ତି । କଥା ଆଉ କେତେଦିନ ଲୁଚି ରହିବ ?

ପ୍ରତିମା—(ଚମକି ଅପ୍ରତିଭ ହୋଇ) ସେ ଓଲୁମିଟା କ'ଣ ଜାଣେ ?

ଗାୟତ୍ରୀ—ସେ ତ ପୁଣି ସବୁବେଳେ ତମ ପାଖରେ ରହିଛି ? ଆଚ୍ଛା ଗୋଟାଏ କଥା–ତମେ ତ ମୋ ଆଗରେ ସତ୍ୟ କରିଛ–ତମ ମନ କଥା ଲୁଚାଇବ ନାହିଁ ବୋଲି ।

ପ୍ରତିମା—କ'ଣ ଲୁଚାଇଲି କି ?

ଗାୟତ୍ରୀ—ମୋ ଗଣତି-କୁହ ତୁମେ କ'ଣ ଭାବୁଛ ସମୟେ ସମୟେ ବସି ?

ପ୍ରତିମା—(କିଛି ସମୟ ନୀରବତା ପରେ) ଲବଙ୍ଗ ତମକୁ କହିଥିବ ତା ଭାଇଙ୍କ (ତାର ମୁହଁ ଲଜ୍ୟାରେ ଭଙ୍ଗ ପଡ଼ିଲା)

ଗାୟତ୍ରୀ—(ହସି ହସି) ଲବଙ୍ଗ ତା ଭାଇ କଥା କିଛି କହିନାହିଁ । ଭଲ କଥା ହେଲା-ଠାକୁର ଘରେ କିଏ ମୁଁ କଦଳୀ ଖାଇ ନାହିଁ ।

—ପଟକ୍ଷେପ—

—ଦ୍ୱିତୀୟ ଦୃଶ୍ୟ—

(ପଥ—ଭିକ୍ଷା ମାଗି ଯାଉଥିଲା ଗୋଟିଏ ଭିକାରି)

—ଗୀତ—

ଆରେ ଘର ନାଉରିଆ
ନାହା ବାହି ଆଣ କତିକି
ବେଳ ଥାଉଁ ଥାଉଁ ହେବି ପାରି (ଏ ଭବ) ନଇ କି (ପଦ) । ୧ ।

ସେ ପାରିରେ ମୋହର ଘର
ଆସିଥିଲି ଏ ପାରିକି ଦିନକ ମାତର
ହାଟ ସଉଦା ନେବାକୁ ଭଲ ଭେଲ ଚିହ୍ନି କି । ୧ ।

ଦୂର ବାଟ ଯିବାକୁ ହେବ
ଡେରି କଲେ ଦ୍ୱିତୀୟାର ଚାନ୍ଦ ବୁଡ଼ିଯିବ
ସାହା ମୋର କେହି ନାହିଁ—ମୁଁ ଡରେ ନିଶା ରାତିକି । ୨ ।

ଡରିଲେ ମୁଁ ଯିବିଟି ସରି
ବୁଡ଼ିଯିବ ଆଣିଛି ଯା' ମୋ ପସରା ଭରି
ବସିଥିବ ପ୍ରିୟତମ ମୋର ପଥ ଚାହିଁକି । ୩ । (ପ୍ରସ୍ଥାନ)

( ଦୂରେ ଭିକାରିର କଣ୍ଠସ୍ୱର ମିଳାଇଗଲା)

## —ତୃତୀୟ ଦୃଶ୍ୟ—

(ବସନ୍ତ ବାବୁଙ୍କ ବୈଠକଖାନା—ଗୃହଟି ବିଭିନ୍ନ ରକମର ଫଟୋ ଓ ସୁନ୍ଦର ଟେବୁଲ ଚେୟାର ଇତ୍ୟାଦିରେ ସୁସଜ୍ଜିତ । ନାନା ପ୍ରକାର ଦେଶୀ ବିଦେଶୀ ପୁଷ୍ପ ଓ ପତ୍ର ଗଛରେ ଗୃହ ତଥା ଅଗଣାଟି କୁଞ୍ଜବନ ପରି ସୁନ୍ଦର ହୋଇ ଉଠିଛି । ଟେବୁଲର ପାଖକୁ ଲାଗି ସରୋଜ ଓ ମନୋରଞ୍ଜନ, ଗାୟତ୍ରୀ, ପ୍ରତିମା ଆସୀନ )

**ଗାୟତ୍ରୀ**—ଆପଣମାନେ ତ ଏତେ ଡେରି କରି ଆସିଲେ ?

**ମନ**—ଲଭଙ୍କୁ ଯେତେବେଳେ ଆସିବାକୁ ଚିଠି ଦେଇଥିଲୁ—ଠିକ୍ ସେତିକିବେଳେ ତ ଆସିଲୁ—

**ଗାୟତ୍ରୀ**—ନାହିଁ ଆଜ୍ଞା—କୋଡ଼ିଏ ମିନିଟ୍ ଲେଟ୍ ହୋଇଛି । କଲେଜର ଘଣ୍ଟା କଣ୍ଟା ଅବା ପଛକୁ ଚାଲୁଥିବ । ଆମ ଘଣ୍ଟା ତ ଟ୍ରେଜେରି ଘଣ୍ଟା ସଙ୍ଗେ ମିଳିଚାଲିଛି ।

**ମନ**—ଆପଣମାନଙ୍କର ଟ୍ରେଜେରି ସାଙ୍ଗେ ସଂପର୍କ—ଆମମାନଙ୍କର ସୁଇ କଲେଜ ସଙ୍ଗେ । ଅଚ୍ଛା ଆଉ କେତେବେଳ ଯାଏଁ ଦିଓଟି ପ୍ରାଣ ନୀରବ ନିଶ୍ଚଳ ହୋଇ ବସିଥିବେ ? ଆମେ ସବୁ ବେଳେ କଥାବାର୍ତ୍ତା ହେଉଥିବା ? ଆମ୍ଭମାନଙ୍କୁ ଆଜି କାହିଁକି ବା ଗିରଫ କରାଗଲା ? ଯଥା ସମୟରେ ତ ଆମେ ହାତକଡ଼ି ନେଇ ଆସିଥାଆନ୍ତୁ !

**ଗାୟତ୍ରୀ**—ସେତେବେଳେ କ'ଣ ଏ ସୁବିଧା ମିଳନ୍ତା ? ବର୍ତ୍ତମାନ ଯେପରି କବି ଭାଷାରେ କହିଲେ "ଆଶାଠାରୁ ଅଣା ଆଶାରେ ସୁଖ ଅଧିକ ।"

**ମନ**—ଆପଣଙ୍କ ଉଦ୍ଦେଶ୍ୟ ତ ସିଦ୍ଧି ହୋଇ ପାରିଲା ନାହିଁ ? ମତେ ଲେଖିଥିଲେ ମୁଁ ଫଟୋଟା ପଠାଇ ଦେଇ ଅନ୍ତି । ଆପଣଙ୍କ ରଙ୍ଗମଞ୍ଚରେ ଯେ ନାୟକ ନାୟିକା—ସେମାନେ ତ ମୂକ ।

**ଗାୟତ୍ରୀ**—ସେଥିପାଇଁ ଆପଣ କିୟଦାଂଶରେ ଦାୟୀ ନୁହଁନ୍ତି କି ?

ମନ—ଆପଣ ବି କମ୍ ଦାୟୀ ନୁହଁନ୍ତି ତ । ଆଚ୍ଛା ଆମେ ଦୁଇଜଣ ଉଠିଗଲେ ହୁଅନ୍ତା । (ସରୋଜଙ୍କୁ)ନାରେ ସରୋଜ, ଆମ ଉପସ୍ଥିତ ଜମାସ ମୁନ ଭଳିଆ ତମମାନଙ୍କ ହୃଦୟରେ ବାଜୁଛି । ଏତେ ବଡ଼ ସଭାର ଆୟୋଜନ କ'ଣ ବ୍ୟର୍ଥ ହେବ ?

ସରୋଜ—ଏ କ'ଣ ସଭା ନା ? ତେବେ ସଭାର ସଭାପତି କିଏ ? ତାଙ୍କର ଆଦେଶ ନ ପାଇଲେ ପାଟି ଫିଟାଇବା ଶିଷ୍ଟାଗ୍ରର ବିରୁଦ୍ଧ ନୁହେଁ କି ?

ମନ—ସଭାରେ ସାଧାରଣତଃ ଅଭିଜ୍ଞ ଲୋକ ସଭାପତି ହୁଅନ୍ତି (ଗାୟତ୍ରୀଙ୍କୁ ଚାହିଁ) ଆଜ୍ଞା ଆଜି ସଭାରେ ଆପଣ ତେବେ ସଭାନେତ୍ରୀ ହୁଅନ୍ତୁ ।

ଗାୟତ୍ରୀ—ପ୍ରସ୍ତାବଟି ସମର୍ଥନ ବିନା ଜାଟ ଖାଇବା ଉପରେ । (କିଛି ସମୟ ପରେ) ମୁଁ ସଭାନେତ୍ରୀ ହେବାଟା କ'ଣ ସୁନ୍ଦର ଦେଖା ଯିବ ? ମାଗି ଓଳିକି ଯାଚି କଲ୍ୟାଣ । ତା ଯଦି ହେଲା—ତେବେ ମୁଁ ଆପଣଙ୍କ ପ୍ରସ୍ତାବକୁ ସମର୍ଥନ କରି ସଭାପତି ଆସନ ଗ୍ରହଣ କରୁଛି । ବର୍ତ୍ତମାନ ମୋର ଆଦେଶ ଆପଣମାନେ ମାନିବାକୁ ବାଧ୍ୟ ।

ସରୋଜ—ଆପଣ ଆସନ ଗ୍ରହଣ କରିବା ପୂର୍ବରୁ ଅଦେଶ ମାନିତ ଏ ଯାଏଁ ଆସିଛୁ ।

ଗାୟତ୍ରୀ—ମୋ ପରି ଲୋକର ଆଦେଶରେ ନୁହେଁ ଯେ–ମନ ଜାଣୁଥିବ କାହାର ଆଦେଶ ।

ମନ—(ଇତସ୍ତତଃ ହୋଇ ଓ ଈଷତ୍ ହସି) ଆଜ୍ଞା, ମୁଁ ତ କିଛି ଜାଣେ ନାହିଁ ।

ଗାୟତ୍ରୀ—ଆପଣଙ୍କୁ ମୁଁ ମନ ବୋଲି ଡାକିବି ? ମୋର ଏ ଅଧିକାର ଆସି ନାହିଁ ଏ ପର୍ଯ୍ୟନ୍ତ—

ମନ—ସରୋଜ ତ ମନ ଖୋଲି ଡାକେ, ଆପଣ କାହିଁକି ଡାକିବେ ନାହିଁ । ଜ୍ୟାମିତିର ପ୍ରଥମ ସ୍ୱତଃସିଦ୍ଧ —ଯେ ପଦାର୍ଥ ଏକ ଏକ ପଦାର୍ଥ ସଙ୍ଗେ ସମାନ–ସେ ସବୁ ପରସ୍ପର ସମାନ ।

ସରୋଜ—ଆମେ ସବୁ ଏଠିକି ଆସି ପଦାର୍ଥରେ ପରିଣତ ହେଲୁଣି । ଆଉ କିଛି ସମୟ ପରେ କ'ଣ ହେବୁ କେଜାଣି ?

ଗାୟତ୍ରୀ—ମନ ବାବୁ, ମୁଁ ଏ ସଭାରେ ଆପଣଙ୍କୁ ଅଗ୍ର ଡାକିବି କହିବାକୁ ।

ମନ—କାରଣ ମୁଁ ପ୍ରସ୍ତାବକ-(ଈଷତ୍ ହସି) ମୁଁ ବା ଏଠି କ'ଣ କହିବି ? ଏଇଟା ତ ଚିତ୍ରକର, ଗାୟକ କବିଙ୍କର ସମ୍ମିଳନୀ । ଅଙ୍କ କଷି କଷି ମାଙ୍କଡ଼ା ପଥର ଗଣିଲବାଲା । କଳାର ମର୍ଯ୍ୟାଦା ମୁଁ କ'ଣ ଜାଣେ ? ଯାହା ଦେଖିବି ଫିତାରେ ମାପିବି ସିନା । ମାଫ୍ କରନ୍ତୁ ମୋତେ ।

ଗାୟତ୍ରୀ—କିନ୍ତୁ ଆପଣ ଯେ ଆମ ଧମସ୍ତକର....

ସରୋଜ—ମୁଁ ଗଡ଼ଜାତିଆ ଲୋକ ନା...... ବୁଝି ପାରୁ ନାହିଁ, ବୁଝାଇ ଦେବେ କି ?

ପ୍ରତିମା—ମନ ବାବୁଙ୍କ ସଂକ୍ଷିପ୍ତ ନାମ ମନ.......ସେ ଯେ ପ୍ରତ୍ୟେକଙ୍କଠାରେ ବିଦ୍ୟମାନ ।

ମନ—ଏ ସହଯୋଗିତା, ଯଥାର୍ଥ କର୍ତ୍ତବ୍ୟନିଷ୍ଠାର ପରିଚାୟକ । ତାଙ୍କ ଲାଗି ମୁଁ ଧନ୍ୟବାଦ ଦେଉଛି ।

ସରୋଜ—ତୋର ଏ ଫାଜିଲମି କଥାଟାର ମାନେ ମୁଁ ବୁଝିପାରୁ ନାହିଁ ।

ମନ—ସତକଥା କହିବାଟା ଯଦି ଫାଜିଲମି ହେଇ ତେବେ ହେଉ ।

ଗାୟତ୍ରୀ—(ମନୁ ପ୍ରତି)ତାଙ୍କର ବୁଝିବାର ଅବସର କାହିଁ ? ସେ ଯେ ବର୍ତ୍ତମାନ ଦୁଷ୍ମନ୍ତଙ୍କ ଅବସ୍ଥାରେ.......

ମନ—ଏଟା ଯେ ତପୋବନ ନୁହେଁ । ତେବେ ଆପଣ ଯଥେଷ୍ଟ ଶ୍ରମ ସ୍ୱୀକାର କରି ଉପବନ ରଚନା କରିଛନ୍ତି ।

ସରୋଜ—ମନ, ଏ ଉପବନ ରଚନାରେ ଖିଆ ହୃଦୟର ପରଶ ରହିଛି ଜାଣୁ ନା ?

ମନ—ଛାଡ଼ିଗଲୁ ଯେ-କବିଙ୍କର କବିତାମୟ ପ୍ରାଣର ମଧ୍ୟ......

ପ୍ରତିମା—ଅନ୍ନ ବଡ଼ ଦେଉଳରେ ଲାଗି ହେଲେ ମହା ପ୍ରସାଦ ହୁଏ ସିନା ।

ଗାୟତ୍ରୀ—ଉପଯୁକ୍ତ ପୂଜାରୀ ହେଲେ ପଥରରେ ବି ପ୍ରାଣ ଫୁଟି ଉଠେ ।

ସରୋଜ—ପଥର ଭିତରେ ସୌନ୍ଦର୍ଯ୍ୟ ନଥିଲେ ପ୍ରକୃତ ଉପାସନା ଯେ ମୂଲ୍ୟତା ନାହିଁ ।

ପ୍ରତିମା—ଟିଲିକାର ଗୋଳିଆ ପାଣି ସମସ୍ତଙ୍କ ଆଖିରେ ଶୋକପାଶୋର ଅପସର ନୁହେଁ ।

ଗାୟତ୍ରୀ—ତମ କଥା ଠିକ୍ । ଗୁଣ ଚିହ୍ନେ ଗୁଣିଆ-ସୁନା ଚିହ୍ନେ ବଣିଆ ।

(ଲବଙ୍ଗର ପ୍ରବେଶ ଓ ଟେବୁଲ ପାଖକୁ ଗୋଟାଏ ଚୌକିରେ ବସିବା)

ଲବଙ୍ଗ—ମନ ଭାଇ, ଆପଣ ଗଡ଼କୁ ଯାଇଥିଲେ ପରା ? ଦେଓ୍ୱାନବାବୁ କ'ଣ କହିଲେ ?

ଗାୟତ୍ରୀ—ଜାହାର କେଉଁ କଥା-ତାର ତ ସେଇ କଥା-

ପ୍ରତିମା—ସବୁ ନାଟର ଗୋବର୍ଦ୍ଧନ............

ମନ-ତାର ଦୋଷ କ'ଣ ? ସେ ତ ଅସଲ କଥାର କାମ ପଗ୍ଭରିଲା । ହଁ ମୁଁ ଯାଇଥିଲି । ମଉସାଙ୍କ ସହିତ କଥାବାର୍ତ୍ତା ହେଲା । ତାଙ୍କର କୌଣସି ଆପତ୍ତି ନାହିଁ । ସେ କେବଳ ଥରେ ଆସି ବୁଝିଯିବେ ବୋଲି କହିଲେ ।

ଗାୟତ୍ରୀ—(ଉଦ୍‌ବେଗ ପ୍ରକାଶ କରି) କେବେ ଆସିବେ ଆଜ୍ଞା ? ଯେଉଁ ଦିନ ଆସିବେ ଆମେ କେମିତି ଟିକିଏ ଖବର ପାଇବୁ ?

ସରୋଜ—ଆର ମାସ ପାଞ୍ଚ ତାରିଖରେ ଆସିବେ ବୋଲି ଚିଠି ଲେଖିଛନ୍ତି ।

ପ୍ରତିମା—ଲବଙ୍ଗ ଦେଇ ଆସନ୍ତୁ ( ଲବଙ୍ଗ ଉଠି ଠିଆ ହେଲା )

ଗାୟତ୍ରୀ—( ଠିଆ ହୋଇ ଡାକିବାର ଅଭିନୟ କରି ) ଆଜ୍ଞା, ଆପଣମାନଙ୍କ ପାଦଧୂଳି ଟିକିଏ ପଡ଼ୁ । ଅନ୍ତତଃ ଯେତେବେଳେ—

ମନ—ହଁ ପ୍ରକୃତରେ ଆଜି ତିଥି ଧରି ଆସି ନାହୁଁ । ତିଥି ଧରି ଆସିବାର ବେଳ ପାଖେଇ ଆସୁଛି—ଆପଣ ଆଉ ଡାକୁଛନ୍ତି କାହିଁକି ? ସେ ତ ଖାଇବ ନାହିଁ । ତା ପେଟ ଭରି ରହିଛି । ମତେ କହିଲେ ଯେତ ନଥିଲେ ବି ଆପଣମାନଙ୍କୁ ସାହାଯ୍ୟ କରିବି । ତେଣିକି ଯାହା ହେଉ ପଛେ—

**ଗାୟତ୍ରୀ**—ଆପଙ୍କର ଭୟ କରିବାର କିଛି ନାହିଁ । (ପ୍ରତିମାକୁ ଦେଖାଇ ) ଆମ ଘରେ ଡାକ୍ତର ଅଛନ୍ତି ଯେ—

**ମନ**—ଗୋଟିଏ ଗେଗୀତ ଡାକ୍ତର ଆଖିରେ ପଡ଼ିଛି । ଆଉ..........

**ଗାୟତ୍ରୀ**—ପ୍ରେମରେ ଯାହା ସନ୍ତୋଷ କରି ଖାଇବ ତାହା ବିଷ ହେଲେ ବି ଅମୃତ ହୋଇଯିବ । ପଥର ଥିଲେ ବି ହଜମ ହୋଇଯିବ । ଗ୍ଭଲନ୍ତୁ ନା........(ସମସ୍ତେ ଉଠୁଥିଲେ)

— ପଟକ୍ଷେପ —

## ଚତୁର୍ଥ ଦୃଶ୍ୟ

( ଚକ୍ରଧରଙ୍କ ବାସଭବନ–ଚକ୍ରଧର ଗୋଟିଏ ଚେୟାରରେ ବିଶେଷ ଚିନ୍ତାମଗ୍ନ ଅବସ୍ଥାରେ ଉପବିଷ୍ଟ - ହାଡ଼ିବନ୍ଧୁର ପ୍ରବେଶ–ଚକ୍ରଧରଙ୍କୁ ଦେଖି ପାଖକୁ ଲଗିଗଲା )

**ହାଡ଼ି**—ଆଜ୍ଞା, ଆପଣ ଏତେ ବ୍ୟସ୍ତ ହେଲେ ଚଳିବ ?

**ଚକ୍ର**—ବ୍ୟସ୍ତ ନ ହୋଇ ସୁସ୍ଥ ବା ରହିବି କିପରି ? ଯାହା ଖବର ପାଇଲି ମୋ ମୁଣ୍ଡ ଉପରେ ବଜ୍ରପାତ ହେଲା–କଥା ଏଡ଼େ ସରିକି ଗଲାଣି

**ହାଡ଼ି**—କ'ଣ ହେଲା ?

**ଚକ୍ର**—ତମକୁ ମୁଁ ତ କିଛି ଲୁଗ୍ଭଇ ନାହିଁ । ସେ ବସନ୍ତ ବାବୁଙ୍କ ଭଗିଯା ବଦ୍‌ମାସର ମୂଳ । ପ୍ରତିମା ବିଗ୍ଭରି ମୁଁହ ଖୋଲି କିଛି କହି ପାରୁ ନାହିଁ ।

**ହାଡ଼ି**—ବସନ୍ତ ବାବୁ କିଛି ନୁହନ୍ତି–ତାଙ୍କ ସ୍ତ୍ରୀ ହେଉଛନ୍ତି ପୁରୁଷ, ସେ ହେଉଛନ୍ତି ସ୍ତ୍ରୀ । ତାଙ୍କୁ ତ କିଗନୀପଡ଼ା ଯାକ ଅର୍ଦ୍ଧାଙ୍ଗିଚର୍ଣ୍ଣି ବୋଲି ଡାକନ୍ତି ।

**ଚକ୍ର**—ଗୋଟାଏ ଗୋଟାଏ ମାଇଚିଆ ଲୋକ ସେମିତି ଥାଆନ୍ତି ନା ! ସବୁବେଳେ ସ୍ତ୍ରୀ କଥାରେ ଗ୍ଭଲନ୍ତି । କାହାଘରେ ଭଲ ବରକୁ ବାହାଘର ପୂର୍ବରୁ ଡାକି ଆଣି କଥା ଭଷା ହେଉଛନ୍ତି ?

**ହାଡ଼ି**—ସେ କେଉଁଠି ଗୋଟାଏ ଦେଓ୍ୱାନ୍ ବାବୁଙ୍କ ପୁଅ ଭଲ ପଡ଼େ ।

**ଚକ୍ର**—ହଁ ମୁଁ ବି ଦିନେ ଭଲ ପଢ଼ୁଥିଲି ଯେ–ପଢ଼ାପଢ଼ିର କଥା ଏଠି କିଛି ନାହିଁ ହୋ–ଚାର କବି ପ୍ରାଣ ଗ୍ଭହେଁ ଭଣେ କବି କି ।

**ହାଡ଼ି**—ବାସ୍ତବିକ ଆପଣଙ୍କ ଲଗି ସେ—

**ଚକ୍ର**—ଦେଖୁଛ ମୁଁ ଚାରି ସକାଶେ ତିନି ହଜାର ଟଙ୍କା ଦେଇ ପ୍ରେସଟାଏ କିଣିଲି । ପର୍ଦ୍ଧକାଟା ହାତରେ ରଖିଲି । ଭବିଥିଲି ସେ ଲେଖିକରି ଜଣେ ବଡ଼ କବି ହେବ–ଦେଶର ଜାତିର ଗୌରବ ବଢ଼ାଇବ । ଜଳିବର ଲେଖିଛନ୍ତି "ଦେବୀ ବୀଣାପାଣି କେଉଁ ପାପ ଫଳେ, କରୁଣା ତୋହର ଉଣା ଏ ଉଳଳେ ଏ ପାପ ଫଳନ୍ତୁ ।"

ହାଡ଼ୁ—ଯାହା ଭଗ୍ୟରେ ଯାହା ଥିବ ତାହା ହେବ । ସେ ଯଦି ଆପଣଙ୍କ ହାତରେ ସୁଭଳ ପକାଇଥିବେ ତାହାହେଲେ ବୁଲି ବୁଲି ଏଇଠିକି ଆସିବେ । ଯିବେ କୁଆଡ଼େ ?

ଚନ୍ଦ୍ର—ଏ ଗୁଡ଼ାକ ସବୁ ଅଳସୁଆଙ୍କ ଯୁକ୍ତି (ଉତ୍ତେଜିତ ହୋଇ ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶ୍ୟନ୍ତି ମୁଖେ ମୃଗାଃ) ସିଂହ ଆଁ କରି ଶୋଇଲେ ତା ମୁହଁରେ ମୃଗ ପଶିଯିବ ? ମୃଗ ପଶିଯିବ ? ଉଦ୍ୟମ କରିବାକୁ ହେବ ନେପୋଲିୟନଙ୍କ ଭଷାରେ "There is nothing like under the Sun' ରବିତଳେ କିଛି ଅସମ୍ଭବ ନୁହେଁ ।

ହାଡ଼ୁ—ଆଚ୍ଛା ବନବାବୁ ଆପଣଙ୍କୁ ଏଭଳି ଜବାବ୍ ଦେଇଥିଲେ କ'ଣ କଲେ ? ତାଙ୍କର ତ ନିର୍ଭଳ ହୋଇଗଲା ।

ଚନ୍ଦ୍ର—କାହିଁ ? ମୁଁ ତ ଆଶ୍ଚର୍ଯ୍ୟ ହେଉଛି–ସେ ଇଚ୍ଛାକଲେ ସବୁ ହୋଇପାରନ୍ତା । ମୋତେ ବାରମ୍ବାର କହିବାକୁ ଲଜ ମାଡ଼ୁଛି । ତାହାଙ୍କର ଯାହା ମୁଁ ଉପକାର କରିଛି ମୋ ମନ ଜାଣେ । ଏଥର ନିଜ ଗୋଡ଼ରେ ନିଜେ ଠିଆ ହେବାକୁ ପଡ଼ିବ ।

ହାଡ଼ୁ—ଏତେ ବଡ଼ ମେଘ ଉଠି କିଛି ବରଷିଲା ନାହିଁ । ମୁଁ ଗୋଟାଏ କଥା ଶୁଣିଥିଲି । ତାହା କେତେ ଦୂର ସତ ଭଗବାନ ଜାଣନ୍ତି । ଆପଣଙ୍କର ପ୍ରଥମ ବିବାହ କଥା ସେ କିପରି ଜାଣି ପାରିଛନ୍ତି–ସେଇଥି ସକାଶେ ଆପଣଙ୍କର ବୟସ ବି ଟିକିଏ.......

ଚନ୍ଦ୍ର—(ଗମ୍ଭୀର ହୋଇ) ହାଡ଼ିବାବୁ ! ଟିକିଏ ଆଣିଲ ଦର୍ପଣଟା ।
(ହାଡ଼ିବଂଧୁ ଦର୍ପଣ ଆଣିଲ–ଦର୍ପଣକୁ ମୁହଁ ପାଖରେ ରଖି ଚମକି ପଡ଼ିଲେ । ତାଙ୍କ ମୁଣ୍ଡରେ କାନ ପାଖରେ ବାଳ ଗୁଡ଼ାକ ପାଚି ଯାଇଥିଲା–ତାଙ୍କର ମନ ଟିକିଏ ଫିକା ପଡ଼ିଗଲା ?
ଆହେ ହାଡ଼ିବନ୍ଧୁ ସବେ ! ଗୋଟାଏ ଦିଟା ଏଠି ପାଚିଗଲଣି । ଟିକିଏ ଓପାଡ଼ି ଦବଟି (ହାଡ଼ିବନ୍ଧୁ ଓପାଡ଼ିବାର ଅଭିନୟ କଲ) ଓଃ ଥାଉ ଥାଉ କଷ୍ଟ ହଉଛି । (ହାଡ଼ିବନ୍ଧୁ ଛାଡ଼ି ଦେଇ ପାଖରେ ଠିଆ ହେଲ) (ଟିକିଏ ସମୟ ପରେ ତାଙ୍କର ମନେ ପଡ଼ିଲ) ଆଛା ଗୋଟାଏ ବିଜ୍ଞାପନ ବାହାରି-ଥିଲ ପର ? ଆଉ ବାଳ ପାଚିବ ନାହିଁ ବୋଲି । ମୁଁ ଆଜି ଚିଠି ଲେଖୁଛି (ଆଉଥରେ ଦର୍ପଣରେ ମୁହଁ ଦେଖି) ମୁଁ କ'ଣ ବୁଢ଼ାଭଳି ଦିଶୁଛି ?

ହାଡ଼ୁ—ନା ଆଜ୍ଞା, ଲୋକେ ବାଉନ ବର୍ଷରେ ବାହା ହଉଛନ୍ତି ।

ଚନ୍ଦ୍ର—ହେଲ ସେଇ କଥା ହେ । ମୋ ବୟସର ଲୋକ ସ୍କୁଲ କଲେଜରେ ପଢ଼ୁଛନ୍ତି । ଦେଓ୍ୱାନ ବାବୁଙ୍କ ପୁଅ ଠାରୁ ଖୁବ୍ ବେଶି ହେଲେ ୨/ଅଢ଼େଇ ବର୍ଷ ବଡ଼ ହେବି । ମୋ ଦେହ–ତା ଦେହ (ମୁଣ୍ଡ ହଲଇ) ଏଁ (ଦେହକୁ ଅନାଇଥିଲେ) ପ୍ରତିମା ଏସବୁ ଘୃଣେନି–ତା କବିତାରୁ ମୁଁ ବୁଝି ପାରିଛି ସେ ଘଢ଼େ ହୃଦୟ । ଏ ବୋକା ଲୋକ ଗୁଡ଼ାକ ବୁଝି ପାରୁ ନାହାନ୍ତି ।

ହାଡ଼ୁ—ଆପଣ ଆଉଥରେ ସେ ଦରେଗାବାବୁଙ୍କ ପାଖକୁ ଯାଆନ୍ତୁ । ଶେଷ କଥା ଥୟ କରି ଆସନ୍ତୁ । ସେ ଯଦି ବସନ୍ତ ବାବୁଙ୍କ ସ୍ତ୍ରୀଙ୍କୁ କୌଣସି ମତେ ମନେଇ ପାରନ୍ତେ............

ଚନ୍ଦ୍ର—ହାଡ଼ୁ, ତମେ ବୁଝି ନାହଁକି–ସେ ମାଇକିନିଆ କାହଁକି ଏ ପ୍ରସ୍ତାବ ଲଗୁଛି–ସେଥିରେ ଗୋଟାଏ କଥା ଅଛି । ଦେଖିବାକୁ କେଉଁଠି ସେ ଅସୁନ୍ଦରୀ ଟିକିଏ । ତାକୁ ମୋ ସଙ୍ଗେ ଛନ୍ଦର ମନ୍ଦର କରିବ ବୋଲି ଏ ବ୍ୟବସ୍ଥା । ମୋର ଜୀବନଟା ଏହି ପରି କଟି ଯିବ ବରଂ........

ହାଡ଼ୁ—ମୋତେ କିଛି ଭଲ ଲଗୁ ନାହିଁ ଆଜ୍ଞା ।

ଚନ୍ଦ୍ର—ତମେ ସେମିତି ଦବି ଯାଅନା ହେ—(ଉଠି ଠିଆ ହେଲେ ଚୌକିଟା କଣ୍ଡି଼ ଦେଇ) ମୁଁ ଯାଏଁ ଆଜି । ବନବାବୁଙ୍କୁ ପଗ୍ଚରି ଆସେ । ଏଥିରେ ବସନ୍ତ ବାବୁଙ୍କ ସ୍ତ୍ରୀ ଯଦି ଗଜି ନ ହୁଏ, ତେବେ ଦେଖିବ ମୁଁ ଶପଥ କରୁଛି—ଏମିତି କରିଦେବି ଯେ ପଥର ଭିକାରୁଣୀ ହୋଇ ବୁଲିବ । କାନ୍ଦିଲେ ଲୁହ ପୋଛି ପୋଛି ଦିନ ସରିବ ନାହିଁ (କହି କହି ପ୍ରସ୍ଥାନ କଲେ ବେଗରେ)

ହାଡ଼ୁ—ନାଇଁ ଆଜ୍ଞା, ସେ ଗୁଡ଼ାକ କାହିଁକି ଭବୁଛନ୍ତି ?

( ଅନ୍ୟ ଦିଗରେ ପ୍ରସ୍ଥାନ )

—ପଟ୍ଟ କ୍ଷେପ—

## ପଞ୍ଚମ ଦୃଶ୍ୟ

( ପ୍ରତିମାର ସୁସଜ୍ଜିତ ପଠନ କକ୍ଷ—ପ୍ରତିମା ନିଜ ବଦନରେ ଗୋଟାଏ ଚୌକିରେ ଉପବିଷ୍ଟା—ଚିନ୍ତାରେ ତାର ହୃଦୟ ବୁଡ଼ି ରହିଛି । ଧୀର ପଦକ୍ଷେପରେ ଲୁଚି ଲୁଚି ପ୍ରବେଶ କଲା ସରୋଜ—ଚିନ୍ତା ଗ୍ରସ୍ତା ପ୍ରତିମା ଜାଣି ପାରିଲା ନାହିଁ । ସେହି ଗଭୀର ନୀରବତା ଭିତରେ ସରୋଜ ଚୌକି ପଛପଟେ ହାତଦେଇ ଠିଆ ହୋଇ ରହିଲା । )

ସରୋଜ—କ'ଣ ଏତେ ଭବୁଛ ବସି ?

ପ୍ରତିମା—(ଚମକି ପଡ଼ି ଠିଆ ହୋଇଗଲା) କ'ଣ ଅନୁମାନ କରୁଛ ଭବୁଥିବି ବୋଲି ?

ସରୋଜ—ଭବୁଥିବ ମୋର ପାଟନା ଯିବା କଥା ( ଈଷତ୍ ହସି)

ପ୍ରତିମା—(କିୟତ୍କ୍ଷଣ ପରେ) ହଁ ଭବୁଛି ତମେ କେମିତି ଦାଗ ଦିଅ ଆଉ ଦଗା ଦିଅ—

ସରୋଜ—(ଗମ୍ଭୀର ଭବରେ) ଦାଗ ଦେଇଛି ସତ—ଦଗାଦିଆ ନୁହେଁ । ତମେ କ'ଣ ଛାଡ଼ିବ ପ୍ରତିମା ? ମୁଁ ଫୁଲରେ ଦାଗ ଦେଇଛି, ଆଉ ତମେ ପାଷାଣରେ ... ... ...

ପ୍ରତିମା—(ନିଜର ପଣତ ଧରି ଓ ଚକ୍ଷୁ ଛଳ ଛଳ କରି) ପ୍ରକୃତରେ ତମେ ପାଷାଣ ନୁହେଁ କି ? ମୁଁ ଜାଣେ ସ୍ଥାନ ପରିବର୍ତ୍ତନ ସଙ୍ଗେ ସଙ୍ଗେ ମନ ପରିବର୍ତ୍ତନ ହୋଇଯିବ । କିନ୍ତୁ ମୁଁ—ସେଇ ଅତୀତ ସ୍ମୃତିକୁ ସଂଗ୍ରହ କରି ଝୁରି ମରିବି ସିନା ! ମୋ ଅନ୍ତରର ବେଦନା ସେ ପ୍ରଭୁ ଜାଣନ୍ତି......

ସରୋଜ—ବସ (ହାତଧରି ବସାଇବା) ତମଠାରୁ ବିଦାୟ ନେବା ମୋ ପ୍ରାଣରେ କ'ଣ ଯନ୍ତ୍ରଣା ହେଉ ନାହିଁ ? ପ୍ରତିମା, ମୁଁ ତୁମକୁ ଭୁଲିଯିବି ? ରୂପର ଭିକାରି ନୁହେଁ କି ଗୁଣର ଭିକାରି ନୁହେଁ—ହୃଦୟର

ଭିକାରି ମୁଁ । ତମେ ପଣ ଲେଖିଥିଲ 'ହୃଦୟ ଯେ ଚିହ୍ନେ ହୃଦୟ ସେ ଘିନେ, ହୃଦୟ ଅରପି ଦିଏ । ରୂପ ଯେଉଁ ନେ ସଂପତ୍ତି ସମ୍ମାନ କାହିଁରେ ନଭୁଲେ ସିଏ । ମୋର ଗର୍ବ ଯେ ମୁଁ ହୃଦୟ ପାଇଛି ।

ପ୍ରତିମା—ମୁଁ କିବା ଛାର ? ତମର ପ୍ରତିଭା ସୌରଭେ ଶତ ଶତ ହୃଦୟକୁ ପ୍ରଜାପତି ପରି ଟାଣି ଆଣିବ ।

ସରୋଜ—ପ୍ରତିଭା କାହାକୁ କହୁଛ ପ୍ରତିମା ? ଯେ ଜଗତକୁ ନୂଆ କିଛି ଦାନ କରେ—ପ୍ରତିଭା ଥିଲା ସାହିତ୍ୟରେ ରବୀନ୍ଦ୍ରଙ୍କର, ବିଜ୍ଞାନରେ ଜଗଦୀଶଚନ୍ଦ୍ରଙ୍କର, ଗଣିତ ଜ୍ୟୋତିଷରେ ପଠାଣି ସାମନ୍ତଙ୍କର, ଦର୍ଶନରେ ଶଂକରାଚାର୍ଯ୍ୟଙ୍କର । ଯେଉଁ ସମାଜ ଲାଗି ମୋର ଏ ଶରୀର, ଯେଉଁ ଦେଶର ଜଳବାୟୁ ଲାଗି ମୋର ଏ ଯୌବନ, ଯେଉଁ ଶାସନ ଲାଗି ମୋର ସୁନିଦ୍ରା, ଯେଉଁ ମାଟି ମୋ ଜନନୀଙ୍କର ଅନ୍ତିମ ଲୀଳାଭୂମି—ସେମାନଙ୍କ ନିକଟରେ ମୁଁ ଚିରଋଣୀ । ମତେ ତାଙ୍କର ଋଣ ପରିଶୋଧ କରିବାକୁ ହେବ ।

ପ୍ରତିମା—ମୋର ଆଲୁଅ ପକ୍ଷ ଥିଲା—କାଲିଠାରୁ ଅନ୍ଧାର ପକ୍ଷ ପଡ଼ିବ—ଗଲା ୬ ମାସ ମୋତେ ଦିନ ରାତି ଜଣା ପଡ଼ୁନଥିଲା ।

ସରୋଜ—ପ୍ରତିମା ଜୀବନଟା କେବଳ ସିଧା ସଡ଼କ ନୁହେଁ, ସାଇକେଲ୍ ମାରି ଚାଲିଯିବା—ବାଟରେ କେତେ ନଈ, ନାଳ, ବଣ, ଜଙ୍ଗଲ, ଖାଲ, ପାହାଡ଼ ଡେଇଁ ଯିବାକୁ ପଡ଼ିବ (ଟିକିଏ ରହି) ତମର ବ୍ୟସ୍ତ ହେବା ଉଚିତ୍ ନୁହେଁ । ମୁଁ ଛୁଟିରେ ବରାବର ଆସିବି ।

ପ୍ରତିମା—ତମ ଛୁଟି ଯାଇ କେବେ ପଡ଼ିବ । ରାତି ପାହିଲେ ରାମ ବନବାସ । ମୋର ଛାଇ ତମ ସାଙ୍ଗେ ସାଙ୍ଗେ ରହନ୍ତି । ଯେଉଁ ଆପଣାର ଲୋକଙ୍କୁ ଏତେ ଭଲ ପାଉଥିଲି—ସେମାନେ ତ ମନରୁ ଦୂରକୁ ଚାଲି ଗଲେଣି । ମୁଁ ବର୍ତ୍ତମାନ ତୁମ ପାଖେ ବନ୍ଦୀ ।

ସରୋଜ—ବନ୍ଦୀ ତୁମେ ସତ—ମୁଁ କ'ଣ ମୁକ୍ତ ପ୍ରତିମା ? ରକ୍ତର ବନ୍ଧନଠାରୁ ଆତ୍ମାବନ୍ଧନ ଶକ୍ତ ।

ପ୍ରତିମା—କାଲି ଏତେ ବେଳର କଥା ଭାବିଲା ବେଳକୁ ମୋର ଛାତି ଥରି ଉଠୁଛି । ତାର ନ ଥାଇ ବୀଣା ପଡ଼ି ରହିବି ସିନା !

ସରୋଜ—ମୁଁ ବୁଝି ପାରୁଛି ପ୍ରତିମା ମୋ ହୃଦୟଠାରୁ ତମ ହୃଦୟ ବଡ଼ । କୋମଳ ଏକେ ଓ ନାରୀ ଦୁଇକେ କବି । ମାତ୍ର ଆମକୁ ସମୟର ଚାବୁକ ସହିବାକୁ ହେବ ।

ପ୍ରତିମା— ........ଆଉ କବି ....... ସେ ସବୁ ତୁମ ସଙ୍ଗରେ ଯିବ । ଯାହା ଲେଖାଲେଖି କରୁଥିଲି ଏଣିକି ପଦେ ହେଲେ ଲେଖି ପାରିବି ନାହିଁ । ଦୁଃଖ ହେଲେ ଆଖିରୁ ଲୁହ ଗଡ଼େ—ମାତ୍ର ଗଭୀର ଦୁଃଖରେ ଆଖି ଶୁଖିଲା ପଡ଼ି ରହେ ଲୁହ ଦେଖାଦିଏ ନାହିଁ । ସେ ଭିତରେ ଭିତରେ ନିଆଁ ଜାଳେ । ଯେଉଁ ଦିନ ଋଷି ଓ୍ୱାଟଟା ବଢ଼ାଇ ଦେଲି ତମ ପରଶ ଲାଗି ସର୍ବାଙ୍ଗରେ ମୋର ବିଜୁଳି ସୁଅ ଖେଳିଗଲା ! ଜୀବନରେ ଏପରି କେବେ ଅନୁଭବ କରି ନଥିଲି ।

ସରୋଜ—ମୋର ବି ସେଇ ଦଶା—ତମେ ଫିଟାଇ କହିଲ—ମୁଁ କହି ପାରିଲି ନାହିଁ ।

ପ୍ରତିମା—ମୋର ଲାଜ ନାହିଁ କି ଭୟ ନାହିଁ । ଗଲା ଦିନେ ମୁର୍ଦ୍ଦାର ଦେଖିବା ଦୂରେ ଥାଉ "ରାମ ନାମ ସତ୍ୟ ହେ" ଶୁଣିଲା କ୍ଷଣି ଘରେ ଯାଇ ଲୁଚୁଥିଲି । ଆଜି ମୁର୍ଦ୍ଦାର କାଟି ମଣିଷର ହାଡ଼ ମାଉଁସରେ ପିତୁଳା ଗଢ଼ୁଛି । ନୂଆ ମଣିଷ ଦେଖିଲେ ମୋର ପାଟି ଫିଟୁ ନଥିଲା । ତମେ ତ ସବୁ ସାରି ଦେଇଛ–ସେ ଦିନ ତମକୁ ଦେଖିଲାକ୍ଷଣି ମନେ ହୁଏ ତମେ ଯେମିତି କେଉଁ ଜନମର........

ସରୋଜ—କହୁ କହୁ ଏତେ ଦିନ କଟିଗଲା, ତମର ମନକଥା କେଉଁଦିନ ହେଲେ ତ କହିଲ ନାହିଁ ?

ପ୍ରତିମା—କହିବି କ'ଣ ? ଅନେକ କଥା ଭାବିଥାଏ, ଦେଖିଲାକ୍ଷଣି ସେ ସବୁ ଭୁଲିଯାଏ । ମନ ମୋର ଉଡ଼ାଣ ସ୍ୱପ୍ନ ରାଜ୍ୟକୁ ଉଡି ଯାଏ । ଇଛା ହୁଏ ଫୁଲର ବାସ ହୋଇ ତମ ପ୍ରଶ୍ୱାସରେ ମିଶି ଯାଆନ୍ତି । ତମ କୋଇଲିର କୁହୁ କୁହୁ ସ୍ୱର ହୋଇ ତମ ହୃଦୟ ସାଥିରେ ମିଶି ଯାଆନ୍ତି । ତମ ରୂପ ଶିଖାରେ ନିଜକୁ ପତଙ୍ଗ ପରି ଜାଳି ଦିଅନ୍ତି ।

ସରୋଜ—ପ୍ରତିମା, ବହୁତ ଦୂରରେ ତୁମେ–କଳ୍ପନାର ଉତ୍ତୁଙ୍ଗ ଶିଖରୀରେ ମାତ୍ର ଏଭଳି ନିଜର ସତ୍ତାକୁ ନିଃଶେଷ କରି ଦେବାରେ ତମେ କି ଆନନ୍ଦ ପାଇବ ? ଚକୋର ଯଦି ଚନ୍ଦ୍ରିକାର, ମଧୁପ ଯଦି ଫୁଲ ରସର, ଚାତକ ଯଦି କଳା ମେଘରେ ମିଶି ଯାଆନ୍ତା ତେବେ ଆସ୍ୱାଦନର ଆନନ୍ଦ ମିଳନ୍ତା କି ? ମୋ ମନରେ ବି ଥରେ ଥରେ ଏହିପରି କେତେ କଳ୍ପନା ଖେଳି ଉଠେ, ଭାବେ ପରମାଣୁର ପରମାୟୁ ନେଇ ତମେ ଥା'ନ୍ତ, ମୁଁ ଥା'ନ୍ତି ଆଉ କେହି ନ ଥା'ନ୍ତେ–ଚନ୍ଦ୍ରାଲୋକର ବ୍ୟୋମ ଯାନରେ ଉଡ଼ି ବୁଲନ୍ତେ । ଝିଲିକାର ନୀଳ ବକ୍ଷରେ ମରାଳ ମରାଳୀ ପରି ଭାସୁଥାଆନ୍ତେ । ବଉଳରଗ ଆମ୍ବ ଗଛର ବଗିଚାରେ ପଲ୍ଲବ ଶଯ୍ୟାରେ ବସି ଚନ୍ଦ୍ରାଲୋକରେ ବିଚରଣ କରୁଥାଆନ୍ତେ । ପୁଣି ପର ମୁହୂର୍ତ୍ତରେ ବାସ୍ତବ ଜଗତକୁ ଫେରିଆସେ । ଦେଖେ ଏଠି ଅଭିଳାଷିତ କାମନା ପୂର୍ଣ୍ଣ ହେଲେ ଶାନ୍ତି ଆସେନା । ଆସେ କ୍ଳାନ୍ତି ।

ପ୍ରତିମା—କ୍ଳାନ୍ତି ଆସେ ?

ସରୋଜ—ହଁ କ୍ଳାନ୍ତି ଆସେ । ମାନବ ଯୌବନରେ ପଦାର୍ପଣ କରି ଦେହ ନିଶାରେ ପାଗଳ ହୁଏ–ଆତ୍ମାର ଆହ୍ୱାନ ଶୁଣିପାରେ ନାହିଁ । ସୌରଭ ବାରି ପାରେ ନାହିଁ, ସୌନ୍ଦର୍ଯ୍ୟ ଦେଖିପାରେ ନାହିଁ-ଆବଦ୍ଧ ପ୍ରାଣ ଦୁଇଟି ପିଞ୍ଜରାବଦ୍ଧ ପକ୍ଷୀପରି ମିଳିଯିବାକୁ ଚାହାନ୍ତି । ସେମାନଙ୍କର ପ୍ରବଳ ପିପାସା ଜାଗି ଉଠେ-ନୀଳ ଗଗନର ନୀଳ ସୀମାରେ ଉଡ଼ି ବିରାଟତା ସାଥିରେ ମିଶିଯିବାକୁ । ମାତ୍ର ଯୌବନ ପାଗଳ ତା ବୁଝି ପାରେନା ଦେହ ସହିତ ଦେହ ମିଶେ । ଆତ୍ମା ସହିତ ଆତ୍ମା ମିଶେ କେତେଜଣଙ୍କର ହୀରକ ବନ୍ଧନରେ ମିଳେ କରକା ।

ପ୍ରତିମା—ମୁଁ ସେହି ହିରକ ଚାହିଁଛି–କରକା ନୁହେଁ ।

ସରୋଜ—ଆତ୍ମାର ସୌନ୍ଦର୍ଯ୍ୟ ଦେଖୁଥିଲେ ବିଷ୍ଣୁପ୍ରିୟା, ଶାରଦା, ସୀତା, ସାବିତ୍ରୀ, ଉମା ।

ପ୍ରତିମା—ସେ ସୌଭାଗ୍ୟ ମୋର କାହିଁ ? ପ୍ରାଣ ଭିତରେ ତୁମ ପାଇଁ ରକ୍ତ ସବୁ ଢାଳି ଦିଅନ୍ତି ତେବେ ମୋର ଏ ଜନ୍ମ ସାର୍ଥକ...........

ସରୋଜ—ନା ପ୍ରତିମା, ଦୁଇଟିଯାକ ପ୍ରାଣ ସାର୍ଥକ ହୁଅନ୍ତା । ଯୁଗ ଯୁଗାନ୍ତର ପିପାସା ମେଣ୍ଟି ଯାଆନ୍ତା ।

ପ୍ରତିମା—(ଅର୍ଦ୍ଧରୁଦ୍ଧ କଣ୍ଠରେ) ତୁମେ ସତେ କାଲି ଯିବ ନା ?

ସରୋଜ—ତମର କ'ଣ ସନ୍ଦେହ ରହିଛି ? ନ ଗଲେ ପର ଆଡ୍‌ମିସନ୍ ହୋଇ ପାରିବ ନାହିଁ । ହଁ ତମକୁ ପଢ଼ାପଢ଼ି ବିଷୟ ଯାହା କହିଥିଲି ମନେ ଅଛି ତ ? ମୁଁ ରଜନ ବୋଉକୁ କହିଦେଇ ଯିବି । ସଂସ୍କୃତ ନ ପଢ଼ିଲେ ଆୟୁର୍ବେଦରେ ପ୍ରବେଶ କରି ହେବ ନାହିଁ । ଆମ ସାହିତ୍ୟର ଗର୍ଭାଗରେ କି ଅମୂଲ୍ୟ ମଣି ମାଣିକ୍ୟ ପ୍ରାଚୀନ କବିମାନେ ରଖି ଯାଇଛନ୍ତି ତାହା ଜାଣିବାର ସୁଯୋଗ ପାଇବ ।

ପ୍ରତିମା—(ଚକ୍ଷୁ ଛଳ ଛଳ କରି) ରଜନ ବୋଉକୁ କ'ଣ ଏଇକ୍ଷଣି ଡାକି ଦେବି ?

ସରୋଜ—ଡାକି ଦେଲେ ଭଲ ହୁଅନ୍ତା । ବେଳ ତ ହେଇ ଆସି (ଦୁହେଁ ଧୀରେ ଧୀରେ ଉଠୁଥିଲେ-କରୁଣ ଦୃଷ୍ଟିରେ ପ୍ରତିମା ସରୋଜ ଆଡ଼କୁ ଚାହିଁ ରହିଲା-ବିଦାୟ ଦୁଃଖରେ ସରୋଜର ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇ ଆସୁଥିଲା-ପ୍ରତିମାର ଅପଲକ ନୟନ ସରୋଜ ଦେଖୁଥିଲା-ସତେ ଯେପରି କେଉଁ ଅନନ୍ତ ଯୁଗର ସ୍ମୃତି ।)

—ଡ୍ରପ୍—

# ଚତୁର୍ଥ ଅଙ୍କ

## —ପ୍ରଥମ ଦୃଶ୍ୟ—

( ପାଟନା ସହରରେ ସରୋଜର କକ୍ଷ । ସମୟ ସନ୍ଧ୍ୟା । ସରୋଜ ଓ ପ୍ରଶାନ୍ତ ଟେବୁଲ୍‌ର ଦୁଇପଟେ ଚେୟାରରେ ଆସୀନ । ଟେବୁଲ୍‌ରେ କେତେ ଖଣ୍ଡ ମୋଟା ବହି—ଗୃହଟି ବିଶେଷ ପରିଷ୍କାର ପରିଚ୍ଛନ୍ନ )

ସରୋଜ—( ଟେବୁଲ୍ ଉପରେ ଦୁଇଟି ହାତଭରା ରଖି) ପ୍ରଶାନ୍ତ, ତମ ଚିନ୍ତାଧାରା ମୋ ଚିନ୍ତାଧାରା ଏକ ନୁହେଁ । ତମ ମତ ମୋ ମତ ସହିତ ମିଳିବ କିପରି ? ବୃଥା ଯୁକ୍ତି କରି ଲାଭ କଅଣ ?

ପ୍ରଶାନ୍ତ—ଯୁକ୍ତିକୁ ତମେ ଭୟ କରୁଛ କାହିଁକି ? ପୃଥିବୀର ଯେତେ ଆଇନ୍ କାନୁନ୍ କି ନୈତିକ ରାଜନୈତିକ— ସବୁ ଯୁକ୍ତି ଉପରେ ପ୍ରତିଷ୍ଠିତ । ଏପରିକି ଈଶ୍ୱରଙ୍କ ଅସ୍ତିତ୍ୱ ମଧ୍ୟ ।

ସରୋଜ—ହଁ ତା ସତ । ମାତ୍ର ଯାହା ପ୍ରତ୍ୟକ୍ଷ ଅନୁଭୂତି ତା ନେଇ ଯୁକ୍ତି କରିବାଟା ବୃଥା—

ପ୍ରଶାନ୍ତ—ଯେଉଁ ଡାଳ ଉପରେ ଗୋଡ଼ ଥୋଇଛ ତମେ ସେହି ଡାଳକୁ ହାଣୁଛ ।

ସରୋଜ—ମୁଁ ତ ସେ ଡାଳକୁ ହାଣୁ ନାହିଁ ! ଯାହାର ଯେତିକି ପ୍ରାପ୍ୟ ତାକୁ ସେତିକି ଦେବା ଉଚିତ୍ । ଅଯଥା ପ୍ରଶଂସା କରି ସ୍ୱାର୍ଥର ନାଗରା ବଜାଇବାକୁ ନାରାଜ ମୁଁ । ପାଶ୍ଚାତ୍ ବିଜ୍ଞାନର ଯେତିକି ଆଲୋକ ପାଇଥାଏ ସେତିକି ଗୁଣ ଗାଇବା ତତୋଧିକ ନୁହେଁ ।

ପ୍ରଶାନ୍ତ—ବିଜ୍ଞାନକୁ ବେଖାତିରି କରି ଆମ ଦେଶର ଏ ଦୁର୍ଦ୍ଦଶା । ପାଶ୍ଚାତ୍ୟ ବିଜ୍ଞାନ ଆଜି ପୃଥିବୀକୁ ଚମକାଇ ଦେଉଛି ।

ସରୋଜ—ବିଜ୍ଞାନ ଚାତୁର୍ଯ୍ୟ ବଢ଼ାଇଛି, ମରିବାକୁ ଶିଖାଇଛି, ମୃତ୍ୟୁ ମୁଖରୁ ବର୍ତ୍ତିବାକୁ ଶିଖାଇଛି, କି ଆଦର୍ଶରେ କି ନୀତିରେ ମାନବ ଜୀବନ ସ୍ରୋତରେ ଅଗ୍ରସର ହେବ ? ତାର କର୍ଣ୍ଣଧାର ତ ବିଜ୍ଞାନ ନୁହେଁ ଦର୍ଶନ ।

**ପ୍ରଶାନ୍ତ**—ଆମର ଆୟୁର୍ବେଦକୁ ପ୍ରଶଂସା କରିବା ଅର୍ଥ ଆତ୍ମବିଶ୍ୱାସ ହରାଇବା ।

**ସରୋଜ**—ଆୟୁର୍ବେଦକୁ ପ୍ରଶଂସା କରିବା ଅର୍ଥ ଡାକ୍ତରୀକୁ ନିନ୍ଦା କରିବା ତ ନୁହେଁ । ଏଲୋପାଥିକର ଆଧୁନିକ ଚିକିତ୍ସା ପ୍ରଣାଳୀରୁ ଯେତିକି ଆବଶ୍ୟକ ସେତିକି ଗ୍ରହଣ କରିବା ଉଚିତ୍ । ଭାରତବାସୀଙ୍କ ଦୈନିକ ଜୀବନ ମଧ୍ୟ ବିଜ୍ଞାନ ସମ୍ମତି ସ୍ୱାସ୍ଥ୍ୟନୀତି ଉପରେ ପ୍ରତିଷ୍ଠିତ । ଡକ୍ଟର ଜେ. ସି. ବୋଷ ପ୍ରମାଣ କରି ଦେଖାଇ ଦେଲେ—ଶଂଖ ଧ୍ୱନିରେ ଶତ ଶତ ଜୀବାଣୁ ନଷ୍ଟ ହୁଅନ୍ତି ।

**ପ୍ରଶାନ୍ତ**—(ପରିହାସରେ) ହଁ ମୁଁ ତ ସେହି ଶଂଖ ମହୁରୀ କଥା କହୁଛି । ତମ ବିବାହରେ ହଜାରେ ଶଂଖ ବାଜିଲେ ବହୁ ଜୀବାଣୁ ନଷ୍ଟ ହୋଇଯିବେ । ଆମେ ତ ସେଇଆ ଖୋଜୁଛୁ ।

**ସରୋଜ**—ବାପାରାଣ—ଢ଼ିକିଗିଲ୍ !

**ପ୍ରଶାନ୍ତ**—ଏଇଟା ମୁହଁରେ ନା ପେଟ ଭିତରେ ? ସୌନ୍ଦର୍ଯ୍ୟର ଆକର୍ଷଣ ଶକ୍ତି ସ୍ୱର୍ଗର ଦେବତାଙ୍କୁ ବି ଅଥୟ କରିଛି । ଲୀଳାର ସୌନ୍ଦର୍ଯ୍ୟ କେତେଜଣଙ୍କ ଭାଗ୍ୟରେ ଜୁଟେ ।

**ସରୋଜ**—ଠିକ୍ କଥା ଭାଇ । ମୟୂରର ମନୋହର ନୃତ୍ୟ ଦେଖିଲେ ଭାବୁକ ଭବର ସନ୍ଧାନ ପାଏ । ବ୍ୟାଧ ଜୀବିକାର ସନ୍ଧାନ ପାଏ । ମୁଁ ତ ବ୍ୟାଧ ନୁହେଁ । ତାପରେ ଭବ ଗଜ୍ୟତ ଆଉ ଜଣେ ଅଧିକାର କରିଛି । ସେ ମୋ ଆଖି ଦୁଇଟାରେ ଅଞ୍ଜନ ଲିପି ଦେଇଛି ଏପରି, ଲୀଳାର ସୌନ୍ଦର୍ଯ୍ୟ ଭିତରେ କି ତାର ରୂପ ଫୁଟି ଉଠିଛି ।

**ପ୍ରଶାନ୍ତ**—ଯୌବନ ଝଡ଼ରେ ପଡ଼ି ଯୁବକ ସମୟେ ସମୟେ ସାଥି ନିର୍ବାଚନ ଭୁଲ୍ କରିଥାଆନ୍ତି । ମୁଁ ହାଡ଼ିଆ ଠାରୁ ସବୁ ଶୁଣିଛି । ଘରିଆଡ଼କୁ ଭବି ଦେଖ—ସେଠି ତମେ ସବୁ ପ୍ରକାର ସୁବିଧା ପାଇ ପାରିବ କି ?

**ସରୋଜ**—ହେଁ ତମେ କ'ଣ ଭବୁଛ ଆଇରନ୍ ଚେଷ୍ଟ, ସିନେମା ହାଉସ ଆଉ ସିଣ୍ଡିକେଟ୍‌ର କଷଟି ପଥରରେ ସାଥି ନିର୍ବାଚନ କରଯାଏ ? କ୍ଷମାକର ବନ୍ଧୁ, ମୁଁ ତାହା ଘୃହେଁନା ।

**ପ୍ରଶାନ୍ତ**—ତାହାହେଲେ ତମେ ଘୃହଁ କ'ଣ ?

**ସରୋଜ**—ମୁଁ ଖୋଜିଥିଲି ଯାହା—ତାହା ପାଇ ସାରିଛି, ସେ ହେଉଛି ହୃଦୟ ।

**ପ୍ରଶାନ୍ତ**—ହୃଦୟ ? ହୃଦୟ ଜାଣିବାର ମାପ କାଠି ?

**ସରୋଜ**—ହୃଦୟ ଜାଣିବାର ମାପ କାଠି ? — ହୃଦୟ । ମୁଁ ସେଇ କଷଟିରେ କଷି ସାରିଛି ।

( ହାଡ଼ିବନ୍ଧୁର ପ୍ରବେଶ )

**ହାଡ଼ୁ**—ଆଜ୍ଞା, ସାଢେ ନଅଟା ବାଜିଲଣି ।

**ପ୍ରଶାନ୍ତ**—( ଉଠି ଠିଆ ହେଇ—ରିଷ୍ଟଓ୍ୱାଚ୍ ଦେଖି ) ଆରେ ସତେ ( ଯିବାକୁ ଉଦ୍ୟତ )

**ସରୋଜ**—ମୁଁ କହିଲି ବୋଲି ତୁମେ କ'ଣ ମନରେ ଦୁଃଖ କଲକି ?

**ପ୍ରଶାନ୍ତ**—ନା, ମୁଁ ଦୁଃଖ କରିବି କାହିଁକି ? ମୁଁ ଅଲଗା ରକମ ଭବିଥିଲି ଯା ବୋଲି ତୁମେ ଧରିନେବ ନାହିଁ ମୁଁ ଲୀଳା ତରଫରୁ ଓକିଲତି କରୁଥିଲି ।

ସରୋଜ—ନା ତୁମେ ଡାକ୍ତର—ମୁଁ ଜାଣେ, ଓକିଲଟି କରିବ କେମିତି ? ଓକିଲତିରେ ଭଲ ପାଶିପାଆନ୍ତ—
କିନ୍ତୁ କାଲି ସ୍ୱରିଟା ବେଳେ ପୁଣି କଥାବାର୍ତ୍ତା ହେବା ଏଁ—

ପ୍ରଶାନ୍ତ—ହେଉ ନମସ୍କାର ! ( ପ୍ରସ୍ଥାନ )

ସରୋଜ—ନମସ୍କାର ।

—ପଟକ୍ଷେପ—

## —ଦ୍ୱିତୀୟ ଦୃଶ୍ୟ—

—ପୂର୍ବରୁ ସେହି ଭିକାରିଟି ଗୀତ ଗାଇ ଯାଉଥିଲା—

କହ ମୋତେ କିଏ ତୋତେରେ ରହିଛି ଆକୁଳେ ଚାହିଁ
ସେ ଯେ ମୋର ସେ ଯେ ତୋର ଜନନୀ ଜନମ ଭୂଇଁ
ଚନ୍ଦ୍ରଲତା ପତ୍ରଘେରା, ସବୁଜ ଗାଲିଚ୍ଚ ପରା
ପ୍ରଣୟ ପ୍ରୀତି ପସରା ମାଟିର କୁଟିର ଭରା
ହସେ ଯହିଁ ସରସୀରେ କେତେ ନାଲି ନୀଳ କଇଁ । ୧ ।

ଯହିଁ ହଳଦୀ ବସନ୍ତ ତୋ ବିହୁନେ ହନ୍ତସନ୍ତ
ତାଳ ଉହାଡ଼େ କପୋତ କୋମଳ ସ୍ୱରେ ସତତ
ଝୁରେ ତୋତେ ବନପଥେ କରୁଣ ସଙ୍ଗୀତ ଗାଇ । ୨ ।

ଉଡ଼ାଇ ପଣତ କାନି ଯହିଁ ତୋ କୁଟୀର ରାଣୀ
କାଖରେ କଳସ ଘେନି କୋଇଲିର ଡାକ ଶୁଣି
ତରଳେ ପରାଣେ ତାର ତୋରବି ମନେ ପକାଇ । ୩ ।

ଘୋର ବରଷା ରାତିରେ କେହି ତ ନାହିଁ ପାଖରେ
ଟପ୍ ଟପ୍ ପଡ଼େ ପାଣି ହୃଦୟ ଦିଅଇ ହାଣି
ବହେ ତାର ଲୁହ ଧାର ଲେଉଟ ଚିଠି ନ ପାଇ । ୪ ।

—ପ୍ରସ୍ଥାନ—

(ଦୂରରେ ଭିକାରିର କଣ୍ଠସ୍ୱର ମିଳାଇ ଗଲା)

## —ତୃତୀୟ ଦୃଶ୍ୟ—

( ପାଟନା–ସରୋଜର କକ୍ଷ–ସରୋଜ ଚୌକିରେ ବସି ତାର ହିସାବ ଖାତାଟି ଦେଖିବାରେ ବ୍ୟସ୍ତ–ଆଗରେ ଟେବୁଲ–ଟେବୁଲ ଉପରେ କେତେକ ଖାତାପତ୍ର ଓ ବହି ଦୁଆତ ଦାନୀ ଯଥା ସ୍ଥାନରେ ସଜ୍ଜିତ । ପାଖରେ ହାଡ଼ିବନ୍ଧୁ ଠିଆ ହୋଇଥିଲା–ତାର ମୁଖମଣ୍ଡଳରେ ଭୟର ଚିହ୍ନ )

**ସଗେଜ**—ମୁଁ କେତେଥର ତୁମକୁ କହିଛି ପ୍ରତିଦିନ ହିସାବ ପ୍ରତିଦିନ ଚଢ଼େଇ ଦେବ ? ୩/୪ ଦିନ ହେଲା ତୁମେ ମୋତେ ବରାବର କହି ଆସୁଛ–ମୁଁ ଲେଖୁଛି ବୋଲି ।

**ହାଡ଼ୁ**—ନା ଆଜ୍ଞା, ଅଜି ଲେଖିଦେଇଥାନ୍ତି । ମୋ ଆଡ଼କୁ ଖାତାଟା ଦେଇ ଦିଅନ୍ତୁ ( ହାତ ବଢ଼ାଇ ) ମୁଁ ଲେଖିବି ।

**ସଗେଜ**—ନା-ନା ମୁଁ ଏଣିକି ମୋ ହାତରେ ଚଢ଼ାଇବି (ଟିକିଏ ବିରକ୍ତ ହୋଇ) ତୁମର ଦାୟିତ୍ୱଜ୍ଞାନ ଟିକିଏ ନାହିଁ । (ପ୍ରଶାନ୍ତର ପ୍ରବେଶ)

**ପ୍ରଶାନ୍ତ**—ନମସ୍କାର

**ସଗେଜ**—(ସ୍ନେହ ମୃଦୁସ୍ୱରରେ ହସିଲା) ନମସ୍କାର ! ବସ୍ ବସ୍–ମୁଁ ଟିକିଏ କାମ ସାରେ । ( ହାଡ଼ିବନ୍ଧୁ କାତର ହୋଇ ଠିଆ ହୋଇଥିଲା–ପ୍ରଶାନ୍ତର ଆସନ ଗ୍ରହଣ ପରେ ହାଡ଼ିବନ୍ଧୁ ସଗେଜ ପାଖକୁ ଘୁଞ୍ଚିଗଲା )

**ହାଡ଼ୁ**—ଆଜ୍ଞା, ଦିଅନ୍ତୁ ମୋର ଦୋଷ ହୋଇଛି । (ମୁହଁ ଶୁଖାଇ) ମୁଁ ଲେଖିପାରିନାହିଁ ।

**ପ୍ରଶାନ୍ତ**—କ'ଣ ଘଟଣା କଣ (ହସି) ଆଜି କାହିଁକି ଉତ୍ୟକ୍ତ ହୋଇଯାଉଛ ?

**ସଗେଜ**—କ'ଣ କରିବି ଭାଇ–୩ ଦିନ ହେଲା ସ୍ଲିପ ଗୁଡ଼ାକ ଖର୍ଚ୍ଚ ଖାତାକୁ ଉଠାଇ ନାହିଁ । ମୁଁ ତ ବାବୁଙ୍କ ଉପରେ ବିଶ୍ୱାସ କରି ରହିଛି ।

**ପ୍ରଶାନ୍ତ**—(ଆଶ୍ଚର୍ଯ୍ୟ ହୋଇ) ତମର କଣ ଦୈନିକ ହିସାବ ଗୋଟାଏ ଖାତାରେ ଲେଖା ହୋଇ ରହେ ?

**ସଗେଜ**—ନିଶ୍ଚୟ–ପଇସା ଖର୍ଚ୍ଚ କରି ହିସାବ ନ ରଖିବାଟା ଗୋଟିଏ ନୈତିକ ଦୁର୍ବଳତା ବୋଲି ମୋର ଧାରଣା ।

**ପ୍ରଶାନ୍ତ**—(ହସି ହସି ଉଚ୍ଚ ସ୍ୱରରେ) ସମୟ ନଷ୍ଟ ଖାଲି !

**ସଗେଜ**—ସମୟର ପ୍ରକୃତ ସଦ୍‌ବ୍ୟବହାର—ଡାଏରୀ ଲେଖିବା ହିସାବ ରଖିବା ପ୍ରତ୍ୟେକଙ୍କର ଉଚିତ୍ । ମୁଁ ତ ଡାଏରୀ ଲେଖି ପାରେନା–ହିସାବଟା ପ୍ରତିଦିନ ଲେଖେ । ଜଣଙ୍କର ଆଜୀବନର ହିସାବଟା ଦେଖି ତାର ଜୀବନୀ ଲେଖାଯାଇପାରେ ( ହିସାବ ଲେଖା ସରିଯାଇଥିଲା । ସଗେଜ ହାଡ଼ିବନ୍ଧୁଙ୍କୁ ଖାତା ବଢ଼ାଇ ଦେଲା) ହାଡ଼ୁ ଦେଖ ଏଣିକି ଯେପରି ଭୁଲି ନ ଯାଅ ।

**ହାଡ଼ୁ**—ଆଜ୍ଞା ଆଜିଠାରୁ ଶିକ୍ଷା ପାଇଲି । କାନ ମୋଡ଼ି ହେଉଛି (ଖାତାକୁ କାଖରେ ଚାକି କାନ ମୋଡ଼ି ହୋଇ) ମୋର ହଜାରେ କାମ ଥାଉ ଆଗ ହିସାବ ଲେଖା ସାରିବି--ତେବେ ଯାଇ ସେଇ କଥା ।

**ସଗେଜ**—(ଚୌକିରେ ଆଉଜି ପଡ଼ି) ତମର ମଶାରୀ ମରାମତି ହୋଇଆସିଲା ।

**ହାଡ଼ୁ**—ନା ସେ ତିନି ଅଣା କହିଲା–ମୁଁ ଫେରାଇ ଆଣିଛି ।

**ସଗେଜ**—(ରାଗିଗଲା ଭଳି ହୋଇ) ଏଁ ତିନି ଅଣା ଛାଡ଼ି ଚାରିଅଣା ହେଲେବି ବର୍ତ୍ତମାନ ଯାଇ ମରାମତି କରାଇ ଆଣିବାକୁ ପଡ଼ିବ । (ପ୍ରଶାନ୍ତ ଆଡ଼କୁ ଚାହିଁ) ବୁଦ୍ଧି ଦେଖ, ବିଗୁରି ପଇସା ବେଶୀ ସକାଶେ ବେମାରରେ ପଡ଼ିବେ, ମତେ ବି ପକାଇବେ । (ହାଡ଼ିବନ୍ଧୁ ପ୍ରତି) ତମେ ପର କଟକ ଟାଉନ ବାଲା ବୋଲି ବଢ଼େଇ କର ? (ହାଡ଼ିବନ୍ଧୁର ଧୀର ପଦକ୍ଷେପରେ ପ୍ରସ୍ଥାନ)

ପ୍ରଶାନ୍ତ—ତମ ହାଡ଼ୁ ଗୋଟିଏ ବାବୁ । ଏଠି ହାଇକୋର୍ଟ ଜଜ୍‌ମାନଙ୍କ ଘରମାନେ ବି ଏତେ ଅପରିଷ୍କାର ନ ଥାନ୍ତି । ତାର ଯେଉଁ ଫିଟ୍ ଫାଟ୍ ତୁମେ ତାକୁ ଏତେ ବିଶ୍ୱାସ କର-ଯାହା କରିବା ଉଚିତ ନୁହେଁ ।

ସରୋଜ—ପଇସା କଉଡ଼ି ସେ ଘେରି କରେନା-ତାର ଖଟ, ବିଛଣା, ଲୁଗା ପଟା ସବୁ ସଫା ସୁତୁରା ରଖିବାକୁ ମୁଁ ବାଧ୍ୟ କରିଛି । ମତେ ବଡ଼ ଦୁଃଖ ଲାଗେ ବାବୁମାନେ ବଡ଼ ସଫା ସୁତୁରା ଥାଆନ୍ତି, ମାତ୍ର ଘରର ପୂଜାରୀଙ୍କ ଦେହରେ ଆଣ୍ଠିଏ ବହଳ ମଇଳା । ଅଣାଏ ଦିଅଣା ପଇସାକୁ ଡରି ହଜାର ଟଙ୍କାର ରୋଗ କିଣନ୍ତି ।

ପ୍ରଶାନ୍ତ—ତମେ ସିନା ବଡ଼ ଲୋକ ଯେ-ତମ ବାପା ଟଙ୍କା ପଠଉଛନ୍ତି ତୁମକୁ କିଛି ମାଲୁମ ହେଉ ନାହିଁ । ଆମ ଭଳିଆ ଗରୀବ...........

ସରୋଜ—ମୋତେ ବେଶ ମାଲୁମ୍ ପଇସା କିପରି ଆସେ । ତୁମେ ହିସାବ ଖାତାଟା ଅଡ଼ିଟ୍ କରିପାର ।

ହାଡ଼ୁ—(ଢୁରି ଢୁରି ଧିର ପଦକ୍ଷେପରେ ପ୍ରବେଶ କଲା । ହାତରେ ଗୋଟିଏ ଟେଲିଗ୍ରାମ)

ସରୋଜ—କିଓ କଣ ? ଦେଖେଁ-ଟେଲିଗ୍ରାମ (ଫର୍ମରେ ଦସ୍ତଖତ କଲାପରେ ହାଡ଼ୁ ନେଇ ଗ୍ରଲିଗଲା-ସରୋଜ ଫିଟାଇଲା) "Pratima suffering highfever aPpheresion pox" Basanta (ସରୋଜ ପଥର ପରି ଠିଆ ହୋଇଗଲା)

ପ୍ରଶାନ୍ତ—(ଦୀର୍ଘ ନୀରବତା ପରେ) ପ୍ରତିମା କିଏ ? ବସନ୍ତ ବାବୁଙ୍କର ଭଉଣୀ ?

ସରୋଜ—ହିଁ । କ'ଣ କରିବି ? କିଛିତ ଠିକ୍ କରିପାରୁ ନାହିଁ । ଆଜି ରାତି ଗାଡ଼ିରେ କ'ଣ ଗ୍ରଲିଯିବି ? ପରୀକ୍ଷା ଥାଉ ଯେଉଁଠି ରହିଲା ।

ପ୍ରଶାନ୍ତ—ଏତେ ବିଚଳିତ ହେଲେ ହେବ ? ଜର ହୋଇଛି ପକ୍‌ସ ସନ୍ଦେହ । ମିଳିମିଳା ହାଡ଼ଫୁଟି ବି ହୋଇ ପାରେ । ହାଡ଼ଫୁଟିରେ ଭରୀ ଜ୍ୱର ହୁଏ ଯେ—

ସରୋଜ—ମୁଁ ତ ଏଠି ରହି କିଛି କରିପାରିବି ନାହିଁ । ସେଇ କଥା ସବୁ ମନେ ପଡ଼ିବ । ପରୀକ୍ଷା କାହିଁକି ଦେବି-ଲାଭ କ'ଣ ?

ପ୍ରଶାନ୍ତ—ତମେ ପରା ଗୀତାରୁ କର୍ତ୍ତବ୍ୟର ଉଦାହରଣ ଦେଉଥିଲ ? ତମର ଆଜି ଏ କି ମୋହ ? କଟକରେ ଡାକ୍ତର କି କବିରାଜଙ୍କର ତ ଅଭାବ ନାହିଁ । ଯାଇ ତମେ ବିଶେଷ କଣ କରିବ ?

ସରୋଜ—ମୁଁ ତା ଶେଯ ପାଖରେ ବସି ରହିବି । ଆପଣା ଲୋକର ଉପସ୍ଥିତି ଔଷଧଠାରୁ ବେଶୀ କାମ କରେ ।

ପ୍ରଶାନ୍ତ—ବାରବରଷର ତପ ଶୁଖୁଆ ପୋଡ଼ାରେ ଯିବ । ତମେ ପରୀକ୍ଷା ଛାଡ଼ି ଗ୍ରଲିଯାଇଛ-ଏକଥା ଶୁଣି ସେମାନଙ୍କ ମନରେ ଆହୁରି କଷ୍ଟ ହେବ । ତମେ ଆଜି ପାଟନାରେ ଅଛ ବୋଲି-ଲଣ୍ଡନରେ ଥାଆନ୍ତ ।

ସରୋଜ—ହାଡ଼ ଫୁଟି ନହୋଇ ଯଦି ବସନ୍ତ ହୋଇଥାଏ ତାହାହେଲେ ତ ସର୍ବନାଶ !

ପ୍ରଶାନ୍ତ—ତୁମେ ଡାକ୍ତର ହୋଇ କ'ଣ ଅଧିର ଏତେ ହେବା ଠିକ୍ ? ତମେ ଭଲକରି ଜାଣ ପ୍ରତ୍ୟେକ ରୋଗର ଔଷଧ ଅଛି ।

ସରେଳ—କିନ୍ତୁ ମୃତ୍ୟୁର ଔଷଧ ନାହିଁ (ବ୍ୟସ୍ତ ହୋଇପଡ଼ିବା)

ପ୍ରଶାନ୍ତ—ତୁମେ ବ୍ୟସ୍ତ ହେଲେ କ'ଣ ହେବ । ଟେଲିଗ୍ରାମ କର-ଅବସ୍ଥା କଲାବର ଜଣାଇଥିବେ । ଆଚ୍ଛା ମୁଁ ଲେଖି ଦେଉଛି-ହାଡ଼୍ ଯାଇ ଟେଲିଗ୍ରାମ କରି ଆସ ।
(କାଗଜ ଖଣ୍ଡେ ଲେଟର ପ୍ୟାଡ଼ରୁ ଚିରି ଲେଖୁଥିଲେ ।)

—ପଟକ୍ଷେପ—

(ବସନ୍ତ ବାବୁଙ୍କ ଗୃହ—ସକାଳ ଆଠଟା—ପ୍ରତିମା ବାମହାତମାଡ଼ି କହୁଣୀରେ ଭରଦେଇ ପାପୁଲିରେ ମୁଣ୍ଡ ରଖି ପଡ଼ିରହିଥିଲ ବିଛଣାରେ । ବାମବାହୁ ତଳେ ଗୋଟିଏ ତକିଆ—ମୁଖମଣ୍ଡଳରେ ଚିନ୍ତାର ଆଭାସ । ଲବଙ୍ଗ ପାଖରେ ବସି ତାକୁ ଧରି ଗୀତ ଗାଇଛି )

ଗୀତ

ରହୁଁ ରହୁଁ ଦିନ ଯାଏ ବିତି
ଆସଇ ସକାଳ ଆସଇ ସଂଜ
ପାହି ଯାଏ ରାତି ହୁଏ ପାହାନ୍ତି । ପଦ ।
ସେହି ଘର ସେହି ଛାତ
ସେହି ବାଡ଼ ସେହି କାନ୍ତ
ନୂଆ କେହି ନାହିଁ ସେହି ପୁରୁଣା ସାଥୀ । ୧ ।
ପ୍ରାଣ ଯେବେ କହେ କାହିଁ
ପ୍ରତିଧ୍ୱନି କହେ ନାହିଁ
ହୃଦୟ ଭିତରୁ ଉଠେ ନିରଶ ଗୀତି । ୨ ।

ପ୍ରତିମା—(ଲବଙ୍ଗ ହାତ ଧରି )ଲବଙ୍ଗ ଏଭଳି ନିଷ୍ଠୁର ସେ ?

ଲବଙ୍ଗ—ତମେ କାହିଁକି ଭାବୁଛ ଏତେ ? ବ୍ୟସ୍ତ ହୁଅନା—ସେ ବଦଳି ଯିବା ଲୋକ ନୁହଁନ୍ତି । ଆଉ କଣ କିସ ହେବ ?

ପ୍ରତିମା—ମଣିଷର ମନ କେତେବେଳେ ପରିବର୍ତ୍ତନ ହୁଏ—ତାହା ଠିକ୍ ନାହିଁ । (ଗାୟତ୍ରୀ ପ୍ରବେଶ କଲେ)

ଗାୟତ୍ରୀ—ଦେହ କଣ ହେଉଛି କି ? (ଉଦ୍‌ବେଗ ପ୍ରକାଶ କରି ପାଖକୁ ଗଲେ-ପ୍ରତିମା ଉଠି ବସିଲ) ମୁଣ୍ଡ ଟିପିଦେବି ।

ପ୍ରତିମା—ନା ମୁଣ୍ଡ ସାମାନ୍ୟ ବଥାଉଥିଲ —ରାତିରେ ଗୋଟିଏ ଅଶାର ସ୍ୱପ୍ନ ଦେଖିଛି । ସକାଳୁ କାହିଁକି ମନଟା କେଉଁଠି ଲାଗୁନାହିଁ ।

ଗାୟତ୍ରୀ—(ଖଟପାଖକୁ ଚୌକିଟା ଭିଡ଼ି ଆଣି ବସିଲେ) ଲବଙ୍ଗ, ମନ୍ନବାବୁଙ୍କ ପାଖରୁ ଘଟନାକୁ ଚିଠି ପତ୍ର ଆସୁନାହିଁ ।

ଲବଙ୍ଗ—ସେ କ'ଣ ଏଠି ଅଛନ୍ତି କି ? ପନ୍ଦର ଦିନ ହେଲା କୁଆଡ଼େ ଗସ୍ତରେ ଯାଇଛନ୍ତି ।

ଗାୟତ୍ରୀ—କ'ଣ ହେଲା ଆଜିକି କୋଡ଼ିଏ ଏକୋଇଶ ଦିନ ହେବ ମୁଁ ବି ତନିଖଣ୍ଡ ଚିଠି ଦେଲିଣି । କିଛି ଉତ୍ତର ନାହିଁ ।

ଲବଙ୍ଗ—ଏ ମାସରେ ତାଙ୍କର ପରୀକ୍ଷା—କହୁଥିଲେ ପରା ତାଙ୍କୁ ନିଃଶ୍ୱାସ ମାରିବାକୁ ଫୁରୁସତ ମିଳୁନାହିଁ ।

ପ୍ରତିମା—ହଁ ଲୋ ପରୀକ୍ଷା ଆମେ କ'ଣ ଆଉ ଦେଖିନାହୁଁ ? ଆମର ସ୍କୁଲ ସେଠି କଲେଜ, ଯେଉଁମାନେ ପରୀକ୍ଷା ଦେଉଥିବେ—ସେମାନେ ପୁଣି ଖାଉଥିବେ, ପିଉଥିବେ, ଶୋଉଥିବେ ?

ଗାୟତ୍ରୀ—(ଗମ୍ଭୀର ହୋଇ କିଛିକ୍ଷଣ ପରେ) ସେ ତ ଚିଠି ବନ୍ଦ କଲା ବାଲା ନୁହଁନ୍ତି ?

ପ୍ରତିମା—ଭଉଜ ବୋଉ ! ସେ ତ ପରୀକ୍ଷା ନୁହେଁ—ପରଖିଆ, ସେଠିତ ଲୀଳା ଲାଗିଛି...........ଆମ କଥା କେଉଁଠି ମନେ ପଡ଼ୁଛି ? ପ୍ରତିଦିନ ସିନେମା ଦେଖା, ଚିଠି ଲେଖିବାକୁ ଫୁରସତ କାହିଁ ?

ଗାୟତ୍ରୀ—କିଏ ବଜାରୀ ଗୋଟାଏ ବେନାମୀ ଚିଠି ଦେଇଥିଲା—ତମେ ସେଇ କଥାକୁ ବିଶ୍ୱାସ କରିଗଲ ? ତାଙ୍କ ବିଷୟରେ ତୁମେ ଯାହା ନ ଜାଣିଛ—ମୁଁ ତାହା ଜାଣିଛି । ଏକ ପଇସା ଅସଦ୍‌ବ୍ୟୟ କଲାବାଲା ସେ ନୁହେଁ ।

ପ୍ରତିମା—ହଁ ନିଆଁ ନ ଥାଇ ଧୂଆଁ ........

ଲବଙ୍ଗ—ଦେଇ, କୁହୁଡ଼ି ଗୁଡ଼ାକ କ'ଣ ଧୂଆଁ ପରି ଦେଖାଯାଏ ନାହିଁ ? ତୁମେ ସିନା ମୋତେ ବିଶ୍ୱାସ କରୁନାହିଁ ? ମାତ୍ର ଏସବୁ ଚକ୍ରାନ୍ତ ସେହି ଚକଗର । ସେଥିରେ ଯାହା ସବୁ ଲେଖାଅଛି ତା କ'ଣ ସତ ?

ଗାୟତ୍ରୀ—ସେ ଚିଠି ମଲା ମଣିଷ ବି ସତ କରିବ ନାହିଁ । ସଗେଜ ବାବୁ ଭଳି ଲୋକ ହାତରୁ ପଇସା ଖର୍ଚ୍ଚ କରି ଲୀନାକୁ ତା ଭଉକୁ ଯାହା ସିନେମା ଦେଖେଇ ନଉଥିବେ—

ଲବଙ୍ଗ—ତେବେ ତାଙ୍କ ଘରକୁ ତାଙ୍କ ମାଆ ବେମାର ଥିଲା—ଯିବା ଆସିବା କରୁଥିବେ । ସେ କଥା ସତ ହୋଇଥିବ । ବେମାରୀ କଥା ଶୁଣି ସେ ତ ସାତ ପର ଘରକୁ ଦଉଡ଼ିବେ ।

ପ୍ରତିମା—ସେମିତି ଲାଗୁ ଲାଗୁ ଲାଗେ । ମୁଁ ଗଲା ଚିଠିରେ ମଧ୍ୟ ଲେଖି ଦେଇଛି ଦି ଧାଡ଼ି ।

ଲବଙ୍ଗ—ସେ କଣ' ବସା ବଦଳେଇଲେ କି ଆଉ ? କାଳେ ଆମ ଚିଠି ପାଇ ନ ଥିବେ । ମୁଁ ଭଲ କରି ଜାଣେ ତାଙ୍କ ଲୋକ ପ୍ରତିଦିନ ଡ଼ାକ ଘରକୁ ଯାଏ ଚିଠି ଆଣିବାକୁ ।

ଗାୟତ୍ରୀ—ବସା ବଦଳେଇଲେ ତ ଆମକୁ ଜଣାଇଥାନ୍ତେ । ପାଖ ହୋଇଥିଲେ ମୁଁ ଟିକଟ କାଟି ଚାଲି ଯାଆନ୍ତି ! ମତେ ତ ମରିବାକୁ ଇଆଡ଼େ ଫୁରୁସତ ନାହିଁ—

ପ୍ରତିମା—ଭାଇ ଯଦି ସେଠିକି ଚିଠି ଲେଖନ୍ତେ—ଜଣା ପଡ଼ନ୍ତା ସବୁ ।

ଲବଙ୍ଗ—ତାଙ୍କର ଆଉ କ'ଣ କିଏ ଚିହ୍ନା ଅଛି ?

ଗାୟତ୍ରୀ—ତାଙ୍କର ମାମୁଁ ପୁଅ ସେଠି ଓକିଲାତି କରନ୍ତି ।

ଲବଙ୍ଗ—ତାହେଲେ ସେ ମଫସଲରୁ ଫେରିଲେଣି ତାଙ୍କୁ କହି ଚିଠି ଲେଖନ୍ତୁ ।

ଗାୟତ୍ରୀ—ତୁମେକୁ ମୋ ରାଣଟି, ତମେ ମନରେ କିଛି ଚିନ୍ତା କରନା—ଏ ପରୀକ୍ଷାରେ କିପରି ଭଲ କରିବେ ଭଗବାନଙ୍କୁ ଡାକ । ମୁଁ ପୁଣି କାଲି ଚିଠି ଲେଖୁଛି । (ପ୍ରସ୍ଥାନ)

( ପ୍ରତିମା ନୀରବରେ ଚାହିଁ ରହିଲ ଲବଙ୍ଗକୁ )

—ପଟକ୍ଷେପ—

# ପଞ୍ଚମ ଅଙ୍କ

## —ପ୍ରଥମ ଦୃଶ୍ୟ—

(ଘୋଟନା—ସମୟ ପୂର୍ବାହ୍ଣ—ସରୋଜର ପଠନ କକ୍ଷ । ହାଡ଼ିବନ୍ଧୁ ଗୃହଟି ପରିଷ୍କାର କରିବାରେ ବ୍ୟସ୍ତ—ସରୋଜର ପ୍ରବେଶ । ଦୁଃଖରେ ତାହାର ହୃଦୟ ଯେପରି ଭାଙ୍ଗିପଡ଼ୁଥାଏ)

ସରୋଜ—ହାଡ଼ୁ ସରିଗଲା ମୋ ପରୀକ୍ଷା ।

ହାଡ଼ୁ—ଆଜି ସରିଲା (ଆଶ୍ଚର୍ଯ୍ୟ ହୋଇ) କହୁଥିଲେ ପରା ଶନିବାର ସରିବ ବୋଲି ?

ସରୋଜ—ଆଜି ଗୁରୁବାର—ଆଜି ବାରଟା ବେଳେ ସରିଲା ( ଅତି ଦୁଃଖରେ ମୁଣ୍ଡ ବାଳ ବିପରୀତ ଦିଗରେ ସାଉଁଳି ସାଉଁଳି ଆରାମ ଚେୟାରରେ ବସି ପଡ଼ିଲା—ସିଗାରେଟ୍ ଲଗାଇବାପାଇଁ ଚେଷ୍ଟା କଲା—ଅନ୍ତରଗି ଲିଭିଗଲା)

ହାଡ଼ୁ—ଜଳଖିଆ ଆଣୁଛି ?

ସରୋଜ—( ଆରାମ ଚେୟାରରୁ ଉଠି ବସି ) ହଁ ଖାଇବି (ପୁଣି ପକେଟ୍‌ରୁ କାଢ଼ି ଟେଲିଗ୍ରାମ ପଢ଼ିଲା) ମୁଁ ତ ଖାଇ ସାରିଛି ଆଉ ଖାଇବି କଣ ? ବାରବର୍ଷ ତଳେ ଖାଇଥିଲି । ଠିକ୍ ଚବିଶ ବର୍ଷ ଆରମ୍ଭରେ ପୁଣି ଖାଇଲି । ( ଟେଲିଗ୍ରାମ୍‌ଟିକୁ ବାରମ୍ବାର ଅନାଉଥିଲା ) ଆଣ କ୍ୟାସ ବାକ୍‌ସଟା ଆଣ—ଯାହାରେ ଯାହା ଅଛି ଦେଇଯାଏ ।

ହାଡ଼ୁ—(ଆଶ୍ଚର୍ଯ୍ୟ ହେବାର ଛଳନା ଦେଖାଇ) ଏମିତି କୋହମୋହ କାହିଁକି ହେଉଛନ୍ତି ? କ'ଣ ଟେଲିଗ୍ରାମ ଆସିଛି ?

ସରୋଜ—ଟେଲିଗ୍ରାମ୍ ( ଦୀର୍ଘ ନିଃଶ୍ୱାସ ପକାଇ) ହଁ, ପ୍ରଥମ ଥର ଆସିଥିଲା, ଦ୍ୱିତୀୟ ଆସିଲା । ପୁଣି ଏଇ ଥର ଆସିଛି । ଏଇ ଶେଷ ଆଉ ଆସିବ ନାହିଁ ।

ହାଡ଼ୁ—ଚା'ରି ଦିନ ପରା ଆସିଥିଲା ? ଦେହ ଟିକିଏ ଭଲ ଅଛି ବୋଲି ।

ସରୋଜ—ହଁ ସେଇଟା ମୋତେ ଭୁଲାଇବାକୁ । ସେଟା ମୋତେ ଠକିବାକୁ......କାଳେ ମୋ ପରୀକ୍ଷା........। ଧନ୍ୟ ସେ ପରୀକ୍ଷା........। ମୁଁ କ'ଣ ସେ ପରୀକ୍ଷା ମୋହରେ ପଡ଼ି ରହିଲି ? ମୁଁ ବଡ଼ ନିଷ୍ଠୁର ଜଗନ୍ନାଥ ପ୍ରାଣର ପ୍ରତିମାକୁ ପରୀକ୍ଷା ପାଖରେ ଆଜି ବଳି ଦେଇଛି । (ଚୌକିରେ ଅଉଜି ପଡ଼ିବା)

**ହାବୁ**—(ଉଦ୍‌ବେଗ ପ୍ରକାଶ କରି) ଆଜ୍ଞା କ'ଣ ହେଲ ?

**ସରୋଜ**—ହେବ ଆଉ କ'ଣ ? ଯାହା ହେବାରତ ହୋଇଛି । ମୁଁ ମୋର ଉପଯୁକ୍ତ ପୁରସ୍କାର ପାଇଛି । ମୁଁ ଯେଉଁ ଭୁଲ କରିଛି ତା'ର ପ୍ରାୟଶ୍ଚିତ୍ତ ନାହିଁ । ଭୁଲ ମଣିଷ କରେ—ସ୍ୱୟଂ ରାମଚନ୍ଦ୍ର ବି କରିଥିଲେ । ସ୍ୱର୍ଣ୍ଣ ମୃଗର ମରିଚୀକା ଯୋଗୁଁ ସୀତାଙ୍କୁ ହରାଇ ବସିଲେ—ସେ ପାଇଲେ ଆଉ ମୁଁ ପାଇବି ନାହିଁ ।

**ହାବୁ**—ଆଜ୍ଞା, ଯେତେ ଦିନକୁ ଯେ ଆଇଷ ନେଇ ଆସିଛି—ସେତକ ପୁରିଲେ ରଖିବ କିଏ ?

**ସରୋଜ**—ହାବୁ, ମୁଁ ତାକୁ ଟିକିଏ ଦେଖି ପାରିଲି ନାହିଁ । ସବୁ ଅତୀତକୁ ଭୁଲିଗଲେ ସେ ଯାହାକୁ ପ୍ରକୃତରେ ଭଲ ପାଏ, ରୋଗ ଶଯ୍ୟାରେ ତା'ରି କଥା ମନେ ପଡ଼େ ।

**ହାବୁ**—ମୁଁ ବି ଆପଣଙ୍କୁ କିଛି ଭରସି କରି କହି ପାରିଲି ନାହିଁ । ବସନ୍ତରୁ କେତେ ଜଣ ବଞ୍ଚନ୍ତି ? ପ୍ରଶାନ୍ତ ବାବୁ ବି ନାହିଁ କଲେ ସେତେବେଳେ.......

**ସରୋଜ**—ଆଖିରେ ଦେଖିଲ କଥାତ ଭୁଲିଗଲି । ମୁଁ ତାର ଉପଯୁକ୍ତ ପାତ୍ର ନୁହେଁ । ସେ ଯାହା କହିଥିଲ ମୁଁ ପାଷାଣ, ବାସ୍ତବିକ ପାଷାଣ ମୁଁ ........। ହାଡ଼ିବନ୍ଧୁ ।

**ହାବୁ**—ଆଜ୍ଞା........ମୁଁ ଟିକିଏ ଆସେ !

**ସରୋଜ**—କୁଆଡ଼େ ?

**ହାବୁ**—ପଦାକୁ........

**ସରୋଜ**—(ଉଠି) ନା—ଯିବାକୁ ହେବ ନାହିଁ । ମୁଁ ବୁଝି ପାରିଛି—ଯିବ ପ୍ରଶାନ୍ତକୁ ଡାକିବାକୁ । ସେ ମୋତେ କ୍ଷମା କରି ପାରିବ ନାହିଁ । ମୋ ବାଟରେ ମୁଁ ଯିବି ।........

**ହାବୁ**—ଆଜ୍ଞା କୁଆଡ଼େ ଯିବେ ?

**ସରୋଜ**—ଯୁଆଡ଼େ ଆସିଥିଲି ସେଇଆଡ଼େ—

**ହାବୁ**—କଟକ...........?

**ସରୋଜ**—(ଆଶ୍ଚର୍ଯ୍ୟ ହୋଇ) କଟକରେ ବା କିଏ ଅଛି ମୋର ? ହଁ, ମନ ଅଛି । ମନକୁ ତ ଶେଷ ଚିଠି ଦେଇଛି ।

**ହାବୁ**—ଆପଣ ଏତେ ଅଧୈର୍ଯ୍ୟ ହେଲେ ଚଳିବ ?

**ସରୋଜ**—ମୋର ଧୈର୍ଯ୍ୟ ନାହିଁ କି ଅଧୈର୍ଯ୍ୟ ନାହିଁ । ପଥର ହୋଇଗଲିଣି—ମୋତେ ଯିବାକୁ ହେବ । ଦେଖ ବାକ୍‌ସରେ ଯେଉଁ ଟଙ୍କା ଅଛି—ଘରବାଲା, ଦୁଧବାଲା, ବଗିବାଲା, ଦୋକାନୀ ଯାହାର ଯାହା ଅଛି—ସବୁ ଛିଡ଼ାଇ ଦେବ । ମୋର ତମ ଉପରେ ସବୁ ବିଶ୍ୱାସ ।

**ହାବୁ**—(ପଥର ଭଳି ଠିଆ ହୋଇଗଲ) ଆପଣ କୁଆଡ଼େ ଯିବେ ? ରହନ୍ତୁ ମୁଁ ବି ଆପଣଙ୍କ ସାଂଗରେ ଯିବି ?

**ସରୋଜ**—ନା ଭଇ ( ତାକୁ ଧରି ପକାଇ )ତୁମେ ମୋତେ ବହୁତ ସାହାଯ୍ୟ କରିଛ—ଏତକ କରି ପାରିବ ନାହିଁ ଶେଷରେ ? ମୋ ଚିଠି ପାଇ ମନ ଆସିପାରେ, ତାକୁ ସବୁ ଦେଇ ଦେବ—ତାପରେ ଯାଇ ଯିବ । ତୁମକୁ ଉପକାର ମୁଁ ଶୁଝିପାରୁ ନାହିଁ !

ହାଡ଼୍ର—ମୁଁ କେତେ ଆଶା ପୋଷୁଥିଲି ମନରେ । ସବୁ ସରିଗଲା—ହାୟରେ ବିଧାତା ( ମୁଣ୍ଡରେ ହାତଦେଇ କାନ୍ଦିବାର ଛଳନା କରି )

ସଗେଜ—ତମକୁ ଈଶ୍ୱର ନିଶ୍ଚୟ ସାହା ହେବେ । ମୋ ଭଳି ହତଭାଗ୍ୟଦ୍ୱାରା ତୁମର କିଛି ହୋଇନଥାନ୍ତା—ହେଲା ନାହିଁ ।

ହାଡ଼୍ର—ମତେ ସମସ୍ତେ ପଚାରିବେ ସେ କୁଆଡ଼େ ଗଲେ ବୋଲି ?

ସଗେଜ—ତୁମେ ସତ କହିବ, ମୁଁ ଯାହା କହୁଛି—ଯୁଆଡ଼େ ଆସିଥିଲେ ଗଲେ ସିଆଡେ ।

ହାଡ଼୍ର—ଆପଣ କାହାକୁ ନ କହି ଗଲେ ସମସ୍ତେ ଚିଡ଼ିବେ ମୋ ଉପରେ......କହିବେ ଆମକୁ ଟିକିଏ କହିଲୁ ନାହିଁ ? ଏଡ଼େ କଥା ହୋଇଗଲା ?

ସଗେଜ—ତେଣିକି ତମର ବିଚାର ବୁଦ୍ଧିରେ ଯାହା କରିବା କଥା କରିବ ( ହାତରୁ ମୁଦି କାଢ଼ି ହାଡ଼୍ରକୁ ଦେଇ) ନିଅ—ହାଡ଼୍ର ମୁଁ କ'ଣ ଆଉ ତା' ଦେଖା ପାଇବି ନାହିଁ ? ନିଗମାନନ୍ଦତ ପାଇଥିଲେ । ମୋର ସେ ଶକ୍ତି କାହିଁ ? (କେହୁ କହୁ ପ୍ରସ୍ଥାନ କଲା—ତାର ଦୁଃଖ ବିଷର୍ଣ୍ଣ ଆଖି ଛଳ ଛଳ ହୋଇଉଠୁଥିଲା—ହାଡ଼୍ର ପଥର ପରି ସଗେଜକୁ ଗ୍ରହିଁ ରହିଲ ।)

## —ଦ୍ୱିତୀୟ ଦୃଶ୍ୟ—

( ପ୍ରଶାନ୍ତ ବାବୁଙ୍କ ବୈଠକ ଖାନା ମନୋରଞ୍ଜନ ଚେୟାରରେ ଉପବିଷ୍ଟ—ମୁଣ୍ଡରେ ହାତ ଦେଇ ବସିଛି—ହାଡ଼ିବନ୍ଧୁ ପାଖରେ ଠିଆ ହୋଇରହିଛି )

ପ୍ରଶାନ୍ତ—ନମସ୍କାର ! କେତେବେଳେ ଆସିଲେ ? ଆପଣଙ୍କ ସହିତ ମୋର ଚିହ୍ନା ନାହିଁ । ଯାହା ସଗେଜ ବାବୁଙ୍କ ଠାରୁ ଶୁଣିଥିଲି । (ବସିଲେ)

ମନ—ଏଇ ଗ୍ଲରିଟା ବେଳ ଗାଡ଼ିରେ ଆସିଛି । ତା ବସାକୁ ଯାଇଥିଲି । କ'ଣ କରିବି କିଛି ଠିକ କରିପାରୁ ନାହିଁ । କିଛି ଭାବି ପାରୁନି ।

ପ୍ରଶାନ୍ତ— ହଠାତ ଗୋଟିଏ ଦୁର୍ଘଟଣା ଘଟିବ ବୋଲି ଆମ୍ଭେମାନେ କେହି ଆଶଙ୍କା କରି ନଥିଲୁ । ତାଙ୍କ ଲାଗି ଏ ହୋଲ ଟାଉନରେ ଗୋଟାଏ ହୁରି ପଡ଼ିଯାଇଛି । ଛାତ୍ର ମହଲରେ ସମସ୍ତେ ତାଙ୍କୁ ଭଲ ପାଆନ୍ତି ।

ମନ—ଆପଣ ଭଲ କ'ଣ ଆଶଙ୍କା କରୁଛନ୍ତି ? କ'ଣ ସୁଇସାଇଡ଼ କଲା ?

ପ୍ରଶାନ୍ତ—ହଠାତ ଟେଲିଗ୍ରାମ କରିବା ଅତିଶୟ ଅନ୍ୟାୟ ହୋଇଛି । ଆପଣମାନେ ଜାଣନ୍ତି ସେ ଦୁହିଁଙ୍କ ଭିତରେ କି ସମ୍ପର୍କ—ପୁଣି ପରୀକ୍ଷା ସମୟରେ ।

ମନ—(ଦୀର୍ଘ ନିଃଶ୍ୱାସ ପକାଇ) ପ୍ରଶାନ୍ତବାବୁ, ଆପଣଙ୍କୁ କହିବି କ'ଣ ? ମୁଁ ମହା ସଙ୍କଟରେ ପଡ଼ିଛି—ପାଣିକି ଗଲେ କୁମ୍ଭୀର—କୂଳକୁ ଗଲେ ବାଘ । ଘଟଣାଟା ବିଲକୁଲ ମିଛ । ଯା ଭିତରେ କି ରହସ୍ୟ ମୁଁ ବୁଝିପାରୁ ନାହିଁ..........ମୋର ଦୁର୍ଭାଗ୍ୟ ମୋ ନାମରେ ଏ କଳଙ୍କ ।

ପ୍ରଶାନ୍ତ—ଏ ଖବର କ'ଣ ମିଛ ? (ଆଶ୍ଚର୍ଯ୍ୟ ହୋଇ) ସେ ଜୀବିତା ? ବଡ଼ ଆଶ୍ଚର୍ଯ୍ୟ କଥା ୩ଟା ଟେଲିଗ୍ରାମ ତ ଆସିଲା—ସବୁ କ'ଣ ଜାଲ ? ପହିଲି ଟେଲିଗ୍ରାମ ତ ମୁଁ ନିଜେ ପଢ଼ିଛି ବସନ୍ତବାବୁ ଦେଇଥିଲେ—

ହାଡ଼ୁ—ମଝିରେ ତ ଆସିଲା ଭଲ ଅଛନ୍ତି—ପୁଣି ଶେଷରେ ଯା ......

ମନ—ବିନାମେଘରେ ବଜ୍ରପାତ ହେଲା । ପ୍ରଶାନ୍ତବାବୁ, ତାର ସବୁଦିନେ ହଠାତ୍ ଗୋଟିଏ ନିଶ୍ଚିନ୍ତ.......... (କୋହ କାନ୍ଦ ହୋଇ) ସବୁ ସାରିଦେଲା ।

ହାଡ଼ୁ—ଆଜ୍ଞା, ମୁଁ ଯେତେ ଗୋଡ଼ ହାତ ଧଇଲି ସେ ମୋ କଥା କିଛି ଶୁଣିଲେ ନାହିଁ । ପାଗଳ ପରିତ ହେଲେ (ପ୍ରଶାନ୍ତ ବାବୁଙ୍କୁ ଚାହିଁ) ମୁଁ ଆପଣଙ୍କୁ ଖବର ଦେବାକୁ ବାହାରିଲା ବେଳେ ସେ ମୋତେ ଟାଣି ଓଟାରି ବନ୍ଦ କଲେ । କହିଲେ ତାକୁ ଡାକନା—ସେ ମୋତେ ଶାନ୍ତ କରିପାରିବ ନାହିଁ କି କ୍ଷାନ୍ତ କରିପାରିବ ନାହିଁ ।

ମନ—କେତେ ଲୋକଙ୍କୁ ସେ କନ୍ଦାଇ ଦେଇଗଲା ? ଟିକିଏ ଭାବିଲା ନାହିଁ ଆଗପଛ । ଏ ଗଡ଼ରେ ପଦାର୍ପଣ ବା-କ୍ଷଣି ଶହ ଶହ ଲୋକ ହାୟ ହାୟ କରିବେ । ତା ବାପାଙ୍କ କଥା ତ ସରିଗଲା । ବସନ୍ତବାବୁଙ୍କୁ ବା କ'ଣ କହିବି ? ପ୍ରତିମା ତ ଜୀବନ ହାରି ଦେବ ? କି ସାନ୍ତ୍ୱନା ଦେବି ତାକୁ ?

ପ୍ରଶାନ୍ତ—ଏତେ କାଣ୍ଡ କଲା କିଏ ?

ମନ—ନାନା ପ୍ରକାର ସନ୍ଦେହ ଜାତ ହେଉଛି—ଆପଣ କିଛି ମୋଚନ କରିପାରିବେ ନାହିଁ । ଶୁଣିଥିଲି ସେଠିକା ସମ୍ବନ୍ଧ ତୁଟାଇବା ପାଇଁ ଏଠି ଏତେ ପ୍ରକାର ଚେଷ୍ଟା ଚାଲିଛି । ଏଇଠି କ'ଣ ଯା କଲା ? ଖୁବ୍ ଚତୁର ଲୋକର କାମ ଏ ।

ପ୍ରଶାନ୍ତ—ମୁଁ ତ ସେପରି କିଛି ଜାଣେ ନାହିଁ । ହାଡ଼ୁ ! ସେ କଣ ଟଙ୍କା କଉଡ଼ି ନେଇ କିଛି ସାଙ୍ଗରେ ଯାଇଛନ୍ତି ?

ହାଡ଼ୁ—ନା ଆଜ୍ଞା, ଏକ ପଇସା ନେଇ ନାହାନ୍ତି । ଚାବି ହିସାବ ଖାତା ପଇସା ସବୁତ ମୋ ପାଖରେ ।

ମନ—ହାଡ଼ୁ ! ତମେ ଟିକିଏ ମତେ ସାହାଯ୍ୟ କରିପାରିବ ? ମୋ ସାଙ୍ଗରେ ଟିକିଏ କଟକ ପର୍ଯ୍ୟନ୍ତ ଯାଆନ୍ତ ?

ହାଡ଼ୁ—ଆଜ୍ଞା କେବଳ ମୁଁ ଆପଣଙ୍କୁ ଅନାଇ ବସିଥିଲି । ଆପଣ ଆସିଲେ ମୁଁ କେମିତି ଏ ଦାୟିତ୍ୱରୁ ମୁକ୍ତ ହେବି—ତାଙ୍କରି କୃପାରୁ ସେକ୍ରେଟେରିଏଟ୍‌ରେ ଚପରାସୀ କାମ ମିଳିଛି । କାଲି ଜଏନ୍ କରିବାର କଥା—ନଗଲେ ସେ ଖଣ୍ଡକ ପାଇ ପାରିବି ନାହିଁ । ମୁଁ ଗରୀବ ଲୋକ ।

ମନ—ଆଚ୍ଛା ହାଡ଼ୁ ! ତମର ବିଶ୍ୱାସ କ'ଣ ?

ହାଡ଼ୁ—ଆପଣଙ୍କର ବୁଦ୍ଧି ଭ୍ରମି ଯାଉଛି—ମତେ ପଚାରୁଛନ୍ତି ? ତେବେ ମୁଁ ଯେତେଦୂର ଅନୁମାନ କରୁଛି ସେ ଷ୍ଟେସନ ଆଡ଼େ ଯାଇ ନାହାନ୍ତି ।

ମନ—(ଗୋଟାଏ ଚିଠି ଦେଖାଇ) ଦେଖିଲେ.... ......କ'ଣ ବୁଝିବ ଏଥିରୁ ? ବନ୍ଧୁତାର ପରିଣତି କ'ଣ ଏଇଆ ? ଦଶ ବର୍ଷରେ ଆଜି ଶେଷ ?

ପ୍ରଶାନ୍ତ—(ଚିଠି ପଢ଼ିସାରି) କିଛିତ ଜଣାପଡ଼ୁନାହିଁ—ତେବେ ଏତା ନିଶ୍ଚୟ ଯେ ସୁଇସାଇଡ୍ କରିନାହିଁ । ଏ ଯେଉଁ ଧାଡ଼ିକ ଲେଖାଅଛି । "ତୋ ସାଙ୍ଗେ କେବେ ଭେଟ ହେବ ତାହା ଈଶ୍ୱର ଜାଣନ୍ତି ।"

ମନ—ଚିଠି ପାଇ ମୋ ମୁଣ୍ଡଟା ଘୁରିଗଲା । ଲେଖିଛି "ଯାହା ଭାଗ୍ୟରେ ଥିଲା ଘଟିଲା" ଭାବିଲି କ'ଣ ହେଲା ? ଶେଷରେ ଲେଖିଛି ମୋତେ ଭୁଲି ଯିବୁ । ମୋଭଳି ଅନ୍ୟମାନଙ୍କୁ ସାନ୍ତ୍ୱନା ଦେବୁ । ଏ ଦି ଧାଡ଼ି ମୋ କଲିଜାକୁ କରଡ଼ି ଦେଉଛି ।

ପ୍ରଶାନ୍ତ—ଆଉ ବ୍ୟସ୍ତ ହେଲେ କ'ଣ ହେବ ? ଆପଣ ବର୍ତ୍ତମାନ ଗାଧୁଆ ପାଧୁଆ କରି ବିଶ୍ରାମ ନିଅନ୍ତୁ । ମୋର ବିଶ୍ୱାସ ସେ ଆତ୍ମହତ୍ୟା କରି ନାହିଁ ।

ମନ—ଏ ସାନ୍ତ୍ୱନା ନେଇ ନଗଲେ ମୋର ଆଉ ଗର କ'ଣ ଅଛି ? ମୁଁ ଯାଉଛି ଏ ଦିନ ଗାଡ଼ିରେ ଚାଲିଯିବି । ମୋର ଆଉ ବିଶ୍ରାମ କାହିଁ ? ଆପଣ ଯଦି କିଛି ସନ୍ଧାନ ପାଆନ୍ତି............

ପ୍ରଶାନ୍ତ—ସନ୍ଧାନ ଆଉ ଆମର ବାକି ଅଛି ? ଏ ସହରର ପ୍ରତ୍ୟେକ ଜାଗା ଖୋଜା ସରିଲଣି ।

ମନ—ତଥାପି ଶେଷ ଆଶା ଆପଣଙ୍କୁ କହିଯାଉଛି । ମୁଁ କାହାରିକୁ କହି ଆସି ନାହିଁ । ଛୁଟି ଆଉ ଦୁଇ ଦିନ ଅଛି । ପରେ ଆସିପାରେ—ନମସ୍କାର ।

(ହାତରେ ବ୍ୟାଗ ଓ ବାଡ଼ି ଧରି ଚାଲିଗଲା—ପ୍ରଶାନ୍ତ ପ୍ରତିନମସ୍କାର କରି ତା'ର ଅନୁଗମନ କଲା ଓ ହାଡ଼ିବନ୍ଧୁ ନିଶ୍ଚଳ ହୋଇ ଚାହିଁ ରହିଲା ତାଙ୍କୁ ।)

## —ତୃତୀୟ ଦୃଶ୍ୟ—

( କଟକ—ବସନ୍ତ ବାବୁଙ୍କ ବୈଠକଖାନା— ସମୟ ରାତ୍ରିର ପ୍ରଥମ ପ୍ରହର—ଗୋଟାଏ ଚେୟାରରେ ବସି ବସନ୍ତ ବାବୁ କ'ଣ ଚିନ୍ତା କରୁଥିଲେ—ସମସ୍ତ ଗୃହଟା ନୀରବତାରେ ପୁରି ରହିଥିଲା—ଗାୟତ୍ରୀ ଓ ମନୋରଞ୍ଜନ ପ୍ରବେଶ କଲେ । ହାତରେ ଗୋଟିଏ ବ୍ୟାଗ ଓ ବାଡ଼ି )

ମନ—(ନମସ୍କାର କଲେ ଓ ବସନ୍ତ ବାବୁ ପ୍ରତି ନମସ୍କାର ଅଭିନୟ କଲେ) ଆପଣ ବି ତ କାହିଁକି ବିମର୍ଷ ଦେଖା ଯାଉଛନ୍ତି ? ( ଦୁହେ ବସିଲେ )

ବସନ୍ତ—ମୁଁ ଭାବିଥିଲି ତୁମେ ଶୁଣିଥିବ ବୋଲି ? ତମେ କ'ଣ ଏଠି ନଥିଲ ?

ମନ—ନା ମୁଁ ଏଠି ନଥିଲି—ବର୍ତ୍ତମାନ ଆସୁଛି ।

ବସନ୍ତ—ଆମ ଅମଲା ମହଲରେ ଚହଳ ପଡ଼ିଯାଇଛି—କାଗଜମାନଙ୍କରେ ବାହାରି ଯାଇଛି—ଯୋଡ଼ାଏ ଜରୁରୀ ଫାଇଲ୍ ନ ମିଳିବାରୁ ସାହେବ ସସ୍‌ପେଣ୍ଡ କରିଛନ୍ତି ।

ମନ—(ଗମ୍ଭୀର ହୋଇ କିଛିକ୍ଷଣ ତଳକୁ ଅନାଇ ବସିଲେ) ବିପଦ ପଡ଼ିଗଲା ବେଳେ କ'ଣ ଘୁରିଆଡ଼ୁ ଘୋଟି ଆସେ । (ମୁଁ ଆପଣଙ୍କୁ କ'ଣ କହିବି) ମୋର ଜୀବ ଠିକଣା ନାହିଁ । ଜଳତା ନିଆଁରେ କାଳ ପକାଇବାକୁ ଆସିଛି ।

ଗାୟତ୍ରୀ—କ'ଣ ମନ ବାବୁ ?

ବସନ୍ତ—ଆପଣ କେଉଁଠୁ ଆସିଲେ ?

ମନ—ପାଟନାରୁ ଆସିଲି ଭଉଜ ବୋଉ (କାନ୍ଦ କାନ୍ଦ ହୋଇ ରୁମାଲରେ ମୁଁହ ପୋଛିବା)

ବସନ୍ତ—ଛ'ଣ କଥା କ'ଣ ? (ଦୁହେଁ ଧରିପକାଇ) ମନ ବାବୁ, ଘଟଣା କ'ଣ ?

ଗାୟତ୍ରୀ—ସରୋଜ ବାବୁ କେମିତି ଅଛନ୍ତି ?

ମନ—ସେ ଆଉ ସେଠି ନାହିଁ । କୁଆଡ଼େ ଚାଲିଯାଇଛି । ମୋତେ ଏଇ ଶେଷ ଚିଠି ଦେଇ......(ଚିଠିଟା ଭଉଜ ବୋଉଙ୍କୁ ଦେଲେ—ଗାୟତ୍ରୀ ପଢ଼ିସାରିବା ପରେ ବସନ୍ତ ବାବୁ ପଢ଼ି ଟେବୁଲ ଉପରେ ରଖିଦେଲେ । ଗୃହଟା ନୀରବତାରେ ପୁଣି ପୂରି ରହିଲ )

ବସନ୍ତ—ଚାଲିଯାଇଛି ? କ'ଣ ହେଲ ପରୀକ୍ଷାରେ କ'ଣ ଫେଲ୍ ହେଲେ ?

ଗାୟତ୍ରୀ—କୁଆଡ଼କୁ ଗଲେ ତୁମର ତାଙ୍କର ଦେଖା ହେଲ ନାହିଁ ?

ମନ—(ଆଖି ପୋଛୁ ପୋଛୁ) ମୁଁ ଗଲବେଳକୁ ସେ ଆଉ ନାହିଁ । କାଲି ଟେଲିଗ୍ରାମ ପାଇ ପାଟନା ଛାଡ଼ିଛି । (ବସନ୍ତ ବାବୁ ନୀରବରେ ମୁଣ୍ଡରେ ହାତଦେଇ ବସିଲେ)

ଗାୟତ୍ରୀ—କାଲି ଟେଲିଗ୍ରାମ୍ ?

ମନ—(ଟେଲିଗ୍ରାମ ଦେଖାଇ) ଏଇ ଦେଖନ୍ତୁ—ବସନ୍ତ ବାବୁଙ୍କ ନାମରେ ଆଉ ଦୁଇଟି ଟେଲିଗ୍ରାମ ଯାଇଥିଲ ଯା ଆଗରୁ । ଆଠଦିନ ଭିତରେ ଟେଲିଗ୍ରାମ ଯାଇଛି ।

ଗାୟତ୍ରୀ—(ପଢ଼ିସାରି ବସନ୍ତବାବୁଙ୍କୁ ଦେବା) ଆଉ ଦିଟା କ'ଣ ହେଲ ?

ମନ—ଶୁଣିଲି ପ୍ରଥମରେ ଥିଲ ପ୍ରତିମାକୁ ଭରି ଜ୍ୱର । ବସନ୍ତର ଆଶଙ୍କା ଦ୍ୱିତୀୟରେ ସେ ଭଲ ଅଛି । ତୃତୀୟରେ ତ ଏଇ ।

ବସନ୍ତ—(ଦୀର୍ଘ ନିଃଶ୍ୱାସ ପକାଇ) ସବୁ ମୋ ଗ୍ରହର ଦୋଷ ।

ଗାୟତ୍ରୀ—ସେ ଗ୍ରହ କିଏ ଆମ ପଛରେ ଲଗିଛି ? ଏତେ ଗୁଡ଼ାଏ କାଳ କଲ । ତାର କମ ସାହାସ ନୁହେଁ । ସରୋଜ ବାବୁଙ୍କର କିଛି ସନ୍ଧାନ ପାଇ ନାହିଁ ?

ମନ—କିଛି ପାଇଲି ନାହିଁ । ତାର ବନ୍ଧୁ ପ୍ରଶାନ୍ତ ପ୍ରଭୃତିଙ୍କୁ କହି ଆସିଛି । ସବୁ କାଗଜରେ ନୋଟିସ୍ ଦେଇଛି । ମୁଁ କ'ଣ କରିବି କିଛି ସ୍ଥିର କରିପାରୁ ନାହିଁ । ପୁଣି ଶୁଣୁଛି ସେ ଆପଣଙ୍କର ବି......

ଗାୟତ୍ରୀ—ମନବାବୁ, ତୁମେ ଯାହା କର ପ୍ରତିମା ଜାନକୁ ଯେପରି କିଛି ନଯାଏ । ସରୋଜ ବାବୁଙ୍କର ସନ୍ଧାନ ପାଇବାପରେ ତାକୁ ଜଣାଇବା ।

ବସନ୍ତ—ତାଙ୍କ ଘରକୁ ଆଉ ଯାଇ ନାହିଁ ?

ଗାୟତ୍ରୀ—ଦେଓ୍ୱାନ ବାବୁଙ୍କ ଘରକୁ ବର୍ତ୍ତମାନ ଏ ଖବର ଦିଅନା ।

ମନ—କିନ୍ତୁ କାଗଜରେ ତ ନୋଟିସ୍ ଦେଇ ପାକଇଲି—ସେହି କଥା ଭବୁଛି ଭୁଲ କଲି କି ଠିକ୍ କଲି । ପ୍ରତିମାତ ସମାଚାର ପଢ଼ିବଣି......

ଗାୟତ୍ରୀ—ତୁମେ କଣ ସମ୍ଭବ କରୁଛ ? ସେ କୁଆଡ଼େ ଯାଇଥିବେ ?

ମନ—ମୁଁ ସମ୍ଭବ ଅସମ୍ଭବ କିଛି ଠିକ୍ କରିପାରୁନାହିଁ । ତା ପରି ବନ୍ଧୁ.....(ଚେଷ୍ଟା ଚେତନାରେ ଛଳ ଛଳ ହୋଇ ଆସିଲା । ରୁମାଲଟାକୁ ଆଖିରେ ଦେଇ ମୁଣ୍ଡ ତଳକୁ ପୋତି ଦେଲା )

● ● ●

# ଶେଷ ଅଙ୍କ

### ୫ ବର୍ଷ ପରେ

## ପ୍ରଥମ ଦୃଶ୍ୟ

(ଗୋଦାବରୀ ନଦୀ କୂଳରେ ରାମକୃଷ୍ଣ ସେବା ସଦନ-ସ୍ୱାମୀ ଅପୂର୍ଣ୍ଣାନନ୍ଦ ଆଶ୍ରମ-ସନ୍ନୁଖସ୍ଥ ଆସନ ଉପରେ ଉପବିଷ୍ଟ । ପରିଧାନ ଗୈରିକ ବସନ, ମୁଣ୍ଡରେ ପଗଡ଼ି, ଗୈରିକ ଆଲଖାଲ୍ଲ-ସନ୍ନ୍ୟାସୀ ପୁସ୍ତକ ପାଠରେ ରତ ଓ ସିଗାରେଟ ଟାଣୁଥିଲେ । ଦୁଇଜଣ ଲୋକ ଗୋଟିଏ ପଙ୍ଗୁକୁ ଆଣି ପ୍ରବେଶ କଲେ । ପଙ୍ଗୁ ସନ୍ନ୍ୟାସୀଙ୍କର ସାମନାରେ ହାତଯୋଡ଼ି ବସି ରହିଲା-ଲୋକ ଦୁଇଜଣ ପ୍ରଣିପାତ କରି ପ୍ରସ୍ଥାନ କଲେ । ପଙ୍ଗୁ ସର୍ବଦା ଦୀର୍ଘ ସ୍ୱରରେ କହୁଥିଲା-)

ପଙ୍ଗୁ—ଜୀତା ରହୋ, ବ୍ରହ୍ମଚାରୀ ବାବା......ବହୁ ଦୂରରୁ ଆପଣଙ୍କ ଦର୍ଶନ ଆଶାରେ ଆସିଛି ।

ସନ୍ନ୍ୟାସୀ—(ଉଠିଯାଇ) ପ୍ରଣାମ । ଆପଣଙ୍କର ପରିଚୟ ପାଇ ପାରେ କି ?

ପଙ୍ଗୁ—ମୋର ପରିଚୟ ? ମୁଁ ବର୍ତ୍ତମାନ ମନୁଷ୍ୟ-ଥିଲି ପଶୁ ।

ସନ୍ନ୍ୟାସୀ—ଆପଣଙ୍କର ବାସସ୍ଥାନ ?

ପଙ୍ଗୁ—ଜନ୍ମ ସ୍ଥାନ କାଠଯୋଡ଼ି କୂଳରେ-କର୍ମସ୍ଥାନ ମହାନଦୀ କୂଳରେ । ବର୍ତ୍ତମାନ ମୁଁ ଏଇ ଗୋଦାବରୀ କୂଳରେ । ବାସସ୍ଥାନ-ମୋର ସାରା ହିନ୍ଦୁସ୍ଥାନ ।

ସନ୍ନ୍ୟାସୀ—ଆପଣ କରୁଥିଲେ କ'ଣ ?

ପଙ୍ଗୁ—କଣ ନ କରିଛି-ସବୁ କରିଛି । ବଣିକର ମାନଦଣ୍ଡ ବଳରେ ଗୋ ହତ୍ୟା, ନର ହତ୍ୟା, ବ୍ରହ୍ମ ହତ୍ୟା ଶିଶୁ ହତ୍ୟା-ଯେତେ ପ୍ରକାରର ହତ୍ୟା ଥାଇପାରେ ସବୁଥିରେ ଲିପ୍ତ ହୋଇଛି ।

ସନ୍ନ୍ୟାସୀ—ଆପଣଙ୍କର ନାମ ଜାଣିପାରେ କି ?

ପଙ୍ଗୁ—ମୋର ନାମଟା ଲୁଚି ଯାଇଛି-ଜାଣିଶୁଣି, ନ ଜାଣି ନୁହେଁ । ମୋର ନାଁ ଶୁଣିଲେ ଲୋକଙ୍କର ହୃଦୟରେ କମ୍ପନ ଜାତ ହୁଏ । ଗର୍ଭିଣୀର ଗର୍ଭପାତ ହୁଏ, ଶିଶୁ ମାଆ କୋଳରେ କାନ୍ଦି ଉଠେ । କୁମାରୀମାନଙ୍କର କାଖରୁ ପାଣି ମାଠିଆ ଖସିପଡ଼େ । ଯୁବତୀମାନେ ସତୀତ୍ୱ ରକ୍ଷା କରିବାକୁ ଘରେ କବାଟ କିଳି ପଶିଯାଆନ୍ତି । ନାଁଟା ତ ମୋର ଭୀଷଣ କଳଙ୍କିତ ହୋଇଯାଇଛି ।

ସନ୍ନ୍ୟାସୀ—ଆପଣଙ୍କର ବଂଶଧର ଆଉ କିଏ ଅଛନ୍ତି ?

ପଙ୍ଗୁ—ମୋ ଭଳି ଲୋକଙ୍କର ବଂଶ ? ମୋର ସହଧର୍ମିଣୀ ବହୁତ ଦିନୁ ମୋତେ ଛାଡ଼ି ଚାଲିଯାଇଛି । ତାଙ୍କର ରୂପ ଯୌବନକୁ, ସତ୍ ପରାମର୍ଶକୁ, ଧର୍ମ ଭାବକୁ ମୁଁ ଅର୍ଥ ନିଶାରେ ପଦଦଳିତ କରିଥିଲି । ଭାବିଥିଲି ସାତକୋଶିଆ ଗଣ୍ଡପରି ମୋର ଯୌବନ ସବୁଦିନେ ଭରା ରହିଥିବ । ଯୌବନକୁ ଜୀବନରେ ସୁନା ରୂପାର ଧନୁଶର ଧରି ଶତଶତ ମନମଗୁଣୀ ଶିକାର କରୁଥିବି । ସେ ଆଶା, ସେ ଭ୍ରମ ଏବେ ତୁଟି ଯାଇଛି । ଜରା ଶବରର ଜାଲରେ ପଡ଼ି ଦେଖିଲି ସବୁ କୁହେଳିକା ।

ସନ୍ୟାସୀ—ମୁଁ ଆପଣଙ୍କର କି ସେବା କରି ପାରିବି ?

ପଙ୍ଗୁ—ରୋଗମୁକ୍ତ କରନ୍ତୁ ମୋତେ ।

(ସନ୍ୟାସୀ ପଙ୍ଗୁର କନାପଟି ଖୋଲି ସବୁ ଦେଖିଲେ-ଘାଋ ପୋକ ଗୁଡ଼ାକ ସବୁ ଖସି ପଡ଼ୁଥିଲା)

ପଙ୍ଗୁ—(ଉଚ୍ଚ ସ୍ୱରେ) ଆହା ଆପଣ କି ଭୁଲ କଲେ (କୀଟକୁ ନିଜ ହାତରେ ଆଣି ଛାଡ଼ିବା) ସେମାନେ କେଡ଼େ ସୁଖରେ ଅଛନ୍ତି—ଦେଖୁଛନ୍ତି ନା (ବିଦ୍ୟୁତ୍ କାମିନୀର କାମିନୀ ଗଣ୍ଡସ୍ଥଳ ମଧୁପାନରେ ଯେ ଆନନ୍ଦ ଏମାନେ ତଦପେକ୍ଷା ବେଶି ଆନନ୍ଦ ଉପଭୋଗ କରୁଛନ୍ତି । ମୋର ଏ ଦୂଷିତ ପୂଜ ରକ୍ତରୁ ଏ ଦେହଟାକୁ ମରାମତି କରିବାକୁ ଆସିନାହିଁ ବାବା-ଏଟା ଠିକ୍ ଅଛି । ଏତ ବର୍ତ୍ତମାନ ମୋତେ ସ୍ୱର୍ଗ ସୁଖ ପ୍ରଦାନ କରୁଛି । ଯାହା ଲାଗି ମୁଁ ବୁଝି ପାରୁଛି-ଏ ଜଗତଟା କ'ଣ ?

ସନ୍ୟାସୀ—(ଥକ୍କା ମାରି ବସିଗଲେ) ଆପଣ ଆଉ କ'ଣ ଚାହାନ୍ତି ?

ପଙ୍ଗୁ—ଗୋଟାଏ ମାନସିକ ରୋଗ ଅଛି—ସେଟା ମାୟା, ବ୍ରହ୍ମଚାରୀ ବାବା । ଆପଣ ଯେମିତି ସିଗାରେଟ୍‌ରୁ ମାୟା ଛାଡ଼ି ପାରୁନାହାନ୍ତି, ମୁଁ ସେପରି ମୋର ମାଧବୀ ସ୍ତ୍ରୀର ସ୍ମୃତି ଛାଡ଼ି ପାରି ନାହିଁ ।

ସନ୍ୟାସୀ—ମୁଁ ତ ବ୍ରହ୍ମଚାରୀ ନୁହେଁ-ମୋତେ ଆପଣ ବ୍ରହ୍ମଚାରୀ କହିବା ବୃଥା ।

ପଙ୍ଗୁ—ତେବେ ଆପଣଙ୍କର କ'ଣ ଗୃହସ୍ଥାଶ୍ରମ ଅଛି ? ବିବାହିତ ଗୃହର ସଂଯତ ଜୀବନ ବ୍ରହ୍ମଚାରୀର ଜୀବନରେ କୌଣସି ପାର୍ଥକ୍ୟ ନାହିଁ ବାବା.. ...

ସନ୍ୟାସୀ—ମୁଁ ସନ୍ୟାସୀଙ୍କ ପ୍ରସାଦରୁ କେତେକ ଚେର ମୂଳିର ବ୍ୟବହାର ଜାଣେ ମାତ୍ର ।

ପଙ୍ଗୁ—ଆପଣ ଏକ ସୀମାରେ--ମୁଁ ଅନ୍ୟ ସୀମାରେ । ଆପଣ ତ୍ୟାଗୀ ଆଉ ଯୋଗୀ । ମୁଁ ଭୋଗୀ ଆଉ ରୋଗୀ । ଆପଣ ବିଶ୍ୱକୁ ଯେଉଁ ଚକ୍ଷୁରେ ଦେଖୁଛନ୍ତି—ମୁଁ ସେହି ଚକ୍ଷୁରେ ଦେଖୁଛି ।

ସନ୍ୟାସୀ—ଆପଣଙ୍କଠାରୁ ଆଜି ମୁଁ ବହୁମୂଲ୍ୟ ଶିକ୍ଷା ପାଇଲି । ଆପଣ ମୋର ଗୁରୁ ।

ପଙ୍ଗୁ—କିଏ ଗୁରୁ ବାବା । ଜଗତ ବ୍ରହ୍ମମୟ । ଆପଣଙ୍କ ସୁନାମ ମୁଁ ବହୁ ଦୂରରୁ ଶୁଣି ଆସିଛି । ଏଇ ଗୋଦାବରୀ କୂଳରେ ପ୍ରାୟ ଏଠାରୁ ଚାଳିଶ ମାଇଲ ଦୂରରେ ମୋର କିଟା କୋଠା ଅଛି । କେତେ ଗୁଡ଼ିଏ ଡିଫେନ୍‌ସବଣ୍ଡ କିଣିଛି । ରିଜର୍ଭ ବ୍ୟାଙ୍କରେ ଅନେକ ଗୁଡ଼ାଏ ସେୟାର ଅଛି । କୋଠା ପାଖରେ ପ୍ରାୟ ୧୦୦ ଏକର ପର୍ଯ୍ୟନ୍ତ ଆବାଦି ଜମି ଅଛି । ସେତକ ମୁଁ ଆପଣଙ୍କ ହସ୍ତରେ ଅର୍ପଣ କରିବି ।

ସନ୍ୟାସୀ—(ହାତ ଯୋଡ଼ି) ଆଜ୍ଞା, ଏସବୁ ଦାୟିତ୍ୱ ଗ୍ରହଣ କରିବାକୁ ମୁଁ ଅକ୍ଷମ । ମୋର ଜୀବ ସେବା ହିଁ ପରମ ଧର୍ମ ।

ପଙ୍ଗୁ—(ହସି ହସି) ଜୀବ ସେବା ନୁହେଁ ବାବା ଶିବ ସେବା—ବ୍ରହ୍ମ ସେବା ! ମୁଁ ତ ସେହି ସେବା ଉଦ୍ଦେଶ୍ୟରେ ଦାନ କରୁଛି । ହିନ୍ଦୁ ସ୍ଥାନର ଗ୍ରାମିଆଡୁ ଯେତେ ଦୀନ, ପୀଡ଼ିତା, ଅସହାୟା ରମଣୀ ଆସିବେ—ସେମାନଙ୍କ ସେବାରେ ଏ ସବୁ ବ୍ୟୟିତ ହେବ ।

ସନ୍ୟାସୀ—ଅପେକ୍ଷା କରନ୍ତୁ—ଗୁରୁଜୀଙ୍କ ଆସିବା ଯାଏ

(ସେନ୍ୟାସୀ ଉପବେଶନ କରିଥିଲେ ଓ ପଙ୍ଗୁ ରାମକୃଷ୍ଣ ନାମ ଜପ କରୁଥିଲେ)

## —ଦ୍ୱିତୀୟ ଦୃଶ୍ୟ—

(ବସନ୍ତବାବୁଙ୍କ କକ୍ଷ—ସମୟ ଅପରାହ୍ନ । ପ୍ରବେଶ କଲେ ଗାୟତ୍ରୀ—ପଛେ ପଛେ ମନୋରଞ୍ଜନ)

ଗାୟତ୍ରୀ—(କହୁ କହୁ) ଆପଣ କେତେ ବେଳୁ ଅପେକ୍ଷା କଲେଣି ?

ମନ—ଆପଣଙ୍କର ଡେରି ହୋଇ ନାହିଁ—ଆପଣ ବୋଧ ହୁଏ ରନ୍ଧୁଥିଲେ ?

ଗାୟତ୍ରୀ—ହଁ ରୋଷେଇ ପୂଜାରୀ ତ ବିଦା କରିଦେଲୁ—ଏଣିକି ସବୁ ହାତେ ହାତେ ।

ମନ—(ବସି) ବସନ୍ତ ଭାଇ କୁଆଡ଼େ ଯାଇଛନ୍ତି ?

ଗାୟତ୍ରୀ— ଟିଉସନକୁ ଯାଇଛନ୍ତି—ଆସୁଥିବେ ଏ କ୍ଷଣି (ବସିଲେ)

ଗାୟତ୍ରୀ –ଦେହ ତ ଦିନକୁ ଦିନ ବେଶୀ ହେଉଛି । କରିବ କ'ଣ ? ଦେଖୁଛି ଆସ୍ତେ ଆସ୍ତେ ମୁଣ୍ଡ ବି ଖରାପ ହେବାର ଲକ୍ଷଣ ଦେଖାଗଲଣି । ଅଛି ଅଛି ଏ କେତେ ଦିନ ହେଲା—କହି ଉଠୁଛି କଲେଜ ତ ଖୋଲିଲା ମୋ ଛବି କାହିଁ ?

ମନ—(ଦୀର୍ଘ ନିଃଶ୍ୱାସ ପକାଇ) ଭାଉଜ ବୋଉ, ମୁଁ ଏଠାରେ ଦେଖୁଛି ଆପଣ ବଡ଼ ଧୈର୍ଯ୍ୟ ଧରିଥିବାର । କାଲି ବସନ୍ତ ଭାଇ..........ଆପଣଙ୍କ କଥା କହୁ କହୁ ଆଖି ଛଳ ଛଳ କରି ପକାଇଲେ । ଦମ୍ଭ ନଧରି ଆଉ ଉପାୟ କ'ଣ ? ଅଧୈର୍ଯ୍ୟ ହେଲେ କି ଲାଭ ? ସେ ବଡ଼ ହତାଶ ହୋଇ ଗଲେଣି ।

ଗାୟତ୍ରୀ—ଆପଣ ତ ମୋର ଭାଇପରି । ଆପଣଙ୍କୁ ଘର କଥା ଲୁଚାଇବି କ'ଣ ? କାଲି ଖାଇବା ବାଢ଼ି ଦେଉ ଦେଉ ତାଙ୍କ ମନରେ କି ଭାବ ଆସିଲା କେଜାଣି, ଥାଳି ପାଖରେ ବସି ଭେ ଭେ ହୋଇ କାନ୍ଦି ଉଠିଲେ ।

ମନ—ଆପଣ କୁଟା ଖଣ୍ଡକ ଦିଖଣ୍ଡ କରିନଥିଲେ—ଫୁଲର ଭର ସହି ନ ଥିଲେ । ପଥର ଭର ସହିଲେ । ଏ ସବୁ କଥା ଦେଖି ଭାଇଙ୍କ ମନରେ ଦୁଃଖ ହେବା ସ୍ୱାଭାବିକ ।

ଗାୟତ୍ରୀ—ଟିକକ ଠାରୁ ନିଶକ ଯାଏଁ ସବୁ କାମ ମୋତେ ଦେଖିବାକୁ ପଡ଼ୁଛି । ଘରର ଖଟେଇ କାମ କରିବାରେ ମୋର ଆନନ୍ଦ ଅଛି । ମାତ୍ର ତାଗି ଦେହଟି ଭଲ ହୋଇଯାଆନ୍ତା କି ?

ମନ—ଏ କ'ଣ ହାତକଟା ସୂତା ? (ଗାୟତ୍ରୀ ପିନ୍ଧା ଲୁଗାକୁ ଦେଖାଇ)

ଗାୟତ୍ରୀ—ଆଜିକାଲି ବରାବର କାଟେ ।

ମନ—ବାସ୍ତବିକ ବିପଦ କଷଟିରେ ମନୁଷ୍ୟତା ପରଖ ହୁଏ ।

ଗାୟତ୍ରୀ—ଯେତେ ଯୁଆଡ଼େ ଆମେ ଖଟିଲେ ଅଭାବ ପୂର୍ଣ୍ଣ ନାହିଁ । କାଲି ଘରବାଲା ଆସି ପହଞ୍ଚିଲ—କ୍ୟାସ ବାକ୍ସ ବିକ୍ରି କରି ତା ପାଉଣା ତୁଟାଇ ଦେଲି । କ୍ୟାସ ତ ନାହିଁ । ବାକ୍ସଟା କ'ଣ ହେବ ଆଉ ?

ମନ—ଗାଁ ଜମି ଯେ ନିଲମ ଉଠିଥିଲା—କ'ଣ ହେଲା ?

ଗାୟତ୍ରୀ—ସେ ଅଡୁଆ ଏ ପର୍ଯ୍ୟନ୍ତ ତୁଟିନାହିଁ । ସୁଧ ଦୌଡ଼କୁ ଘୋଡ଼ା ଦୌଡ଼ ପାଏ ନାହିଁ । ବାପାଙ୍କ ଚିକିତ୍ସା ଯାହା କରଜ ହୋଇଥିଲା—ସେ ବଢ଼ି ଏ ପର୍ଯ୍ୟନ୍ତ ଆସିଲାଣି ।

ମନ—ଡାକ୍ତର କ'ଣ ନେଉଛନ୍ତି ନା ?

ଗାୟତ୍ରୀ—ତାଙ୍କର ବି କିଛି ବାକି ହୋଇଗଲାଣି । ଆପଣଙ୍କ ନିକଟରେ ଆଉ ମୁଁ ଋଣୀ ହୋଇପାରିବି ନାହିଁ । ଯାହା ସାହାଯ୍ୟ କଲେଣି ମୋର ସହୋଦର ବି ଏମିତି କରିବ ନାହିଁ ।

ମନ—ଆପଣ ଯଦି ଏଇଟାକୁ ଋଣ ବୋଲି ମନେ କରନ୍ତି, ତାହାହେଲେ ମୁଁ ଆଉ ଏ ଦୁଆର ମାଡ଼ିବି ନାହିଁ । ସଫେଇ ମୋ ଛାତିରେ ଛୁରି ମାରିଦେଇ ଗଲ । ଆପଣ ଯଦି ଦୁଆର ପକାଇବେ ପକାନ୍ତୁ । ମୁଁ ଦିନେ ହେଲେ ପରବୋଲି—ଭାବି ନାହିଁ ।

ଗାୟତ୍ରୀ—ଆପଣଙ୍କର ତ ପୁଣି ଘର ଦୁଆର ଅଛି ?

ମନ—ଈଶ୍ୱରଙ୍କ କୃପାରୁ ସେମାନେ ଏକ ପ୍ରକାର ଚଳୁଛନ୍ତି । ମୋ ଉପରେ ନିର୍ଭର କରୁନାହାଁନ୍ତି । (ବସନ୍ତ ବାବୁ ପ୍ରବେଶ କଲେ )

ବସନ୍ତ—(ଦୁହେଁ ଉଠି ଠିଆ ହୋଇଯାଉଥିଲା ବେଳେ) ବସ ବସ ମନବାବୁ (ସମସ୍ତେ ବସିଲେ ) ପୁଲିନ ବାବୁଙ୍କ ଡାକ୍ତରଖାନା ଦେଇ ଆସୁ ଆସୁ ଡେରି ହୋଇଗଲା—ସେଠି ଭାରୀ ଭିଡ଼ । ଆଜି ସେ ଆଉ ଗୋଟାଏ କଥା କହିଲେଣି । କଣ କରିବା ସେଇ କଥା ଭାବି ଭାବି ଆସୁଛି ।

ଗାୟତ୍ରୀ—କ'ଣ କହିଲେ ( ଉଦ୍‌ବେଗ ପ୍ରକାଶ କରି ) ମନ—(ଶୁଣିବାକୁ ଉତ୍କର୍ଣ୍ଣିତ ହୋଇ )

ବସନ୍ତ—ସେ କହିଲେ, ରୋଗୀର ଅବସ୍ଥା ଦିନକୁ ଦିନ ଖରାପ ହେଉଛି । ରୋଗଟାକୁ ଭୟ କରିବାର କିଛି କାରଣ ନାହିଁ । ମନର ଅବସ୍ଥା ବଦଳି ନ ଗଲେ ଖାଲି ଔଷଧରେ କିଛି ଫଳ ହେବ ନାହିଁ ।

ମନ—ମନ ବଦଳିବ କେମିତି ? ଆମ୍ଭେମାନେ କ'ଣ ଜାଣି ପାରୁନୁ ମୂଳ କାରଣ ? ମାନସିକ ଯନ୍ତ୍ରଣା ହେତୁ ଏ ରୋଗ ।

ବସନ୍ତ—ସେ କହିଛନ୍ତି ଜଳବାୟୁ ପରିବର୍ତ୍ତନ କରିବାକୁ । କୌଣସି ସ୍ୱାସ୍ଥ୍ୟ ନିବାସକୁ ଶୀଘ୍ର ନେଇ ଯିବାକୁ ।

ଗାୟତ୍ରୀ—ହଁ, ତା ବି ହୋଇପାରେ—ପ୍ରାକୃତିକ ଦୃଶ୍ୟ ଦେଖିଲେ ତାର ମନର ଭାବ ବଦଳି ଯାଇପାରେ । ସେତ ନଈ, ପାହାଡ଼, ସମୁଦ୍ର ଦେଖିବାକୁ ଭଲପାଏ ।

ବସନ୍ତ—ଆମର ସେ ବଳ କାହିଁ ବର୍ତ୍ତମାନ ?

ମନ—(ଚିନ୍ତାକରି) ଆଉ କେଉଁଠିକି ଗଲେ ତ ଆପଣ ଯାଇ ପାରିବେ ନାହିଁ । ଗଲେ ତ ଟିଉସନଗୁଡ଼ିକ—ଛାଡ଼ିଯିବ ।

ଗାୟତ୍ରୀ—ହଁ, ସେ ଟିଉସନ ତ ଏ ଯାଏଁ ମହତ୍ ରଖିଛି..................

ବସନ୍ତ—ଗଲେ ଉଦଙ୍ଗ କଥା କ'ଣ ହେବ ? ପତିମା ତ ତାକୁ ଛାଡ଼ିବାକୁ ନାରଜ ।

ଗାୟତ୍ରୀ—ସେ ବିଗ୍ୱରୀ ଆମପାଇଁ ବହୁତ ସହିଲା । ଏମିତି କାହାର କେହିଁ ସେବା କରିବ ନାହିଁ । ଆମେ ସାତ ଜନ୍ମରେ ତା ଋଣ ଶୁଝି ପାରିବୁ ନାହିଁ । ଗୋଡ଼େ ଗୋଡ଼େ ତାକୁ ଜଗି କରି ରଖିଛି ।

ବସନ୍ତ—ତାର ଭଲ କଣ ମନେ କରୁଥିବେ ?

ମନ—ନା, ସୁରେଶ ସେ ଭଳି ଧରଣର ପିଲା ନୁହେଁ । ସରୋଜ ସଂସର୍ଶରେ ଯେ ଆସିଛି—ସେ ବଦଳି ଯାଇଛି । ଆପଣମାନେ ମନରେ କିଛି ଭାବନ୍ତୁ ନାହିଁ । ଡାକ୍ତରଙ୍କ ପରାମର୍ଶରେ କେଉଁଠିକି ଯିବା ସ୍ଥିର କରନ୍ତୁ । ଯାହା ଖର୍ଚ୍ଚ ହେବ ଦେଖାଯିବ ।

ବସନ୍ତ—(ଦୀର୍ଘ ନିଃଶ୍ୱାସ ପକାଇ) କେତେ ଦୂର ଆମପାଇଁ କାଙ୍ଗାଳ ହେଉଛତି ହୁଅନ୍ତୁ ।

ଗାୟତ୍ରୀ—ଆମ ସାଙ୍ଗରେ ଆପଣ ନ ଗଲେ ଚଳିବ କେମିତି ?

ମନ—ନିଶ୍ଚୟ । ମୁଁ ନଗଲେ ଆପଣମାନେ ଯିବେ କେମିତି ? ଦୁଇ ତିନିମାସ ଛୁଟି ନେଇ ମୁଁ ଯିବି । ଦେଖାଯାଉ ସ୍ଥାନ ପରିବର୍ତ୍ତନରେ ମନ ପରିବର୍ତ୍ତନ ହୋଇଯିବ । (ଉଠି) ଆପଣମାନେ ତ ନିରାଶ ହୋଇଛନ୍ତି । ମାତ୍ର ମୁଁ ଆଶା ରଖି ବସିଛି । ମୋର ବିଶ୍ୱାସ ସରୋଜକୁ ଭେଟିବି । ନମସ୍କାର.......

( ପ୍ରସ୍ଥାନ କଲେ ଗାୟତ୍ରୀ—ବସନ୍ତ ନୀରବରେ ବସିରହିଲେ ।)

—ପଟକ୍ଷେପ—

## ତୃତୀୟ ଦୃଶ୍ୟ

( ଗୋଦାବରୀ ନଦୀ ତୀରରେ ସନ୍ନ୍ୟାସୀ ଓ ଜ୍ୟୋତି । ସନ୍ନ୍ୟାସୀ ଆସନ ପାତି ଉପବିଷ୍ଟ—ତରୁଣ ସନ୍ନ୍ୟାସୀ ଜ୍ୟୋତି ସିତାର ଧରି ଗୀତ ବୋଲିବାରେ ବ୍ୟସ୍ତ ଥିଲେ )

—ଗୀତ—

ଅନ୍ତରଯାମୀ ଯେବେ ଅନ୍ତର ଜାଣ
ତେବେ ମନ୍ତର ପାଠ ପୂଜା ଶୋକ ଆଉ କାହିଁକି ?
ତବ ଅନ୍ତର ଜାଗା, ମୋ ଅନ୍ତର ଜଗାଇ
ମୋ ଯୌବନ ବନେ ଥରେ ଦେଖା ହେବ ନାହିଁ କି ? । ୦ ।

ଦେବତାଙ୍କ ପରି ମୋତେ ଜଣାନାହିଁ ଭକ୍ତି
ଦାନବଙ୍କ ପରି ମୋର ତିଳେ ନାହିଁ ଶକ୍ତି
ଚୁମରି ସୁମନ ତୋଳି, ପୀରତି ଚନ୍ଦନ ବୋଳି
ବସିଅଛି ତବ ଆଗମନ ପଥ ଋହିଁକି । ୧ ।

ସନ୍ନ୍ୟାସୀ—ଜ୍ୟୋତି, ଆଜି ମନଟା କାହିଁକି ଭଲ ଲାଗୁନାହିଁ । କିମିତି ଲଜ୍ଜୁଛି । କାରଣ କ'ଣ ବୁଝିପାରୁ ନାହିଁ ।

ଜ୍ୟୋତି—ପ୍ରତ୍ୟେକର କାରଣ ଅଛି ।

ସନ୍ୟାସୀ—କାରଣ କ'ଣ ? ମନରେ ପୂର୍ଣ୍ଣ ଆନନ୍ଦ ଆସିଲା ନାହିଁ କେଉଁଦିନ । ଗୁରୁଦେବ ସେଇଥିପାଇଁ ଅପୂର୍ଣ୍ଣାନନ୍ଦ ନାଆଁ ଦେଲେ କି ଆଉ—ଜୀବନଟା କ'ଣ ଏହିପରି ଅପୂର୍ଣ୍ଣ ରହିବ—ଆଉ ପୂର୍ଣ୍ଣ ହେବ ନାହିଁ ।

ଜ୍ୟୋତି—ଉପନିଷଦ୍‌ରେ କହିଛନ୍ତି (ଆକାଶକୁ ଅନାଇ) ଆକାଶରେ ଯଦି ଆନନ୍ଦ ନଥାନ୍ତା—ତେବେ ସୃଷ୍ଟି ହୁଅନ୍ତା ନାହିଁ । ଆନନ୍ଦ ହିଁ ମୁକ୍ତି—ଆନନ୍ଦ ହିଁ ସ୍ୱର୍ଗ ।

ସନ୍ୟାସୀ—ଜ୍ୟୋତି, ତୁମର ପୂର୍ବ ଆଶ୍ରମ ?

ଜ୍ୟୋତି—ମୋର ପୂର୍ବ ପଶ୍ଚିମ ସବୁ ଦକ୍ଷିଣେଶ୍ୱରରେ । ହେତୁ ପାଇଲା ଦିନୁ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ସାଥିରେ ଅଛି । ତାଙ୍କରି ଆଦେଶରେ ଏହିପରି ବୁଲୁଛି । ଆପଣଙ୍କର ?

ସନ୍ୟାସୀ—ମୋ କଥା ପଚାର ନାହିଁ ବନ୍ଧୁ । ଶରହତ କପୋତ ପରି ଉଡ଼ି ଉଡ଼ି ଏଠି ଆସି ପଡ଼ିଛି । ପାଦପ—କୋଟରର ସ୍ମୃତି ଏ ପର୍ଯ୍ୟନ୍ତ ଲିଭିନାହିଁ ।

ଜ୍ୟୋତି—ଆପଣ ଏତେ ବନୌଷଧି ଜାଣିଲେ କୁଆଡ଼ୁ ?

ସନ୍ୟାସୀ—କ'ଣ ଜାଣିଛି ଜ୍ୟୋତି, କିଛି ନୁହେଁ । ନିଉଟନଙ୍କ ଭାଷାରେ ମହୋଦଧି ତଟର ଉପଳଖଣ୍ଡ ମାତ୍ର—

ଜ୍ୟୋତି—ଏ ଅଞ୍ଚଳରେ ଆମ ମିଶନରେ ସୁଖ୍ୟାତି—ଆପଣଙ୍କ ଯୋଗୁ ଅଳ୍ପ ଦିନ ଭିତରେ ବହୁ ଲୋକଙ୍କର ସମାଗମ ହେଲଣି ।

ସନ୍ୟାସୀ—ଜ୍ୟୋତି, ଅର୍ଥର ନିଶାଠାରୁ ଖ୍ୟାତିର ନିଶା ଆହୁରି ବଡ଼ । ଗୋଟିକୁ ଛାଡ଼ି ଆଉ ଗୋଟିକୁ ସାଥି କଲେ ସର୍ବନାଶ । ତ୍ୟାଗ କଲେ ପାଦୁକା ପରି ସେମାନେ ପରିତ୍ୟାଗର ପଦଲେହନ କରନ୍ତି ।

ଜ୍ୟୋତି—ଗୋଟିଏ କଥା ମୁଁ ଆପଣଙ୍କୁ କହିବାକୁ ସଂକୋଚ ବୋଧ କରୁଛି । ଡାକ୍ତରବାବୁଙ୍କ ସ୍ତ୍ରୀଙ୍କ ମନ ବଡ଼ ଖରାପ । ସେ ଆପଣଙ୍କର ପାଦର ଧୂଳି ନେବାକୁ ଯେତେ ଜିଦ୍ ଧରିଲେ ଆପଣ ବିରକ୍ତ ହୋଇ ବାରଣ କଲେ କାହିଁକି ?

ସନ୍ୟାସୀ—ତୁମେ ସନ୍ୟାସୀ ସଂପ୍ରଦାୟ ଲୋକ ହୋଇ ତାଙ୍କୁ ସମର୍ଥନ କରୁଛ କିପରି ?

ଜ୍ୟୋତି—ନା, ମୁଁ ସମର୍ଥନ କରୁନାହିଁ । ତାଙ୍କ ମନଦୁଃଖ ଦେଖି ପଚାରିଲି ।

ସନ୍ୟାସୀ—କାହିଁକି ମୁଁ ତ ସଫା ତାଙ୍କୁ କହି ଦେଇଛି । ତୁମେ ଯାହାକୁ ହୃଦୟର ସହିତ ଭଲପାଅ—ତାଙ୍କୁ ପୂଜା କର । ସେଇ ତୁମର ଦେବତା ।

ଜ୍ୟୋତି—ମନୁଷ୍ୟ ସମାଜରୁ ଦୂରରେ ନ ରହିଲେ ଏ କଠୋର ନିୟମ ପାଳନ କରିବା କଷ୍ଟକର ।

ସନ୍ୟାସୀ—ତା ସତ ଜ୍ୟୋତି, ତୁମେ ସ୍ପର୍ଶର ମାଦକତା ଜାଣିନାହିଁ । ମୁହୂର୍ତ୍ତକର ପରଶ ମୋ ପ୍ରାଣକୁ ଅଜଗର ସାପ ଭଳି ଗିଳି ରହିଛି ।

(ଡାକ୍ତର ବାବୁ ପ୍ରବେଶ କଲେ—ପ୍ରଣାମ କରିବା)

ଡାକ୍ତର—ଆପଣଙ୍କ ନିକଟକୁ ଏ ଅସମୟରେ ଆସିବାର କାରଣ---ଗୋଟିଏ ହିଷ୍ଟିରିଆ ରୋଗୀ ବଡ଼ ସଙ୍କଟାପନ୍ନ ଅବସ୍ଥାରେ । ଆପଣ ଟିକିଏ ଯଦି................

ସନ୍ନ୍ୟାସୀ—(ଚିନ୍ତାମଗ୍ନ ଥିଲେ) (ଏତକ ଶୁଣିଲାକ୍ଷଣି ତାଙ୍କ ହୃଦୟରେ ଗୋଟାଏ ତୀବ୍ର ବେଦନା ଅନୁଭବ କଲେ ଓ ବିଚଳିତ ହୋଇପଡ଼ିଲେ ) କ'ଣ ସଙ୍କଟାପନ୍ନ ? ମାଙ୍କର ଭବିଷ୍ୟ ପୂର୍ଣ୍ଣ ହେଲ ଉତ୍ଥାନ—ଯାତ୍ରା )

—ପଟକ୍ଷେପ—

## ---ଶେଷ ଦୃଶ୍ୟ—

(ରାମକୃଷ୍ଣ ମିଶନ ପ୍ରତିଷ୍ଠିତ ଡାକ୍ତରଖାନା—ସମୟ ରାତ୍ରି ପ୍ରଥମ ପ୍ରହର—ପ୍ରତିମା ଇନ୍‌ଡୋର ଓ୍ୱାର୍ଡ଼ର ଗୋଟିଏ ଖଟିଆ ଉପରେ ମୂର୍ଚ୍ଛିତା ଅବସ୍ଥାରେ ପଡ଼ି ରହିଥିଲା । ଲବଙ୍ଗ ପାଦତଳେ ବସି ଆଉଁଷି ଦେଉଥିଲା ଓ ଗାୟତ୍ରୀ ମୁଣ୍ଡ ଉପରେ ପଙ୍ଖା କରୁଥିଲେ )

ଡାକ୍ତର—(ପ୍ରବେଶ କରି) ବାବୁ କାହାନ୍ତି ?

ଗାୟତ୍ରୀ—ସେ ତ ଏଇକ୍ଷଣି ବଜାରକୁ ଗଲେ (ବିକଳରେ) । ତାଙ୍କ ଯିବା ପରେ ପରେ ଆଜି ପୁଣି ଏପରି ହେଲା !

ଡାକ୍ତର—ମୁଁ ତ ବଜାର ବାଟେ ଆସିଲି---ତାଙ୍କୁ ତ ଦେଖିଲି ନାହିଁ ।

ଗାୟତ୍ରୀ—(ହୃଦୟ ଭୟରେ ଥରି ଉଠୁଥିଲା—ପ୍ରତି ମୁହୂର୍ତ୍ତରେ ସେ ଆଶଙ୍କା କରୁଥିଲେ ପ୍ରତିମାର ମୃତ୍ୟୁ—ଖଟ ଉପରୁ ଓହ୍ଲାଇ ଆସି ଡାକ୍ତରଙ୍କ ପାଖରେ ଅବରୁଦ୍ଧ କଣ୍ଠରେ କହିଲେ) ଡାକ୍ତର ବାବୁ, କୁହାର ହେଉଛି —ଟିକିଏ ନାଡ଼ି ଦେଖନ୍ତୁ । ସବୁଠାରୁ ଆଜି ବେଶୀ ବେଳ ପଡ଼ି ରହିଲାଣି ।

ଲବଙ୍ଗ—ଭଉଜ ବୋଉ, ଆଜି ଟିକିଏ ହେଲେ ସୋର ଶବ୍ଦ ନାହିଁ । ଏକା ଖଞ୍ଜରେ ପଡ଼ି ରହିଛି ।

ଡାକ୍ତର—( ହାତ ଦେଖୁ ଦେଖୁ ) ଭୟ କରିବାର କାରଣ ନାହିଁ । ହିଷ୍ଟିରିଆ ରୋଗର ଲକ୍ଷଣ ସେଇଆ । ମୁଁ ତ ସେଇ ପକାଶେ ସ୍ୱାମିଜୀଙ୍କୁ ଡାକିବାକୁ ଯାଇଥିଲି । ଆପଣମାନେ ଏତେ ଅଧିର ହେଲେ ରୋଗୀର ସେବା କରିବେ କିପରି ?

ଗାୟତ୍ରୀ—(ଅତି ଅଡ଼ୁଆରେ ପ୍ରତିମା ପାଖରେ ବସି) ତାଙ୍କର ଦୟା ହେଲା, ସେ ଆସୁଛନ୍ତି ? (ଭୟ ବିହ୍ୱଳତା ଭିତରେ ଯେପରି ଆଶା କ୍ଷୀଣ ରେଖା ଦେଖାଗଲା ତା ମୁହଁରୁ) ସେ ବସିବେ କେଉଁଠି ?

ଡାକ୍ତର—ତାଙ୍କପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ସେ ବେଶୀ ସମୟ ରହିବେ ନାହିଁ । ପୂଜାବେଳ ହୋଇଯିବ । ତାଙ୍କର ଦେହ ଭଲ ନ ଥିଲା । କେବଳ ମୋ ଅନୁରୋଧରୁ.....................

ଗାୟତ୍ରୀ—ଶୁଣିଛି ତାଙ୍କ ପାଦଧୂଳି ନେଇ କେତେ ରୋଗୀ ଭଲ ହୋଇଯାଇଛନ୍ତି ।

ଡାକ୍ତର—ଯେଉଁ କଥା କହୁଛନ୍ତି ସେଇଟା ବିଶ୍ୱାସ ନେଇ ହୁଏ । ଆମେ ତାକୁ ପେଥ୍ ଜିଓଲ କହୁଁ । ଅସଲ କଥା ସେ ଜଣେ ବ୍ରହ୍ମଚାରୀ । ସାଧୁ ସନ୍ନ୍ୟାସୀମାନଙ୍କର ସଂସ୍ପର୍ଶରେ ଆସି ବର୍ନୌଷଧି ଜାଣି

ପାରନ୍ତି । ତାର ବ୍ୟବହାର ଭଲ ଜାଣନ୍ତି । ଆଉ ଗୋଟାଏ କଥା ମୋର କହିବାର ଅଛି । ଆତୁର ହୋଇ ଯେପରି କେହି ତାହାକୁ ଛୁଆଁ ଛୁଇଁ ନ କରନ୍ତି । ସେ ସ୍ତ୍ରୀ ଲୋକ ସଂସ୍ପର୍ଶରେ ଅତି କିଂଚିତ୍ ଆସନ୍ତି । ସେ ସନ୍ନ୍ୟାସୀ—ଆମ ପରି ତ ଗୃହୀ ନୁହଁନ୍ତି ।

**ଗାୟତ୍ରୀ**—ସେ ତ ଏ ପର୍ଯ୍ୟନ୍ତ ଆସିଲେ ନାହିଁ ?

**ଡାକ୍ତର**—ଆଜ୍ଞା ଆପଣ ଆସ୍ତେ ଆସ୍ତେ ପଙ୍ଖା କରୁଥାଆନ୍ତୁ । ମୁଁ ଦେଖେ (ପ୍ରସ୍ଥାନ)

**ଗାୟତ୍ରୀ**—ମନ ଭରତ ଏ ପର୍ଯ୍ୟନ୍ତ ଆସିଲେ ନାହିଁ ଲବଙ୍ଗ ?

**ଲବଙ୍ଗ**—କ'ଣ ପାଖ ହୋଇଛି ବଜାରକୁ ଯାଇ ସଉଦା କରିବେ–ଗଉଡ଼ ଘରୁ ଖୀର ଆଣିବେ ।

(ସନ୍ନ୍ୟାସୀ ଓ ଡାକ୍ତର କିୟତକ୍ଷଣ ପରେ ପ୍ରବେଶ କଲେ–ଗାୟତ୍ରୀ ଓ ଲବଙ୍ଗ ତଳକୁ ଓହ୍ଲାଇ ଆସି ସାଷ୍ଟାଙ୍ଗ ପ୍ରଣିପାତ କଲେ)

**ସନ୍ନ୍ୟାସୀ**— ପ୍ରଣାମ ! ପ୍ରଣାମ !!

**ଗାୟତ୍ରୀ**—ସ୍ୱାମୀଜୀ, ଆମକୁ ଏ ବିପଦରୁ ରକ୍ଷା କରନ୍ତୁ । ସର୍ବସ୍ୱ ହରାଇ ବହୁତ ଦୂରରୁ ଆପଣଙ୍କ ଆଶାରେ ଏଠାକୁ ଆସିଛୁ ।

**ସନ୍ନ୍ୟାସୀ**—କରୁଣାମୟୀଙ୍କ ଇଚ୍ଛା ପୂର୍ଣ୍ଣ ହେଉ । (ଦୀର୍ଘ ନିଃଶ୍ୱାସ ପକାଇ ପକେଟରୁ ଗୋଟିଏ ବତୀ କାଢ଼ି) ଡାକ୍ତର ବାବୁ, ଏହାକୁ ରୋଗୀର ନାକ ପାଖେ ଜାଳି ଧରନ୍ତୁ । ଯେପରି ଧୂଆଁଟା ପ୍ରଶ୍ୱାସ ସାଙ୍ଗରେ ଭିତରକୁ ଯାଏ । ଟିକିଏ ଚେତା ଆସିଲେ ନାଆଁ ଧରି ଡାକନ୍ତୁ ।

(ଡାକ୍ତର ବତୀ ଜଳାଇଲେ-ରୋଗୀର ମୁହଁ ପାଖରେ କିଛି ସମୟ ଧରିବାରୁ ତାର ଚେତନା ଆସିଲା । ଲବଙ୍ଗ ପାଦତଳେ ବସି ଆଉଁସି ଦେଉଥିଲେ--ଭରତ ତାର ମୁହଁକୁ ଚାହିଁ ପଙ୍ଖା କରୁଥିଲେ । ସନ୍ନ୍ୟାସୀଙ୍କର ହୃଦୟ ଆବେଗରେ ପୂରି ଉଠୁଥିଲା--ରୋଗୀ ପାଖକୁ ଯାଇ ତାକୁ ଭଲ ଭାବେ ଦେଖିବେ ବୋଲି ଇଚ୍ଛା କରୁଥିଲେ--ମାତ୍ର କୌଣସି ଅଜ୍ଞାତ ଇଚ୍ଛା ଶକ୍ତି ସତେ ଯେମିତି ଲଗାମ ଧରି ସେଥିରୁ ନିବର୍ତ୍ତାଉ ଥିଲା ।)

**ଲବଙ୍ଗ**— ଭରତ ବୋଉ, ଦେଇତ ହଲଚଲ ହେଲେଣି--ହାତ ହଲଉଛନ୍ତି ।

(ସନ୍ନ୍ୟାସୀଙ୍କର ଉଦ୍‌ବେଗ ବଢ଼ି ଗଲା । ଦୂର ଆକାଶ ତଳେ ସତେ ଯେମିତି କେତେ ଦିନ ତଳର ମୁହଁଟିଏ ଦିଶିଲା ତାକୁ)

**ଡାକ୍ତର**—ନାଆଁ ଧରି ଡାକନ୍ତୁ ।

**ଗାୟତ୍ରୀ**—ପ୍ରତିମା ! (ଅତି ଧୀରେ ଡାକନ୍ତୁ) ପ୍ରତିମା !!

**ସନ୍ନ୍ୟାସୀ**—(ଚମକି ପଡ଼ି)–ଡାକ୍ତର ବାବୁ, ରୋଗୀର ନାମ କ'ଣ ପ୍ରତିମା ? ଓଃ ଟିକିଏ ଉଚ୍ଚ ସ୍ୱରରେ ଡାକନ୍ତୁ ।
(ବିଚଳିତ ହୋଇପଡ଼ୁଥିଲେ)

**ଗାୟତ୍ରୀ**—(ଉଚ୍ଚସ୍ୱରରେ) ପ୍ରତିମା ! ପ୍ରତିମା !! ପ୍ରତିମା !!! (ପ୍ରତିମା ଚକ୍ଷୁ ଖୋଲିଲା ଧୀରେ)

ପ୍ରତିମା—(ଧୀର କଣ୍ଠରେ ହାତ ବାରି, ପାଣି ମାଗିବାର ଅଭିନୟ କରି) ଶୋଷ
(ଗାୟତ୍ରୀ ଡାକ୍ତରଙ୍କୁ ଅନାଇଲେ)

ଡାକ୍ତର—ଦିଅନ୍ତୁ ପାଣି କିଛି କ୍ଷତି ନାହିଁ ।

(ଲବଙ୍ଗ ପାଣି ଦେଲା- ପ୍ରତିମା କଡ଼େଇ ହୋଇ ଶୋଇ ପାଣି ପିଇଲା--ଉଠି ବସିଲା--ଅପରିଚିତ ଲୋକ ଦେଖି ସଂକୁଚ ହୋଇଗଲା--ସନ୍ନ୍ୟାସୀଙ୍କର ଆଖି କାହିଁକି ଲୋତକରେ ଛଳ ଛଳ ହୋଇ ଆସୁଥିଲା । ସେ ମଧ୍ୟ ନିଜକୁ ସଂକୁଚ କରିବାକୁ ଚେଷ୍ଟା କରୁଥିଲେ)

ଡାକ୍ତର—(ଗାୟତ୍ରୀଙ୍କୁ) ଆଉ କିଛି ଭୟ ନାହିଁ । ପଙ୍ଖା କରନ୍ତୁ । ତାଙ୍କୁ ପଚାରିଲେ ଦେହ କିପରି ଲାଗୁଛି ?

ଗାୟତ୍ରୀ—(ପଙ୍ଖା କରୁ କରୁ) ପ୍ରତିମା, କିମିତି ଲାଗୁଛି ଦେହ ?

ପ୍ରତିମା—(ନିଦରୁ ଉଠିଲା ପରି) ଭଉଜ ବୋଉ, ଭାରୀ ଭଲ ଲାଗୁଛି । ଆମେ କେଉଁଠି ?
(ସନ୍ନ୍ୟାସୀଙ୍କର ଚେତା ଆସିଲା—କୌଣସି ଅତୀତ ସ୍ମୃତି ଲବୁ ଲବୁ ଅବାକ୍ ହୋଇ ଠିଆ ହୋଇ ରହିଲେ ଛବି ପରି—ଏ କଣ୍ଠସ୍ୱର ତାଙ୍କୁ ବହୁ ଦିନର ପରିଚିତ ଭଳି ବୋଧ ହେଲା)

ପ୍ରତିମା—ଏ କ'ଣ ଆମ ମେସ ? ଲବଙ୍ଗ ତୋ ଢ଼ିଭଟିକୁ ଯାଇନାହୁଁ ଯେ—(ସନ୍ନ୍ୟାସୀ ପୁଣିଥରେ ଚମକି ଉଠି ସଂକୁଚ ହେଲେ) ମେଡ଼ିକାଲ୍ କଲେଜ ତ ଖୋଲିଲା । ମୋର ଛବି କାହିଁ ?

ସନ୍ନ୍ୟାସୀ—(ତାଙ୍କର ଚକ୍ଷୁ ଖୋଲିଗଲା-ସେ ଦେଖିଲେ ପାଖରେ ପ୍ରତିମା ପ୍ରତିମା ପାଖକୁ ଚାଲି ଆସି ଗଦ୍ ଗଦ୍ କଣ୍ଠରେ କହି ଉଠିଲେ) ପ୍ରତିମା ! କହି ମୋର —ଏଇ ପରା ତମର ଛବି ।

—ପଟକ୍ଷେପ—

# ପତ୍ରାବଳୀ ଓ ହସ୍ତଲିପି

## ସୀମାନ୍ତ ଗାନ୍ଧୀଙ୍କ ଉଦ୍ଦେଶ୍ୟରେ

ହେ ସୀମାନ୍ତର ଯୁଗ ଜ୍ୟୋତି,

ମୋର ଭକ୍ତିପୂର୍ଣ୍ଣ ପ୍ରଣତି ଗ୍ରହଣ କରିବେ । ରହୁଁ ରହୁ ଛତିଶ ବରଷ ପୂରିଗଲା । ଆପଣଙ୍କର ମୋର ପ୍ରଥମ ସାକ୍ଷାତ ବିହାର ପ୍ରଦେଶର ହଜାରିବାଗ ଜେଲରେ । ଆପଣ ଓ ଆପଣଙ୍କର ମାନନୀୟ ଭାଇ ଖାଁ ସାହେବ ଗୋଟିଏ ସ୍ୱତନ୍ତ୍ର ନିବାସରେ ଥାଆନ୍ତି । ମୁଁ ଥାଏ ଆଠ ନମ୍ବର ୱାର୍ଡ଼ରେ । ପାଖ ୱାଡ଼ରେ ଥାଆନ୍ତି ଆମ ଓଡ଼ିଶାର ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର । ଆମ ୱାର୍ଡ଼ ସମ୍ମୁଖରେ ଖଣ୍ଡିଏ ଖୋଲା ପଡ଼ିଆ । ସେହି ପଡ଼ିଆରେ ବୁଲିବାକୁ ଆପଣମାନେ ନିତି ଆସନ୍ତି ।

✓ପଣ୍ଡିତ ଲକ୍ଷ୍ମୀନାରାୟଣ ଓ ମୁଁ ଆପଣମାନଙ୍କ ସହ ଟିକେ କଥାବାର୍ତ୍ତା କରିବାର ସୁଯୋଗ ପାଉ । ସେହି ଜେଲରେ ✓ ରାଜେନ୍ଦ୍ର ପ୍ରସାଦ, ✓ ମଥୁରା ବାବୁ, ✓ ସୟଦ ଅବଦୁଲ୍ଲ ବାରି, ✓ ଗୋପବନ୍ଧୁ ଚୌଧୁରୀ, ✓ ପଣ୍ଡିତ ନୀଳକଣ୍ଠ, ✓ ଯଦୁମଣି ମଙ୍ଗରାଜ, ✓ ପଣ୍ଡିତ ଲିଙ୍ଗରାଜ ମିଶ୍ର, ଡକ୍ଟର ହରେକୃଷ୍ଣ ମହତାବ, ଜି ବି କ୍ରିୟାବି ■ ନିତ୍ୟାନନ୍ଦ କାନୁନ୍‌ଗୋ, ■ ନନ୍ଦକିଶୋର ଦାସ ପ୍ରମୁଖ ଥାଆନ୍ତି । ସେମାନଙ୍କ ସହ ଆପଣମାନଙ୍କର ସାମୟିକ ଦେଖା ହୁଏ । ମାତ୍ର ସୌଭାଗ୍ୟର ବିଷୟ ଆପଣମାନଙ୍କ ସହ ପ୍ରତିଦିନ ଆମର ଭେଟ ହୁଏ । ଆପଣ ବେଶୀ କଥା କୁହନ୍ତି ନାହିଁ । ଯେତିକି କଥା କୁହନ୍ତି ସେତିକି ପ୍ରାଣଭରା । ଆପଣଙ୍କର ବଡ଼ଭାଇ ଡକ୍ଟର ଖାଁ ସାହେବ ଆପଣଙ୍କ ପ୍ରଦେଶରେ କିପରି ଲାଲକୁର୍ତ୍ତା ଦଳ ସଂଗଠନ କରାହୋଇଛି । ବ୍ରିଟିଶ ସରକାର କିପରି ଅତ୍ୟାଚାର କରୁଅଛନ୍ତି, ଆପଣଙ୍କର ବାସଭବନ କିପରି ଧୂଳିସାତ୍ କରାହୋଇଛି, ଲାଲ୍‌କୁର୍ତ୍ତା ସୈନ୍ୟମାନଙ୍କ ଉପରେ କିପରି ଅକଥନୀୟ ଅତ୍ୟାଚାର କରାହୋଇଛି ସେ ସବୁ ବର୍ଣ୍ଣନା କରନ୍ତି ।

ଦୁର୍ଭାଗ୍ୟର କଥା ମୋର ଅନ୍ତରଙ୍ଗ ବନ୍ଧୁ ସତ୍ୟାଗ୍ରହୀ ଯୋଦ୍ଧା, ସୁବକ୍ତା ତଥା ଆପଣଙ୍କର ସୁପ୍ରିୟ ସହବନ୍ଦୀ ପଣ୍ଡିତ ଲକ୍ଷ୍ମୀନାରାୟଣ ଆଉ ଏ ଇହଜଗତରେ ନାହାନ୍ତି । ଆମ ପ୍ରଦେଶର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ସମୟରେ ତାଙ୍କୁ ଅଜ୍ଞାତ ଦୁର୍ବୃତ୍ତଦଳ ଟ୍ରେନ୍ ଡବାରେ ହତ୍ୟା କରିଥିଲେ ।

ସେହି ହଜାରିବାଗ ଜେଲରେ ଅସାବଧାନତା ବଶତଃ ମୋ ବାଆଁହାତଟି ପୋଡ଼ିଗଲା । ମୁଁ ଅକର୍ମଣ୍ୟ ହୋଇ ମାସାଧିକ କାଳ ଶଯ୍ୟାଶାୟୀ ହୋଇ ରହିଲି । ଆପଣଙ୍କର ବଡ଼ଭାଇ ନିୟମିତ ଭାବେ ଆସି ଯେପରି ମୋତେ ସେବା କରିଛନ୍ତି ତା ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ ।

ସେ ଆମ ଓଡ଼ିଶା ଅଞ୍ଚଳ ବିଷୟ ବଡ଼ ଆଗ୍ରହୀ ହୋଇ ଶୁଣନ୍ତି । ସେ ଥରେ ଥରେ କହିପକାନ୍ତି ମହତାବଙ୍କୁ ଦେଖିଲେ ମୋର ବଡ଼ପୁଅ କଥା ମନେ ପଡ଼ିଯାଏ । ଥରେ ତାଙ୍କ ବଡ଼ପୁଅ ଜେଲ କର୍ତ୍ତୃପକ୍ଷଙ୍କ ଅତ୍ୟାଚାର ସହି ପାରିଲେ ନାହିଁ । ଅନଶନ କରି ଓଜନ ଏକଶହ ତିରିଶ ପାଉଣ୍ଡକୁ କମି ଆସିଲା । ପଞ୍ଜାବ ଗଭର୍ଣ୍ଣରଙ୍କ ନିକଟରୁ ଅନୁରୋଧ ପତ୍ର ଆସିଲା, "ପୁଅକୁ ପ୍ରବର୍ତ୍ତାଇ ଚିଠି ଲେଖନ୍ତୁ, ସେ ଅନଶନ ଭାଙ୍ଗନ୍ତୁ । ଜେଲ୍ ଭିତରେ ଯାହା ଅସୁବିଧା

ହେଉଛି ତାହା ମୁଁ ଦୂର କରିବି" । ତାର ଉତ୍ତରରେ ଡକ୍ଟର ସାହେବ ଲେଖିଲେ ସରକାର ତାପ୍ରତି ଯେତେ ମନ୍ଦ ବ୍ୟବହାର କରିବାର କରନ୍ତୁ । (Let the Govt do the Worst) ମୁଁ ତାକୁ ଅନଶନ ଗର୍ଭକୁ ପ୍ରବର୍ତ୍ତାଇ ପାରିବି ନାହିଁ ।

ମହାଭାଗ, ଆଉ ଦିନକର କଥା ମୁଁ ଭୁଲିପାରୁନାହିଁ । ଆପଣ ଯେଉଁ ବାଟ ଦେଇ ବୁଲିବାକୁ ଆସନ୍ତି, ସେହି ବାଟରେ ଗୋଟିଏ ୱାର୍ଡ଼ ପଡ଼େ । ସେଥିରେ ସାନ ସାନ ପିଲା ବନ୍ଦୀ ହୋଇ ରହିଥାଆନ୍ତି । ତାକୁ ଲୋକେ ୱାର୍ଡ଼ ବୋଲି କହନ୍ତି । ଆପଣ ପ୍ରାୟ ପ୍ରତିଦିନ ସେ ପିଲାମାନଙ୍କ ସଙ୍ଗେ ଟିକିଏ କଥାବାର୍ତ୍ତା କରି ଆପଣଙ୍କ ନିବାସକୁ ଫେରନ୍ତି ।

ଥରେ ଗୋଟିଏ ବାରବର୍ଷର ପିଲା ନୂଆ ହୋଇ ଆସିଥାଏ । ଆପଣ ତାକୁ ପଚାରିଲେ "କେତେଦିନ ତୁମକୁ ସଜା ହୋଇଛି ।" ସେ ଉତ୍ତର ଦେଲା " ସାତ ଦିନ ।" ଆପଣ କହିଲେ ସତ କୁହ କଣ କରିଥିଲ ? ପିଲା କହିଲା, "ମୁଁ ଦୁଇଓଳି ଉପବାସ ଥିଲି । ମୋତେ ଭାରି ଭୋକ ହେଲା । ପଡ଼ିଶା ଘରେ ପଶି ଦହି ଟିକିଏ ଖାଇଦେଲି ।" ଆପଣ କହିଲେ "ହାକିମକୁ ସତକଥା କହିଦେଇନି ।" ସେ କହିଲା, 'ହଁ ମୁଁ ସତକଥା କହି ଦୋଷ ମାନିଛି ।' ଏ କଥାଟି ଶୁଣି ଆପଣଙ୍କ ମୁହଁ ଲାଲ ହୋଇଗଲା । ଆପଣଙ୍କ ଆଖିରୁ ଧାର ଧାର ଲୁହ ଗଡ଼ିପଡ଼ି ଚାଳିପକା କମିଜଟିକି ଭିଜାଇ ଦେଲା । ସେ ଦିନ କେବଳ ମୁଁ ଆପଣଙ୍କ ସାଥିରେ ଥାଏ । ଆପଣ ଗଦ୍ ଗଦ୍ କଣ୍ଠରେ କହି ପକାଇଲେ "ବୀର ବାବୁ, ଏ ସରକାର କା କବ୍ ବରବାଦ୍ ହୋଗା ?" ସେ ଦିନ ବେଶୀ ସମୟ ନ ବୁଲି ଆପଣ ନିଜ ନିବାସକୁ ଫେରିଗଲେ । ମୁଁ ମଧ୍ୟ ମୋର କୋଠରୀକୁ ଫେରି ଆସିଲି । ରାତିରେ ମୋତେ ଭଲ ନିଦ ହେଲା ନାହିଁ । ଆମ ଉତ୍କଳର ମହାପ୍ରାଣ ପଣ୍ଡିତ ଗୋପବନ୍ଧୁଙ୍କ କଥା ମୋର ମନେ ପଡ଼ିଲା । ଦିନେ ଏହିପରି ଜଣେ ଅନାହାର କ୍ଳିଷ୍ଟ, ବୁଭୁକ୍ଷୁ ବାଳିକାର ମୂର୍ତ୍ତି ମନେ ପକାଇ ସେ ରାତି ଅଧରେ ଭୋ ଭୋ ହୋଇ କାନ୍ଦି ପକାଇଥିଲେ । ମୋର ସୌଭାଗ୍ୟ ମନୁଷ୍ୟ ଜନ୍ମ ପାଇ ଏହି ଜନ୍ମରେ ଆପଣଙ୍କଭଳି ଦୁଇଜଣ ଦେବୋପମ ସେବକଙ୍କ ସଂସ୍ପର୍ଶରେ ଆସିଲି ।

ହେ ସତ୍ୟାଗ୍ରହୀ,

ମୋତେ ଲେଖିବାକୁ ଲାଜ ମାଡ଼ୁଛି । ଆଜି ନିଜ ଘରେ ଆପଣ ନିଜେ ଅତିଥି ହୋଇ ଆସୁଛନ୍ତି । ୧୯୩୩ ମସିହାରେ ଆପଣ ଯେଉଁ ଭାରତବର୍ଷରେ ବନ୍ଦୀ ହୋଇ ହଜାରିବାଗ୍ ଜେଲରେ ଥିଲେ, ସେ ଭାରତ ଆଜି ଆଉ ନାହିଁ । ଦୁଇଫାଳ ହୋଇଛି, ଫାଳେ ପାକିସ୍ଥାନ, ଫାଳେ ହିନ୍ଦୁସ୍ଥାନ । ଗୋଟିଏ ପାଖରେ ମନମୁଖୀ ଜଣତନ୍ତ୍ର ଆଉ ଗୋଟିଏ ପାଖରେ ଗଣତନ୍ତ୍ର । ଏଭଳି ଦୁଇଖଣ୍ଡ କାହିଁକି ହେଲା ? ସେ ବିଷୟ ସ୍ୱାଧୀନତା ଯୁଦ୍ଧର ପ୍ରଧାନ ସେନାପତି ମହାତ୍ମା ଗାନ୍ଧୀ ତଥା ଆପଣଙ୍କ ପରି କେତେଜଣ ଅହିଂସାବାଦୀ ସେନାଧ୍ୟକ୍ଷଙ୍କୁ ଉତ୍ତମ ରୂପେ ଜଣା । ତେବେ ମୋପରି ଜଣେ ସାଧାରଣ ସୈନିକ ମନରେ ଧାରଣା ଭାରତବାସୀଙ୍କ ବ୍ୟଗ୍ର ଓ ଦୁର୍ବଳ ମନର ସୁଯୋଗ ନେଇ ବ୍ରିଟିଶ ଶାସକମାନେ ତାଙ୍କର ଲକ୍ଷ୍ୟ ସିଦ୍ଧି କରିଯାଇଥାନ୍ତି ।

ଭାରତବର୍ଷ ଦୁଇଫାଳ ନ ହୋଇଥିଲେ ଆମ୍ଭେମାନେ ବିଶ୍ୱମାନବକୁ ହରାଇ ବସିନଥାନ୍ତେ । ଆପଣଙ୍କର ଜ୍ୟେଷ୍ଠ ଭ୍ରାତା ଡକ୍ଟର ଖାଁ ସାହେବ ଆପଣଙ୍କୁ ଛାଡ଼ି ଏତେ ଶୀଘ୍ର ଚାଲି ଯାଇ ନଥାନ୍ତେ । ପଣ୍ଡିତ ଜବାହରଲାଲ

ନେହେରୁଙ୍କର କର୍ଷିତ ପଞ୍ଚଶୀଳ ନୀତି ଅଫିସ ଫାଇଲ୍‌ରେ ପଡ଼ି ରହିନଥାନ୍ତା । ଶତ ଶତ ଭାରତୀୟ ଯବାନଙ୍କ ଉନ୍ନତ ମସ୍ତକ ଯୁଦ୍ଧ କ୍ଷେତ୍ରରେ ଭୂଲୁଣ୍ଠିତ ହୋଇ ନଥାନ୍ତା । ସର୍ବ ଶେଷରେ ଆପଣଙ୍କ ପରି ଅହିଂସାବାଦୀ ବୀର ପୁରୁଷ ଆଜି ପନ୍ଦର ବରଷ କାଳ ଲୌହ କାରାଗାରରେ ଜୀବନ କଟାଇ ନଥାନ୍ତେ ।

ମହାଭାଗ, ବିଦାୟୀ ସରକାର ଛାଡ଼ ପତ୍ରରେ ଦସ୍ତଖତ୍ ଦେଲାବେଳେ ଆପଣମାନଙ୍କ ପ୍ରାଣରେ କି ଆଘାତ ଲାଗିଥିବ ତା ଅନ୍ୟ କେହି କଳ୍ପନା କରିପାରିବେ ନାହିଁ । ମାତ୍ର ଦୁଃଖଦାୟକ ସମ୍ବାଦ ପହଞ୍ଚିଛି କ୍ଷୁଦ୍ଧ ଜାଲିଓ୍ଵାନାବାଗ ଯାହାର ଛାତି ଉପରେ ହିନ୍ଦୁ, ମୁସଲମାନ, ଶିଖ, ଜୈନ, ଖ୍ରୀଷ୍ଟିୟାନ ପ୍ରଭୃତିଙ୍କ ରକ୍ତ ଆଉଟି ଦାୟାର ସାହେବ ହୋରି ଖେଳିଥିଲେ ସେହି ଜାଲିଓ୍ଵାନାବାଗରେ କଳିକା ଥରି ଉଠିଛି । ଯେଉଁ ପଞ୍ଚନଦୀ କୂଳରେ ଦିନେ ପଣ୍ଡିତ ମୋତିଲାଲ୍ ନେହେରୁ ତାଙ୍କର ସୁପୁତ୍ର ନେହେରୁଙ୍କ ମଥାରେ କଂଗ୍ରେସ ସଭାପତି ମୁକୁଟ ପିନ୍ଧାଇ ଦେଇ ଦେଶବାସୀଙ୍କୁ ବଜ୍ର ଗମ୍ଭୀର ସ୍ୱରରେ ପ୍ରଶ୍ନ ପଚାରିଥିଲେ ଔପନାସିକ ସ୍ୱାଧୀନତା ଦେବା ନା ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବୁ, ସେହି ପଞ୍ଚନଦୀ ଏହି ଖବର ପାଇ ଆକୁଳ ପ୍ରାଣରେ ଅଥୟ ହୋଇପଡ଼ିଥିଲା । ଯେଉଁ ଗଙ୍ଗାନଦୀ ଦିନେ ଲର୍ଡ଼ କର୍ଜନଙ୍କର ଲେଖନୀ ଦ୍ୱାରା ଖଣ୍ଡ ବିଖଣ୍ଡ ହୋଇ ରକ୍ତାକ୍ତ କଷାୟିତ ନେତ୍ରରେ ଶ୍ୱେତାଙ୍ଗ ଶାସକ ମାନଙ୍କ ରକ୍ତ ତର୍ପଣ ଆରମ୍ଭ କରି ଦେଇଥିଲା । ସେହି ଗଙ୍ଗା ନଦୀ ଜଣଙ୍କ ମୁହଁକୁ ଚାହିଁକରି ନିରବରେ ସବୁ ସହ୍ୟ କରି ନେଇଥିଲା । ଯେଉଁ ଯମୁନା ଦୂରରୁ "ଦିଲ୍ଲୀ ଚଲୋ" ଶବ୍ଦ ଶୁଣି ଆବେଗ ନୟନରେ ଆକାଶ ମାର୍ଗକୁ ଚାହିଁ ରହିଥିଲା ସେହି ଯମୁନା ଛାତିକି ପଥର କରି ଆଖି ବୁଜି ଦେଇଥିଲା ଏବଂ ବହୁ ଦୁଃସ୍ୱପ୍ନ ନିଦ୍ରିତ ଅବସ୍ଥାରେ ଦେଖି ଭବିଷ୍ୟତ ଚିନ୍ତାରେ ଅଥୟ ହୋଇଉଠିଥିଲା ।

ମହାଭାଗ, ଆଜିପର୍ଯ୍ୟନ୍ତ ପୃଥିବୀକୁ ଯେତେ ଅବତାର ବା ଦେବଦୂତ ଆସିଛନ୍ତି ସେମାନଙ୍କ ମଧ୍ୟରେ ମହାତ୍ମା ଗାନ୍ଧୀ ଅତ୍ୟାଧୁନିକ ଓ ଯୁଗୋପଯୋଗୀ ମହାପୁରୁଷ, ସେ ଜଣେ ଦୂରଦ୍ରଷ୍ଟା । ସେ ଦେଖିଲେ ଗୋଲାକାର ପୃଥିବୀ କ୍ରମେ କ୍ରମେ ବିଜ୍ଞାନ ବଳରେ କାଣି ଆଙ୍ଗୁଠି ମୁଦି ପରି ସାନ ହୋଇଆସୁଛି । ବୈଜ୍ଞାନିକମାନେ ବିଜ୍ଞାନ ସମୁଦ୍ରକୁ ମନ୍ଥନ କରି ଅମୃତପମ ପଦାର୍ଥମାନ ଆବିଷ୍କାର କଲାପରେ ହଳାହଳ ବିଷ ଉତ୍ପାଦନ କରୁଛନ୍ତି ଯେଉଁ ବିଷ ଜୀବ ଜଗତକୁ ଏକାଦିନକେ ବିଧ୍ୱଂସ କରିଦେଇ ପାରିବ । ହିରୋସିମା ନାଗାସାକି ବିଧ୍ୱସ୍ତ ହେବା ପରେ ଜଗତ ଜନତା ଉପଲବ୍ଧି କରୁଛନ୍ତି, ପୃଥିବୀର ରକ୍ଷଣାବେକ୍ଷଣ ରାଷ୍ଟ୍ରଧରମାନଙ୍କ ହାତରେ ଯେତେ ପରିମାଣରେ ନାହିଁ, ସେତେ ପରିମାଣରେ ଅଛି ବୈଜ୍ଞାନିକମାନଙ୍କ ହାତରେ । ଲକ୍ଷ ଲକ୍ଷ ସ୍ଥଳ ବାହିନୀ ଓ ଜଳ ବାହିନୀ ସୈନ୍ୟମାନେ ମଧ୍ୟ ଅନୁଭବ କଲେ ସେମାନଙ୍କର ଶକ୍ତିର ଆଉ ଆବଶ୍ୟକତା ପଡ଼ିବ ନାହିଁ ।

ମହାତ୍ମାଜୀ ପୃଥିବୀର ଏ ଦୁର୍ଦ୍ଦଶା ଦେଖି ଅନୁଭବ କଲେ ଏ ଖଣ୍ଡ ପ୍ରଳୟରୁ ପୃଥ୍ୱୀକୁ ରକ୍ଷା କରିବା ଶକ୍ତି ଏକମାତ୍ର ଅଛି ସତ୍ୟ--ଅହିଂସାବାଦୀଙ୍କର । ସେ ଆହୁରି ମଧ୍ୟ ଅଙ୍ଗେ ଲିଭାଇଲେ ତାଙ୍କର ସମଯୋଦ୍ଧା ବଂଧୁମାନଙ୍କର ସ୍ୱାଧୀନତା ପରେ ସ୍ୱାଧୀନତା ପ୍ରତି ଆଉ ଦୃଢ଼ବିଶ୍ୱାସ ନାହିଁ । ସତ୍ୟ ଓ ଅହିଂସା ଅଙ୍ଗାଙ୍ଗୀଭାବେ ଜଡ଼ିତ, ଟଙ୍କାର ଏପାଖ ସେପାଖ ପରି ଏହା କୌଣସି ଭୌତିକ ପଦାର୍ଥ ତଥା ଗବେଷଣା ଲବ୍ଧ ଜିନିଷ ନୁହେଁ, କେହି ଏହାକୁ ଏ ହାତରୁ ସେ ହାତକୁ ଦେଇ ପାରିବ କିମ୍ବା ଚିତ୍ର ଅଙ୍କନ କରି ଲୋକ ଚକ୍ଷୁର ଦୃଷ୍ଟି ଆକର୍ଷଣ କରିପାରିବ । ସତ୍ୟାଗ୍ରହୀ କେବଳ ମନପ୍ରାଣରେ ଏହାର ଶକ୍ତିକୁ ଅନୁଭବ କରିପାରେ । ଏହି ଶକ୍ତି ବଳରେ ସେ ତ୍ରିଲୋକ

ବିଜୟୀ ହୋଇପାରେ । ସେ ମଳୟ ପବନ ପରି ହିମକାଠକୁ ମଧ୍ୟ ଚନ୍ଦନ କରିଦେଇ ପାରେ । ସେ ଆତ୍ମାର ମଧ୍ୟ ଦେଖିଲେ ଏ ମାନବ ଜଗତ ପ୍ରୀତି (Love)ରୁ ଉତ୍ପତ୍ତି । ଅହିଂସା ଏହାର ସଂଚିତି । ମହାଜୀବ ମନୁଷ୍ୟ ତ୍ରିକାଳଜ୍ଞ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ସବୁ ଜାଣି ପାରୁଛି । ତାର ପ୍ରୀତି ପ୍ରାଣ ନୁହେଁ । ମନୁଷ୍ୟ ହୃଦୟର ପ୍ରୀତି (Love) ଝରଣା ପରି ଗତିଶୀଳ ଅନନ୍ତ ସାଗର ଅଭିମୁଖୀ । ମାନବ ବୁଦ୍ଧି ଶୁଦ୍ଧି ବଳରେ ଏହି ପ୍ରୀତିକୁ (Love) ସାର୍ବଜନୀନ କରିପାରେ । କେବଳ ବୁଦ୍ଧି ଥିଲେ ଚଳିବ ନାହିଁ । ଶୁଦ୍ଧି ବା ନୈତିକ ବଳ ଏକାନ୍ତ ଆବଶ୍ୟକ । ହିଟଲରଙ୍କ ବୁଦ୍ଧିବଳ ଥିଲା । ରାବଣର ଦଶମୁଣ୍ଡର ଶକ୍ତି ଥିଲା । ମାତ୍ର ସେମାନଙ୍କର ହୃଦୟର ପ୍ରୀତି ପ୍ରାଣ ହୋଇ ବିପଥଗାମୀ ହେଲା । ସେମାନେ ବୁଦ୍ଧି ଶୁଦ୍ଧି କି ହରାଇ ହୃଦୟର ପ୍ରୀତିକି କ୍ରମବର୍ଦ୍ଧିତ କରି ସାର୍ବଜନୀନ କରିପାରିଲେ ନାହିଁ । ବିଶ୍ୱପ୍ରେମୀ ହିଁ ସତ୍ୟାଗ୍ରହୀ ହୋଇପାରେ । ସତ୍ୟାଗ୍ରହୀର ପ୍ରଧାନ ଲକ୍ଷଣ ବିଶ୍ୱ ପ୍ରେମ । ସେବକ ମନୋଭାବ ନ ଆସିଲେ ହୃଦୟର ନିର୍ମଳ ପ୍ରୀତି ଫୁଟି ଉଠେନା ତଥା ମନୁଷ୍ୟ ସତ୍ୟ ଅହିଂସା ପଥର ପଥିକ ହୋଇପାରେନା । ସେଥିଲାଗି ବାପୁଜୀ କଂଗ୍ରେସ ଅନୁଷ୍ଠାନକୁ ସେବା ଶିବିରରେ ପରିଣତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେ ଚାହିଁଥିଲେ କଂଗ୍ରେସର ପ୍ରତ୍ୟେକ କର୍ମୀ ସେବକ ମନୋଭାବ ନେଇ ପଲ୍ଲୀରୁ ଦିଲ୍ଲୀ ପର୍ଯ୍ୟନ୍ତ କର୍ତ୍ତବ୍ୟ କର୍ମରେ ଲାଗିପଡ଼ନ୍ତୁ । ବ୍ରିଟିଶ୍ ପରିତ୍ୟକ୍ତ ଶାସନକଳ ଭିତରେ କଂଗ୍ରେସ ପ୍ରବେଶ କଲେ ସେ ନାଗ ଚୁନୁଡ଼ାକୁ ଧରିଲା ପରି ଅବସ୍ଥାରେ ପଡ଼ିବେ । ଶାସନକଳର ମୋହ ଶାସକମାନଙ୍କୁ ଅଚେତା କରିଦେବ । ମହାତ୍ମାଙ୍କର ନିର୍ଦ୍ଦେଶ ନ ମାନିବାରୁ କଂଗ୍ରେସର ଅବସ୍ଥା କଣ ହୋଇଛି ତାହା ଆପଣ ସ୍ୱଚକ୍ଷୁରେ ଦେଖିପାରିବେ । କଂଗ୍ରେସ ଯଦି ଏକମାତ୍ର ଭୋଟ୍‌ବାକ୍‌ସକୁ ଲକ୍ଷ୍ୟ ନ ରଖି ଅତୀତ ବାଇଶି ବର୍ଷ ଲୋକ ସେବାରେ ମନପ୍ରାଣ ଢାଳି ଦେଇଥାନ୍ତା ତେବେ ଛୁଆଁ ଅଛୁଆଁର ସତ୍ତା ଆଉ ଦେଶରେ ନ ଥାଆନ୍ତା । ଭାଷା ବିବାଦ, ସାଂପ୍ରଦାୟିକ ଦଙ୍ଗା, ସୀମାଭେଦ, ଛାତ୍ର ପୋଲିସ ସଂଘର୍ଷ, ଲକ୍ଷପତିଙ୍କ ଦ୍ୱାରସ୍ଥ ହୋଇ ଅବାଞ୍ଛିତ ଚାନ୍ଦା ସଂଗ୍ରହର ବିଷୟ ଆଉ ଆଖି ଦେଖନ୍ତା ନାହିଁ । ସାଧାରଣ ଜନତାଙ୍କର ନୈତିକ ବଳ ଭାଙ୍ଗି ପଡ଼ନ୍ତା ନାହିଁ । ଶିକ୍ଷା ନୀତି ପରିବର୍ତ୍ତନ ହୋଇ ମଣିଷକୁ ମଣିଷ ପରି ଗଢ଼ିବାର ପଥ ସୁଗମ ହୋଇପାରନ୍ତା । ଆମ ଦେଶରେ ଗାନ୍ଧୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ଗାନ୍ଧୀବାଦ ଦର୍ଶନ ଗବେଷଣା କରିବା ସକାଶେ ପୃଥିବୀରେ ପ୍ରତ୍ୟେକ କୋଣରୁ ଛାତ୍ର-ଛାତ୍ରୀ ଆସି ପହଞ୍ଚୁଥାନ୍ତେ । ଧନୀ ଦରିଦ୍ର ଭେଦଭାବ ତୁଟିଯାଇ ସମାଜରେ ଶାନ୍ତି ବିରାଜମାନ କରୁଥାଆନ୍ତା । ବିନୋବାଜୀ ତାଙ୍କର ସର୍ବୋଦୟ ଆନ୍ଦୋଳନ କାର୍ଯ୍ୟ ସମାପ୍ତ କରି ପୃଥିବୀର ଅନ୍ୟାନ୍ୟ କର୍ମକ୍ଲାନ୍ତ ଦେଶମାନଙ୍କରେ ତାଙ୍କର ନୀତି ପ୍ରଚାର କରୁଥାଆନ୍ତେ । ସର୍ବଶେଷରେ ଏ ଦ୍ୱିଖଣ୍ଡ ଭାରତ ପ୍ରାକୃତିକ ଭାରତ ରୂପ ଧାରଣା କରିଥାନ୍ତା । କେହି କେହି କୁହନ୍ତି ମହାତ୍ମାଜୀ ଥିଲେ ଆଉ କିଛି ନୂଆ ବାଟ ଦେଖାଇ ଥାଆନ୍ତେ । ମୁଁ ବୁଝି ପାରୁନାହିଁ ଆଉ କଣ ବାକି ଅଛି । ପ୍ରତ୍ୟେକ ବିଷୟରେ ସେ ପରାମର୍ଶ ଦେଇ ଯାଇଛନ୍ତି । ଏହା ସ୍ୱୀକାର୍ଯ୍ୟ ମହାତ୍ମାଜୀଙ୍କ ଅପେକ୍ଷା ତାଙ୍କ ସତ୍ୟ ଅହିଂସା ନୀତି ବଡ଼ । ଅଣ୍ଡାରୁ ଛୁଆଟି ବାହାରିଲେ ଯେପରି ଖୋଳର କୌଣସି ଦରକାର ପଡ଼େ ନାହିଁ ଏଠି ସେହି ଅବସ୍ଥା ହେଲା, ଯେଉଁ ଈଶ୍ୱରଙ୍କ ଇଚ୍ଛା ବ୍ୟତୀତ ଘାସ ପତ୍ରଟିଏ ସୁଦ୍ଧା ହଲେ ନାହିଁ, ସେହି ଈଶ୍ୱର ତାଙ୍କୁ ଫେରାଇ ନେଲେ ।

ଜଗତ ଜନତାଙ୍କ ଉପରେ ଦାୟିତ୍ୱ ଆସନ୍ନ ଖଣ୍ଡ ପ୍ରଳୟରୁ ଏ ପୃଥିବୀକୁ ରକ୍ଷା କରିବା । ବିଶେଷତଃ ଭାରତବର୍ଷର ଗୁରୁଦାୟିତ୍ୱ ତାଙ୍କର ନୀତିକି ବିଶ୍ୱ ସମାଜରେ ପ୍ରଚାର କରିବା । ବର୍ତ୍ତମାନ ଗୋଟିଏ ମହାପରୀକ୍ଷାର ସମୟ । ଆଜି ଯେଉଁ ବିଷ ବୋମା ଉତ୍ପାଦନକାରୀ ଦେଶସବୁ ଅନ୍ୟ ଦେଶକୁ ଚପାଉ ପରସ୍ପର ମଧ୍ୟରେ

ପରିଦୃଢ଼ ତା କରୁଛନ୍ତି, କିଏ କାହାକୁ ନରହତ୍ୟା କରିବାରେ ଟପିଯିବ ତାହା ଦେଖି ସାଧାରଣ ଲୋକ ଭାବୁଛନ୍ତି ପୃଥିବୀରେ ପୁଣି ତୃତୀୟ ମହାଯୁଦ୍ଧ ଲାଗିଯିବ ଏବଂ ଖଣ୍ଡ ପ୍ରଳୟ ଉପସ୍ଥିତ ହେବ । କିନ୍ତୁ ସୃଷ୍ଟିକର୍ତ୍ତାଙ୍କ ଇଚ୍ଛା ନୁହେଁ ଯେ ଏତେ ସୁନ୍ଦର ପୃଥିବୀ ଯାହାକୁ କି ନିଜେ ସୃଷ୍ଟି କରିଛନ୍ତି ଏବଂ ଯାହାକୁ ରକ୍ଷା କରିବା ଲାଗି ମାନବ ସମାଜରେ ଅବତାର ଗ୍ରହଣ କରୁଛନ୍ତି, ସେ ତାକୁ ଧ୍ୱଂସ କରିଦେବେ ? ସେଥିଲାଗି ସେ ମହାତ୍ମାଗାନ୍ଧୀଙ୍କୁ ପଠାଇଥିଲେ । ସେ ତାଙ୍କର କାର୍ଯ୍ୟ ଶେଷ କରି ଚାଲିଗଲେ । ଆପଣ ଦେଖିଯିବେ ସତ୍ୟ, ଅହିଂସା କିପରି ଅନ୍ୟାନ୍ୟ ଦେଶମାନଙ୍କରେ ଧୀରେ ଧୀରେ ଗତି କରୁଥିଲେ ସୁଦ୍ଧା ତାର ଜନ୍ମସ୍ଥାନରେ ଅପମାନିତ ହେଉଛି ।

ମହାଭାଗ, ମୁଁ ଆଶାବାଦୀ, ଜଣେ ସ୍ୱାଧୀନତା ସଂଗ୍ରାମର ସୈନିକଭାବରେ ଅତୀତ ସ୍ମୃତିକି ମୋର ଜୀବନର ସଂଗାତି କରି ଦିନ କଟାଉଛି । ମୋର ଦୃଢ଼ ବିଶ୍ୱାସ ପୃଥିବୀକୁ ଏ ସଂକଟରୁ ତ୍ରାହି କରିବା ସକାଶେ କୌଣସି ଐଶ ଶକ୍ତି ସମ୍ପନ୍ନ ବ୍ୟକ୍ତି ଆବିର୍ଭାବ ହୋଇ ତାଙ୍କର ଅଗ୍ରଦୂତ ମହାତ୍ମାଙ୍କର ସତ୍ୟ-ଅହିଂସା ନୀତିକୁ ସମଗ୍ର ବିଶ୍ୱରେ ଖେଳାଇଦେବ । ଯେଉଁ ବିଷ ଉତ୍ପାଦନକାରୀ ବୈଜ୍ଞାନିକମାନେ ନିଜ ବଂଶକୁ ଧ୍ୱଂସ କରିବାରେ ଲାଗି ପଡ଼ିଛନ୍ତି, ସେହିମାନେ ହିଁ ଦିନେ ସତ୍ୟ-ଅହିଂସାର ସ୍ୱର୍ଗୀୟ ଶକ୍ତି ଅନୁଭବ କରି ତାଙ୍କର ମତିଗତି ବଦଳାଇ ଦେବେ ଏବଂ ପୃଥିବୀକି ଏକ ଶାନ୍ତିମୁଖୀ କରିବେ ।

ହେ ମହାମାନବ, ଗୃହସ୍ଥ ଯେପରି ବହୁ ଦିନ ପ୍ରବାସରୁ ଫେରିଲେ ତାର ପିଲାମାନେ ତାଙ୍କ ଘରକଥା ବର୍ଣ୍ଣନା କରି ଗଳ୍ପ ଆରମ୍ଭ କରନ୍ତି ସେହିପରି ଦୀର୍ଘକାଳର ନୀରବତା ପରେ ଆପଣଙ୍କ ନିକଟକୁ ମୋ ମନର କଥା ଚିଠି ଆକାରରେ ଲେଖି ପକାଇଲି । ହଜାରିବାଗ ଜେଲ୍‌ରେ ଥିଲାବେଳେ ଆପଣମାନଙ୍କ ସଂସ୍ପର୍ଶରେ ଆସି ଏବଂ ବାହାରେ କେତେଗୁଡ଼ିଏ କବିତା ଲେଖିଥିଲି । ସେଗୁଡ଼ିକ ମଧ୍ୟରୁ ଏକୋଶଇଟି ଇଂରାଜୀରେ ଅନୁବାଦ କରି "A Rosary,' ନାମକ ଏହି ପୁସ୍ତକଟି ଆପଣଙ୍କ କରକମଳରେ ଅର୍ପଣ କଲି ।

(ବୀରକିଶୋରଙ୍କର କେତେକ କବିତା ଯାହା ଇଂରାଜୀରେ ଅନୁବାଦ ହୋଇ A Rosary ନାମରେ ପ୍ରକାଶ ପାଇଥିଲା ତାର ଉତ୍ସର୍ଗ ପତ୍ରର ଓଡ଼ିଆ ଅନୁବାଦ ଏହା ସୀମାନ୍ତ ଗାନ୍ଧୀଙ୍କୁ ଉତ୍ସର୍ଗ କରଯାଇଥିଲା ।)

## ସ୍ୱରାଜ ଆଶ୍ରମ

କଟକ ସ୍ୱରାଜ ଆଶ୍ରମ ଗୋଟିଏ ଐତିହାସିକ ପ୍ରାସାଦ । କାଠଯୋଡ଼ି ନଦୀର ହନୁମାନ ଘାଟଠାରୁ ଏକ ଫର୍ଲଙ୍ଗ ମଧ୍ୟରେ ଟ୍ରେନିଂ ଇସ୍କୁଲ ସାମନାରେ ଖଣ୍ଡିଏ ଜମି ପଡ଼ିଆ ପଡ଼ିଥାଏ । ତାର କ୍ଷେତ୍ରଫଳ ପ୍ରାୟ ୧୩ ଗୁଣ୍ଠ ହେବ । ସେ ଜମି ଖଣ୍ଡକ କଟକର ସୁନାମଧନ୍ୟ ଜମିଦାର ପଣ୍ଡିତ ବିହାରୀଲାଲଙ୍କର । ସେ ସମୟରେ ଗଡ଼ଜାତର ପଲିଟିକାଲ ଏଜେଣ୍ଟଙ୍କ ଅଫିସ୍ ବର୍ତ୍ତମାନ କମିଶନର ଅଫିସିର ହତାରେ ଥାଏ । ସେ ସମୟରେ ରାଜା, ମହାରାଜା, ତାଙ୍କ ମେନେଜର, ଦେଓ୍ୱାନ ପ୍ରଭୃତି କଟକ ଆସନ୍ତି । ସେତିକିବେଳେ ଜଣେ ଘୋଡ଼ା ବେପାରୀ ତାଙ୍କ ନାଁ ଆଗାଜାନ୍ ଖାଁ ଆସି କଟକରେ ରହନ୍ତି । ରାଜା, ଜମିଦାର ଓ ବଡ଼ ବଡ଼ ହାକିମମାନଙ୍କ ସଙ୍ଗରେ ଦେଖାକରି ସେମାନଙ୍କୁ ଭଲ ଭଲ ଘୋଡ଼ା ଯୋଗାଇବେ ବୋଲି ଅର୍ଡ଼ର ନେଇ ଯାଆନ୍ତି ଓ ଘୋଡ଼ା ଯୋଗାନ୍ତି । ତାଙ୍କର ଘୋଡ଼ା ବେପାରରେ ଭଲ ଲାଭ ହେବାରୁ ସେ ସ୍ଥିର କଲେ ଏହି କଟକ ସହରରେ ଗୋଟିଏ ଘୋଡ଼ାଶାଳ ଖୋଲିବେ । ବିଭିନ୍ନ ସ୍ଥାନରୁ ଭଲ ଭଲ ଘୋଡ଼ା ଆଣି ବ୍ୟବସାୟ ଚଳାଇବେ । ବିହାରୀଲାଲ ପଣ୍ଡିତଙ୍କ ସାଙ୍ଗରେ ସାକ୍ଷାତ କରି

ତାଙ୍କଠାରୁ ଉପରୋକ୍ତ ଜମି ଖଣ୍ଡିକ ପଟାନେଲେ ଓ ଘୋଡ଼ାଶାଳା ଖଣ୍ଡିଏ ତିଆରି କରି ସେଥିରେ ରହିଲେ । ଦୁର୍ଭାଗ୍ୟବଶତଃ ପ୍ରାୟ ଦୁଇ-ତିନି ବର୍ଷ ପରେ ତାଙ୍କର ଏକମାତ୍ର ୨୨ ବର୍ଷର ପୁତ୍ରକୁ ବସନ୍ତ ରୋଗ ଧରିଲା । ସେ ମୃତ୍ୟୁ ମୁଖରେ ପଡ଼ିଲେ । ଏଣେ ପଲିଟିକାଲ ଏଜେଣ୍ଟ ଅଫିସ୍ ଅଲଗା ହୋଇ ସମ୍ବଲପୁରକୁ ଉଠିଗଲା । ଆଗାଖାନ୍ ଖାଁ ଏହି ଘୋଡ଼ାଶାଳ ଜମି ଖଣ୍ଡିକ କମିଶନ ଅଫିସରେ ଶିରସ୍ତାଦାର ଦିବାକର ଦାଶଙ୍କୁ ସାମାନ୍ୟ ଟଙ୍କାରେ ବିକ୍ରି କରି ଦେଇ ତାଙ୍କ ରାଜ୍ୟକୁ ଚାଲିଗଲେ । ଦିବାକର ଦାଶ ଘଡ଼ଜାତ ଅଞ୍ଚଳରୁ ଭଲ ଭଲ କାଠ ଅଣାଇ ଗୋଟିଏ ୨ ମହଲା କୋଠା ତିଆରି କଲେ । ରେଭେନ୍‌ସା କଲେଜ ସେତେବେଳେ ଅଳ୍ପ ଦୂରରେ ଥାଏ । ଏହି କଲେଜର ଖ୍ୟାତନାମା ବିଜ୍ଞାନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ଏହି ଘରଟିକୁ ଭଡ଼ାନେଇ ରହିଲେ । ସେ ଥିଲେ ଜଣେ ଗୁଣଗ୍ରାହୀ ଲୋକ । ତାଙ୍କ ସହିତ ପଠାଣି ସାମନ୍ତଙ୍କର ଦେଖାହେଲା । ସେ ଯେତେବେଳେ ରାଜ୍ୟରୁ ବିତାଡ଼ିତ ହୋଇ କଟକ ସହରରେ ଏଣେ ତେଣେ ବୁଲୁଥାନ୍ତି । ଯୋଗେଶ ବାବୁ ପଠାଣିଙ୍କର ଅଦ୍ଭୁତ ଶକ୍ତି ଦେଖି ତାଙ୍କୁ ପାଖରେ ଆଣି ରଖିଲେ । ପଠାଣି ସାମନ୍ତ ଏହିଠାରେ ରହି ବାଉଁଶ ନଳି ସାହାଯ୍ୟରେ ଗ୍ରହମାନଙ୍କ ଗତିବିଧି ନିରୀକ୍ଷଣ କଲେ । ସିଦ୍ଧାନ୍ତ ଦର୍ପଣ ନାମରେ ଖଣ୍ଡିଏ ଜ୍ୟୋତିଷ ଗ୍ରନ୍ଥ ରଚନା କଲେ । ସେ ଗ୍ରନ୍ଥ ଭାରତ କାହିଁକି ପୃଥିବୀର ବଡ଼ ବଡ଼ ପଣ୍ଡିତମାନଙ୍କ ମଧ୍ୟରେ ଆଦୃତ ହେଲା । ସେ ମହା ମହୋପାଧ୍ୟାୟ ଉପାଧି ପାଇଲେ । ଏହି ଗୁଣଜ୍ଞ ବ୍ୟକ୍ତିଙ୍କର ପାଦଧୂଳି ଏହିଠାରେ ଲୁଚି ଛପି ପଡ଼ିଥିଲା । ଯୋଗେଶ ବାବୁ କଟକରୁ ଚାଲିଗଲେ । କଟକର ସେ ଯୁଗରେ ପ୍ରସିଦ୍ଧ ଓକିଲ ଗୋକୁଳ ଚନ୍ଦ୍ର ଚୌଧୁରୀ ଆସି ସେଇ ଘରେ ରହିଲେ । ସେଇଠାରେ ତାଙ୍କର ଜ୍ୟେଷ୍ଠ ପୁତ୍ର ତ୍ୟାଗବୀର ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଜନ୍ମ ଗ୍ରହଣ କରିଥିଲେ । ଗୋକୁଳାନନ୍ଦ ବାବୁ ନିଜ ଘରକୁ ଚାଲିଯିବା ପରେ ସେଠାରେ କଲେଜ ପିଲଙ୍କର ଗୋଟିଏ ମେସ୍ ହେଲା । ସତ୍ୟବାଦୀ ବନ ବିଦ୍ୟାଳୟର ଯେଉଁ ଛାତ୍ରମାନେ କଲେଜରେ ପଢ଼ନ୍ତି ସେମାନେ ଏହି ମେସ୍‌ରେ ରହନ୍ତି । ଉତ୍କଳମଣି ଗୋପବନ୍ଧୁ ସମୟେ ସମୟେ ଏହିଠାକୁ ଆସନ୍ତି । ଦିବାକର ଦାଶଙ୍କ ଦେହାନ୍ତ ପରେ ଶ୍ରୀଯୁକ୍ତ ଚିନ୍ତାମଣି ଦାଶ ଏହି କୋଠାର ମାଲିକ ହେଲେ ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା ଏହି ବିରାଟ ଘରଟିକି ଭଡ଼ା ନେଇ । ସ୍ୱାଧୀନତା ଯୁଦ୍ଧର ସୈନ୍ୟ ମାନଙ୍କର ଶିବିର ଏହିଠାରେ ଖୋଲାଗଲା । ସେନାପତି ଗୋପବନ୍ଧୁ ଦାସ ତଥା ଓଡ଼ିଶାର ବହୁ ବିଶିଷ୍ଟ କର୍ମୀ ଓ ନେତା ଏହିଠାରେ ଆସି ରହିଲେ । କଟକ ଜିଲ୍ଲା କଂଗ୍ରେସ କମିଟି ଓ ପ୍ରାଦେଶିକ କଂଗ୍ରେସ ଅଫିସ ଏହିଠାରେ ଖୋଲାଗଲା । ଶହ ଶହ ସ୍ୱେଚ୍ଛାସେବକ ଏହିଠାରୁ ପ୍ରଚାର ପତ୍ର ନେଇ ସମଗ୍ର ଓଡ଼ିଶାକୁ ଖେଦିଗଲେ । କଟକରେ ଯେଉଁ ଦିନ ସ୍କୁଲ କଲେଜ ସବୁ ବନ୍ଦ ହୋଇଗଲା, ସେ ଦିନ ଏହି ଶିବିରଟି ସମୁଦ୍ରର ଉତ୍ତାଳ ତରଙ୍ଗ ପରି ଉଠୁଥାଏ ପଡ଼ୁଥାଏ । ତା'ପରେ ମହାମାନବ ମହାତ୍ମାଗାନ୍ଧୀ ଓଡ଼ିଶାକୁ ଯେତେଥର ପଦାର୍ପଣ କରିଛନ୍ତି, ସେ ଏହିଠାରେ ଆସି ପାଦଧୂଳି ଦେଇ ଯାଇଅଛନ୍ତି । ସେ ଯୁଗର ଭାରତବର୍ଷର ବିଶିଷ୍ଟ ନେତାମାନେ ଏହି ଘରେ କୁଣିଆଁ ହୋଇଅଛନ୍ତି । ଆଇନ୍ ଅମାନ୍ୟ ଆନ୍ଦୋଳନ ଅନୁସନ୍ଧାନକାରି କମିଟି ସଭ୍ୟମାନେ ଆସି ଏହିଠାରେ ସାକ୍ଷ୍ୟ ଗ୍ରହଣ କରିଥିଲେ । ସେ କମିଟିରେ ଥିଲେ ରଜା—ଗଜ ଗୋପାଳଚାରୀ । ଜବାହରଲାଲଙ୍କ ପିତା ପଣ୍ଡିତ ମୋତିଲାଲ ନେହେରୁ, ଭି. ଜେ. ପଟେଲ, ତଦ୍ବର ଆନସାରି ଟିକେ ସେରୁଆଲି କସ୍ତୁରି ରଙ୍ଗା........ଆଏଙ୍ଗାରି ତା'ପରେ କାଳକ୍ରମେ ଏହି ପ୍ରାସାଦଟି ବିଦେଶୀ ସରକାରଙ୍କ ଦ୍ୱାର ବନ୍ଦୀ ହେଲା । ବନ୍ଦୀ ହେଲାବେଳେ ପ୍ରଦେଶ କଂଗ୍ରେସ ଅଫିସ୍ ଏଠାରୁ ଉଠାଇ ନିଆଯାଇ ଅନ୍ୟତ୍ର ହେଲା । ଦୁର୍ଭାଗ୍ୟବଶତଃ ଏହି ଘରର ମାଲିକ ଚିନ୍ତାମଣି ଦାଶଙ୍କ ବ୍ୟାଙ୍କର କରଜ ବାବଦରେ ୯୦୦୦

ଟଙ୍କାରେ ନିଲାମ ଉଠିଲା । ନଳିନୀ ବାବୁ ଡେପୁଟି ମାଜିଷ୍ଟ୍ରେଟ୍, ଏହି କୋଠାକୁ ନିଲାମ ଧରିଲେ । ମୋର ଚିନ୍ତାମଣିଙ୍କର ଆତ୍ମୀୟତା ଥାଏ । ଏହି ନିଲାମକୁ ଅସିଦ୍ଧ କରିବେ ବୋଲି କଟକର ଓକିଲ ଧର୍ମାନନ୍ଦ ପଟ୍ଟନାୟକଙ୍କ ଆଶ୍ରୟ ନେଲେ ଏବଂ ଧର୍ମାନନ୍ଦ ବାବୁ ଏହି କୋଠାରେ ଆସି ସପରିବାରେ ରହିଲେ । ସେ ମୋ ଶ୍ୱଶୁର । ମୁଁ ମଧ୍ୟ ତାଙ୍କ ସାଙ୍ଗରେ ଆସି ରହିଲି । ଏହି ଐତିହାସିକ ଦୁର୍ଗଟି କିଭଳି କଂଗ୍ରେସ ହାତକୁ ଯିବ ତାକୁ ମୁଁ ବରାବର ଭାବୁଥାଏ । ଦୁର୍ଭାଗ୍ୟବଶତଃ ମୋ ଶ୍ୱଶୁର ୨ ବର୍ଷ ସେଠାରେ ରହିବା ପରେ ଇହଧାମ ତ୍ୟାଗ କଲେ । ଚିନ୍ତାମଣି ଦାଶ ନିରାଶ ହୋଇଗଲେ । ଧର୍ମାନନ୍ଦ ବାବୁ ଅସହଯୋଗ ଯୁଗରେ ଓକିଲାତି ଛାଡ଼ି ୧ ବର୍ଷ ପର୍ଯ୍ୟନ୍ତ ଜିଲ୍ଲା କଂଗ୍ରେସ କମିଟିର ସେକ୍ରେଟାରୀ ଥିଲେ । ତାଙ୍କର ମୃତ୍ୟୁରେ ସମବେଦନା ଜଣାଇବାକୁ ଯଦୁମଣି ମଙ୍ଗରାଜ ପ୍ରଭୃତି ସବୁ କଂଗ୍ରେସ ନେତା ମୋ ପାଖକୁ ଆସୁଥାନ୍ତି । ନଳିନୀ ବାବୁଙ୍କ ଭାଇ ରେବତୀ ବାବୁଙ୍କ ଘର ଅତି ଅଳ୍ପ ଦୂରରେ । ସେ ପ୍ରତିଦିନ ଗାଧୋଇ ଗଲାବେଳେ ତାଙ୍କର ମୋର ଭେଟ ହୁଏ । ସେ ମତେ କୁହନ୍ତି ଧର୍ମ ଭାଇ ତ ଚାଲିଗଲେ । ବୀର, ତମେ ଆଉ କାହିଁକି ସେଠି ରହୁଛ । ମୁଁ ତାଙ୍କୁ କୁହେ, ମୁଁ ତ ଚାଲିଯିବି । ମତେ ଖାଲି ଯଦୁମଣି ବାବୁ ପ୍ରଭୃତି ଅଟକାଇ ରଖୁଛନ୍ତି । ସେମାନଙ୍କର ଉଦ୍ଦେଶ୍ୟ ଚିନ୍ତାମଣିଙ୍କୁ ସାହାଯ୍ୟ କରି ଯେତେଦୂର ମକଦ୍ଦମା ଲଢ଼ିବା କଥା ଲଢ଼ିବେ । ଭଗିରଥି ବାବୁ, ବିଚିତ୍ରାନନ୍ଦ ବାବୁ ପ୍ରଭୃତି ଓକିଲମାନେ ସାହାଯ୍ୟ ଦେବେ ବୋଲି ରାଜି ହେଲେଣି । ତା ଛଡ଼ା ମୁଁ ଗୋଟିଏ ବିଶ୍ୱାସ କଥା ଆପଣଙ୍କୁ କହିବି । ଆସନ୍ତା ବିଧାନସଭା ବୈଠକରେ ନଳିନୀ ବାବୁଙ୍କ ନାମରେ କେତେ-ଗୁଡ଼ିଏ ଦୁର୍ନୀତି ବିଷୟରେ ପ୍ରଶ୍ନ ପଚାରିବେ ବୋଲି ଲେଖା ଚାଲିଥାଏ । ମୁଁ ଏତିକି କଥା ଆପଣଙ୍କୁ ଜଣାଉଅଛି । ଆପଣ କେଉଁଠି ପ୍ରକାଶ କରିବେ ନାହିଁ ମୁଁ କହିଲି ବୋଲି । ସେ ମୋ' ଠାରୁ ଏ ଖବର ପାଇ କେନ୍ଦ୍ରାପଡ଼ା ଏସ୍.ଡି ଓ. ନରେନ୍ ବାବୁଙ୍କୁ ସବୁ ଜଣାଇଲେ ଏବଂ ଲେଖିଲେ ଟିକିଏ କହି ବୀରକୁ ମୋ ପାଖକୁ ପଠାଇଦିଅ । ମୋତେ ଅନୁରୋଧ କରି କହିବାରୁ ମୁଁ କେନ୍ଦ୍ରାପଡ଼ା ଗଲି । ଅଦ୍ୱୈତ ବାବୁଙ୍କ ଘରେ ରହିଲି । ମୋର ମନେ ଅଛି ସେ ଦିନ କେନ୍ଦ୍ରାପଡ଼ା ମୁନିସପାଲିଟ୍ ନିର୍ବାଚନ ଚାଲିଥାଏ । ମୁଁ କାହାକୁ କିଛି ନକହି ଏସ୍.ଡି.ଓ ନଳିନୀ ବାବୁଙ୍କ ପାଖକୁ ଗଲି । ସବୁ ବିଷୟ ଜଣାଇଲି । ସେ ମତେ କହିଲେ ମୁଁ ହକ ଟଙ୍କା ଦେଇ ନିଲାମ ଧରିଛି । ଆଉ ଲୋକେ ନେଇ ଯାଇଥାନ୍ତେ । ମୋ ଉପରେ ସେ ରାଗିବାର କାରଣ କ'ଣ ? ମୁଁ କହିଲି ଆପଣ ସେଇଟା ଆମକୁ ଦେଇ ଦିଅନ୍ତୁ । ମାତ୍ର ମୁଁ ଯେଉଁ ଟଙ୍କା ଦେଇଛି ତା'ର ସୁଧ ମୂଳ ଯାହା ହେବ ମତେ ଦେଇ ପାରିବେ କି ? ମୁଁ କହିଲି ନିଶ୍ଚୟ ଦେବୁ । ଆପଣ ଦେବେ ବୋଲି ମତେ ନିଷ୍ଠା ଜବାବ ଦେଉଛନ୍ତି । ମୋ' ନାମରେ କିଏ କ'ଣ କହିଲା ବେନାମୀ ଦରଖାସ୍ତ ପକାଇଲା, ସେଗୁଡ଼ାକ ଆସେମ୍ବ୍ଲିରେ ପକାଇବା କ'ଣ ଠିକ୍ ହେବ ? ନା ସେ ଦାୟିତ୍ୱ ମୁଁ ନେଉଛି । ଆପଣ ଭାବିବାର କିଛି ନାହିଁ । ଏଣୁ ଆପଣ କେତେ ଟଙ୍କା ନେଲେ ଆମମାନଙ୍କୁ ସେ ଘର ଛାଡ଼ିଦେବେ ତାହା ଆପଣ ଭାଇଙ୍କ ପାଖକୁ ଲେଖନ୍ତୁ । ମୁଁ ଏସ୍.ଡି.ଓ. ଙ୍କ ଘରୁ ଫେରିଲା ବେଳେ ସେଠାକାର କଂଗ୍ରେସ ବନ୍ଧୁମାନେ କେତେ ପ୍ରକାର କଥା ଭାବିଲେ । ମୁଁ ସେମାନଙ୍କୁ କୌଣସି କଥା ନ କହି କଟକ ଫେରି ଆସିଲି । ୬ ଦିନ ଭିତରେ ଚିଠି ଆସି ପହଞ୍ଚିଲା । ଦଶ ହଜାର ସାତ ଶହ ଟଙ୍କା ଦେବାକୁ ପଡ଼ିବ । ମୁଁ କାହାରିକି ଏ ବିଷୟରେ ଜଣାଇ ନଥାଏ । ସନ୍‌ସାଇନ୍ ଫିଲ୍ଡ଼ ପାଖରେ ଗୋଟିଏ ଛୋଟ ଦୁଇ ମହଲା କୋଠାରେ ପ୍ରାଦେଶିକ ଓ ଜିଲ୍ଲା କଂଗ୍ରେସ ଅଫିସ ଏକାଠି ଥାଏ । ଉପର ମହଲାର ଗୋଟିଏ ଘରେ ମହତାବ ବାବୁ ଥାଆନ୍ତି । ତଳେ ପ୍ରାଣକୃଷ୍ଣ ପ୍ରତିହାରୀ ପ୍ରଭୃତି କେତେଜଣ ଥାନ୍ତି । ମତେ ପଡ଼ିଆରୀ ମହାଶୟ ଅଧିକାଂଶ ସମୟରେ କହନ୍ତି ବୀର, କେଉଁଠି ଗୁଣ୍ଡେ

ଦୁଇ ଗୁଣ୍ଠ ଜମି ବୁଝି ଗ୍ରଦା ମାଗି କଂଗ୍ରେସର ଖଣ୍ଡିଏ ଘର ତିଆରି କରିବା । ଏଠି ଏମିତି କେତେ ଦିନ ରହିବା । ମୁଁ ହଁ ହଁ କରୁଥାଏ । ମାତ୍ର ମୋ ମନରେ ପ୍ରବଳ ଆକାଙ୍‌କ୍ଷା ଥାଏ । ଏହି ଐତିହାସିକ କୋଠା ଖଣ୍ଡିକ କେମିତି ହାତରେ ପଡ଼ିବ । ମୁଁ ଭିତରେ ଭିତରେ ଯାହା କରୁଥାଏ କାହାରିକୁ ଜଣାଇ ନ ଥାଏ । କେନ୍ଦ୍ରାପଡ଼ାରୁ ଫେରି ମୁଁ ପଢ଼ିଆରୀକୁ କହିଲି, ଆମେ କ'ଣ ସେହି ଘର ଖଣ୍ଡିକ ପାଇ ପାରିବା ନାହିଁ ? ସେ କହନ୍ତି ତମେ କ'ଣ ପାଗଳା ହୋଇଛ । ଚ.କୁ ଯିଏ ନିଲମ ଧରିଛି ସେ କ'ଣ ଆମକୁ ଦେବ ? ଅସମ୍ଭବ କଥା ।

ମହତାବ ବାବୁଙ୍କୁ କହିଲି ସେ ଉସ୍ ହା ହେଲେ । ଆହୁରି ମଧ୍ୟ କହିଲେ ତୁମେ ଯେବେ ବିଶ୍ୱାସ କରୁଛ ଚେଷ୍ଟା କର । ୭।୮ ଦିନ ପରେ ମୁଁ ଯାଇ କହିଲି ସେ ନଗଦ ୧୦ ହଜାର ୭ ଶହ ଟଙ୍କା ପାଇଲେ ସେ କୋଠା ଛାଡ଼ିଦେବେ । ଉତ୍ତର ମିଳିଲା ଏତେ ଟଙ୍କା କିଏ ଦେବ, କେଉଁଠି ଅଛି ? ଇତିମଧ୍ୟରେ ରେବତୀ ବାବୁ ଲଗାଇଥାନ୍ତି ବୀର ଘର ଛାଡ଼ିଦିଅ । ଚିନ୍ତାମଣି ବାବୁଙ୍କୁ କହି ଗୋଟିଏ ମହଲତ ଦରଖାସ୍ତ ଦିଆଯାଇଥାଏ । ବନ୍ଧୁମାନଙ୍କଠାରୁ ନିରାଶ ହୋଇ ମୁଁ ବଡ଼ ବିଚଳିତ ଅବସ୍ଥାରେ ଥାଏ । ଦିନେ ଅନ୍ୟମନସ୍କ ଭାବରେ ନୟାସଡ଼କ ଦେଇ ଗଙ୍ଗାମନ୍ଦିର ଆଡ଼କୁ ଯାଉଥାଏ । ମୋର ଗୁଡ଼ିକିରି ଯୁଗର ଜଣେ ବନ୍ଧୁ ମୋ ସଙ୍ଗରେ ଭେଟ ହେଲେ । ସେ ହରି କବିରାଜ ଦୋକାନରେ ଏକୁଟିଆ ବସିଥାଆନ୍ତି । ମତେ ଦେଖି ନମସ୍କାର କଲେ । ସେ ବୁଝି ନେଲେ ଯେ ମୁଁ କଂଗ୍ରେସରେ ଜଣେ କର୍ମୀ । ମୁଁ P.W.D.ର ଏକାଉଣ୍ଟସ ବ୍ରାଞ୍ଚରେ ଥିବାବେଳେ ତାଙ୍କୁ ବରାବର ସାହାଯ୍ୟ କରେ । ଅନ୍ୟମାନେ ପଇସା କୌଡ଼ି ନେଲେ ସୁଦ୍ଧା ମୁଁ ଅଧଲାଏ ନିଏ ନାହିଁ । ମୁଁ ଜଣେ ସାଧୁ ପ୍ରକୃତିର ଲୋକ ବୋଲି ତାଙ୍କ ମନରେ ଧାରଣା । ସେ ମୋତେ କହିଲେ ଆପଣ କୁଆଡ଼େ ଯାଉଛନ୍ତି ? ମୋର ଆପଣଙ୍କଠାରେ ଗୋଟାଏ ଜରୁରୀ କାମ ଅଛି । ମୁଁ କହିଲି ହଉ ଯିବେ । ବର୍ତ୍ତମାନ ମୁଁ ଘରକୁ ଫେରୁଛି । ସେ ଯାହାଙ୍କ ଅପେକ୍ଷାରେ ବସିଥିଲେ ତାଙ୍କ ସଙ୍ଗରେ ସେ ପର୍ଯ୍ୟନ୍ତ ଭେଟ ହୋଇ ନ ଥାଏ । ମୁଁ ତାଙ୍କ ସଙ୍ଗରେ କାର୍‌ରେ ବସି ଘରକୁ ଆସିଲି । ସେ ମୋତେ ତାଙ୍କ କାଗଜ ପତ୍ର ଦେଖାଇ କହିଲେ ମୋର ଏହି କାମଟି P.W.D. ମିନିଷ୍ଟର ନିତ୍ୟାନନ୍ଦ ବାବୁଙ୍କ ପାଖରେ ଅଛି । ମୁଁ କରାଇ ଦେଲେ ବିଶେଷ ଉପକୃତ ହେବି । କାମଟି ହେଉଛି ତାଙ୍କର ପିତା ଗାଙ୍ଗୁଜି ଦୟା ବୁଢ଼ା ବଳଙ୍ଗ ନଦୀ ଉପରେ ଗୋଟିଏ ପୋଲ ତିଆରି କରିଛନ୍ତି । ସେହି ବାବଦରେ ୭୦ ହଜାର ଟଙ୍କା ସରକାରଙ୍କ ଉପରେ ବାକୀ । Executive Engineer ବେରୀ ସାହେବ ବାପାଙ୍କ ଉପରେ ରାଗି ତାଙ୍କୁ ଫାଇନାଲ ବିଲ ବନ୍ଦ କରିଦେଇଛନ୍ତି । କେତେ ନଡ଼ାନଡ଼ି ପରେ ହ୍ୱାଇଟ ସାହେବଙ୍କୁ ଭାର ଦିଆହୋଇଛି ଯେ ସେ ଯାହା ଅର୍ଡ଼ର ଦେବେ ସେତିକି ପେମେଣ୍ଟ କରାଯିବ । ମାତ୍ର ୪।୬ ମାସ ପରେ ବିହାର ଓଡ଼ିଶା ଅଲଗା ହୋଇଗଲା । ହ୍ୱାଇଟ ସାହେବ P.W.D. Ministerଙ୍କୁ ନପଚାରି କେତେ ଟଙ୍କାରେ ଅର୍ଡ଼ର ଦେବେ ଠିକ୍ କରିପାରୁ ନଥାନ୍ତି । ଗାଙ୍ଗଜି ଦୟା ଯେତେ ଦୌଡ଼ାଦୌଡ଼ି କଲେ ସୁଦ୍ଧା ସେ ସଫା କହିଦିଅନ୍ତି ମନ୍ତ୍ରୀଙ୍କ ସହିତ ପରାମର୍ଶ ନକରି ମୁଁ କିଛି ଅର୍ଡ଼ର ଦେଇପାରିବି ନାହିଁ । ଗାଙ୍ଗଜି ଦୟାଙ୍କ ପୁଅ କୁମରଜି ଖବର ପାଇଲେ ଯେ ନିତ୍ୟାନନ୍ଦ ବାବୁଙ୍କ ସହ ହରେକୃଷ୍ଣ କବିରାଜଙ୍କର ବିଶେଷ ଘନିଷ୍ଠତା ଅଛି । ସେ ତାଙ୍କର ଘର ବୈଦ୍ୟ । ଏହି ଖବର ପାଇ ସେ କବିରାଜଙ୍କୁ ଅନୁସରଣ କରୁଥାଆନ୍ତି । ମାତ୍ର ତାଙ୍କୁ କବିରାଜ ପାଖ ପୁରାଇ ଦେଉ ନଥାଆନ୍ତି । ମୋ ସହିତ ଯେଉଁ ଦିନ ଦେଖା ହେଲା କୁମରଜି ସେତେବେଳକୁ ଦୌଡ଼ି ଦୌଡ଼ି ନିରାଶ ହେଲେଣି । ମୁଁ ତାଙ୍କଠାରୁ ସବୁ କଥା ଶୁଣି କହିଲି ଆମର କଂଗ୍ରେସରେ ଗୋଟିଏ ଘର କିଣାଯିବ । ଆପଣ ଯଦି ଆମ୍ଭମାନଙ୍କୁ ଶ୍ରଦ୍ଧା ସ୍ୱରୂପ ୫୦୦୦ ହଜାର ଟଙ୍କା ଦେବେ ତାହାହେଲେ ମୁଁ ଏଥିରେ ପଶିବି । ମୁଁ କହିଲି ଦେଖନ୍ତୁ ଆମ କଂଗ୍ରେସର ଜଣେ ମାଲିକ ହେଉଛନ୍ତି

ହରେକୃଷ୍ଣ ମହତାବ । ଆପଣଙ୍କୁ ତାଙ୍କ ସଙ୍ଗେ ଭେଟ କରାଇଦେବି । ସେ ନିଶ୍ଚୟ ଆପଣଙ୍କର କାର୍ଯ୍ୟ କରାଇଦେବେ ଆପଣ କାଲି ଏଠାକୁ ଆସନ୍ତୁ । ଗାଡ଼ି ନେଇ ମହତାବ ବାବୁଙ୍କୁ ଏଠାକୁ ନେଇ ଆସିବା । ସେଦିନ ସଙ୍ଗେ ସଙ୍ଗେ ଯାଇ ମହତାବ ବାବୁଙ୍କୁ କହିଲି ମୁଁ କିଛି ଯୋଗାଡ଼ କରିଛି । ଆପଣ କାଲି ଟିକିଏ ଆସନ୍ତୁ । ତାଙ୍କ ଗୋଡ଼ରେ ସେତେବେଳେ ଗୋଟିଏ ଘାଲୁଣିଆ ହୋଇଥାଏ । ତାକୁ କେହି କେହି ପଠା ବୋଲି କହୁଥାଆନ୍ତି । ସେ ବିଛଣାରେ ଶୋଇଥାନ୍ତି । ମୋର ଅନୁରୋଧ ରକ୍ଷାକରି ଆମ ଘରଠାକୁ ଆସିଲେ । କୁମରଜି ବାବୁଙ୍କର ମହତାବ ବାବୁଙ୍କର କଥାବାର୍ତ୍ତା ହୋଇଗଲା । ମହତାବବାବୁ ଦୃଢ଼ ଜବାବ ଦେଲେ ମୁଁ ନିଶ୍ଚୟ କରାଇଦେବି । ଆପଣ ବୀରବାବୁଙ୍କୁ ଯାହା କହିଛନ୍ତି ତାହା ଆମମାନଙ୍କୁ ଦେବେ । ଇତି ମଧ୍ୟରେ ନଳିନୀ ବାବୁଙ୍କଠାରୁ ଚିଠି ଆସିଥାଏ । ବୀରବାବୁ ଦୁଇ ମାସପାଇଁ ଟାଇମ ଦେଇଥିଲେ ସମୟ ସରିଆସିଲା । ମୁଁ ଯାଇ ମହତାବ ବାବୁଙ୍କୁ ପଚାରିବାରୁ ସେ କହିଲେ ମୁଁ ନିଶ୍ଚୟ ନିତ୍ୟାନନ୍ଦ ବାବୁଙ୍କୁ କହିସାରିଲିଣି ଆଉ ଅସୁବିଧା କିଛି ନାହିଁ । ମନ୍ତ୍ରୀ କିପରି ପଚାରିବେ ? ସେ ମନ୍ତ୍ରୀଙ୍କ ଆଗରେ ଫାଇଲ ପୁଟଅପ କରୁ । କହିଦିଅ ସେ ସାଇବଙ୍କୁ ଏ କଥା କହି ଦିଅନ୍ତୁ ! ସାହେବ ଏ କଥା ଶୁଣି ମନ୍ତ୍ରୀଙ୍କ ପାଖରେ ଦିନେ ଫାଇଲ ନେଇଗଲେ । ମନ୍ତ୍ରୀ ତାଙ୍କୁ କହିଲେ ଆପଣ ଟେକେନିକାଲ ମ୍ୟାନ, ଆପଣ ଯାହା ବିଚାରୁଛନ୍ତି ତାହା କରନ୍ତୁ । ରୋଗୀ ଖୋଜୁଥିଲା ଯାହା ବୈଦ୍ୟ ବତାଇଲା ତାହା । ସାହେବ ପୂର୍ବରୁ ୬୫ ହଜାର ଟଙ୍କା ଦେବେ ବୋଲି କୁମରଜୀଙ୍କୁ ଆଗରୁ କହିଥାନ୍ତି । କୁମରଜୀ ମଧ୍ୟ ସେଥିରେ ରାଜି ହୋଇଥାନ୍ତି । କୁମରଜୀ ଯେଉଁଦିନ ୬୫ ହଜାର ଟଙ୍କାର ଚେକ୍ ପାଇଲେ, ସେହି ଦିନ ସନ୍ଧ୍ୟାବେଳକୁ ଆସି ୫୦୦୦ ଟଙ୍କାର ଥାକେ ନୋଟ ମତେ ଦେଲେ । ମୁଁ ତାଙ୍କ କାର୍‌ରେ ବସି ମହତାବ ବାବୁଙ୍କ ପାଖକୁ ତାଙ୍କୁ ସଙ୍ଗେ ସଙ୍ଗେ ନେଇଗଲି । ଟଙ୍କାକୁ ମହତାବ ବାବୁଙ୍କ ଜିମା ଦେଇଆସିଲି । ସେହି ସମୟରେ ଭଗୀରଥିବାବୁ କଟକ ମ୍ୟୁନିସପାଲିଟି ଚେୟାରମ୍ୟାନ ଥାନ୍ତି । ସେ ୨୦୦୦ ଟଙ୍କା ଜଣେ ମହାଜନଠାରୁ ହ୍ୟାଣ୍ଡନୋଟକରି ଆଣିଦେଲେ । ୧୦୦୦ ଟଙ୍କା ଜିଲ୍ଲା କଂଗ୍ରେସ ପାଣ୍ଠିକୁ ଦିଆଗଲା । ନିତ୍ୟାନନ୍ଦ ବାବୁ କେତେ ଟଙ୍କା ଦେଲେ । ଏହିପରି କୌଣସିମତେ ଘରଟି କବଲା ହେଲା । ତାପରେ ଗୋଟିଏ ଟ୍ରଷ୍ଟବୋର୍ଡ ଗଢ଼ାଗଲା ମହତାବବାବୁ, ବିଚିତ୍ରାନନ୍ଦ ଦାସ, ଭଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ପ୍ରାଣକୃଷ୍ଣ ପର୍ଢ଼ିଆରୀ ଟ୍ରଷ୍ଟ ବୋର୍ଡ଼ର ମେମ୍ବର ଥିଲେ । ମହତାବବାବୁ ମତେ ଟ୍ରଷ୍ଟ ବୋର୍ଡ଼ରେ ରଖିବେ ବୋଲି ଇଚ୍ଛୁକ ଥିଲେ ମଧ୍ୟ ମୁଁ ରାଜି ହେଲି ନାହିଁ । ତେବେ ତାଙ୍କୁ ଗୋଟିଏ ବିଷୟରେ ଅନୁରୋଧ କଲି । ସେ ବିଷୟ ସେ ରକ୍ଷା କଲେ । କାଗଜରେ ସେ ମଧ୍ୟ ଲେଖିଦେଲେ ବୀରକିଶୋର ବାବୁଙ୍କ ଜରିଆରେ ୫୦୦୦ ଟଙ୍କା ବୁଝିପାଇଲି । ସେ ରସିଦ୍ ଖଣ୍ଡିକ ମୋ ପାଖରେ ଏ ପର୍ଯ୍ୟନ୍ତ ସୁଦ୍ଧା ଅଛି । କବଲା ହୋଇଯିବାର ପ୍ରାୟ ୨।୪ ମାସ ପରେ ମହତାବ ବାବୁ ଦିନେ ହସିହସି କହିଲେ, ବୀରବାବୁ ଖୋଦା ଜବ ଦେତାହୈ ଛପର ଫାଡ଼କର ଦେତା । ମୁଁ ନିତ୍ୟାନନ୍ଦ ବାବୁଙ୍କୁ ଆଦୌ କହିନାହିଁ । ମୁଁ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ସେ ଆଶ୍ରମ କୋଠା ଏପର୍ଯ୍ୟନ୍ତ ଛିଡ଼ାହୋଇଅଛି । ତା'ର ମୂଲ୍ୟ ଅନ୍ତତଃ ୧ ଲକ୍ଷ ଟଙ୍କା ହେବ ।

## ମୁଁ କେମିତି ଏମ୍. ଏଲ୍. ଏ. ହେଲି

ଆମ ଜଗତ୍‌ସିଂହପୁର ଥାନାର ଏମ୍. ଏଲ. ଏ ଶ୍ରୀଯୁକ୍ତ ନୀଳମଣି ପ୍ରଧାନଙ୍କର ଅକାଳ ବିୟୋଗ ଘଟିଲା । ତାଙ୍କ ସ୍ଥାନଟି ପୂରଣ କରିବାକୁ କଂଗ୍ରେସ ତରଫରୁ ପ୍ରାର୍ଥୀ ହେବା ଲାଗି ବିଜ୍ଞାପନ ଦିଆଗଲା । ମୁଁ ଦରଖାସ୍ତ ଦେଲି । ମୋର ଅନ୍ତରଙ୍ଗ ଦୁଇଜଣ ବନ୍ଧୁ ଅମିତାଭ ମହାପାତ୍ର ଓ ଶ୍ରୀଯୁକ୍ତ ଘୋଷଙ୍କ ଚରଣ ଦାସ ଦରଖାସ୍ତ ଦେଲେ । ମୁଁ କିପରି

ପଚାଶ ମସିହା ଇଲେକ୍‌ସନରେ ଧକ୍‌କା ଖାଇଛି ଏବଂ ମୋର କର୍ତ୍ତବ୍ୟ ଅନୁଯାୟୀ କଂଗ୍ରେସର ସେବା କରିଆସିଛି, ତାହା ଦର୍ଶାଇ କର୍ତ୍ତୃପକ୍ଷଙ୍କୁ ମୋତେ ଗ୍ରହଣ କରିବା ଲାଗି ଅନୁରୋଧ କଲି । ସେତେବେଳେ ନିର୍ବେଦ ହୋଇ ଘରେ ବସିଥାଏ । ୫୯ ମସିହା କଥା । ୫୪ ମସିହାରୁ ସରକାର ଲୋକାଲ ବୋର୍ଡ଼କୁ ନେଇ ଯାଇଥାନ୍ତି । ଖଣ୍ଡିଏ ସାନ ଜମିଦାରୀ ଥିଲା । ତାହା ମଧ୍ୟ ସରକାର ନେଇଯାଇଥାନ୍ତି । ପ୍ରେସ ବିକ୍ରି ହୋଇଯାଇଥାଏ । ମୋତେ ଯଦି ଛିଡ଼ା ହେବାକୁପଡ଼େ ହାତରୁ କିଛି ଦେବାକୁ ପଡ଼ିବ । ଅତତଃ ଯେଉଁ ଟଙ୍କା ପାର୍ଥୀପତ୍ର ସାଥିରେ ଦେବାକୁ ହେବ—ତାହା ମୋ ପାଖରେ ନାହିଁ । ଏହି କଥା ଭାବି ଭାବି ମୋ ମନ ଭାଙ୍ଗି ପଡ଼ିଥାଏ । ମୁଁ ଘରେ ତୁନିହୋଇ ବସିଥାଏ । ମତେ ମହତାବ ବାବୁ ଡକାଇ କହିଲେ ତମ ବିରୋଧରେ କେତେ ଲୋକ କହୁଛନ୍ତି । କଟକର ଜଣେ ବିଶିଷ୍ଟ ଓକିଲ ଅନ୍ୟ ଦୁଇଜଣ ଦରଖାସ୍ତକାରୀଙ୍କ ମଧ୍ୟରୁ ଜଣଙ୍କ ପାଇଁ ଯାଥାସାଧ୍ୟ ଚେଷ୍ଟା କରୁଥାଆନ୍ତି । ମୋପାଇଁ କେହି କିଛି ସୁପାରିଶ କରୁନଥାନ୍ତି । କେବଳ ମୋର ଜଣେ ସୁପରିଚିତ ବନ୍ଧୁ ଶ୍ରୀଯୁକ୍ତ ସୁଧୀର ଚନ୍ଦ୍ର ଘୋଷ ଜିଲା ବୋର୍ଡ଼ର ଭୂତପୂର୍ବ ଚେୟାରମ୍ୟାନଙ୍କୁ କହିଲେ ଯେବେ କଂଗ୍ରେସକୁ କୃତକାର୍ଯ୍ୟ କରିବାକୁ ଚାହିଁନ୍ତି ତେବେ ବୀର, ବାବୁଙ୍କୁ ଛିଡ଼ା କର । ଏହିପରି ବହୁବିଧ ମତ ହେବାରୁ ମୁଁ ନିରାଶ ହୋଇ ରହିଥିଲି । ହଠାତ୍ ଦୁଇ ଦିନପରେ ମୋତେ କଂଗ୍ରେସ ଅଫିସକୁ ଡାକିନେଲେ । କେତେଜଣ ମନ୍ତ୍ରୀ ଉପମନ୍ତ୍ରୀ ସେଠାରେ ଉପସ୍ଥିତ ଥାଆନ୍ତି । ମହତାବବାବୁ ଗୁଳା ପକାଇଲେ । ସେଥିରେ ମୋ ନାମ ଉଠିଲା । ଯାହା ନିଷ୍ପତ୍ତି ହୋଇଗଲା ଆଉ ଭାବିବାର କିଛି ନାହିଁ । ୨ ଦିନ ପରେ ପାର୍ଥୀପତ୍ର ଟଙ୍କା ଦାଖଲ ହେବାର କଥା । ମହତାବବାବୁ ମତେ କହିଲେ ଆଚ୍ଛା ତମର କେହି ବନ୍ଧୁ ଅଛନ୍ତି, ଯିଏ ତୁମକୁ ଏହି ନିର୍ବାଚନରେ ସାହାଯ୍ୟ କରିବେ । ମୁଁ କହିଲି ସେମିତି କେହି ବନ୍ଧୁ ନାହିଁ, ମାତ୍ର ଜଣେ ବନ୍ଧୁ ଅଛନ୍ତି, ଆପଣ ତାଙ୍କୁ ଡ଼କାଇ ପଠାନ୍ତୁ । ସେ କିଛି ସାହାଯ୍ୟ କରିପାରନ୍ତି । ପାର୍ଥୀପତ୍ର ଫିସ୍‌ଟା ଚଳିଯାଇପାରେ । ମୁଁ କହିବାରୁ ସେ ମୋ ବନ୍ଧୁଙ୍କୁ ଡକାଇ ପଠାଇ କହିଲେ, ଆପଣଙ୍କ ବୀରବାବୁ ଆସେମ୍ଲିରେ ଛିଡ଼ା ହେଉଛନ୍ତି । ତାଙ୍କପାଇଁ ଯୋଗାଡ଼ କରିବାକୁ ହେବ ଆପଣଙ୍କୁ ପାଞ୍ଚେ ଦେବାକୁ ପଡ଼ିବ । ସେ ହଁ ଭରି ଚାଲିଗଲେ ।

## ଜୈନ ବନ୍ଧୁଙ୍କ ନିକଟକୁ ପତ୍ର

ଶ୍ରଦ୍ଧେୟ ବନ୍ଧୁ,　　　　　　　　　　　　　　　　　　　　　　　　　　୧

ଆଜି ନବ ବର୍ଷର ବିନମ୍ର ଅଭିବାଦନ ଗ୍ରହଣ କରିବେ । ଆପଣଙ୍କ ସହ ମୋର ପ୍ରତ୍ୟକ୍ଷ ପରିଚୟ ନଥିଲେ ସୁଦ୍ଧା ଆପଣଙ୍କର ଲେଖା ଓ ଭାଷଣମାନ ସମ୍ବାଦପତ୍ରମାନଙ୍କରୁ ନିୟମିତ ରୂପେ ପଢ଼େ । ଆପଣ ଜଣେ ବିଶିଷ୍ଟ କର୍ମୀ ଜନ ସେବକ । ଢଙ୍କର ରାମ ମୋନୋହର ଲୋହିଆ ଜଣେ ଯୋଗଜନ୍ମା ପୁରୁଷ ଥିଲେ । ସୌଭାଗ୍ୟକ୍ରମେ ତାଙ୍କ ସହିତ ମୋର କଟକରେ କିଛି ସମୟ କଥାବାର୍ତ୍ତା କରିବାର ସୁଯୋଗ ପାଇଥିଲି । କଟକର କାଜିବଜାର କ୍ଷିତିଶ ରାୟ ଚୌଧୁରୀଙ୍କ ବିସ୍ତୃତ ପ୍ରାଙ୍ଗଣରେ ଗୋଟିଏ ବଡ଼ ସଭା ହୋଇଥିଲା । ତାଙ୍କର ବକ୍ତୃତାରୁ ମୁଁ ହୃଦୟଙ୍ଗମ କରିପାରିଥିଲି ତାଙ୍କ ଭିତରେ କି ନିଆଁ ଜଳୁଛି । ତାଙ୍କର ମହାପ୍ରୟାଣ ସମୟରେ ମୁଁ ବ୍ୟଥିତ ହୋଇ ଯେଉଁ କବିତାଟି ଲେଖିଲି ତାହା ସମ୍ବାଦ ପତ୍ରରେ ପ୍ରକାଶିତ ହୋଇଥିଲା । ମୋର ଦୁର୍ଭାଗ୍ୟ ଯେ ମୋତେ ବହୁ ବରିଷ୍ଠ ଜନ ସେବକଙ୍କର ଶୋକ ସଙ୍ଗୀତ ଲେଖିବାକୁ ପଡ଼ିଛି । ମୋର ପରିଚୟ ଏତିକି ଆପଣଙ୍କ ପାଖରେ ଦେଉଛି ଯେ ମୁଁ ସ୍ୱାଧୀନତା ଯୁଦ୍ଧର ପ୍ରାରମ୍ଭରେ ୫୦ ବର୍ଷ ତଳେ ଅମଙ୍ଗତଟରୁ ବିଦାୟ ନେଇ ସୈନିକ ଶ୍ରେଣୀଭୁକ୍ତ ହୋଇଥିଲି । ମୁଁ ତିନିଥର ରାଜଦ୍ରୋହ

ଦଫାରେ ଦଣ୍ଡିତ ହୋଇ ଦୀର୍ଘ ସାତ ବର୍ଷ କାରଦଣ୍ଡ ଭୋଗ କଲି । ମୋର କେତେଖଣ୍ଡ ବହି ବ୍ୟାଜାପ୍ତି ହେଲା । ସ୍ୱାଧୀନତା ପ୍ରାପ୍ତିର କୋଡ଼ିଏ ବର୍ଷ ପରେ ମୋତେ ଲେଖିବାକୁ ପଡ଼ିଲା—ନିଆଁ ପେଟରୁ ଉଠିଲେ ଜଳି, ଘର ଘର ସଙ୍ଗେ କରେ କଳି । ବର୍ତ୍ତମାନ ଦେଶ ଏକ ମହା ସଂକଟର ସମ୍ମୁଖୀନ । ଗାନ୍ଧୀବାଦ ଗାନ୍ଧୀଙ୍କ ସଙ୍ଗେ ସଙ୍ଗେ ଚାଲି-ଯାଉଛି । ଆମେ କେତେବର୍ଷ ଧରି ଭୋଟ ସଂଗ୍ରହ ତଥା ଶାସନ କଳ ଚଳାଇ ଆସିଲେ । ଆମର ଏକମାତ୍ର ଲକ୍ଷ୍ୟ ହେଲା—ଜନତାଙ୍କ ଭାଗ୍ୟ ଡୋରି ସବୁବେଳେ ଆମ ହାତରେ ରିଷ୍ଟ ୱାଚ ଭଳି ଥାଉ । ଆମ ଭାଗ୍ୟଡୋରି ଯେ କାଳ ହାତରେ ରହିଛି ତାହା ଆମେ ଭୁଲି ଯାଉଛୁ । ଆମ ପ୍ରଦେଶର ଦୁର୍ଭାଗ୍ୟ ଯେ ବିଦେଶୀ ସରକାରଙ୍କ ଅମଳରେ ଯେଉଁମାନେ ସ୍ୱାଧୀନତାର ଚରମପନ୍ଥୀ ଥିଲେ ସେହିମାନେ ହିଁ ବୃହତ୍ତମ ସଂଖ୍ୟାରେ ବିଧାନସଭାକୁ ଆସିଲେ । ବନ୍ଧ୍ୟା ପ୍ରସବ ବେଦନା ଜାଣେ ନାହିଁ । ସେମାନଙ୍କ ଜୀବନରେ ଦେଶ ସେବାର ମହତ୍ୱ ସେ କେବେ ଅନୁଭବ କରି-ନାହାନ୍ତି । ଶୋଷକ ଭାବରେ ରହି ଶୋଷଣ ଲିପ୍ତ ଥିଲେ । ଆପଣଙ୍କ ପରି ଜନତାଙ୍କର ମର୍ମବେଦନା ଅନୁଭବ କରି ନଥିଲେ ।

ଦେଶର ବର୍ତ୍ତମାନ ପରିସ୍ଥିତି ଆପଣଙ୍କୁ କିଛି ଅଜଣା ନାହିଁ । ଦୁଆର ଆଗରେ ଶତ୍ରୁମାନେ ଚାକି ବସିଛନ୍ତି । ସବୁ ନେତାଙ୍କର ଲକ୍ଷ୍ୟ ଏକହେଲେ ସୁଦ୍ଧା ଆପଣା ଆପଣା ଭେଦରେ ମତଭେଦରୁ ମତଭେଦ ପ୍ରବଳ ଭାବରେ ଗତି କରିବ ।

ଲୋକଙ୍କ, ମଧ୍ୟରେ ନୈରାଶ୍ୟବାଦର ପବନ ବହି ବଙ୍ଗ ପ୍ରଦେଶ କିପରି ହୁ ହୁ ହୋଇ ଜଳୁଛି, ତାକୁ ଲିଭାଇବା ପାଇଁ ପଲ୍ଲୀ ଠାରୁ ଜିଲ୍ଲା ପର୍ଯ୍ୟନ୍ତ ସମସ୍ତ ଚେଷ୍ଟା କରି ମଧ୍ୟ ଲିଭାଇବା ଲାଗି ସକ୍ଷମ ହୋଇପାରୁ ନାହାନ୍ତି । ଆମ ପ୍ରଦେଶକୁ ସେ ନିଆଁ ଯେ ଉଡ଼ି ଆସି ଆମ୍ଭମାନଙ୍କୁ ଗଭୀର ଚିନ୍ତା ଓ କ୍ଷୋଭରେ ପକାଇବ ଏହା ନିଃସନ୍ଦେହ । ସେ ହେତୁ ମୁଁ ଆପଣଙ୍କ ଭଳି କେତେଜଣ ଜନସେବକଙ୍କୁ ପତ୍ର ଦେଇ ଅନୁରୋଧ କରୁଅଛି, ସମସ୍ତେ ମିଳିମିଶି ବସି ଉପାୟ ଉଦ୍ଭାବନ କରନ୍ତୁ । ଆବଶ୍ୟକ ମନେକଲେ ସମସ୍ତେ ମିଶି ଏକ ଜାତୀୟ ଅତୀତକୁ ଭୁଲିଯାଇ ନୂତନ ଢଙ୍ଗରେ ଶାସନ ପ୍ରଣାଳି ଗଢ଼ନ୍ତୁ । ସାରା ଭାରତରେ ଗୋଟିଏ ଆଦର୍ଶ ପଥ ଦେଖାଇ ଜନସାଧାରଣଙ୍କର ପ୍ରିୟପାତ୍ର ହୁଅନ୍ତୁ । ମୁଁ ଲେଖିଥିଲି—

ଭୋଟ ବାକ୍ସ ନୁହେଁ ସେବା ମାପକାଠି
ସେବକ ନ ଖୋଜେ କିଏ କେଉଁ ପାର୍ଟି
ଗଣତନ୍ତ୍ର ଅର୍ଥ ନୁହେଁ ଗଣା ଗଣି
ସାମ୍ୟବାଦ ଅର୍ଥ ନୁହେଁ ହଣା ହଣି
ଶାନ୍ତି ଶୃଙ୍ଖଳାର ଅର୍ଥ ନୁହଁଇତ
ପାଇଲେ ଠୁକିବା ନେଇ ।

ବର୍ତ୍ତମାନ ମୁଁ କୌଣସି ଦଳରେ ବା କଳରେ ନାହିଁ । ରୋଗ ଶଯ୍ୟାରେ ଶାୟିତ । ଦେହରେ ଶକ୍ତି ଥିଲେ ଆପଣଙ୍କ ସାଙ୍ଗରେ ଦେଖା କରିଥାନ୍ତି । ଯାହାହେଉ ମୋର କ୍ଷୁଦ୍ର ଅନୁରୋଧଟି ଆପଣ ଓ ଶ୍ୟାମବାବୁ ବିଚାର କରିବେ ।

ବର୍ତ୍ତମାନ ରାଜନୈତିକ ପରିସ୍ଥିତି ମଧ୍ୟରେ ଖଣ୍ଡିଏ ଚିଠି ।

ଭାଇ ଅଦ୍ୱୈତ,

ତମ ଚିଠି ପାଇଛି । ତମେ ଯେଉଁ ସବୁ ଜଟିଳ ପ୍ରଶ୍ନମାନ ପଚାରିଛ ସେ ସବୁର ଉତ୍ତର ଦେବା ମୋ' ପକ୍ଷରେ ଅସମ୍ଭବ । କାରଣ ପଲ୍ଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ବଡ଼ ବଡ଼ ନେତାଙ୍କର ମଥା ଘୂରିଯାଉଛି । ମୁଁ ଜଣେ ସାଧାରଣ ସୈନିକ । ସ୍ୱାଧୀନତାର ପ୍ରଥମ ପର୍ବରେ ଯୁଗାବତାରଙ୍କର ଆହ୍ୱାନରେ ଜାତୀୟ ନିଆଁକୁ ଡେଇଁଥିଲି । ସେତେବେଳେ ମୁଁ ବୀର । ବର୍ତ୍ତମାନ ସ୍ଥବିର । ପାଗବାରଠାରୁ କାରାଗାର ତଥା ଦରବାର ପର୍ଯ୍ୟନ୍ତ ଗୀତ ଲେଖିବା ଥିଲା ମୋର କାର୍ଯ୍ୟ । ଏହି ଲେଖା ଲାଗି ରାଜଦ୍ରୋହୀ କବିଭାବରେ ବିଭିନ୍ନ ସମୟରେ ସାତବର୍ଷ ପଥର ପାଚେରୀ ଆଢ଼ୁଆଳରେ ଜୀବନ କଟାଇଛି ।

ମୁଁ ସିନା ଗୀତ ଲେଖେ, ମାତ୍ର ତମେ ମୋର ମୁହଁରେ କାନରେ ନେଇ ଢାଳିଦିଅ । ମୋର ତିନିଜଣ ବନ୍ଧୁ । କର୍ମୀ ନିରଞ୍ଜନ ଆଜି ସ୍ୱର୍ଗରେ । ତମେ ହିଁ ମୋର ବର୍ତ୍ତମାନର ସାଥି ।

## ବନ୍ଧୁଙ୍କ ନୀଳକଣ୍ଠଙ୍କୁ ପତ୍ର

ଭାଇ,

ମୋ' ଦେହରୁ ରକ୍ତ ଶୁଖି ଯାଇଛି । ଆଉ ଆବଶ୍ୟକୀୟ ରକ୍ତ ନାହିଁ । ଥିଲେ କାଳିଗଳିରେ ଏ ଚିଠି ଖଣ୍ଡିକ ଲେଖି ନ ଥାନ୍ତି । ଆଖିରୁ ଲୁହ ମିଶାଇ ଏ ପତ୍ର ଲେଖୁଛି । ୧୯୨୧ ମସିହାରୁ ସତ୍ୟ ଓ ଅହିଂସାର ଆହ୍ୱାନରେ ସୈନିକ ହୋଇ ସ୍ୱାଧୀନତା ଯୁଦ୍ଧରେ ଯୋଗ ଦେଇଥିଲି । ମୋର ନାମାନୁସାରେ ୫୦ ବର୍ଷ ତଳେ ଥିଲି ବୀର । ବର୍ତ୍ତମାନ ହୋଇଛି ସ୍ଥବିର ।

ଆଜିକାଲି କୌଣସି ଦଳରେ ନାହିଁ କି ବଳରେ ନାହିଁ । ଏ ଅର୍ଦ୍ଧ ଶତାବ୍ଦୀର ଯେଉଁମାନେ ବ୍ୟକ୍ତିଗତ ବନ୍ଧୁ-ଯେଉଁ ଦେଶ ସେବକ ତଥା ରାଜନୈତିକ ଯୋଦ୍ଧା ତଥା ଯେଉଁମାନଙ୍କର ନାମ ଓ କାମ ମୋ' ହୃଦୟର କବାଟରେ ଲେଖା ହୋଇ ରହିଛି, ସେମାନଙ୍କୁ କେବେ ଭୁଲି ନାହିଁ ବା ଭୁଲିବି ନାହିଁ ।

ଆଜି ଏହି କଂଗ୍ରେସ ଦଳ ଭିଭି ଯାଇଛି । ତାହା ମୋ' ପ୍ରାଣରେ କି ମର୍ମନ୍ତୁଦ ବ୍ୟଥା ଦେଉଛି ତାହା ବାହାରର ଲୋକେ ଅନୁମାନ କରିପାରିବେ ନାହିଁ । କି ଉତ୍ସାହ ଆନନ୍ଦ ଭିତରେ ଗଢ଼ା ହୋଇଥିଲା, ତାହା ସବୁ ଆଜି ପାଉଁଶ ହୋଇଛି ।

ଶାସନ କଳ ପରିଚାଳନାରେ ତିନୋଟି ବିଷୟ ହେଉଛି ବିଷାକ୍ତ କଣ୍ଟକ । ଏହି ତିନୋଟି ଯାକ ବିଷୟ ଠାରୁ ଦୂରରେ ନ ରହିଲେ ଶାସକମାନେ ଧ୍ୱଂସ ପାଇଯା'ନ୍ତି ।

ତୁମର ପୂର୍ବବର୍ତ୍ତୀ ସରକାରରେ ଏଗୁଡ଼ିକ ପୂର୍ଣ୍ଣଭାବରେ ପ୍ରବଳ ହୋଇଉଠିଲେ । ଶୁଦ୍ଧି ଲୋପ ପାଇଲା ବୁଦ୍ଧି ମଧ୍ୟ ଗଲା । ଯେତେବେଳେ ସରକାର ଗଢ଼ାଗଲା ମୁଁ ସେତେବେଳେ ଭାବିଥିଲି ତମର ଯେ ପ୍ରଧାନ ନାଉରୀ ସେ ଏସବୁ ବିଷୟରୁ ମୁକ୍ତ । ମାତ୍ର କାଳକ୍ରମେ ଦେଖିଲି ନିର୍ବାଚନ ବେଳ ଯେତେ‌ଯେତେ ପାଖେଇ ଆସିଲା ସେତେ

ସେତେ ଗହୁ ପରି ତାଙ୍କର ଛିପସା ବଢ଼ି ବଢ଼ି ଗ୍ଲିଲ । ତୁମ ଜନ କଂଗ୍ରେସ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ମୁଁ ଯେ କିଛି ଶୁଣି ନାହିଁ ତାହା ନୁହେଁ, ମାତ୍ର ଶୁଣା କଥାରେ କିଛି ମୂଲ୍ୟ ନାହିଁ । ଜଣା କଥାରେ ହିଁ ମୂଲ୍ୟ ଅଛି । ସବୁ ମୁଁ ମୋ' ଟିପା ଖାତାରେ ଟିପି ରଖିଛି । ବର୍ତ୍ତିରହିଲେ ସେ ସବୁ ପ୍ରକାଶ ପାଇବ । ଗତ ହାଣ୍ଡିରୁ ଗୋଟିଏ ଟିପି ଦେଖିଛି ତୁମକୁ ଯେତେ ପବର୍ତ୍ତାଇଲେ ସୁଦ୍ଧା ତମେ ସେଥିରେ ପଶିଲ ନାହିଁ । ତମଠାରୁ ସେ ବିଭଗ ଅଲଗା କରି ନିଆଗଲ । ହରିଜନ ଓ ଆଦିବାସୀ ବିଭଗର ଅର୍ଥ ଶୋଷଣ କରଯାଇ କଟକ ଓଡ଼ିଆ ବଜାରକୁ ଗ୍ଲିଲ ।

ମୁଁ ସେତେବେଳେ ଶିଶୁ ସାହିତ୍ୟ ପ୍ରକାଶନୀ ସେକ୍ରେଟାରୀ ଥିଲି । ସେତେବେଳେ ସେ କଥା ଟ୍ୟେକ୍ସଟ ବହିର ମୂଲ୍ୟ ବିଷୟରେ କମିଟିରେ ଯେଉଁ ଆପତ୍ତି କରିଥିଲେ । ମାତ୍ର ଚକ୍ର ଏପରି ଘୂରିଲ ଯେ ମୋ ଆପତ୍ତି ଟି. ପି, ଆଇ. ଅଫିସରୁ ଉଭେଇଗଲ । ତମର ଅଂଶ ପାଇ ସ୍ୱତନ୍ତ୍ରର ଜଣେ ମନ୍ତ୍ରୀଙ୍କୁ ଦେଖା କରିବାକୁ ମୁଁ ଜଣେ ବନ୍ଧୁଙ୍କର କନ୍ୟା (ଡାକ୍ତରଣୀ) ନିଜର ଦୁଃଖ କହିବାକୁ ଯାଇଥିଲି । ତାଙ୍କୁ ହୁକୁମ ହେଲ—ରାତିରେ ଆସି ଦେଖା କର । ସେ ନ ଯିବାରୁ ତାଙ୍କୁ ବାଙ୍କୀର କରଭିଆକୁ ବଦଳି କରଗଲ । ଏହିପରି ଆଉ କେତୋଟି ଉଦାହରଣ ଅଛି । ପୂର୍ବ ମନ୍ତ୍ରୀମଣ୍ଡଳ ପତନ ବେଳେ ମୁଁ ଲେଖିଥିଲି କବିତା ଦୁଇଧାଡ଼ି :

କାମିନୀ କାଞ୍ଚନ କାଦମ୍ବରୀ
ଶାସନ କଳକୁ ଦେଲ ସାରି

ଛାଡ଼ ସେ କଥା । ମନ ଦୁଃଖରେ ତୁମକୁ ଏତକ ଲେଖି ପଠାଇଲି ।

× × × ×

ବନ୍ଦନୀୟେଷୁ,

ମୋର ପୂର୍ବ ପତ୍ର ପାଇଥିବେ । ଚକ୍ର ଏତେ ଚଞ୍ଚଳ ଘୂରୁଛି ଯେ ଅପେକ୍ଷା କଲେ କାର୍ଯ୍ୟସିଦ୍ଧ ହୋଇ ନ ପାରେ । ଅବଶ୍ୟ ଆପଣ ମୋ ଅପେକ୍ଷା ଢେର ବେଶୀ ଭବୁଛନ୍ତି । ଆପଣଙ୍କ ଚିନ୍ତାଧାରରେ ସାମାନ୍ୟ ସାହାଯ୍ୟ କରିବାକୁ ବିଭିନ୍ନ ବନ୍ଧୁମାନଙ୍କୁ ଚିଠି ଲେଖି ଚେତାଇଛୁ; ମାତ୍ର ଜଣା ପଡ଼ୁଛି ପାର୍ଲାମେଣ୍ଟ ନିର୍ବାଚନ ଆଗେ ହେବ । ଆରମ୍ଭରୁ ଯଦି ମିଳାମିଶା ନହୁଏ ମତାନ୍ତର ତଥା ମନାନ୍ତର ବଢ଼ି ଉଠିବ ।

ଯୋଗ୍ୟତା ଅଯୋଗ୍ୟତା ବିଗ୍ଭର ନ କରି ତଥା ଭବିଷ୍ୟତ ଫଳାଫଳ ପ୍ରତି ଦୃଷ୍ଟି ନ ଦେଇ ପ୍ରତ୍ୟେକ ଦଳ ପ୍ରାର୍ଥୀ ଛିଡ଼ା କରଇବେ । ସେ ହେତୁ ଉପରବାଲ କ'ଣ କରୁଛନ୍ତି ଓ ଅନ୍ୟାନ୍ୟ ପ୍ରଦେଶରେ କିଭଳି ମେଣ୍ଟ ବନ୍ଧା-ଯାଉଛି ସେ ଆଡକୁ ଦୃଷ୍ଟି ନ ଦେଇ ଆମ ପ୍ରଦେଶର ଅବସ୍ଥାକୁ ଆଖି ଆଗରେ ରଖି ନିର୍ବାଚନ ବୁଝାମଣା କଲେ ଭଲ ହୁଅନ୍ତା ବୋଲି ଭବୁଛି । ଯେଉଁମାନେ କନ୍‌ଷ୍ଟିଟ୍ୟୁସନ୍ ବଦଳାଇବା ମତବାଦୀ ଏବଂ ତହିଁରେ ସାହାଯ୍ୟ କରିବେ, ସେହିମାନେ ପ୍ରାର୍ଥୀ ହୁଅନ୍ତୁ ।

ମୁଁ ବୁଝୁଛି ପ୍ରାର୍ଥୀ ବାଛିବା କଥାଟି ବଡ଼ କଷ୍ଟକର । ସ୍ୱାର୍ଥତ୍ୟାଗ କରିବାକୁ ସହଜରେ କେହି ରାଜି ହେବେ ନାହିଁ । ମାତ୍ର ନିରପେକ୍ଷ ଭବରେ ଦେଖିଲେ ଆମ ପ୍ରଦେଶର ରାଜନୈତିକ ଉପଯୁକ୍ତ କର୍ମୀଙ୍କ ସଂଖ୍ୟା ବହୁତ ନୁହେଁ । କନ୍‌ଷ୍ଟିଟ୍ୟୁସନ୍‌କୁ ବଦଳାଇ ବ୍ରିଟିଶ୍ ପରିତ୍ୟକ୍ତ ଜଳକୁ ରଖାଗଲେ, ସ୍ୱାଧୀନତାର ଛବି ଆମ ହାତରୁ ଖସିଯିବ । ସତ୍ୟର

ଅଦାଲତରେ ବିଗ୍ଚର କଲେ ପ୍ରତ୍ୟେକ ପ୍ରତିନିଧିଙ୍କର ନିର୍ବାଚନ ଅସିଦ୍ଧ । କେହି ଛାତିରେ ହାତ ଦେଇ କହିପାରିବେ ନାହିଁ ଯେ ସେ ନିର୍ଭୁଲ ନିର୍ବାଚନ ଖର୍ଚ୍ଚର ହିସାବ ଦାଖଲ କରିଛନ୍ତି ବୋଲି । ମୋ' ଆଖି ଆଗରେ ବିଭିନ୍ନ ଦଳର ଯେଉଁ ବିଶିଷ୍ଟ କର୍ମୀମାନଙ୍କ ନାମ ଦେଖାଯାଉଛି ସେହିମାନଙ୍କ ନାମ ତଳେ ଲେଖିଦେଉଛି । ଆପଣ ସେମାନଙ୍କ ସହିତ ବ୍ୟକ୍ତିଗତ ଭାବେ ଆଲୋଚନା କରି ସେମାନଙ୍କର ମନୋଭାବ ମାପି ନିଅନ୍ତୁ । ତା ପରେ ଟିକେ ଗପ୍ପ ଫିଟିବ । ସବୁ ଦଳଠାରୁ ଊର୍ଦ୍ଧ୍ୱରେ ରହି ତଥା ଅଲଗା ରହି ଏ ଗୁରୁତର ବିଷୟଟି ଆଲୋଚନା କରନ୍ତୁ ।

୧–ସୁରେନ୍ଦ୍ର ନାଥ ଦ୍ୱିବେଦୀ, ୨-ବାଙ୍କ ବିହାରୀ ଦାସ, ୩–ଗୁରୁଚରଣ ପଟ୍ଟନାୟକ, ୪-ରାମକୃଷ୍ଣ ପତି, ୫–ଗଙ୍ଗାଧର ପାଇକରାୟ, ୬-ରବି ରାୟ, ୭–ସୁରେନ୍ଦ୍ର ନାଥ ପ୍ରଧାନ, ୮–ଭୈରବ ଚନ୍ଦ୍ର ମହାନ୍ତି, ୯–ଜାନକୀ ବଲ୍ଲଭ ପଟ୍ଟନାୟକ, ୧୦-ବିଜୟାନନ୍ଦ ପଟ୍ଟନାୟକ, ୧୧-ବୀରେନ୍ ଦାସ, ୧୨–ମୋହନ ଦାସ, ୧୩-ରାଜକୃଷ୍ଣ ବୋଷ, ୧୪–ଦିନବନ୍ଧୁ ସାହୁ, ୧୫-ପବିତ୍ର ମୋହନ ପ୍ରଧାନ, ୧୬–ସୁରେନ୍ଦ୍ର ନାଥ ପଟ୍ଟନାୟକ । ଏମାନଙ୍କ ବ୍ୟତୀତ ଆଉ କେତେଜଣ ଥାଇ ପାରନ୍ତି । ପ୍ରାୟ ଆପଣ ସମସ୍ତଙ୍କୁ ଜାଣନ୍ତି । ପଶ୍ଚିମ ଓଡ଼ିଶାର ଖବାକର ସୁପକାର, ବନମାଳୀ ବାବୁ ଇତ୍ୟାଦି ଜନ କଂଗ୍ରେସର ପବିତ୍ର ମୋହନ ପ୍ରଧାନ, ସୁରେନ୍ଦ୍ର ନାଥ ପଟ୍ଟନାୟକ ସମସ୍ତେ ତ୍ୟାଗ ମନୋଭାବ ରଖି ଦେଶର ଭବିଷ୍ୟତ ଅବସ୍ଥା ଚିନ୍ତାକରି ଆପଣଙ୍କ ସହିତ ମନ ଖୋଲି କଥାବାର୍ତ୍ତା ହେଲେ କୌଣସି ଅସୁବିଧା ହେବ ନାହିଁ ।

।। ଇତି ।।

ଆପଣଙ୍କର ସ୍ନେହାଧୀନ

ଶ୍ରୀ ବୀରକିଶୋର

( ଜଣେ ବିଶିଷ୍ଟ ରାଜନୈତିକ ନେତାଙ୍କ ନିକଟକୁ ପତ୍ର )

ଭାଇ ଅଦ୍ୱୈତ,

ତୁମେ ମୋତେ ପଚ୍ଚାରିଛ ବର୍ତ୍ତମାନର ରାଜନୈତିକ ପରିସ୍ଥିତି ବିଷୟରେ ତୁମର ମତ କ'ଣ ସ୍ଥିର କରି କୁହ । ଭାଇ, ମୁଁ ସତକରି କହୁଛି ମୋର ମତ ହେଉଛି ସେହି ସତ୍ୟ ଯେଉଁ ସତ୍ୟ ଓ ଅହିଂସା ବଳରେ ସ୍ୱାଧୀନତାର ରବି ବିଦେଶୀ ସରକାରଙ୍କଠାରୁ ଛଡ଼ାଇ ଆଣିପାରିଥିଲା ଯେ ପଞ୍ଚାକ୍ଷର ମନ୍ତ୍ର ଦେଇଯାଇଥିଲେ । ସତ୍ୟ, ଅହିଂସା ଭାଜର ପ୍ରବଳ ସ୍ରୋତରେ ଶେଷ ତିନି ଅକ୍ଷର ଲିଭିଗଲାଣି । ପଲ୍ଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଯେଉଁ ପ୍ରୀତି ସ୍ନେହ ସୌହାର୍ଦ୍ଦ୍ୟ ମୂଳ ଭିତ୍ତିକରି ଆମ୍ଭେମାନେ ଛବିଶ ବର୍ଷକାଳ ଯୁଦ୍ଧ କରିଥିଲେ ତାହା ସ୍ୱାଧୀନତା ଅସିବାପରେ ପଲ୍ଲୀଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଦେଖିପାରୁ ନାହିଁ ।

ଦୁର୍ଭାଗ୍ୟବଶତଃ ହେଉ ଅବା ସୌଭାଗ୍ୟବଶତଃ ହେଉ ମୁଁ ଆଜିକାଲି କୌଣସି ଦଳରେ ନାହିଁ କି ବଳରେ ନାହିଁ । ୨୧ରୁ ଆସି ୭୧ ହେଲା । ମୋତେ ବି ୨୫ରୁ ଆସି ୭୫ ହେଲା । ଏହି ସୁଦୀର୍ଘ ୫୦ ବର୍ଷ ସୈନିକ ହୋଇ ମୋର ମନର ଭାବ ସଙ୍ଗୀତରେ ଫୁଟାଇ ଆସୁଛି । ପରିବାରଠାରୁ କାରାଗାର ପର୍ଯ୍ୟନ୍ତ ଭାରତ ଜନନୀର ଯଜ୍ଞ ବେଦୀ ପାଖରେ ଶଙ୍ଖ ବଜାଇ ଆସିଛି । ଯଜ୍ଞ ବେଦୀ ପରେ ବସି ପୁରୋଧା ଦେଖିଗଲେ ଯେପରି ଅନ୍ୟ ପିଲା ଉଚ୍ଛନ୍ନ ହୋଇପଡ଼ନ୍ତି, ସେହିପରି ମୁଁ ବିଧାନସଭାକୁ ଥରେ ପ୍ରାର୍ଥୀ ହୋଇଥିଲି । ସୈନିକ ବନ୍ଧୁମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ିବ । ଗ୍ରାମମାନଙ୍କରେ ବୁଲିଲାବେଳେ ଅପରପକ୍ଷ ବନ୍ଧୁମାନଙ୍କୁ ଭେଟିଲେ ମୁଁ ଯେଉଁ ଅସ୍ୱସ୍ତି ବୋଧକଲେ ତାହା ଏଠି

ପ୍ରକାଶ କରିପାରିବି ନାହିଁ । ମୁଁ ଭୋଟ ସଭମାନଙ୍କରେ କୁହେ ଆପଣ ଭୋଟ ଦିଅନ୍ତୁ ବା ନ ଦିଅନ୍ତୁ,ମୁଁ ନିଶ୍ଚୟ ଜୟଯୁକ୍ତ ହେବି । ମୋର ଦୃଢ଼ ବିଶ୍ୱାସ ଆଜିପର୍ଯ୍ୟନ୍ତ ଯାହା ବିଶ୍ୱାସ କରିଆସିଛି କୌଣସିଠାରେ ନିରାଶ ହୋଇ ନାହିଁ । ପ୍ରତ୍ୟେକ ଦଳରେ ମୋର ବ୍ୟକ୍ତିଗତ ବନ୍ଧୁ ଅଛନ୍ତି । ଯେଉଁମାନଙ୍କ ସାଥିରେ କାନ୍ଧମିଳାଇ ମୁଁ ୩୮ ବର୍ଷ କାମ କରିଆସିଥିଲି । ଆଉ ବିଶେଷ କିଛି କହିବି ନାହିଁ । ଆପଣଙ୍କ ପ୍ରତିନିଧି ନିଶ୍ଚୟ ହେଉଛି ମୋର ପ୍ରତିଦ୍ୱନ୍ଦୀ ବନ୍ଧୁମାନେ ମୋ ବିରୁଦ୍ଧରେ କୌଣସି ପ୍ରକାର ବ୍ୟକ୍ତିଗତ କୁତ୍ସା ରଚନା କରିନାହାନ୍ତି । ମୁଁ ଭଲରୂପେ ଜାଣେ ଗୋଟିଏ ଦଳର ଦୁଇ ଜଣ ବିଶିଷ୍ଟ କର୍ମୀ ମୋ ବିରୁଦ୍ଧରେ ଗୋଟିଏ କଥା ପ୍ରଚାର କରୁଥାନ୍ତି । ଆଉ ଅଢ଼େଇ ବର୍ଷ ଅଛି ନୀଳମଣି ବାବୁ ଚାଲିଗଲେ ଏମାନଙ୍କୁ ଯଦି ଭୋଟ ଦିଅ ତେବେ ଆଉ ଗୋଟିଏ ନିର୍ବାଚନ ହେବ ।

ମୁଁ ଲୋକ ପ୍ରତିନିଧି ହେଲି ସତ ମାତ୍ର ସେଥିରେ ମୋର ମନ ସ୍ଥିର ହେଲା ନାହିଁ । ଘାସକୁ ଲାଗ ପାଳକୁ ଛୋଟ ହେଲି । ସେଠି ବସି ଲେଖିଲି—ବଡ଼ା ନାହିଁ ଦଳ, ତୁଟା ନାହିଁ ବଳ, ଦଳ କରିଦେବ ଦେଶକୁ ଦୁର୍ବଳ, ଭୋଟ ବାକ୍ସ ନୁହେଁ ଆମ ମାପକାଠି, ସେବକ ନ ଖୋଜେ କିଏ କେଉଁ ପାର୍ଟି ।

ଗଣତନ୍ତ୍ର ଅର୍ଥ ନୁହେଁ ଟଣାଟଣି
ସାମ୍ୟବାଦ ଅର୍ଥ ନୁହେଁ ହଣାହଣି
ଶାନ୍ତିଶୃଙ୍ଖଳାର ଅର୍ଥ ନୁହଇତ ଗାରଦେ ଠୁଙ୍କିବା ନେଇ

ଭାଇ ! ତମେ ଯେଉଁଦିନ ମୋତେ ସ୍ୱାଧୀନତା ସଂଗ୍ରାମୀ ସୈନିକମାନଙ୍କ ସଭାରେ ସଭପତି କଲ, ସେଦିନ ସବୁ ଦଳର ସଂଗ୍ରାମୀମାନଙ୍କୁ ଦେଖି ପ୍ରାଣରେ ଯେଉଁ ଆନନ୍ଦ, ଉତ୍ସାହ ଓ ଉଦ୍ଦୀପନା ଆସିଥିଲା; ତାହା ଏଠି ମୁଁ ପ୍ରକାଶ କରିପାରିବି ନାହିଁ । ଅଢ଼େଇ ବର୍ଷ କାଳ ଏମ୍. ଏଲ୍. ଏ. ଥାଇ ମୋର ଏତିକି ଅନୁଭୂତି ହେଲା, ବ୍ରିଟିଶ ଜାତି ଯେଉଁ ଅମଲାତନ୍ତ୍ର କଳ ବସାଇଛନ୍ତି ତାହା ନ ବଦଳିଲେ ଦେଶର ଅର୍ଥନୈତିକ ସ୍ୱାଧୀନତା ଆସିବ ନାହିଁ । ନିଜେ ମହାତ୍ମାଗାନ୍ଧୀ ମଧ୍ୟ ରାଷ୍ଟ୍ରପତି ହେଲେ କିଛି କରିପାରିବେ ନାହିଁ । ମୁଁ ପରବର୍ତ୍ତୀ ନିର୍ବାଚନରେ ଯୋଗ ଦେଇ ସେ ମହାର୍ଘ ବହୁଦର୍ଶିତାର ଆକାଙ୍‌କ୍ଷୀ ହେଲି ନାହିଁ । ଗୋଟିଏ ଛୋଟ କଥା ଏଠି ଲେଖିବାକୁ ବାଧ୍ୟ ହେଉଛି ମୋ ନିର୍ବାଚନ ମଣ୍ଡଳୀରୁ ଯେଉଁ ଭୋଟର ବନ୍ଧୁମାନେ ଆସନ୍ତି ସେମାନଙ୍କୁ ଜଳପାନ ଯୋଗାଇବାରେ ଯାହା ଖର୍ଚ୍ଚ ହେଉଥିଲା ସେ ଖର୍ଚ୍ଚ ବାବଦରେ ଯେଉଁ ୨୩ ଟଙ୍କା (ତେଇଶ ଟଙ୍କା) ବାକି ଥିଲା ତାହା ଏକ ବର୍ଷ ପରେ ସୁଝିଲି । ଏକମାସ ହେଲା ମୋର ବନ୍ଧୁ ରଘୁସାହୁଙ୍କ ଘରେ ପାଣ୍ଠି ବଳ ନଥିଲେ ବା ଦଳରେ ତଥା କଳର ପିଛାନଧରିଲେ ସେ ଏମ୍. ଏଲ୍. ଏ. ପଦଦ୍ୱାରା ନିଜର କୁଟୁମ୍ବ ଭରଣ ପୋଷଣ ଅସମ୍ଭବ । ତମେ ତ ଜଣେ ସାମ୍ବାଦିକ କେଉଁ କଥା ବା ତୁମକୁ ଅଗୋଚର ।

କବି ଲେଖିଛନ୍ତି, "ଅନ୍ୟ ନାମ ତାର ଅଟଇ ପୁଲିସ, ବିନା ଦୋଷେ ସୃଜି ପାରଇ କୁଳିଶ ।" ମୁଁ କହୁଛି ଅନ୍ୟ ନାମ ତାର ଅଟେ ସାମ୍ବାଦିକ, ବିନା ଆଲୁଅରେ ଦିଅନ୍ତି ଆଲୋକ । ସ୍ୱାଧୀନତା ଆସିବା ପରେ ଓ ଶାସନ କ୍ଷମତା ହାତରେ ପଡ଼ିବାପରେ ତଥା ଦଳ ନାରେ ସବୁବେଳେ ଟଙ୍କା ଖାଇଯିବା କଥା ପ୍ରଶ୍ନ ଉଠୁଛି । ମୋର ଅଭିଜ୍ଞତା ମନୁଷ୍ୟ ଟଙ୍କା ଖାଏନା ଟଙ୍କା ମନୁଷ୍ୟକୁ ଖାଇଯାଏ ।

ଭଉଣୀ ମାଳତୀ ଦେବୀ, ଭାଇ ନବବାବୁ,

ମୋର ଅନ୍ତରର ପ୍ରୀତି ସମ୍ଭାଷଣ ଗ୍ରହଣ କରିବେ । ସ୍ୱପ୍ନରେ ଦେଖାହେଲାପରି ତମେ ମୋତେ ଦେଖା ଦେଇ ଚାଲିଗଲ । ମୁଁ ତୁମ କଥା ଥରେ ଥରେ ଭାବେ । ମନେହୁଏ ଆଉଥରେ ଯାଇ ତମମାନଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ମନର ଦୁଃଖ ପ୍ରକାଶ କରନ୍ତି କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ମୁଁ ଏଠାରେ ବନ୍ଦୀ ଜୀବନ ଯାପନ କରୁଛି । ଅତୀତ ସ୍ମୃତିକୁ ପାଛୁଳି କରୁଛି । ମୋଠାରୁ ବୟସରେ ବଡ଼ ବୟସରେ ସାନ ବନ୍ଧୁ କେତେ ଚାଲିଗଲେଣି । କେଉଁଆଡ଼େ ଗଲେଣି ସେ କଥା କହିପାରିବି ନାହିଁ । ଖାଲି ମନରେ ସାନ୍ତ୍ୱନା ଦେଉଛି ଶଙ୍କରାଚାର୍ଯ୍ୟଙ୍କ ବାଣୀ—

'ପୁନଃରେପି ମରଣଂ
ପୁନଃରେପି ଜନନୀ ଜଠରେ ଶୟନଂ'
ଥରେ ଲେଖି ପକାଇଥିଲି—
'ମନୁଷ୍ୟର ଆତ୍ମା ମରେ ନାହିଁ କେବେ
ଥିବାଯାଏ ତାର ମନରେ ଆଶା
କବିର ଜୀବନ ସରେ ନାହିଁ କେବେ
ଥିବା ଯାଏ ଜାତି ମହିରେ ଭଷା ।

ତେବେ କ'ଣ ସମସ୍ତଙ୍କର ମନର ଆଶା ପୂରଣ ହେଉଛି ? ମହାମାନବଙ୍କର ମନର ଆଶା କ'ଣ ପୂରଣ ହୋଇଥିଲା । ସେ ଆମକୁ ଛାଡ଼ି ଦେଇ ଚାଲିଗଲେ । ତାଙ୍କ ମନରେ ନିଶ୍ଚୟ ଆଶା ଥିବ, ବିଷ ବାଷ୍ପବାହୀ ବୋମା କବଳରୁ ଏକ କ୍ଷୁଦ୍ର ଜୀବଜଗତଟି ମୁକ୍ତି ପାଉ । ସେ କହିଥିଲେ ମୁଁ ଶହେ ପଚିଶ ବର୍ଷ ବଞ୍ଚିବି, ମାତ୍ର ମୁଁ ଜାଣେ ନାହିଁ ମୋତେ କିଏ କହିଦେଲା ମୁଁ ଲେଖି ପକାଇଲି,

ସେହି ଗାନ୍ଧୀ ହାଡ଼ ଗାନ୍ଧୀର ରକତ
ଫେରାଇ ଆଣିବ ସ୍ୱାଧୀନ ଭାରତ,
ବେଶୀ ଡେରି ନାହିଁ ପଳାଇଯିବ ସେ
ସାରା ପୃଥିବୀକୁ ବାଟ ଦେଖାଇ ।

ସେ ଯେଉଁ ବାଟ ଦେଖାଇଛନ୍ତି ଆମେ କ'ଣ ସେ ବାଟରେ ଚାଲୁଛୁ । ଆମେତ ଚାଲିପାରୁନାହୁଁ । ଆମେ ତାଙ୍କର ଶିଷ୍ୟ ପ୍ରଶିଷ୍ୟ ତାଙ୍କୁ ଠକି କେବଳ ମୂର୍ତ୍ତିଗଢ଼ି ତାଙ୍କ ଲେଖା ଛପାଇ ତାଙ୍କ ନୀତିକୁ ଧପାଇ ନିତି ଆମ ବାଟରେ ଆମେ ପାଦ ପକାଉଛୁ । ଗଡ଼୍‌ସେ ତାଙ୍କୁ ଥରେ ଗୁଳି କଲା ଆମେ ପ୍ରତିଦିନ ତାଙ୍କୁ ଗୁଳି କରୁଛୁ । ଆମେ ତାଙ୍କର ଗୋଟିଏ କଥା ହେଲେ କିଛି ପୁରା କଲୁ ନାହିଁ ।

ଏହା ଲେଖିଲା ବେଳକୁ ଆଖିରୁ ଲୁହ ଝରୁଛି, ମୋ'ର ହାତ ଥରୁଛି । ମୁଁ ଲେଖିଥିଲି,

ଆମ ହାତରେ ନ ଥିଲା ତରବାରୀ
ଆମେ ହୋଇତ ନ ଥିଲୁ ହରବାରୀ

ପାଞ୍ଚ ହାତି ଖଣ୍ଡି ପିନ୍ଧା ସେ [ନାରୀ
ଆମ ନାହାକୁ ଆଣିଲ କାତ ମାରି ।"

ମହାତ୍ମା ଗାନ୍ଧୀ ଯେତେବେଳେ ଗୋଲ ଟେବୁଲରୁ ଫେରିଲେ ସେତେବେଳେ ମୋର ମନେ ଅଛି Cuttack Town Hall ପଡ଼ିଆରେ ଗୋଟିଏ ବଡ଼ ସଭା ହୋଇଥିଲା । ତହିଁରେ ନବବାବୁ ଓ ମେ ସଭପତି ହୋଇଥିଲ । ସେ ସଭା ଲାଗି ମୁଁ ଗୀତ ଲେଖିଥିଲି,

ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ
ଆସ ମୋ' ଶିବିରେ ଆସ ଭାଇ
ହିମାଚଳ ଶିରୁ ଶବଦ ଶୁଭଇ
ଡେରି ନାହିଁ ଆଉ ଡର ନାହିଁ ।

ଅରିତ ଫେରିଗଲା । ଯୁଦ୍ଧ ସରିଗଲା କି ? ବିଶ୍ୱବନ୍ଧୁ ଦରିଆ ସେ ପାଖରୁ ଚାବିଟା ଆଣି ଆମ ହାତରେ ଦେଇଗଲେ । ତାହା କିପରି ଫିଟିବ ତାର ବାଟ ବତାଇ ଦେଲେ । ମାତ୍ର ଆମେ ତାହା ଖୋଲିବାକୁ କେହି ସମର୍ଥ ହେଉ ନାହୁଁ । ଭୁବ ହାତରେ ପଡ଼ିବା କ୍ଷଣି ଆମେ ସବୁ ପାଗଳ ହୋଇଗଲୁ । ଅତି ବ୍ୟଗ୍ର ହୋଇ ଅମୃତ ଖାଇବା ଆଶାରେ ରାହୁକେତୁ ପରି ଦ୍ୱିଖଣ୍ଡ ହେଲୁ । ମହାତ୍ମାଜୀଙ୍କ କଳ୍ପିତ ଆଶାରେ ଛୁରୀ ଚଳାଇ ଦେଲୁ । ସେ ଅଖଣ୍ଡ ଭାରତରେ ବର୍ଣ୍ଣ ରହିଥିଲେ ବିବେକାନନ୍ଦଙ୍କ ପରି ରବୀନ୍ଦ୍ରନାଥଙ୍କର ସମଗ୍ର ବିଶ୍ୱ ଆକାଶରେ ଉଡ଼ି ବୁଲିଥାନ୍ତେ । ତାଙ୍କର ପ୍ରାଣର ଆହ୍ୱାନ ବିଶ୍ୱ ବାସୀଙ୍କ ମନରେ ଜାଳି ଦେଇଥାନ୍ତେ । ଆଜି ଆଉ ପଞ୍ଚ ଗ୍ରହଙ୍କ କୂଟରେ ଜାତିସଂଘ ଛାତି ଥରୁ ନ ଥାନ୍ତା । ମୁଁ ଯେତେବେଳେ ହଜାରିବାଗ ଜେଲରେ ଥିଲି ଲେଖିଥିଲି

" ଆଖି ଆଗେ ମୋର ଦିଶେ ଢଳ ଢଳ
ସ୍ୱାଧୀନତା ସ୍ରୋତ ଆସଇ ପ୍ରବଳ
ଆଷାଢ଼ ମାସର ନଇ ବଢ଼ି ପାଣି
ହେଲେ ରହି ବନ୍ଧୁ ତମେ ଯୁବା ଜନ ପିଇବକି
ତମ ଛାତି ହାଡ଼ ଉଜାଡ଼ି ନ ଦେଲେ ଜଗତର ଭାଗ୍ୟ ଫେରିବ କି ?
ଧନୀ ମହାଜନ ରଜା ଜମିଦାର
ତ୍ୟାଗ ମାଳି ଧରି ହୋଇବେ ବାହାର
ଗେରୁଆ ବସନ, ମଧୁର ବଚନ
ଶୁଣି ତମ ନୀତି ଭୁଲିବକି
ଚାଷୀ ମୂଲିଆଙ୍କ ଖପୁରିକି ଛୁରି ଦିଲ୍ଲୀ ଦରବାର ତୋଳିବକି ।

ଆଜି ତ ଯାହା ହେଉ ତମେ ଆଖି ଆଗରେ ଦେଖୁଛ । ମହତାବବାବୁ ଦିଥର ଚେଷ୍ଟା କଲେ । ପଥରକୁ ପାଣି ସାଙ୍ଗରେ ମିଶାଇ ସରବତ କରିବେ ବୋଲି ଭାବିଲେ । ମାତ୍ର ତାହା ହୋଇପାରିଲ ନାହିଁ । ବରଫ ସିନା ବାଲୁଭୂତ ମୂରତି ହୋଇ ବସିଛନ୍ତି । ତାଙ୍କୁ ଦେଖିଲାବେଳକୁ ଦୁଃଖ ଲାଗୁଛି । ସେ ଗୋଟାଏ ଜୀବ ଯେତେ ତୀର୍ଥ

ବ୍ରତ କଲେ ସୁଦ୍ଧା ରାଜନୈତିକ ଜିବାସ୍ତୁ ତାଙ୍କ ରକ୍ତରୁ ଯିବ ନାହିଁ । ଯେତେ ସାହିତ୍ୟ ସେବା ଚନ୍ଦନ ଆଣି ବୋଳିଲେ ସୁଦ୍ଧା ତାଙ୍କର ଉତପ୍ତ ଶରୀର କେବେ ଶୀତଳ ହେବ ନାହିଁ ।

ତମେ ତ ତାଙ୍କର ଜଣେ ବନ୍ଧୁ ୧୯୧୬ ମସିହାରୁ ସାଥି । ତାଙ୍କୁ କ'ଣ ଏ ସଙ୍କଟରୁ ଟିକେ ସାହାଯ୍ୟ କରିବ ନାହିଁ । ପୁରାତନ କର୍ମୀମାନଙ୍କ କଥା ପଢ଼ୁ ପଢ଼ୁ ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ କହିପକାଇଥିଲେ ।

ଦରପୋଡ଼ା କାଠରେ ନିଆଁ ଲାଗେ ନାହିଁ । ସେ ସେତେବେଳେ ଭାବି ପାରିଲେ ନାହିଁ । ଥରେ ଥରେ ଦର ପୋଡ଼ା କାଠ ଭିତରେ ନିଆଁ ଲୁଚି ରହିଥାଏ । ନୂଆ କାଠ ସଂଗ୍ରହ କରି ଯେଉଁ ନିଆଁ ଜାଳିଲେ ତହିଁରୁ ଧୂଆଁ ବାହାରେ । ତାଙ୍କ ଆଖିରୁ କେତେ ପାଣି ଗଡ଼ାଇଲା ତମେମାନେ ଦେଖିଛ ।

ଆଜି ରାଷ୍ଟ୍ରପତି ଶାସନ ଜାରୀ ହେଲା । ମତେ ବଡ଼ ଅସ୍ୱସ୍ତି ବୋଧ ହେଉଛି । ଦେବୀମେଢ଼ ପାଣିରେ ପକାଇ ସାରିଲା ପରେ ଯେପରି ଶୁନଶାନ୍ ଲାଗେ, ସେପରି ଲାଗୁଛି । ଆମର ପୁରାତନ ବନ୍ଧୁ ଯେଉଁ ଲୋକମାନଙ୍କ ସହିତ କାନ୍ଧ ମିଳାଇ ଯୁଦ୍ଧ କରୁଥିଲେ । ଭିକ ଝୁଲି ଧରି ଦୁଆରେ ଦଆରେ ବୁଲୁଥିଲୁ, ଯେଉଁମାନଙ୍କ ଆଖିରେ ଲୁହ ଦେଖିଲେ ରକ୍ତ ତାତି ଉଠୁଥିଲା, ପୁଣି ସେହିମାନେ ଯଦି ଏକାଠି ମିଳିମିଶି ଏକ ମନହୁଏ, ପୁଣି ସେହିମାନେ ଯଦି ଆସନ୍ନ ସଙ୍କଟରୁ ରକ୍ଷା କରନ୍ତେ ତେବେ ସେ ଟିକେ ଆଶ୍ୱସ୍ତ ହୁଅନ୍ତେ । ତମେ ତ ସେବକ ସେବିକା ତମେ ମର୍ମେ ମର୍ମେ ଅନୁଭବ କରିଛ ।

ଭୋଟ ବାକ୍ସ ନୁହେଁ ଆମ ମାପ କାଠି
ସେବକ ନ ଖୋଜେ କିଏ କେଉଁ ପାର୍ଟି

ମୁଁ ବୁଝି ପାରୁନାହିଁ, ବନ୍ଧୁମାନେ ସୁବର୍ଣ୍ଣରେଖା ଆରପାରିକି ଆଖି ନପକାଇ ଆମ ଦେଶର ଶିକ୍ଷିତ ବେକାର ଯୁବକମାନଙ୍କର ମୁହଁକୁ ନ ଅନାଇ ଆସନର ଚିନ୍ତା କରୁଛନ୍ତି । ପ୍ରତ୍ୟେକ ଭାବୁଛନ୍ତି କିଏ କେଉଁଠି ଛିଡ଼ା ହେବ, କି ଉପାୟରେ ଅର୍ଥ ସଂଗ୍ରହ କରାଯିବ । କିପରି ପୁଣି ଆସି ସଭା ଗୃହରେ ବିଜୁଳି ପଙ୍ଖା ତଳେ ବସିବେ । ନକ୍ସଲପନ୍ଥୀ ମାନେ ଗାନ୍ଧୀ ମୂର୍ତ୍ତୀ ଭାଙ୍ଗି, ବିଶ୍ୱବିଦ୍ୟାଳୟ ହତାରେ ନିଆଁ ଲଗାଇ ଆମମାନଙ୍କୁ ଚେତାଇ ଦେଉଛନ୍ତି । ତମେ ଗାନ୍ଧୀ ନୀତିକୁ ନିତି ହତ୍ୟାକରି ଲୋକଙ୍କୁ ଠକାଇ ଲୁହ ଗଡ଼ାଉଛ । ଫୁଲ ହାର ଦେଉଛ ! ତାହା ଅପେକ୍ଷା ମୂର୍ତ୍ତିକୁ ଭାଙ୍ଗି ତାଙ୍କ ସ୍ମୃତିକୁ ଆମ୍ଭମାନଙ୍କ ପ୍ରଦେଶର ହତାଶ ଯୁବକଙ୍କର ନାସାରୁ ଯେଉଁ ତପ୍ତଶ୍ୱାସ ବହୁଛି । ତାହା ଆମ୍ଭମାନଙ୍କର ସବୁ ଭବିଷ୍ୟତ କଳ୍ପନାକୁ ଭସ୍ମୀଭୂତ କରିଦେବ । ମୋର ତମମାନଙ୍କ ନିକଟରେ ବିନମ୍ର ନିବେଦନ । ତମର କର୍ତ୍ତବ୍ୟ ଅବଧାରଣ କର । ( ଇତି )

ତୁମର ସ୍ନେହାକାଂକ୍ଷୀ ବନ୍ଧୁ
ବୀରକିଶୋର

ଭାଇ ସୁରେନ୍ଦ୍ର,

ଚଳିତ ସରକାର ଯେତେବେଳେ ଗଢ଼ାଗଲା ମୋ ମନରେ କି ଆନନ୍ଦ କି ଆଗ୍ରହ ତାହା ତୁମେ ଅନୁମାନ କରିପାରିବ ନାହିଁ । ତମେ ସବୁ ଶପଥ ନେଲା ଦିନ ମୁଁ ଗୋଟାଏ ଅଭିନନ୍ଦନ ପତ୍ର ଛପାଇ ବାଣ୍ଟିଥିଲି ତହିଁରେ ଥିଲା–

କାମିନୀ କାଞ୍ଚନ କାଦମ୍ବରୀ
ଶାସନ କଳକୁ ଦିଏ ସାରି
ଠିକ୍ ଠିକ୍ ତମେ ପାଇଛ ଯେ' ଶିକ୍ଷା
ଏ ଥର ପଡ଼ିଛି ଶେଷ ପରୀକ୍ଷା ।

ଆଜି ଆମ ପ୍ରଦେଶର ଦୂର୍ଦ୍ଦଶା ଦେଖି ମୁଁ ବ୍ୟଥିତ । ଜନ କଂଗ୍ରେସର ଦଳ ନାଗ ଚୂଡ଼ୁନ୍ଦରଙ୍କୁ ଧରିବା ଅବସ୍ଥାରେ ପଡ଼ିଛି । ତମର ଉପାଧିପତ୍ର ନଥିଲେ ସୁଦ୍ଧା ତମର ବିଭୁଦର ଧାଶକ୍ତି ତମକୁ ବାଟେଇ ନେଇଯାଉଛି । ମୁଁ ବହୁକ୍ଷେତ୍ରରେ ଦେଖିଛି ତମେ କାତମାରି ଭଇଁରୀକୁ କଚୁରେଇ ଦେଇ ଡଙ୍ଗାକୁ ଆଗେଇ ନେଇ ଗ୍ଲଲିଯାଅ । ସେଭଳି ଦକ୍ଷତା ଆମ କଂଗ୍ରେସ କର୍ମୀ ଭିତରେ କ୍ବଚିତ୍ ଅଛି । ଗୋଟିଏ ଘଟଣା ଆଜି ମୁଁ ଲେଖୁଛି । ମଁ ଯେତେବେଳେ ଏମ୍.ଏଲ.ଏ. ଥିଲି ସେତେବେଳେ ସୁନ୍ଦରଗାଁ ହାଇସ୍କୁଲକୁ ପୁରସ୍କାର ବିତରଣୀ ସଭାକୁ ସାଙ୍ଗରେ ନେଇ ଯାଇଥିଲି । ସଭା ସାଙ୍ଗ ହେବା ପରେ ଖାଇବାକୁ ପତ୍ର ପଡ଼ିଲା ବେଳେ ଆମ ଦୁଇ ଜଣଙ୍କ ପାଇଁ ଘରେ ଚୌକି ଟେବୁଲ ପଡ଼ି ବସିବାର ବ୍ୟବସ୍ଥା ହୋଇଥିଲା । ମାତ୍ର ରଜା ସେଠି ନ ବସି ସାଧାରଣ ଲୋକଙ୍କ ସହିତ ପଦାରେ ପତ୍ରରେ ଖାଇ ବସିଲେ । ମୁଁ ସେଇଦିନ ଅନୁମାନ କରିଥିଲି ଏ ଦିନେ ମନ୍ତ୍ରୀ ଆଜ ହେବେ । ସତକୁ ସତ ତାହା ହିଁ ଘଟିଲା । ଇତିହାସରୁ ଦେଖାଯାଏ ବଡ଼ ବଡ଼ ବ୍ୟକ୍ତିଙ୍କୁ ତାଙ୍କର ଶିଷ୍ୟ ପ୍ରଶିଷ୍ୟ ତଥା ଦଳ ଲୋକେ ହିଁ ତାଙ୍କୁ ବୃଦ୍ଧିଆଣୀ ଜାଲରେ ମାଛି କରି ଦିଅନ୍ତି । ତାଙ୍କ ଦଳର ଦୁଇ ଜଣଙ୍କର କାରବାର ମୁଁ ଯେଉଁ ଦିନ ଅନୁଭବ କରିଥିଲି । ସେ ଦିନ ମୋର ଧାରଣା ହେଲା, ଏମାନଙ୍କ ପତନ ଅବଶ୍ୟମ୍ଭାବୀ । ମୋର ନିଜର ଜଣେ ବନ୍ଧୁଙ୍କର କନ୍ୟା ବାଙ୍କୀରେ ଡାକ୍ତରଣୀ ଥିଲେ । ତାଙ୍କର ଦୁଃଖ ଜଣାଇବା ଲାଗି ଦରଖାସ୍ତ ନେଇ ମନ୍ତ୍ରୀଙ୍କ ପାଖକୁ ଗଲେ ସେ ଆଦେଶ ଦେଲେ ମୁଁ ଦରଖାସ୍ତ ଏହିକ୍ଷଣି ନେବି ନାହିଁ । ତୁମେ ଘଣ୍ଟା ୮ ଘଣ୍ଟା ସମୟକୁ ଆସ । ସେ ଘଡ଼ିକୁ ଗଲେ ନାହିଁ । ତାଙ୍କୁ ୨୮ ଘଣ୍ଟା ସମୟ ମଧ୍ୟରେ କରଞ୍ଜିଆକୁ ବଦଳି କରାଗଲା । ଆଉଜଣେ ଏମ.ଏଲ.ଏ.ଙ୍କ ସୁପାରିଶ ଆଣିବା ସକାଶେ ମୁଁ ଜଣେ ବନ୍ଧୁଙ୍କୁ ତାଙ୍କ ନିକଟକୁ ପଠାଇଥିଲି । ସେ ପରିଷ୍କାର ଭାବରେ କହିଲେ–କାଲିତ ଦୋଳ ପୂର୍ଣ୍ଣିମା ହେବ । ଆଉ ଦୋଳ ଖର୍ଚ୍ଚ ଦିଅ । ସେ ବିଚରା ୧୦୦ ଟଙ୍କା ଦେଇ ଆସିଲା । ମାତ୍ର ଦୌଡ଼ିଦୌଡ଼ି ତାର କିଛି ହେଲା ନାହିଁ । ତମେ ତ ଚତୁର ଲୋକ । ତୁମକୁ ଆଉ ଚେତାଇ କହିବି କ'ଣ ? ଏହା ତ ନିଶ୍ଚିତ ଜନକଂଗ୍ରେସ ଦଳ ସରକାରରୁ ଓହରି ଆସିଲେ ସରକାର ତ ସହଜେ ଭାଙ୍ଗିବ ନାହିଁ । ଜନକଂଗ୍ରେସ ହିଁ ମିଳେଇ ଯିବ । ତୁମ ଦଳର ତ କାଲି ମିଟିଂ ଅଛି । ବୋଧହୁଏ ମହତାବବାବୁ ଯୋଗଦେବେ ନାହିଁ । ସବୁ ଦାୟିତ୍ୱ ତୁମ ଉପରେ ଓ ପବିତ୍ରବାବୁଙ୍କ ଉପରେ ପଡ଼ିବ । ତମେମାନେ ଓହରି ନଯାଇ ସରକାରରେ ରହିଲେ ନିନ୍ଦା ଉଠିବ, ଲୋକେ କେତେକଥା କହିବେ । ମାତ୍ର ତମ ନିନ୍ଦା ସାଥିରେ ଦେଶ ଲୋକଙ୍କର ଦୂରବସ୍ଥା ତଥା ଭାବି ସଙ୍କଟ ବିଷୟ ବିବେଚନା କରିବାକୁ ପଡ଼ିବ । ଆମ ଆଖି ଆଗରେ ଆମ ପଡ଼ୋଶୀ ପ୍ରଦେଶରେ ଯେଉଁ ଭୟାବହ ଘଟଣାମାନ ପ୍ରତିଦିନ ଘଟୁଛି, ତାକୁ ଲୋପ କରିବା ସକାଶେ ପଲ୍ଲୀ ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଚିନ୍ତିତ ହୋଇ ପଡ଼ିଲେଣି । କେଉଁ ମୁହୂର୍ତ୍ତରେ ସେ ନିଆଁ ଛିଟିକି ଆସି ଆମ ଉପରେ ନ ପଡ଼ିବ ତାହା କିଏ କହିବ ?

ଆଖିରେ ଦେଖିଛି ଥରେ ଆମ ବଡ଼ବାଗର ଗୋଟିଏ ସାହିରେ ନିଆଁ ଲାଗିଲା ତାକୁ ଦେଖି ଅନ୍ୟ ସାହି ବାଲା ବାଲ୍‌ତି, ନୋଟା ଓ ଗରରେ ପାଣି ଆଣି ଜୀବନ ବିକଳରେ ଗାଈ ଗୋରୁ ଫିଟାଇବାରେ ବ୍ୟସ୍ତ ରହିଲେ । ସେତେବେଳେ ଦୁଇ ଜଣଙ୍କର କଟକରେ ଭୀଷଣ ମାଲିମୋକଦ୍ଦମା ଗ୍ଲଲିଥାଏ । କେହି କାହାରିକୁ ପାଟି ଫିଟାଉ

ନଥାନ୍ତି । କିନ୍ତୁ ସେହିଦିନ ଏକାଠି ହୋଇ ପାଣ ବୋହୁଥାନ୍ତି । ସେହିପରି ବର୍ତ୍ତମାନ ପରିସ୍ଥିତିରେ ସମସ୍ତେ ମିଳିମିଶି ବସି ବିଚାର କର ଆବଶ୍ୟକ ହେଲେ ମିଳିତ ସରକାର ଗଢ଼ିବାର ଉଦ୍ୟମ କର । ତା' ନହେଲେ ରକ୍ତଗଙ୍ଗା ବହିବ । ଦଳଠାରୁ କଳ ପର୍ଯ୍ୟନ୍ତ ସେହିଥିରେ ସ୍ନାନ କରିବେ । ବିଷ ବାଷ୍ପ ଭୟରେ ପୃଥିବୀ ଯେପରି କାତର ଚିନ୍ତିତ, ସେହିପରି ଚିନ୍ତାକରିବା ଉଚିତ୍ ।

ବନ୍ଧ୍ୟା ନାରୀ ପ୍ରସବ ବେଦନା ଜାଣେ ନାହିଁ । ଯେତେବେଳେ ଆମ୍ଭେମାନେ ଜେଲରେ ରହୁଥିଲେ–ନାନାବିଧ ଅତ୍ୟାଚାର ସହ୍ୟ କରୁଥିଲେ–ସେତେବେଳେ ଯେଉଁମାନେ ବିଦାୟୀ ସରକାରକୁ ସାହାଯ୍ୟ କରୁଥିଲେ ସେମାନଙ୍କ ସହିତ ଅବସ୍ଥା ଚକ୍ରରେ ପଡ଼ି ହାତ ମିଳାଇବାକୁ ପଡ଼ିଥିଲା । ଯେଉଁମାନେ ଆମ ସହିତ କାନ୍ଧକୁ କାନ୍ଧ ମିଶାଇ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ତଥା ଶେଷ ପର୍ଯ୍ୟନ୍ତ ଲଢ଼ିଥିଲେ, ସେମାନଙ୍କ ସହିତ ମିଶି ଆଗେଇ ଚାଲିଲେ ଅସଂଗତ ଓ ଅସୁବିଧା କିଛି ହେବ ନାହିଁ ବୋଲି ମୋର ସଂପୂର୍ଣ୍ଣ ଧାରଣା ଆଜି ସମାଜକୁ ପଢ଼ିଲି ଯେ ଯୁଗର ଜଣେ କର୍ମୀ ମୋହନ ଦାସ ଏହି ମର୍ମରେ ଟିକେ ସୂଚନା ଦେଇଛନ୍ତି । । ଇତି ।

ତୁମର ଶୁଭେଚ୍ଛୁ ବନ୍ଧୁ
ବୀରକିଶୋର

ସଙ୍ଗାତ,

ତୁମକୁ କଣ ଲେଖିବି ? ତମର ମନର ଅବସ୍ଥାତ ବର୍ତ୍ତମାନ ଯେପରି ମୁଁ ବୁଝି ପାରୁଛି । ତେବେ ଏତିକି ଅନୁରୋଧ, ତମେ ତମର ଶାରଦା ଅପାକୁ ବୁଝାଇବ । ସେ ଯେପରି ମୋ ପାଇଁ ବ୍ୟସ୍ତ ନ ହୁଏ । ମୋର ଦୃଢ଼ ବିଶ୍ୱାସ ସମସ୍ତେ ଡିସେମ୍ବର ପୂର୍ବରୁ ଖଲାସ ହେବୁ । କଣ କରିବି, ଏକ ବିଦ୍ୟା ସୁରକ୍ଷିତା ଭବରେ ଗୋଟାଏ ବିଷୟରେ ଦଶବର୍ଷ ହେଲା ଲଗିଛି । ବର୍ତ୍ତମାନ ଯଦି ଜାମିନ୍ ନେଇ ରହିବି, ତେବେ ଲୋକ ନିନ୍ଦା ହେବ । ଈଶ୍ୱରଙ୍କୁ ମୋ ପାଇଁ ଜଣାଇବ । ମୋର ଧର୍ମ ଓ ବିଶ୍ୱାସ ଉପରେ କାହାରି ବାଧା ଦେବା ଉଚିତ୍ ନୁହଁ । ବୁଢ଼ା ଓ ମଇନାକୁ ଦୃଷ୍ଟି ରଖିଥିବ । ବିଶେଷ କଣ ଲେଖିବି ? ତମର ସ୍ନେହ ମୋତେ ସକଳ କଷ୍ଟରୁ ହରଣ କରଇବ । ॥ ଇତି ॥

ତୁମର ସଙ୍ଗାତ

ଶକ୍ତି ନାହିଁ ବଳ କାହାରି ଜଗତେ
ନିୟତିକୁ ନେବ ନିଜ ଇଚ୍ଛା ମତେ ।

ଆୟୁଷ୍ମତୀ ସଙ୍ଗାତ,

ମୋର ପ୍ରୀତି ସମ୍ଭାଷଣ ନେବ । ଆଜି ଗୋଟିଏ ପବିତ୍ର ଦିବସ—ଯେତେ ଆମର ପୁନେଇଁ ପର୍ବ ଅଛି, ସବୁଠୁଁ ବଡ଼ଦିନ ଏଇଟି । କଣ ଲେଖିବି ? ପଡ଼ି ପଡ଼ି ଅନେକ ଅତୀତ କଥା ମନେ ପଡୁଛି । ବହୁ ଭାବନା ଖେଳୁଛି ମନ ଭିତରେ । ଲେଖକ ଯାହା ଭାବେ, ସବୁ କଣ ଲେଖନୀରେ ଫୁଟାଇ ପାରେ ? ଯାହା ମଧ୍ୟ ଫୁଟାଏ ସବୁକି ପ୍ରକାଶିତ ହୋଇ ଲୋକଙ୍କ ପାଖରେ ପହୁଞ୍ଚେ ?

କେହି ନାହାନ୍ତି—ତମ ଅପା, ମୁଁ ଚଢ଼େଇ ପରି ବସିଛୁ । 'ସମାଜ' 'ପ୍ରଜାତନ୍ତ୍ର' ପଢ଼ି, ରେଡ଼ିଓ ଶୁଣୁଛେ ଅଛି ବୋଲି ମନ ଟିକିଏ ଆନ୍ ମାନ୍ ହେଉଛି । ବୁଢ଼ା, ବୋହୂ ତା' ଛୁଆ ଦୁଇଟା ପଣ୍ଡିଚେରୀ ଯାଇଛନ୍ତି ।

ମୁଁ ତ କୁଆଡ଼େ ଯାଇ ଆସି ନପାରି, ନିଜକୁ ଅକର୍ମଣ୍ୟ ଭାବୁଛି । ମୋତେଇ ଆଉ କି କାମ ଅଛି ? ମୋର ରହିବା କି ଆବଶ୍ୟକତା ? ଭାବୁଛି—ବୋଧହୁଏ ତାଙ୍କର ଇଚ୍ଛା ଆଉ କିଛି ଦେଖିବାକୁ, କିଛି ଲେଖିବାକୁ କିଛି କିଛି ଶୁଣିବାକୁ । ଯେବେ ଯାଏ ତେବେ ତ ତମ ଘର ପାଖକୁ ଯିବି । ବାଳକୃଷ୍ଣ ବାବୁଙ୍କ ଶ୍ରାଦ୍ଧ ଦିବସ ଦିନ ଏବର୍ଷ ସେଦିନ ଏଠି ବସି ଅଶ୍ରୁ ବର୍ଷଣ କଲି ଯେ—ମୁଁ ଏଠି ବନ୍ଦୀ ।

ଆଜି ଏ ଦୁଇଟି ଛୋଟ କବିତା ଲେଖି ପଠାଇଛି ।

ପଠାଇଲି । :—

ମରଣ ପାଖରେ ସତ୍ୟ କରି ଆମେ
ଆସିଛେ ଏ ମର ପୃଥ୍ୱୀକି
ଯେତେକ ଭୁଲଇବେ ନ ଭୁଲିବ ସିଏ
ନ ପାରିବା ତାକୁ ଜିତିକି ।

ତମେ ଯେବେ ମତେ ଭଲ ପାଉ ଥାଅ
ଭଲ ପାଅ ମୋର ଜାତିକି,
ଯାଏ ଯେତେ ଦୂରେ ଥାଏ ଯେଉଁ ପୁରେ
ନ ଭୁଲିବି ତମ ପ୍ରୀତିକି ।
ମନୁଷ୍ୟ ଭିତରେ ଅଛନ୍ତି ଦେବତା
ମାନି ଚାଲ ତାଙ୍କ ନୀତିକି
ନୀତିରେ ଚାଲିଲେ ଭୀତି ନ ଲାଗିବ
ବଞ୍ଚେଇ ପାରିବ ଜାତିକି ।

ଏ ପତ୍ରରେ ବାବୁ ବୈଦ୍ୟନାଥଙ୍କୁ ପାପୁକୁ ସ୍ନେହ ଶୁଭାଶୀଷ । ପିଲା ଗୁଡ଼ିକୁ କଲ୍ୟାଣ ।

॥ ଇତି ॥
ତୁମର ବନ୍ଧୁ,
ବୀରକିଶୋର

To,
Smt. Manamohini Devi
C/o-Sri B. N. Das, Retd. D. S. P.
Sati Choura Road, Cuttack

କବି,

କଣ ସମ୍ବୋଧନ କରିବି, କିଛି ଠିକ୍ କରି ନପାରି, କିଛି ଲେଖିଲି ନାହିଁ । କେବଳ ତମର ପ୍ରବୃତ୍ତିର ଯା ବୃତ୍ତି ତାହା ହିଁ ଲେଖିଲି । ତମ ସେଠାକୁ ଯାଇ ଆସିଲେ ବାରଅଣା ପଡ଼ିବ । ଦଶ ପଇସାରେ କାମ ତୁଟାଇଲି । ତା'ପରେ ମୋର ଗୋଟାଏ ବଡ଼ ଦୁର୍ବଳତା, ମୁଁ କଲମ ଅଗରେ ଯାହା କହି ପାରେ, ଜିଭ ଜରିଆରେ ତାହା ପାରେ, ନାହିଁ । ତମ ବହି ଖଣ୍ଡି ଦେଖି ଓ ପଢ଼ି ଯୁଗପତ୍ ଭାବରେ ଆନନ୍ଦିତ ଓ ଲଜ୍ଜିତ ହେଲି । ଲଜ୍ଜିତ କାରଣ— ତମ ଶକ୍ତିର ଶ୍ରୀବୃଦ୍ଧି ସକାଶେ ମୁଁ କଣ କରିଛି ? ତମର ବୃତ୍ତି ବା ପ୍ରବୃତ୍ତି ଯାହା ମୋର ତାହା ହେଲେ ମଧ୍ୟ ମୁ କିଛି କରି ନାହିଁ ।

କବିତା ଗୁଡ଼ିକ ପଢ଼ିଲି । 'ବନ ବନକା' ଫୁଲ ଶେଷ ଯେଉଁ ପଦ୍ୟ ଦୁଇଟି ଦୁଇ ଥର ଲେଖାଏ ପଢ଼ିଲି ଷୋଳ ବର୍ଷ ବୟସରେ ଯେଉଁ ଗୁରୁଙ୍କ ସମ୍ପର୍କରେ ଆସି କବିତା ଲେଖି ଶିଖିଲି ସେ ମୋତେ କହିଥିଲେ—"କବିତା କୁଇ ଭରି ଧାଡ଼ି ଥାଏ"—ସବୁ କବିତା କବିତା ନୁହେଁ ।

ଯା'ହେଉ ବୋଉଙ୍କ କର କମଳରେ ଅର୍ପଣ କରୁଛି । ନୋଦା ସ୍କୁଲ ଲାଗି ବୃତ୍ତି ଖଞ୍ଜିବା, ଏ ବହି ଉତ୍ସର୍ଗ କରିବା କାର୍ଯ୍ୟ ତମର ଆଦର୍ଶ, ଆଜି କାଲି କେତେ ଲୋକ ଗ୍ରହଣ କରିବେ ?

ମୁଁ ତ ଏଭଳି ଏକ କାର୍ଯ୍ୟରେ ପଡ଼ିଛି ଯେ, ଟିକିଏ ଅବସର ମିଳୁନାହିଁ । ତା'ପରେ ଅର୍ଥ ଚିନ୍ତା । ବହି ଖଣ୍ଡିଏ ଖଣ୍ଡିଏ ଖବର କାଗଜ ସଂପାଦକ ମାନଙ୍କୁ ପଠାଇବା ଉଚିତ ।

ଉପେନ୍ଦ୍ର ଭଞ୍ଜ, ରବୀନ୍ଦ୍ରଙ୍କର ଅନ୍ତରିକ୍ତା ତଥା ଅନ୍ୟ ଚିନ୍ତା ଥିଲେ, ସେମାନେ ଅମର କବି ହୋଇ ପାରି ନ ଥାନ୍ତେ ।

କବିର ତଥା କବିତାର ପ୍ରକୃତ ମୂଲ୍ୟ ଖବର କାଗଜର ପ୍ରଶଂସାରୁ ମିଳେ ନାହିଁ, ବା ବନ୍ଧୁ ବାନ୍ଧବଙ୍କ ଉତ୍ସାହ ଦାନରୁ ମିଳେ ନାହିଁ । କବିତାର ମୂଲ୍ୟ ଆତ୍ମସନ୍ତୋଷ ।

ମୋର ରୁଚି ଅନୁକୂଳ କାମ ବୋଲି ମୁଁ ଏଥିରେ ପଶିଛି ତା'ପରେ ଏ କାର୍ଯ୍ୟ ଦ୍ୱାରା ବାରଲକ୍ଷ ଶିଶୁ ଓ ତରୁଣଙ୍କର ସେବା ଭବି ହାତକୁ ନେଇଛି । ବହୁ ବାଧା ବିଘ୍ନ ସତ୍ତ୍ୱେ ଚାଲିଛି । ଆଉ ଲେଖାଲେଖି କିଛି କରି ପାରୁ ନାହିଁ । କେତେବେଳେ କେମିତି ସଭାସମିତି ପାଇଁ ପଦେ ଅଧେ ଲେଖୁଛି । ଆଜି ଏତିକି ।

ତମର ଚିର ଶୁଭକାଂକ୍ଷୀ
ଓ
ପ୍ରାଣୋପମା ଅପାର
ଜଣେ ଅଯୋଗ୍ୟ ସାଥି

ସ୍ନେହାଧୀନ ବୈଦ୍ୟନାଥ ବାବୁ ଓ ସଂଜାତ,

କେତେଦିନ ହେଲା ଭାବୁଥିଲି, ପାମୁ ପାଖରୁ ଠିକଣା ମଗାଇ ପତ୍ର ଦେବି ବୋଲି । ସୌଭାଗ୍ୟର କଥା— ଚିଠି ଆସି ପହଞ୍ଚିଗଲା । ବର୍ତ୍ତମାନ କେତେ ଆନନ୍ଦରେ ଚିଠି ଖଣ୍ଡି ପଢ଼ିଲି । ତାହା ତୁମେ ଅନୁମାନ କରି ପାରିବ ନାହିଁ । ଚିଠି ପଢ଼ୁ ପଢ଼ୁ ଆଖିରୁ ଲୁହ ଗଡ଼ିଲା । ସୁଦୂର ଅତୀତ କଥାମାନ ପ୍ରାଣରେ ଫୁଟି ଉଠିଲା । ଏସବୁତ ମାୟା ଦେହଟା ଅଛି ବୋଲି ସମସ୍ତେ ଆକ୍ରମଣ କରୁଛନ୍ତି । ରୋଗ, ଶୋକ, ସ୍ନେହ, ପ୍ରୀତି, ଶ୍ରଦ୍ଧା ତଥା କାମ,କାମନା — ବୁଦ୍ଧଦେବ ଚଉଦ ବର୍ଷ ଜପ କରି କରି ଶେଷ ସିଦ୍ଧାନ୍ତରେ ପହଞ୍ଚିଲେ । କାମନାର ବିନାଶରେ ଦୁଃଖର ବିନାଶ ।

ଛାତ୍ରଖାଇ ବାସିଦିନ ଦେହକୁ ପଚସ୍ତରୀ ବର୍ଷ ଆରମ୍ଭ ହେଲା । ଦେହର ପ୍ରଧାନ ଅଂଶ ପାଦ ଆଉ ମୋ ବୋଲ ମାନି ରଖୁନାହିଁ । ମୁଁ ତାଙ୍କ ବୋଲ ମାନି ଚାଲୁଛି । ପୁରାଣ ଲେଖୁଛି ।

"ଏ ଦେହ ଥିଲେ, ସବୁ ପାଇ" । ଏ ଦେହତ ଚଉସ୍ତରୀ ବର୍ଷ ହେଲା ପାଇଛି । ମୁଁ କଣ ପାଇଲି, ଗୁଡ଼ିଏ ଋଣ କରି ଗଲି ସିନା—ପିତୃ ଋଣ, ମାତୃ ଋଣ, ସ୍ତ୍ରୀ ଋଣ, ସାଙ୍ଗ ସାଥୀଙ୍କ ଠାରୁ ଋଣ, ଜନ୍ମ ଭୂମିର ଋଣ କିଛି ଶୁଝି ପାରିଲି କି ? ଅଧିକନ୍ତୁ—ପୁଅକୁ ଶହ ଶହ ଟଙ୍କା କରଜରେ ପକାଇ ଦେଲି । ମୋର ପୂର୍ବ ଜନ୍ମର ତଥା ତମ ଅପାଙ୍କ ସୁକୃତରୁ ପୁଅ ବୋହୂ ଶ୍ରବଣ କୁମାର ଭଳି ଆମ ଦୁହିଁଙ୍କ ତତ୍ତ୍ୱ ନେଉଛନ୍ତି । ସେମାନଙ୍କ ଟବଳ ଉଦ୍ୟମ—ଆଉ ପାଞ୍ଚ ଦଶବର୍ଷ ଆମେ ବଞ୍ଚିରହୁ । ସେମାନେ କଳ୍ପନା କରିପାରୁ ନାହାନ୍ତି—ଘଡ଼ିରେ ଯେତେଦିନ ଚାବି ଦିଆ ହୋଇଥିବ । ଏକ ସେକେଣ୍ଡ ଆଉ କେହି ଚଳାଇ ପାରିବେ ନାହିଁ । ଚନ୍ଦ୍ରମଣ୍ଡଳକୁ ଲୋକ ଗଲେଣି ସତ, ମାତ୍ର ମୁଁ ଜ୍ୟୋତିଷ ଶାସ୍ତ୍ରକୁ ଅବିଶ୍ୱାସ କରିପାରୁ ନାହିଁ ।

ତମ କିଶୋର ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ଜଣେ ଜ୍ୟୋତିଷ ବିଷୟରେ ଲେଖୁ ଲେଖୁ ଦେଇ ଲେଖିଛନ୍ତି—ଜ୍ୟୋତିଷ ଗଣନା ଶତକଡ଼ା ପଚସ୍ତରୀ ସତ୍ୟ ।

ଡାକ୍ତରମାନଙ୍କ ମତ ସମୟେ ସମୟେ ଅଲଗା ହୁଏ । ମୋତେ ଜଣେ ଜ୍ୟୋତିଷ କହିଛନ୍ତି—ବୁଧ ମହାଦଶା ଶେଷଟି ତମର ଶେଷ ଅଂଶ । ଆଉ ଜଣେ ଲେଖିଛନ୍ତି—ଏହାପରେ କେତୁ ଦଶା ସାତବର୍ଷ ଭୋଗିବାକୁ ପଡ଼ିବ । ବୁଧ ଦଶା ଆସନ୍ତା ବର୍ଷ ଜୁନ ସୁଦ୍ଧା ସରୁଛି । ସେଥିପାଇଁ ମୋର ଚିନ୍ତା ନାହିଁ । ମାତ୍ର ମୋ ବୁଢ଼ୀମା ସବୁବେଳେ ପ୍ରାୟ କୁହେ—"ହେ ଭଗବାନ ! ହାତ ଗୋଡ଼ ଚଳୁ ଚଳୁ ମୋତେ ନେଇଯା" । ସେତେବେଳେ ମୁଁ ବୁଝି ପାରୁ ନ ଥିଲି । ବର୍ତ୍ତମାନ ତାହା ଅନୁଭବ କରୁଛି । ପିଲା ଗୁଡ଼ାକ ଡେଇଁ ଡେଇଁ ଖେଳୁଛନ୍ତି । ମୋ ଆଖି ଆଗରେ ଲୋକ ସବୁ ଧାଇଁ ଧାଇଁ ପାଉଛନ୍ତି । ସାଇକେଲରେ ଯାଉଛନ୍ତି । ଏମାନେ ମୋତେ ମାନସିକ ଯନ୍ତ୍ରଣା ଦେଉଛନ୍ତି । ବାଡ଼ିଖଣ୍ଡ ମୋର ବର୍ତ୍ତମାନ ପରମ ବନ୍ଧୁ । ତା ସାହାଯ୍ୟରେ ପାଇଖାନାକୁ, ଗାଧୁଆ ଘରକୁ ଯାଉଛି, ମାତ୍ର ବର୍ତ୍ତମାନ ଖାଦ୍ୟ ଦୁଇବେଳା—ରୁଟି ଦୁଧ । ପ୍ରଧାନ ଚିନ୍ତା ପାଞ୍ଚରୁ ପଚସ୍ତରୀ ଯାଏ ଯାହା ଯାହା ଅନୁଭବ କଲି, ତାକୁ କାଳି କଲମରେ ନିଖୁଣ ଭାବେ ଲେଖି ଦେଇ ଯାଆନ୍ତି କି ?

ଆଜିକାଲି ଆଉ କିଛି ଲେଖାଲେଖି ପାରୁନାହିଁ । କାରଣ ଦେହଟାତ ସବୁବେଳେ ବ୍ୟସ୍ତ ରହିଲା । ଏ ତିନି ଚାରି ଦିନରେ କାନରେ କଣ ହୋଇଛି—କଷ୍ଟ ପାଉଛି । ମୋର ଲେଖା ମଧ୍ୟରୁ ଆଠପଣ ଯତିନ୍ଦ୍ର, ତମ ସାହାଯ୍ୟରୁ ଗୋଟିଏ ଖାତାରେ ଲେଖି ଦେଇଛି । ସେ ଖଣ୍ଡି ମୋର ପ୍ରଧାନ ସମ୍ପତ୍ତି । ତମର ଭାବପ୍ରବଣତା କବି-କଳ୍ପନା, ପୂର୍ବ ଜନ୍ମ ତପସ୍ୟା ତୁମକୁ ଭୂସ୍ୱର୍ଗରେ ପହୁଞ୍ଚାଇଛି । ଜିନିଷ ପତ୍ର ଯାହା ଆଣ ବା ନ ଆଣ ମନରେ ପ୍ରାଣରେ ଯାହା ଆଣିବାର କଥା ନେଇ ଆସି ଲୋକଙ୍କୁ ଦେଇଯା ।

ତୁମ ସହଧର୍ମିଣୀଙ୍କ ଦେହ କଥା ଜାଣି ମନ ବଡ଼ ବ୍ୟସ୍ତ ହେଲା । ସେ'ତ ଏଠି ଶୁଖି ଯାଉଥିଲେ । ତୁମର ସୌଭାଗ୍ୟ, ତାଙ୍କ ପରି ଜଣେ ସରଳ ପ୍ରାଣ ଧର୍ମଚେତା ବ୍ୟକ୍ତିଙ୍କୁ ଜୀବନର ସାଥୀ ପାଇଛ । ହିମାଂଶୁ, ନିନିୟାତୁ ତୁମକୁ ପୁଅ ବୋହୂ ଠାରୁ ଅଧିକ ଭଲ ପାଉଛନ୍ତି । ମୁଁ'ତ ଆଜିକାଲି କାର୍‌ରେ ସୁଦ୍ଧା କଟକ ଯିବାକୁ ସାହାସ କରୁନାହିଁ । ବୁଢ଼ା ଗୋଟିଏ ଏଭଳି କାର୍ଯ୍ୟର ଦାୟିତ୍ୱରେ ପଡ଼ିଛି, ତାକୁ ସାରା ଓଡ଼ିଶାର ବଣ ପାହାଡ଼ ସହର ସବୁ ବୁଲିବାକୁ ପଡ଼ୁଛି । ମାତ୍ର ଗସ୍ତଖର୍ଚ୍ଚ ନିର୍ଦ୍ଦିଷ୍ଟ ଥିବାରୁ ସବୁ ପୁରୁଣା ମଟରରେ ପଛରେ ଯାଉଛି ।

ଦେଶର ରାଜନୀତି କଥା କଣ ଲେଖିବି ? ମୋଟରେ, ପୃଥିବୀ ଗୋଟିଏ ଖଣ୍ଡ ପ୍ରଳୟ ଭିତରେ ମହା ପରିବର୍ତ୍ତନ ଆଡ଼କୁ ଯାଉଛି । ନିଶ୍ଚୟ ଆସନ୍ତା ବାସ୍ତରୀ ମସିହାରୁ ସବୁ ବଦଳି ଯିବ । ଆମ୍ଭମାନଙ୍କର ସୌଭାଗ୍ୟ ଏ ପଚାଶ ବର୍ଷରେ ବଡ଼ ବଡ଼ ମହାପୁରୁଷଙ୍କ ସଂପର୍କରେ ଆସିଲୁ, କେତେ କେତେ କଥା ଦେଖିଲୁ ଶୁଣିଲୁ । ମନୁଷ୍ୟ ଚନ୍ଦ୍ରକୁ ଗଲେ ।

ବର୍ତ୍ତମାନ ସାଇବାବାଙ୍କର ଆବିର୍ଭାବ । ସେ ଅଦ୍ଭୁତ, ଅଲୌକିକ କାର୍ଯ୍ୟମାନ କରୁଛନ୍ତି । ସେ କହୁଛନ୍ତି—ଯାହାକୁ ବିଶ୍ୱାସ କରୁଛ କର । ନିଷ୍କପଟ ଭାବେ କର । ସବୁ ମୋ ପାଖକୁ ଅଟକିଛି ଆସିବ । ରାମକୃଷ୍ଣ ତାଙ୍କ ସମୟରେ ବିବେକାନନ୍ଦଙ୍କ ଦ୍ୱାରା ପାଶ୍ଚାତ୍ୟ ଦେଶମାନଙ୍କରେ ଆମ ଧର୍ମ ତଥ୍ୟ ପ୍ରଚାର କରାଇଥିଲେ । ଅନୁକୂଳ ଠାକୁର ଆମ ସନାତନ ଧର୍ମ ବିଷୟ କହିଗଲେ । ଅରବିନ୍ଦ ଶ୍ରୀମା ମନୁଷ୍ୟ କିପରି ଦେବତ୍ୱ ଲାଭ କରିବେ ତା'ର ପଥ ଦର୍ଶାଇଛନ୍ତି । ସାଇବାବା ବର୍ତ୍ତମାନ ଯୁଗର ବିଜ୍ଞାନକୁ ଜ୍ଞାନ ଦେବା ଲାଗି ଆସିଛନ୍ତି । ଏସବୁ ଭାବି ମୁଁ ଖୁସି ହେଉଛି । ମାତ୍ର ମୁଁ ତ ନିଜକୁ ଚିହ୍ନିପାରିଲି ନାହିଁ । ସେମାନଙ୍କୁ ଚିହ୍ନିବି କଥଣ ?

କଟକ ଯାଇ ନାହିଁ । ଘଲେ ଭବୁଛି—ପାପୁ ପିଲାପିଲିଙ୍କି ଦେଖି ଆସନ୍ତି । ହିମାଂଶୁକୁ ସ୍ନେହାଶୀଷ ଜଣାଇବ । ନିନିୟାକୁ ମଧ୍ୟ ସ୍ନେହାଶୀଷ ଜଣାଇବ । ତା' ପୁଅକୁ, ଝିଅକୁ ମୋର ଅନ୍ତରର ଶୁଭାଶୀଷ ଜଣାଉଛି । ସେମାନେ ଦେଶରେ ଏବଂ ପୃଥିବୀରେ ନାମ ରଖନ୍ତୁ ।

ଏ ପତ୍ରରେ ବୋହୂର ନମସ୍କାର ତମେ ଦୂରଜଣ ନେବ । ହିମାଂଶୁକୁ, ନିନିୟାକୁ ସ୍ନେହ ସଂରକ୍ଷଣ ଦେବ ।

ପ୍ରଧାନ କଥା, ତମେ ତୁସ୍ତ ଶୀତରେ ଫେରିଆସ । 'ମୋ ଦେଶ' ବାହାରୁଛି । ସେଠାକାର ଚିତ୍ର ପିଲାଙ୍କ ଲାଗି ଲେଖି ପଠାଅ, ॥ ଇତି ॥

ସଦା ଶୁଭକାଙ୍କ୍ଷୀ, ମୁଁ
ସଙ୍ଗାତ

ଆୟୁଷ୍ମତୀ ଦେଈ,

ତୁମେ ଉଭୟେ ମୋର ସ୍ନେହ ସଂରକ୍ଷଣ ଗ୍ରହଣ କରିବ । ମୋ ଦେହ ଦିନୁଦିନ ଖରାପ ଆଡ଼କୁ ଗତି କରୁଛି । ମୋତେ ଗଲଥର ଯେପରି ଦେଖି ଯାଇଥିଲ, ସେପରି ଶକ୍ତି ଆଉ ନାହିଁ ବିଛଣାରୁ ଉଠିଲା ବେଳକୁ ଅନ୍ୟର ସାହାଯ୍ୟ ଦରକାର ହେଉଛି । ବର୍ତ୍ତମାନ ବଇଦଉପଚ୍ଛ ଭରସା ଛାଡ଼ି ଦଇବ ଉପରେ ଭରସା ରଖିଛି । ଗୃହିଣୀମାନେ ବୃନ୍ଦାବତୀ ପାଖରେ ସଞ୍ଜବତୀ ଦେଲା ବେଳକୁ ପବନ ଯେପରି ଅଥୟ କରି ପକାଏ ମୋ ଅବସ୍ଥା ସେହିପରି । ଆଉ ଅଧିକ କଣ ଲେଖିବି? ଏ ପତ୍ର ପାପୁ, ବୋହୂ ଓ ପିଲାଙ୍କୁ ଶୁଭାଶୀଷ । (ଇତି)

ତୁମମାନଙ୍କର
ସଦା ଶୁଭକାଙ୍କ୍ଷୀ
ବୀର

ଆୟୁଷ୍ମାନ୍ ବୈଦ୍ୟନାଥ ବାବୁ ଓ ଆୟୁଷ୍ମତୀ ଦେଈ,

ତୁମେମାନେ ଭୂସ୍ୱର୍ଗ କାଶ୍ମୀର ଭ୍ରମଣ କରି ଫେରି ଆସିବା କଥା ଶୁଣି ଖୁସି ହେଲି । ମୋର ଶକ୍ତି ଥିଲେ, ତୁମ ପାଖକୁ ଯାଇ ସେଠାକାର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ଶୁଣି ଆସନ୍ତି । ମାତ୍ର ମୁଁ ଚଳତ୍ ଶକ୍ତି ରହିତ । ବର୍ଷକ ତଳେ ମୋତେ ଯେପରି ଦେଖି ଯାଇଥିଲ, ମୁଁ ଆଜି ନାହିଁ । ମୋ କଥ ମାନି ଗୋଡ଼ ହାତ ଚଳ ପ୍ରଚଳ ହେଉଥିଲେ । ମାତ୍ର ଆଜି ମୋତେ ତାଙ୍କ କଥା ମାନି ଚଳିବାକୁ ହେଉଛି । ସମୟ କିପରି ପାଣିପରି ଗଡ଼ି ଗ୍ଲାଲିଗଲା ସେ କଥା ଆଜି ମୋତେ ଭାବିଲା ବେଳକୁ ଆଶ୍ଚର୍ଯ୍ୟ ଲାଗୁଛି । ପୁଣି ଭାବୁଛି, ଅତୀତ ଅଭିଜ୍ଞତାର ବହି ଖଣ୍ଡି ଧରି ପୁଣି ପାଞ୍ଚ ବର୍ଷ ବୟସକୁ ଫେରି ଯାଇ, ସ୍ପୃଟଶାଳୀର ଛାତ୍ର ହୋଇ ଯାଆନ୍ତି କି ? ମନୁଷ୍ୟ ଯଦି ତା'ର ଭୁଲ ଗୁଡ଼ିକ ସଂଶୋଧନ କରିବାକୁ ସମୟ ଓ ସୁବିଧା ପାଆନ୍ତା, ଜୀବନ କେଡ଼େ ଆନନ୍ଦମୟ ହୁଅନ୍ତା । ମନୁଷ୍ୟ ଗୁଡ଼ିଏ ଘଟଣାର ସମଷ୍ଟି ଓ ପବନର ଖେଳନା । ବଡ଼ ଲୋକମାନେ କୁହନ୍ତି—ମନବଳ ଥିଲେ ଦେହ ରୋଗ, ଶୋକ, ଜରା ସବୁକିଛି ଭୁଲିଯାଏ । ମାତ୍ର ସେଭଳି ମୋର ମନବଳ କାହିଁ ? ସେଭଳି ମନବଳ ଥିଲା—ବୁଦ୍ଧଦେବଙ୍କର । ସେ ଅର୍ଦ୍ଧରାତ୍ରିରେ ପୁଅ ଭାର୍ଯ୍ୟାକୁ ଛାଡ଼ି ଚକ୍ରବର୍ତ୍ତୀ ରାଜ

ଗୋଟିଏ ଯାଗାରେ ବସି ରହିଲେ । ଆମ ପୁରଣମାନଙ୍କରେ ଯୋଗୀ, ଋଷିମାନେ ମନବଳରେ ଦେହକୁ ଦୂଙ୍କା କରି ଦେଉଥିଲେ । ଆମ ସାଧାରଣ ମନଟା ଦୂହାଁଳିଆ ଗାଈ । ସବୁବେଳେ ପଳାଏ ସେ ପଗା ଛିଣ୍ଡାଇ ।

ବର୍ତ୍ତମାନ ରାଜନୈତିକ ପରିସ୍ଥିତିରେ ତା ୧୪ । ୧ । ୭୧ ରିଖରେ 'ସମାଜ'ରେ ଗୋଟିଏ ପ୍ରବନ୍ଧ ଲେଖିଥିଲି । ତାକୁ ପଢ଼ିବ । 'ମାତୃଭୂମି' 'ପ୍ରଜାତନ୍ତ୍ର'ରେ ମଧ୍ୟ ବାହାରି ଥିଲା । ସବୁବେଳେ ବିଛଣାରେ ପଡ଼ି ପଡ଼ି ଅତୀତ ସ୍ମୃତିକୁ ମନେ ପକାଉଛି । ଲେଖକ ଯାହାଭାବେ ସବୁ ଯଦି ଲେଖି ହୋଇଯାଆନ୍ତା ସବୁ ଯଦି ଛାପି କଇମରେ ଫୁଟାଇ ବହି ଆକାରରେ ବାହାରନ୍ତା, ତାହାହେଲେ ପୃଥିବୀରେ ପ୍ରକୃତ ସତ୍ୟର ତଥ୍ୟ ଜଣାପଡ଼ନ୍ତା । ମୋର ଦେହର ଉପର ଆକୃତି କେହି ଜାଣି ପାରିବ ନାହିଁ ଯେ, ମୁଁ ପ୍ରତି ମୁହୂର୍ତ୍ତରେ କେଉଁ ଆଡ଼କୁ ଗତି କରୁଛି । ମୁଁ ଗୋଟିଏ ପଦ୍ମ ପାଣି କଣାରୁ ପରି ଥୁଆ ହୋଇଛି । ଜୀବନରେ ସବୁ ଗ୍ରହିଲି । ସ୍ନେହ, ପ୍ରୀତି, ଭକ୍ତି, ଯଶ, ଅର୍ଥ ଓ ପଦ ଗୌରବ । ମାତ୍ର ଗୋଟିଏ ଜିନିଷ ବାକି ଅଛି, ଯାହାକୁ ଗ୍ରହିଲେ ଲୋକ ଆଉ ଫେରିଆସି ବର୍ଣ୍ଣନା କରି ପାରେନି । ଦେଇ । ସୁବିଧା ସୁଯୋଗ ପାଇ ସେଠି ବହୁତ ଲେଖାଲେଖି କରି ଆଣି ଥିଲି, ମନେରଖ—

"ମନୁଷ୍ୟର ଆତ୍ମା ମରେ ନାହିଁ କେବେ
ଥିବା ଯାଏ ତାର ମନର୍ ଆଶା,
କବିର ଜୀବନୀ ସରେ ନାହିଁ କେବେ
ଥିବା ଯାଏ ଜାତି ମୁହଁରେ ଭାଷା ।"

॥ ଇତି ॥

ତୁମର ଶୁଭାକାଂକ୍ଷୀ
ସତ୍ୟ ଓ ଭିଶୋର

To,

Sri Baidyanath Das
Retd. D.S.P
Sati Choura Road
P. O.-Cuttack

•

୩/୧ ନୂଆ ଘର, ବାପୁଜୀ ନଗର
ଚଉଧୁରୀ ମାର୍କେଟ ସାମନା, ଭୁବନେଶ୍ୱର-୧
ତା ୨୨ । ୮ । ୭୦ରିଖ

ସ୍ନେହାସ୍ପଦ ଜାନକୀବଲ୍ଲଭ ବାବୁ,

ମୋର ଶୁଭାଶୀଷ ଗ୍ରହଣ କରିବ । ପ୍ରାୟ ଦୁଇ ବର୍ଷରୁ ଉର୍ଦ୍ଧ୍ୱ ହେବ, ତମ ସଙ୍ଗେ ଆକାଶବାଣୀ ମନ୍ଦିରରେ ଦେଖା ହୋଇଥିଲା । ମୋ ଦେହରେ ସେ ସମୟର ବଳ ଆଉ ନାହିଁ । ବାହାରକୁ ଆଉ ବେଶୀ ଯିବା ଆସିବା କରୁନାହିଁ । ବନ୍ଦୀ ଜୀବନ କଟୁଛି । ଅତୀତ ସ୍ମୃତିକି ସଖାଳି କରି ମନକୁ ବୁଝାଉଛି ।

ଗମ'ତ ଗୋଟିଏ ପ୍ରେସ ବସାଇ 'ମୋ ଦେଶ' ବାହାର କରୁଛି । ମାତ୍ର ପୂର୍ବପରି ହୋଇପାରୁ ନାହିଁ । ମୁଁ ଆଜିକାଲି ଆଉ କୌଣସି ଦଳରେ ନାହିଁ, କି ଜଞ୍ଜାଳରେ ନାହିଁ ବ୍ରିଟିଶ ସରକାର ଅଧୀନରେ ରହି ୧୯୨୧-୨୨ ମସିହାରେ ଏକ୍ଷେ ବହି ଲେଖିଥିଲି 'ମୋହନ ବଂଶୀ' । ସେ ବହି ଲାଗି ମୋତେ ଦଣ୍ଡ ଦେବା ପୂର୍ବରୁ ମୁଁ ଇସ୍ତଫା ଦେଇ ଆସିଥିଲି । ଇସ୍ତଫା ପତ୍ରରେ ଲେଖିଥିଲି—ଏ ଦୁର୍ବଳ ଅତ୍ୟାଚାରୀ ସରକାର ଅଧୀନରେ ମଁ ଆଉ ରହିବାକୁ ଚାହେଁନା । ମୋର ସ୍ୱାଧୀନ ସରକାର ଗଢ଼ାହେଲେ, ମୁଁ ଯଦି ବଞ୍ଚିଥାଏ, ତେବେ କିଛି ଦିନ ଚାକିରି କରିବି ।

ଦୁର୍ଭାଗ୍ୟବଶତଃ ହେଉ ବା ସୌଭାଗ୍ୟବଶତଃ ହେଉ ରକ୍ତ ନଦୀ ସନ୍ତରଣ କରି ଘାଟରେ ଲାଗିଲି । ଯୋଗ ପଡ଼ିଲା—ଦିଗୁରି ବର୍ଷ । ଜାତୀୟକରଣ ପୁସ୍ତକ ଅନୁଷ୍ଠାନରେ କଟାଇଲି । ସେଠି କର୍ତ୍ତା ହୋଇ ଦିନ କାଟୁ ନଥିଲି । କରଣ ହୋଇ ଅଫିସ ଚଳାଉଥିଲି । ପ୍ରଥମ ବହି—'ମୋ ଛବି ବହି', ଦ୍ୱିତୀୟ—'ନୂଆ ଛବି ବହି' । ପାଣ୍ଡୁଲିପି ଲେଖିବା ପରେ ଆଇନ୍ ହେଲା—ସେକ୍ରେଟାରୀ ବା ଅଫିସ ଲୋକ କେହି ଲେଖି ପାରିବେ ନାହିଁ । ମାତ୍ର ଲେଖକ ନିଯୁକ୍ତିରେ କମିଟିର ସଭ୍ୟ ତଥା ସର୍କାରଙ୍କ ଇଚ୍ଛାନୁସାରେ କାର୍ଯ୍ୟ ଚଳିଲା । ସେ ଯାହାହେଉ, କିଛି ଦିନ ଚାଖିଲି—ସ୍ୱଦେଶୀ ସର୍କାର କିପରି ?

କଂଗ୍ରେସର କର୍ମକର୍ତ୍ତା, ବୋର୍ଡ଼ର କର୍ମକର୍ତ୍ତା, ବିଧାନ ସଭା ସଭ୍ୟ ପ୍ରଭୃତି ହୋଇ ସବୁ ଚାଖିଛି । ଆଉ ଗୋଟିଏ ଜିନିଷ ବାକିଅଛି ଚାଖିବାକୁ । ଦୀପ ମିଞ୍ଜି ମିଞ୍ଜି ଜଳୁଛି । କୋଉ ମୁହୂର୍ତ୍ତରେ ଲିଭିବ, କିଏ କହିବ । ସେ ଯୁଗର କେତେ ଗୋଟି କବିତା ଅନୁବାଦ କରାଇଥିଲି । ବହି ଦୁଇଖଣ୍ଡି ତୁମ ପାଖକୁ ପଠାଇଛି—ପାଇଲ କି ନାହିଁ ଜାଣେନା ।

ଆଜି ଗୋଟିଏ ବିଶେଷ ବିଷୟ ଶୁଣି ତୁମକୁ ଲେଖୁଛି । ଏଇଟା ନୀତି ଗର୍ହିତ କାର୍ଯ୍ୟ, ମୁଁ ବୁଝିଛି । ତଥାପି ତମ ପାଖରେ ଅଳି କରି, ଅନୁରୋଧ କରିବାରେ ଭୁଲ ହେବ ନାହିଁ । ମୋର ଭଣଜା ବୋହୂ ଘରେ ଘରେ ପଢ଼ି, ଏ ଯାଏଁ ଆସିଛି । ତାକୁ ଟିକେ ସାହାଯ୍ୟ ହେଲେ ସେ କୃତକାର୍ଯ୍ୟ ହେବ ଓ କୃତଜ୍ଞ ରହିବ । ତୁମ ବ୍ୟତୀତ ଆଉ କାହାକୁ କହିବା ଅଧିକାର ନାହିଁ କି ଇଚ୍ଛା ହେଉ ନାହିଁ । ପିଲାମାନଙ୍କୁ ଓ ବୋହୂକୁ ମୋର ଶୁଭାଶୀଷ ।

ଆଉ ଦୁଇଖଣ୍ଡି ବହି କଲେଜ ଲାଇବ୍ରେରୀରୁ ପଠାଇବ । ।। ଇତି ।।

ତୁମର ସଦାଶୁଭକାଙ୍କ୍ଷୀ ବୀରକିଶୋର

ସ୍ନେହାଧୀନ ବୈଦ୍ୟନାଥ ବାବୁ ଓ ଦେଇ,

ତମେମାନେ ଚାଲି ଯିବା ଦିନ ଏଇବାଟେ ଯାଇଥିଲେ, ଆମ୍ଭେମାନେ ଟିକେ ଶାନ୍ତି ପାଇଥାନ୍ତୁ । ତମେମାନେ ଏଠି ଆଠଦିନ ରହିଲ । ମୁଁ ଟିକେ ସୁବିଧା ପାଇଲି ନାହିଁ ଦୁଃଖ ସୁଖ ହେବାକୁ । ସେଦିନ ବୁଢ଼ା ଗାଡ଼ି ଅନ୍ୟଠୁ ଆଣିବାକୁ ଚେଷ୍ଟା କରି ପାଇଲା ନାହିଁ । କାଜୀଗଳି ଦେଇ କାଫଲା ଯିବାକୁ କୋଡ଼ିଏ ଟଙ୍କା ଭଡ଼ା ଛିଣ୍ଡାଇ ଗୋଟିଏ ଟ୍ୟାକ୍ସିରେ ବୋହୂକୁ ନେଇ ଗଲାବେଳକୁ ତମେ ନାହିଁ । ଟଙ୍କାଦେଇ ଟ୍ୟାକ୍ସି ଫେରାଇଲୁ । ତମ ଅପା ଯାଇଥାନ୍ତେ, ନ ଦିନ ହେବ ବୋଲି ସେ ତହିଁ ଆରଦିନ ଗଲେ । ବୁଢ଼ା ବ୍ୟସ୍ତ । ମଉଷା ମାଉଷୀ ଗଗିଥିବେ ।

ଛାଡ଼ ସେ କଥା । ଗଲା କଥା ଯାଉ । ଭବି କି ଲାଭ ।

